# ହୋ-ଚି-ମିନ୍

ଲେଖିକା : ଶୈଳ ବେହେରା
'ସୁକନ୍ୟା',
ମଣିସାହୁ ଛକ, କଟକ-୧

ପ୍ରକାଶକ :
ପୁଷ୍ପଗିରି ପ୍ରକାଶନୀ
କଟକ-୭୫୩00୨

ପ୍ରଚ୍ଛଦପଟ ରେଖା : ଅସିତ ମୁଖାର୍ଜୀ
ଶିଳ୍ପରୂପମ୍, କଟକ-୨

ମୁଦ୍ରଣ : ପୁଷ୍ପଗିରି ପ୍ରେସ,
କଟକ-୨

ପ୍ରଥମ ସଂସ୍କରଣ :

ପ୍ରକାଶ କାଳ : ୧୯୭୬ ଡିସେମ୍ବର

ମୂଲ୍ୟ :
ଲାଇବ୍ରେରୀ ସଂସ୍କରଣ : ଟ୧୫ଙ୍କା
ସାଧା ବନ୍ଧେଇ : ଟ୧୦ଙ୍କା



# Ho-Chi-Minh

*Authoress* : **Shaila Behera**
'Sukanya'
Mani Sahu Chhak,
Cuttack-1

*Publisher* :
**Puspagiri Prakashani**
Cuttack-753002

*Cover design* : Asit Mukherjee
Silparupam, Cuttack-2

*Printed at* :
**Puspagiri Press,**
Cuttack-2

*First Edition* :

*Published in* : **Dec. 1976**

*Price* :
Library Edition : **Rs. 15-00**
Plain bound : **Rs. 10-00**




ଯେ ମୋତେ
କଲମ ଧରାଇ ଥିଲେ
ତାଙ୍କର ହାତରେ

ଆଜିଠାରୁ ବହୁଦିନ ପରେ
ଯେ ବେଳେ ଦେଖିବି ତୁମ ମୃତ୍ୟୁହୀନ କବର ଉପରେ
ସାମ୍ୟବାଦୀ କେତେ ଦୁର୍ବାଦଳ
ଯେ ବେଳେ ଉଜାଡ଼ି ଦେବି ତୁମ ପାଇଁ ସଂଚିତ ଯେତେକ
ମୋ ଆଖିର ବେଦନାକ୍ତ ନୀର
ମୋ ଆଖିର ରକ୍ତ ଅଶ୍ରୁ ଆଜି ଆଉ
ମାନେ ନାହିଁ ବାଧା
ତୁମ ପାଇଁ ଅବାରିତ ରହିଛି ଯା ରହିବ ସର୍ବଦା
ଦେବା ପାଇଁ ଚରଣ ପଖାଳି
ତୁମ ହାତ ଗଢ଼ା ଏହି ସ୍ନେହ ଆଉ ମମତାର
ଅଫୁଟନ୍ତ ଶତଦଳ କଳି

ଶୈଳ



**ଗ୍ଭ ଚ୍ଛ-ହୋ**

ଜନ୍ମ—୧୮୯୦, ମେ ୧୯ ତାରିଖ

ମୃତ୍ୟୁ--୧୯୬୯, ସେପ୍ଟେମ୍ବର ୪ ତାରିଖ

" ତୁମକୁ ମୁଁ ସିନା ଦେଖିନାହିଁ କେବେ
ହେଲେ ଶୁଣିଛୁ ତୁମର କଥା
ତୁମ ପାଇଁ ଆଜ ଅଖିଳ ବିଶ୍ୱ ଝୁରେ
ଅଖିଳ ଅନ୍ତରୁ ଝରିପଡ଼େ ଯେତେ ବ୍ୟଥା "

ଶୈଳ

ହୋ-ଚି-ମିନ୍‌ଙ୍କ ଭାରତ ଗସ୍ତ



ଡାହାଣରୁ ବାମକୁ :—
ହୋ-ଚି-ମିନ୍, ଜବାହାରଲାଲ ନେହେରୁ, ଅଜୟ ଘୋଷ, ଭି.କେ. କୃଷ୍ଣମେନନ୍

# ଏ ବହି କାହିଁକି ?

ଆଦ୍ୟ କୈଶୋରରୁ 'ଭିଏତନାମ' ମୋର ରାଜନୈତିକ ଜୀବନକୁ ଆନ୍ଦୋଳିତ କରିଛି । ମୁଁ ଯେତେବେଳେ କବିତା, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ ଏବଂ ରାଜନୈତିକ ସମାଲୋଚନା ଆଦି ଲେଖୁଥିଲି, ସେତେବେଳେ ମୋର ଅନେକ ବନ୍ଧୁ, ଶୁଭାନୁଧ୍ୟାୟୀ ମୋତେ ବାଧ୍ୟ କରିଥିଲେ ସେ ସବୁର ଏକ ସଂକଳନ ପ୍ରକାଶ କରିବା ପାଇଁ । କିନ୍ତୁ ସେ ସମସ୍ତଙ୍କ ପାଇଁ ମୋର ଗୋଟିଏ ମାତ୍ର ଉତ୍ତର ଥିଲା ଭାରତର ଅନ୍ୟତମ ମୁଖ୍ୟ ପ୍ରାନ୍ତୀୟ ଭାଷା ତଥା ମୋ ନିଜ ମାତୃଭାଷାରେ ମୁଁ ଯଦି ଏସିଆ ମହାଦେଶର ମହାନ୍ ବିପ୍ଳବୀ, ମୁକ୍ତିଯୋଦ୍ଧା, ମାର୍କସ୍‌ବାଦ ଲେନିନ୍‌ବାଦର ସଚ୍ଚା ପ୍ରବକ୍ତା ଏବଂ ସର୍ବୋପରି ଜଣେ ଅନନ୍ୟ ଦେଶପ୍ରେମୀ କମ୍ରେଡ଼ ହୋ-ଚି-ମିନ୍‌ଙ୍କର ବ୍ୟକ୍ତିଗତ ଜୀବନକୁ ରାଜନୈତିକ ରୂପ ଦେଇ ନ ପାରିବି ତେବେ ମୋର ସମସ୍ତ ପ୍ରକାର ସାହିତ୍ୟିକ କୃତି ବ୍ୟର୍ଥ ହୋଇଯିବ । ସେହି ଅନମନୀୟ କ୍ଷୁଧା ଓ ପିପାସା ମୋତେ ଏତେବାଟ ଟାଣି ଆଣି ପାରିଛି ।

ଆଜକୁ ସାତବର୍ଷ ତଳେ ଭିଏତନାମ ମୁକ୍ତି ସଂଗ୍ରାମର ସେନାପତି ମହାମନା ହୋ-ଚି-ମିନ୍‌ଙ୍କର ମୃତ୍ୟୁ ଘଟିଛି । ଏହି ସାତବର୍ଷ ମଧ୍ୟରେ ଭିଏତନାମ ମୁକ୍ତି ବିଦ୍ରୋହର ଗତି ଆହୁରି ତୀବ୍ର, ଆହୁରି ବେଗବାନ, ଏବଂ ଆହୁରି ଶାଣିତ ହୋଇଛି । ପରିବର୍ତ୍ତିତ ସମୟ ବ୍ୟବଧାନରେ ଭିଏତନାମର ଜନ୍ମାନ୍ତର ଘଟିଛି । ହେଲେ ଏ ସବୁ ଧାରା ପ୍ରବାହର ଏକକ ନାୟକ ହୋଇ ରହିଛନ୍ତି ସେ ଦିନର ହୋ-ଚି-ମିନ୍ । କୋଟି କୋଟି ଭିଏତନାମୀ ଶିଶୁ, କିଶୋର, ତରୁଣ ଓ ସାଧାରଣ ଜନତାର ହୃଦୟରେ ସେ ଜୀବିତ । ହୋ-ଚି-ମିନ୍‌ଙ୍କର ବୀର ରକ୍ତ ସେମାନଙ୍କ ଧମନୀରେ ନିତ୍ୟ ପ୍ରବାହିତ । ଫଳରେ ପୃଥିବୀର ଅନନ୍ୟ ସାଧାରଣ ମୁକ୍ତିଯୁଦ୍ଧର ପୁଣ୍ୟପୀଠ ଭିଏତନାମ ଆଜି ଗର୍ବିତ ।

ହୋ-ଚି-ମିନ୍‌ଙ୍କର ସ୍ୱପ୍ନ—ତାଙ୍କର ଜୀବନବ୍ୟାପୀ ସାଧନାର ଅନ୍ୟ ଏକ ରୂପ । ଯାହାର ପଣ ସ୍ୱରୂପ ପୃଥିବୀ ପୃଷ୍ଠରେ ଭିଏତନାମ ଅଖଣ୍ଡ, ମୁକ୍ତ ଓ ସ୍ୱାଧୀନ ସମାଜବାଦୀ ରାଷ୍ଟ୍ର ରୂପେ ଠିଆ ହୋଇ ପାରିଛି । ମୁଁ ଆଶା କରେ ସୁଧୀ ପାଠକବୃନ୍ଦ ଏ ପୁସ୍ତକରୁ ତା'ର ସଂକ୍ଷିପ୍ତ ପରିଚୟ ପାଇ ପାରିବେ ।

ଭିଏତନାମ ଆଜି ସଂପୂର୍ଣ୍ଣ ସ୍ୱାଧୀନ । ଶତାବ୍ଦୀ ଶତାବ୍ଦୀ ଓ ଯୁଗ ଯୁଗର ଔପନିବେଶିକ ତଥା ସାମ୍ରାଜ୍ୟବାଦୀ ଶୋଷଣରୁ ସେ ସମ୍ପୂର୍ଣ୍ଣ ମୁକ୍ତ । ଭିଏତନାମ ଆଜି ଆଉ ଦ୍ୱିଖଣ୍ଡିତ ହୋଇ ନାହିଁ । ଦୀର୍ଘ ବାଇଶ ବର୍ଷ ପରେ ଦୁଇ ଭିଏତନାମ ପୁଣି ଏକାତ୍ମ ହୋଇଛନ୍ତି । ଋରି କୋଟିରୁ କିଛି ଊଣା ଜନସଂଖ୍ୟା ବିଶିଷ୍ଟ ଭିଏତନାମ ଗୋଟିଏ ଛାତ, ଗୋଟିଏ ପତାକା ତଳେ ମିଳିତ ହୋଇଛି । ବହୁଦିନର ପାରସ୍ପରିକ ବିରହ, ମଧୁର ମିଳନରେ ପରିଣତ ହୋଇଛି । ଉଭୟ ଉତ୍ତର ଓ ଦକ୍ଷିଣ ଭିଏତନାମରେ ବିଧିବଦ୍ଧଭାବେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ଶାସନ ବିଧାୟକ ସଭାଦ୍ୱାର ପ୍ରସ୍ତୁତ ସମ୍ବିଧାନ କ୍ରମେ ଏକ ସାର୍ବଭୌମ ଭିଏତନାମୀ ସମାଜବାଦୀ ସାଧାରଣତନ୍ତ୍ର ପ୍ରତିଷ୍ଠା ହୋଇ ଯାଇଛି । ହୋ-ଚି-ମିନ୍‌ଙ୍କ ଅନ୍ତରଙ୍ଗ ସହଯୋଦ୍ଧା ଓ ପଟ୍ଟଶିଷ୍ୟ ଲେ-ଡୁଆନ ଦୀର୍ଘଦିନ ବ୍ୟାପୀ ଏକ ରକ୍ତାକ୍ତ ଗଣ ବିପ୍ଳବରୁ ଜନ୍ମଲାଭ କରିଥିବା ନୂତନ ଧରଣର ଏଇ ବିପ୍ଳବୀ ସରକାରର ନେତୃତ୍ୱରେ ଅଧିଷ୍ଠିତ ହୋଇଛନ୍ତି । ତାଙ୍କରି ସଫଳ ପ୍ରୟାସ ଓ ସଯତ୍ନ ନିର୍ଦ୍ଦେଶରେ ଅକାଳ ଧ୍ୱଂସ ସ୍ତୂପରୁ ପୁନର୍ଜନ୍ମ ଫେରିପାଇଥିବା ପିତୃଭୂମିରେ ସମାଜବାଦୀ ନବ ନିର୍ମାଣର ରାସ୍ତା ପରିଷ୍କାର ହେବାକୁ ଲାଗିଛି ।

ଭିଏତନାମବାସୀ ପୃଥିବୀର ସବୁଠାରୁ ଦୁର୍ଦ୍ଧର୍ଷ ଓ ସାମ୍ରାଜ୍ୟବାଦୀ ଶକ୍ତି ଆମେରିକାକୁ ପରାସ୍ତ କରିଛନ୍ତି । ସେମାନଙ୍କର ଏହି ଅସାଧ୍ୟ ସାଧନ ପାଇଁ ସମଗ୍ର ଏସିଆ ମହାଦେଶ ଗର୍ବିତ । ଏକଚାଟିଆ ପୁଂଜି ଦ୍ୱାରା ପୁଷ୍ଟ ଓ ପରିଚାଳିତ ବହୁଦେଶୀୟ ବ୍ୟବସାୟ ପ୍ରତିଷ୍ଠାନ (Multinational Corporation) ମାନଙ୍କର ସ୍ୱାର୍ଥରକ୍ଷାକୁ ଯେଉଁ ମାର୍କିନ ସରକାର ତାର ଏକମାତ୍ର ବ୍ରତ କରିଛି ତାର ସାମରିକ ବଳକୁ କଳନା କରିବା ସେତେ ସହଜ ବ୍ୟାପାର ନୁହେଁ । ଅତ୍ୟାଧୁନିକ ମାରଣାସ୍ତ୍ରରେ ସୁସଜ୍ଜିତ ଶହ ଶହ ଯୁଦ୍ଧ ଘାଟିରେ ଯୁଦ୍ଧଖୋର

ଆମେରିକା ସମଗ୍ର ବିଶ୍ୱକୁ ଛାଇ ଦେଇଛି । ପୃଥିବୀର ବିଭିନ୍ନ ଦେଶର ଅର୍ଥନୀତି, ପ୍ରଶାସନିକ ସଂସ୍ଥା ଓ ସମାଜ ବ୍ୟବସ୍ଥାକୁ ନିଜ ହାତ ମୁଠାରେ ରଖିବା ଉଦ୍ଦେଶ୍ୟରେ ଏହା ନିଜ ପ୍ରତିରକ୍ଷା ଦପ୍ତର ପାଇଁ ବର୍ଷକୁ ଦଶ ହଜାର କୋଟି ଡଲାର ବ୍ୟୟ କରୁଛି । ୧୯୭୮ ବେଳକୁ ଏହି ପରିମାଣ ତେର ହଜାର କୋଟିରେ ପହଞ୍ଚିବ ବୋଲି ଅଟକଳ କରା ଯାଇଛି । (ଅଥଚ ସୋଭିଏତ ରୁଷରେ ପ୍ରତିରକ୍ଷା ଖର୍ଚ୍ଚ ୧୯୭୬ରେ ଏକ ହଜାର ୩୦୫ କୋଟି ଡଲାର ଥିବା ସ୍ଥଳେ ୧୯୭୭ରେ ତାହା କମାଇ ୧ ହଜାର ୨୯୦ କୋଟି ରଖା ଯାଇଛି) ଏହା ବ୍ୟତୀତ ସି. ଆଇ. ଏ. ସଂସ୍ଥା ପାଇଁ ସୀମାହୀନ ବ୍ୟୟର ବ୍ୟବସ୍ଥା ରହିଛି । ଏହିଭଳି ଏକ ସାମ୍ରାଜ୍ୟବାଦୀ ଶକ୍ତିର ମୁକାବିଲା କରି ଭିଏତନାମୀ ଜନସାଧାରଣ ଯେ ପରିଶେଷରେ ବିଜୟଶ୍ରୀ ମଣ୍ଡିତ ହେଲେ, ଲାଓସ କମ୍ବୋଡ଼ିଆଠାରୁ ଆରମ୍ଭ କରି ଆଙ୍ଗୋଲା ଯାଏ ଏସିଆ, ଆଫ୍ରିକାର ବନ୍ଧୁ ଦେଶର ଜାତୀୟ ମୁକ୍ତି ସଂଗ୍ରାମର ବିଜୟପଥକୁ ଅଧିକ ସୁଗମ କରି ପାରିଲେ, ତାହାର ମୂଳ ଭିତ୍ତି କେଉଁଠି ?

ଜାତୀୟ ଗଣତାନ୍ତ୍ରିକ ବିପ୍ଳବର ସଫଳତା ପାଇଁ ଗଭୀର ଦେଶପ୍ରେମ, ବ୍ୟାପକତମ ସଂଗ୍ରାମୀ ଐକ୍ୟ, ବଜ୍ରଦୃଢ଼ ରାଜନୈତିକ ସଂଗଠନ, ଆଦର୍ଶନିଷ୍ଠା ଓ ଆତ୍ମବଳିଦାନର ଯେଉଁ ପରିଚୟ ଭିଏତନାମବାସୀ ଦେଇଛନ୍ତି ତାହା ଅତୁଳନୀୟ । ତାହା ସାଙ୍ଗକୁ ସେମାନେ ସମାଜବାଦୀ ଶିବିର ଓ ବିଶ୍ୱଜନଗଣର ସାମ୍ରାଜ୍ୟବାଦ ବିରୋଧୀ ମୁକ୍ତି ଆନ୍ଦୋଳନ ସହିତ ଘନିଷ୍ଠ ମୈତ୍ରୀ ଓ ସହଯୋଗକୁ ଏକ ନିର୍ଭରଯୋଗ୍ୟ ହତିଆର ରୂପେ ଗ୍ରହଣ କରି ଆସିଛନ୍ତି । ହୋ-ଚି-ମିନ୍ ହୋଇଛନ୍ତି ସେମାନଙ୍କର ସ୍ୱେଚ୍ଛାକୃତ ବିପ୍ଳବର ପଥପ୍ରଦର୍ଶକ ନେତା, ସଙ୍ଗଠକ ଏବଂ ସର୍ବୋପରି ନୀତି ନିୟାମକ । ଭିଏତନାମ ମୁକ୍ତି ବିପ୍ଳବ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ; ଏପରିକି ସ୍ୱତନ୍ତ୍ର ଚରିତ୍ରର ପର୍ଯ୍ୟାୟ ମଧ୍ୟ ଦେଇ ଗତି କରି ଆସିଛି । ସଂଗ୍ରାମର କେଉଁ ବିଶେଷ ପର୍ଯ୍ୟାୟରେ ପ୍ରଧାନତମ ଶତ୍ରୁ କିଏ, ତାକୁ ଚିହ୍ନି ରଖିବା ଏବଂ ତାରି ବିରୁଦ୍ଧରେ ଜାତି ଜନତାର ଐକାନ୍ତିକ ଉଦ୍ୟମ ଓ ଶକ୍ତିକୁ ସଙ୍ଘବଦ୍ଧ ବ୍ୟାପକ ଗଣ ପ୍ରତିରୋଧରେ ପରିଣତ କରିବା ଥିଲା ହୋ-ଚି-ମିନଙ୍କର ରଣକୌଶଳ । ଏ ଦିଗରେ ତାଙ୍କର ତାତ୍ତ୍ୱିକ ଚିନ୍ତାଧାରା ଓ କର୍ମ ଯୋଜନାକୁ ଅଧିକ ଦୃଢ଼ ଏବଂ ବାସ୍ତବ କରି

ତୋଳିଥିଲା ତାଙ୍କର ମାର୍କସ୍‌ବାଦୀ ଲେନିନାବାଦୀ ଶିକ୍ଷା । ମାର୍କସ୍‌ବାଦୀ ଲେନିନାବାଦୀ ଦର୍ଶନର ଉପଯୁକ୍ତ ପ୍ରୟୋଗ ଯୋଗୁଁ ସେ ଭିଏତନାମ ପରି ଏକ କ୍ଷୁଦ୍ର ଉପନିବେଶରେ ସେହି ତତ୍ତ୍ୱରେ ଦୀକ୍ଷିତ ଏପରି ଏକ ଇସ୍ପାତ କଠିଣ ସଂଗ୍ରାମୀ ରାଜନୈତିକ ଦଳ ଗଢ଼ି ଠିଆ କରାଇ ପାରିଲେ ଯାହା ହୋ-ଚି-ମିନଙ୍କ ମୃତ୍ୟୁ ପରେ ସୁଦ୍ଧା ତାଙ୍କରି ନିର୍ଦ୍ଦିଷ୍ଟ ପଥରେ ଭିଏତନାମ ବିପ୍ଳବକୁ ପରିଚାଳିତ କରିପାରିଲା ଏବଂ ପରିଶେଷରେ ଯଶସ୍ୱୀ ହେଲା ମଧ୍ୟ ।

ହୋ-ଚି-ମିନ୍‌ଙ୍କ ଜୀବନୀ ବିଷୟକ ଏ ପୁସ୍ତକ ପ୍ରକୃତରେ ଭିଏତନାମ ବିପ୍ଳବର ଏକ ଦୀର୍ଘ କାହାଣୀ । ଓଡ଼ିଆ ଭାଷାରେ ଏଭଳି ଏକ ପୁସ୍ତକର ଅଭାବ ବହୁ ଦିନରୁ ଥିଲା । ମୋର ବିଶ୍ୱାସ ଏ ବହିଟି କେତେକାଂଶରେ ସେ ଅଭାବ ପୂରଣ କରିବ ।

ଭିଏତନାମରେ ମୁକ୍ତି ସଂଗ୍ରାମ ଚାଲିଥିବା ବେଳେ ଭାରତର ଅନ୍ୟାନ୍ୟ ଅଞ୍ଚଳର ଯୁବକମାନଙ୍କ ଭଳି ଓଡ଼ିଶାର ଯୁବସମାଜ ମଧ୍ୟ ଅତ୍ୟନ୍ତ ଉତ୍କଣ୍ଠାର ସହ ସେ ଯୁଦ୍ଧର ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ମୁକ୍ତିବିପ୍ଳବୀମାନଙ୍କର ସଂଗ୍ରାମ ସହିତ ନିଜର ଆତ୍ମିକ ଚେତନାକୁ ଏକ କରିଥିଲେ । ସାମ୍ରାଜ୍ୟବାଦ ଭାରତର ଶତ୍ରୁ, ଭିଏତନାମର ମଧ୍ୟ । ଏହା ଜାଣି ବିଶ୍ୱ ସାମ୍ରାଜ୍ୟବାଦ ଶିବିରର ମଉଡ଼ମଣି ଆମେରିକାକୁ ଭିଏତନାମର ଅପରିଣତ କିଶୋର, ଯୁବକମାନେ ଯେତେବେଳେ ତାଙ୍କ ପିତୃଭୂମିରୁ ନିକାଳି ଦେଇ ପାରିଲେ ସେତେବେଳେ ଭାରତୀୟ ଯୁବକ ଓ ଓଡ଼ିଶାର ଯୁବସମାଜ ଗର୍ବରେ ଭାଙ୍ଗି ପଡୁଥିଲେ । ମୁଁ ଆଶା କରେ ଭିଏତନାମ ମୁକ୍ତି ବିପ୍ଳବର ରକ୍ତପୂତ ଇତିହାସରୁ ଏବଂ ହୋ-ଚି-ମିନଙ୍କ ବିପ୍ଳବସିକ୍ତ ଜୀବନ କାହାଣୀରୁ ଓଡ଼ିଆ ଯୁବଛାତ୍ର ସମାଜ ସେହି ଅନୁପମ ଦେଶପ୍ରେମ ଓ କର୍ତ୍ତବ୍ୟନିଷ୍ଠା ଶିକ୍ଷା କରିବେ । ହୋ-ଚି-ମିନଙ୍କର ଉତ୍ସର୍ଗୀକୃତ ଜୀବନର ସମସ୍ତ ବିଭବ ସେମାନଙ୍କୁ ଉଦ୍‌ବୁଦ୍ଧ କରିବ ।

ଆଜି ବିଦେଶୀ ସାମ୍ରାଜ୍ୟବାଦୀମାନଙ୍କ ସହଯୋଗରେ ସ୍ୱଦେଶୀ ପ୍ରତିକ୍ରିୟାଶୀଳ ଦକ୍ଷିଣପନ୍ଥୀ ଶକ୍ତିମାନେ ଆମ ଦେଶର ଗଣତାନ୍ତ୍ରିକ ବିକାଶର ପଥକୁ ଯେପରି ଅବରୋଧ କରି ପାରୁଛନ୍ତି, ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପ ସଜାରେ ଆମ ସମାଜକୁ ବିପଥଗାମୀ ଓ ବିଭେଦଗ୍ରସ୍ତ କରିବାକୁ ଯେଉଁ ଉଦ୍ୟମ ଅବ୍ୟାହତ ରଖିଛନ୍ତି ତାହାର

ସଫଳ ପ୍ରତିରୋଧ ପାଇଁ ଆଧୁନିକ ଭାରତବର୍ଷର ବାସ୍ତବ ଅବସ୍ଥାକୁ ଆଖି ଆଗରେ ରଖି କି କୌଶଳ ଅବଲମ୍ବନ ଆମ ପକ୍ଷରେ ଆବଶ୍ୟକ ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଭିଏତନାମବାସୀ ଆମ ପାଇଁ ରଖି ଯାଇଛନ୍ତି । ଏସିଆ ମହାଦେଶରେ ଭିଏତନାମ ଆମଭଳି ଏକ କୃଷି-ପ୍ରଧାନ ଦରିଦ୍ର ଦେଶ । ହୋ'-ଚି-ମିନ୍ ତୁମ ଆମ ପରି ମଣିଷ ' ସେ ଦେବତା ନୁହନ୍ତି । ଭାରତବର୍ଷରେ ବର୍ତ୍ତମାନ ଅନୁରୂପ ମାର୍ଗ ଅନୁସରଣ କରି ଦେଶଦ୍ରୋହୀ ଶତ୍ରୁମାନଙ୍କୁ ପ୍ରତିରୋଧ କରଯାଇ ନ ପାରିବ କାହିଁକି ?

ସଶସ୍ତ୍ର ବିପ୍ଳବ ହୋ' ଚି-ମିନଙ୍କ ରଣକୌଶଳର ମୌଳିକ ମର୍ମ ନ ଥିଲା । କିନ୍ତୁ ଅସ୍ତ୍ରକୁ ମଧ୍ୟ ସଂପୂର୍ଣ୍ଣଭାବେ ବାଦ ଦିଆ ଯାଇ ନ ପାରେ । ପ୍ରୟୋଜନ ହେଲେ ବାସ୍ତବତାକୁ ନିକଟତର କରାଇବା ପାଇଁ ସଶସ୍ତ୍ର ବିଦ୍ରୋହ ଅପରିହାର୍ଯ୍ୟ ହୋଇ ପଡ଼େ । ହୋ'-ଚି-ମିନଙ୍କର ସଂଗ୍ରାମ ଯାତ୍ରାର ପ୍ରଧାନ ନୀତି ଥିଲା ପ୍ରତ୍ୟେକ ପର୍ଯ୍ୟାୟରେ ଅସଲ ଶତ୍ରୁ ଚିହ୍ନୋଟ କରିବା; ପ୍ରକୃତ ମିତ୍ରକୁ ମଧ୍ୟ ଜାଣିବା ଏବଂ ଶତ୍ରୁ ବିରୋଧରେ ମିତ୍ରଶକ୍ତିମାନଙ୍କର ଐକ୍ୟକୁ ସୁସଙ୍ଗଠିତ କରି ଏକ ବ୍ୟାପକ ଗଣ ସାମ୍ମୁଖ୍ୟରେ ମିଶାଇଦେବା । ଠିକ୍ ସେହିପରି ଆମ ଦେଶରେ, ଆମ ସମାଜ ବ୍ୟବସ୍ଥାରେ ଏବଂ ଆମ ଅର୍ଥନୀତି ମଧ୍ୟରେ ଥିବା ବିଭିନ୍ନ ଶ୍ରେଣୀର ଅର୍ନ୍ତଦ୍ୱନ୍ଦ୍ୱକୁ ଅତ୍ୟନ୍ତ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କରିବା ଏବଂ ଦଳିତ, ପୀଡ଼ିତ, ଶ୍ରମିକ, କୃଷକ ପରି ସର୍ବହରା ଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ସକଳ ସମାଜ ବ୍ୟବସ୍ଥାକୁ ନିୟନ୍ତ୍ରିତ କରିବା ଦିଗରେ କେଉଁ କେଉଁ ଶ୍ରେଣୀ ସହ-ଯୋଗୀ ହୋଇ ପାରିବେ ସେମାନଙ୍କ ମଧ୍ୟରେ ଏକ ବ୍ୟାପକ ରାଜନୈତିକ ଐକ୍ୟ ପ୍ରତିଷ୍ଠା କରିବାର ଗୁରୁଦାୟିତ୍ୱ ବର୍ତ୍ତମାନ ଆମ ଉପରେ ନ୍ୟସ୍ତ । ଯେଉଁ ଶକ୍ତି ଏପରି ଏକ ବିଶାଳ ଗଣଐକ୍ୟ ପ୍ରତିଷ୍ଠାର ବିରୋଧୀ ସେମାନଙ୍କୁ ଜାତିର, ସର୍ବୋପରି ଏ ଦେଶର କୋଟି କୋଟି ଦଳିତ, ପତିତ ଜନଗଣଙ୍କର ଶ୍ରେଣୀ ଶତ୍ରୁ ବୋଲି ବିଚାର କରିବାକୁ ହେବ । ଏହି ଚୂଡ଼ାନ୍ତ ନିଷ୍ପତ୍ତିକୁ ମୂଳଭିତ୍ତି କରି ସେମାନଙ୍କ ସହିତ ମରଣାବଧି ସଂଗ୍ରାମ ଚାଲୁ ରଖିବାକୁ ପଡ଼ିବ । ଆମ ଦେଶର ଗଣତାନ୍ତ୍ରିକ, ପ୍ରଗତିଶୀଳ ଓ ବାମପନ୍ଥୀ ଶକ୍ତିମାନଙ୍କର ପରିମାଣ ଯେତେ କ୍ଷୀଣ ହେଲେ ମଧ୍ୟ ସେମାନଙ୍କର କ୍ରମାଗତ ସଂଗ୍ରାମ ଏବଂ

ସମାଜବାଦୀ ଶିବିର ସହିତ ବର୍ଦ୍ଧିଷ୍ଣୁ ସଂହତି ଶତ୍ରୁ ପକ୍ଷକୁ ନିଶ୍ଚିତ ମରଣର ସମ୍ମୁଖୀନ କରାଇବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଅଜିର ଭାରତରେ ଶତ୍ରୁମାନେ ପୋକ୍ତ ବାହାରି ଆସିଛନ୍ତି, ହେଲେ ସେମାନଙ୍କୁ ସାମନା କରିବା ପାଇଁ ଆବଶ୍ୟକୀୟ ପ୍ରସ୍ତୁତି ତୁଳନାତ୍ମକ ଭାବେ ସେତେ ବେଶୀ ସନ୍ତୋଷ ହୋଇପାରୁ ନାହିଁ । ଜରୁରୀକାଳୀନ ପରିସ୍ଥିତି ଘୋଷଣା ପରେ ପରେ ସେମାନେ ସାମୟିକ ବିଶ୍ରାମ ନେଇଥିଲେ ସୁଦ୍ଧା ସେମାନଙ୍କର ସଂଗଠିତ ଐକ୍ୟ ଅନ୍ତରାଳରେ ଅପ୍ରତିହତ ରହିଛି । ଅଧିକନ୍ତୁ ସ୍ୱତନ୍ତ୍ର ଏବଂ ନୂତନ ରାଜନୈତିକ ବ୍ୟକ୍ତି ବିଶେଷ ମାଧ୍ୟମରେ ଭାରତୀୟ ଗଣସଂସ୍କୃତି, ରାଜନୈତିକ ଚେତନା, ଓ ସମାଜବାଦୀ ବିକାଶ ଧାରାକୁ ମଞ୍ଜସନ୍ଧା କରିବାକୁ ଚାହାନ୍ତି ଭାରତୀୟ ରାଜନୈତିକ ଆକାଶରେ ସେମାନଙ୍କର ଆବିର୍ଭାବ ନୂତନ ହେଲେ ମଧ୍ୟ ସେମାନଙ୍କର ମୂଳ ଉପାଦାନ ଅତ୍ୟନ୍ତ ପୁରାତନ ଏବଂ ସୁସଂଗଠିତ । ବର୍ତ୍ତମାନର ଯୁବସମାଜ, ବିଶେଷ କରି ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଅଧୀନରେ ଶିକ୍ଷାଲାଭ କରୁଥିବା ଛାତ୍ର ବନ୍ଧୁମାନେ ଏହି ଦେଶୀୟ ପଞ୍ଚମବାହିନୀ ଏବଂ ଶ୍ରେଣୀ ଶତ୍ରୁମାନଙ୍କର ଧ୍ୱଂସ ସାଧନ ପାଇଁ ବ୍ରତୀ ହେବେ ବୋଲି ମୋର ଆଶା ।

ଏ ପୁସ୍ତକ ରଚନା କରିବା ଆରମ୍ଭରୁ ଯେଉଁ ଶୁଭାନୁଧ୍ୟାୟୀ ଗୁରୁଜନମାନେ ମୋତେ ଆନ୍ତରିକ ପ୍ରେରଣା ଓ ଉତ୍ସାହ ପ୍ରଦାନ କରିଛନ୍ତି, ଏ ପୁସ୍ତକର ଅସ୍ତିତ୍ୱ ସହିତ ସେମାନଙ୍କର ନାମ ସବୁଦିନେ ଜଡ଼ିତ ରହିବ । ସେମାନେ ହେଲେ କେନ୍ଦ୍ର ଶ୍ରମମନ୍ତ୍ରୀ ଶ୍ରୀଯୁକ୍ତ କେ. ଭି. ରଘୁନାଥ ରେଡ୍ଡି, ଶ୍ରୀଯୁକ୍ତ ମୋହିତ ସେନ, ଶ୍ରୀଯୁକ୍ତ ଆଶୀଷ ମହାପାତ୍ର, ଶ୍ରୀଯୁକ୍ତ ଗଗନବିହାରୀ ଜେନା, ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ମହାନ୍ତି, ଶ୍ରୀଯୁକ୍ତ ନନ୍ଦକିଶୋର ପଟ୍ଟନାୟକ ଓ ଶ୍ରୀଯୁକ୍ତ ବାସୁଦେବ ସାମଲ ।

ମୋର ସହୃଦୟୀ ସାଥୀ ଓ ସହକର୍ମୀ ଶ୍ରୀମତୀ ବିଜୟଲକ୍ଷ୍ମୀ ସାହୁଙ୍କ କ୍ରମାଗତ ସହଯୋଗ ଓ ନିଷ୍ଠା ଯୋଗୁଁ ମୋର ପ୍ରଥମ ସାହିତ୍ୟ କୃତି "ହୋ' ଚି-ମିନ" ବାସ୍ତବ ଜୀବନ ଧାରଣ କରି ପାରିଛି ।

'ସୁକନ୍ୟା,
କଟକ-୧ } ଶୈଳ ବେହେରା

# ସୂଚୀ

ସଂଶୋଧନ କରନ୍ତୁ :

| ପୃଷ୍ଠା | ପାର | ଲାଇନ | ଭୁଲ | ସଂଶୋଧନ ହେବ |
|---|---|---|---|---|
| ୮୧ | ୨ | ୪ | ମୋଙ୍କ | ମେକଂ |
| ୩୦୨ | ୩ | ୩ | ଯେ କୌଣସି | 'ଯେ କୌଣସି' ଉଚିତ |
| ୩୦୨ | ୩ | ୫ | ଯେଉଁ | ଯେହି |
| ୩୦୨ | ୩ | ୬ | ଶକ୍ତି | ଶକ୍ତି ଯଦି |

୧

# ଭିଏତ୍‌ନାମର ନବଜନ୍ମ

ଖ୍ରୀଷ୍ଟାବ୍ଦ ୮୬୬ । ଲେ ନଦୀର ଉପକଣ୍ଠରେ ବାସନ୍ତୀ ସଞ୍ଜର ଆସର । ଚୀନା ଟାଙ୍ଗ ସାମ୍ରାଜ୍ୟର ଦୁର୍ଦ୍ଧର୍ଷ ସେନାପତି କାଓ ପିଏନ ଆସନ୍ନ ବିଜୟସ୍ୱପ୍ନରେ ମଗ୍ନ । ଆର ପଟରେ ନୈସର୍ଗ ସୁନ୍ଦରୀ ଭିଏତନାମ୍ । ଦୁଇଏକ ଘଣ୍ଟା ପରେ ଚୀନର ପଦତଳେ ସହିତ ମିଶିଯିବ । ରତ୍ନଗର୍ଭା ଲେ ଚୀନର ବିଶାଳ ମାନଚିତ୍ରରେ ଶୋଭା ପାଇବ । ସମ୍ରାଟ ବର୍ଷର ସ୍ୱପ୍ନବିଳାସ ସାର୍ଥକତାରେ ପରିଣତ ହେବ । ଭିଏତନାମର ବସୁଧାରେ "ଚୀନର ସ୍ୱର୍ଗରାଜ୍ୟ" ପ୍ରତିଷ୍ଠା ହେବ । କାଓ ପିଏନ ହଠାତ୍ ଅଟକି ଗଲେ । ଲେ'ର ବକ୍ଷରେ ଅଦ୍ଭୁତ ଝଡ଼ର ଉତ୍ତାଳ ଲହରୀ । କୂଳଲଂଘି ଲେ' ବିଶାଳ କାୟା ମେଲି ପ୍ରଖର ବେଗରେ ଆଗକୁ ମାଡ଼ି ଆସୁଛି । କାଓ ପିଏନ ଝଡ଼ର ଗମ୍ଭୀର ଗର୍ଜନରୁ ଶୁଣିଲେ, "ମୁଁ ଏ ମାଟିର ଆତ୍ମା । ମୋତେ ହଟାଇବା ପାଇଁ ତୁମର ସକଳ ଉଦ୍ୟମ ବିଫଳ ହେବ" । ଆତ୍ମ-ଲଜ୍ଜାରେ ଚୀନ ସାମ୍ରାଜ୍ୟର ସେନାପତି ଲେ ତଟରେ ଧକ୍‌କା ଖାଇ ଅନେକବାର କହିଥିବେ, "ଏ ମାଟିର ଆତ୍ମା ଅତ୍ୟନ୍ତ ବଳଶାଳୀ । ଏହାକୁ କରଗତ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।" ହଜାର ବର୍ଷର ସାମ୍ରାଜ୍ୟ ପରେ କାଓ ପିଏନ ଇତିହାସର ପୃଷ୍ଠାରେ ଲେଖିଗଲେ, "ଚୀନର ସାମ୍ରାଜ୍ୟ ଅତୀବ ବିଭବଶାଳୀ ହେଲେ ମଧ୍ୟ, ତାର ସଂସ୍କୃତି ବହୁ ପୁରାତନ ହୋଇଥିଲେ ମଧ୍ୟ, ଭିଏତନାମ ପରି କ୍ଷୁଦ୍ରାତିକ୍ଷୁଦ୍ର ମାଟିର ଆତ୍ମାକୁ ଜୟ କରିବା ପାଇଁ ସମର୍ଥ ହୋଇ ପାରିଲା ନାହିଁ ।"

ଅଜେୟ ରକ୍ତତୀର୍ଥ ସେହି ଭିଏତନାମ । ସ୍ୱାଧୀନତା, ମୁକ୍ତି ଏବଂ ଶାନ୍ତି ପାଇଁ ଅପ୍ରତିହତ ସଂଗ୍ରାମର ଯୋଦ୍ଧା । ହଜାର ହଜାର ବର୍ଷ ତଳର ଇତିହାସରେ ସାମନ୍ତବାଦୀ ଓ ପୁଂଜିବାଦୀ ସାମ୍ରାଜ୍ୟବାଦର କଳଙ୍କି ଲଗା ଦାଗ । ଊନବିଂଶ ଶତାବ୍ଦୀର ପରାର୍ଦ୍ଧରେ ଫ୍ରାନ୍‌ସର ବଣିକ ଉପନିବେଶୀମାନଙ୍କ ହାତରେ ମର୍ତ୍ତ୍ୟର ସୁନ୍ଦରୀ ଭିଏତନାମ ସମର୍ପିତା । ତାର କୁମାରୀ ବନଭୂମିରେ ବ୍ୟଭିଚାରର ତାଣ୍ଡବଲୀଳା । ଦେଶୀୟ ସାମନ୍ତବାଦୀ କୁଳକମାନଙ୍କ ସହାୟତାରେ ଭିଏତନାମର ଭିଟାମାଟିରେ ବିଦେଶୀ ଦସ୍ୟୁର ଅଚହ୍ନା ପଦଧ୍ୱନି । ସ୍ୱାଧୀନତାର ସବୁଜ ବନାନୀରେ ପରାଧୀନତାର ସାକୁତ । ବର୍ଷ ପରେ ବର୍ଷ, ଯୁଗ ପରେ ଯୁଗ, ଶତାବ୍ଦୀ ପରେ ଶତାବ୍ଦୀ ବିତିଯାଇଛି । ବୀରଭୋଗ୍ୟା ଭିଏତନାମର ଗଗନ ପବନ ବିଦେଶୀ ଶତ୍ରୁର ଖରନିଃଶ୍ୱାସରେ ଝାଂଜି

ପାଲଟିଯାଉଛି । ଜନପଥ, ରାଜପଥ, ସହର, ମଫସଲ, ଗଳି, କନ୍ଦି ସବୁଠି ବନ୍ଦୀ ଜୀବନର ଆର୍ତ୍ତ ଚିତ୍କାର । କିନ୍ତୁ ଭିଏତନାମର ପରାଧୀନ ଶିଶୁ, ନରନାରୀ, ତରୁଣ ତରୁଣୀ, ଯୁବକ ଯୁବତୀ ଏହି ବିଦେଶୀ ବେପାରୀମାନଙ୍କର ବର୍ବର ଆକ୍ରମଣକୁ ସାମନା କରିବା ପାଇଁ ସର୍ବଦା ପ୍ରସ୍ତୁତ । ଭିଏତନାମର ସୀମାନ୍ତରେ ଅହରହ ମୁକ୍ତିର ଆଶଂକିତ ଆହ୍ୱାନ । ସ୍ୱାଧୀନତାର ଚରମ ସଙ୍କଟରେ, ମୁକ୍ତିର ଦାରୁଣ ମୃତ୍ୟୁରେ, ଶାନ୍ତିର ନିର୍ମମ ହତ୍ୟାରେ ଭିଏଟନାମ ବିପର୍ଯ୍ୟସ୍ତ, ଭୀତତ୍ରସ୍ତ ଏବଂ ଖେଦଜର୍ଜରିତ ।

ଭିଏତନାମର ଜନ୍ମ ଇତିହାସରୁ ନୁହେଁ । ଇତିହାସର ବହୁତ ପୂର୍ବରୁ ତାର ସୃଷ୍ଟି । ତା'ର କାହାଣୀ କିମ୍ବଦନ୍ତୀରେ ..କାଗଜର ପୃଷ୍ଠାରେ ନାହିଁ । କେଉଁ ଅଜଣା ଅତୀତରେ ଭିଏତନାମ ଚୀନ ସାମନ୍ତବାଦୀ ଜମିଦାରଙ୍କର ଦରବାର ଥିଲା । ତାର ପାଣି ପବନ, ଗୋଡ଼ି ମାଟି, ବଣ ପର୍ବତ ଚୀନ ସାମ୍ରାଜ୍ୟର ରାଜକୋଷକୁ ସମୃଦ୍ଧ କରି ରଖିଥିଲା ।

ବ୍ରୋଂଜ ଯୁଗର ଅନ୍ତଭାଗ । ଖ୍ରୀଷ୍ଟପୂର୍ବ ଦିନରେ ଚୀନ୍ ସିନା ରାଜବଂଶ ଭିଏତନାମକୁ ସମ୍ପୂର୍ଣ୍ଣ ଦଖଲ କରିନେଲେ, ଭିଏତନାମୀ ଇତିହାସର କୌଣସି ଗ୍ରନ୍ଥ ଚୀନର ଏହି କଳଙ୍କମୟ କୀର୍ତ୍ତିକୁ ଭୁଲି ପାରିବ ନାହିଁ । ଅପର ପକ୍ଷରେ ସେମାନେ କୁହନ୍ତି, "ଚୀନାମାନେ ସବୁଦିନେ, ସବୁକାଳେ ନିଜ ସ୍ୱାର୍ଥ ପାଇଁ ଆମ ଜୀବନକୁ ବଳିଦେଇ ଆସିଛନ୍ତି । ଇତିହାସ ସେମାନଙ୍କର ସମସ୍ତ ଅନ୍ୟାୟ, ଅପକର୍ମ, ଶୋଷଣ ଓ ନିର୍ମମତାକୁ ଲିପିବଦ୍ଧ କରି ରଖିଛି" ।

ଯେଉଁ ଦେଶର ଐତିହ୍ୟ, କାହାଣୀ ଏତେ ପ୍ରାଚୀନ ତାକୁ ସାମ୍ରାଜ୍ୟବାଦୀମାନେ ବଳପ୍ରୟୋଗ କରି ହତ୍ୟାକରିପାରନ୍ତେ କିପରି ? ସହସ୍ରାଧିକ ବର୍ଷର ଅବରୁଦ୍ଧ କାରାଗାର ମଧ୍ୟରେ ରହିବା ପରେ ସେମାନେ ସ୍ୱତଃ ବିଦ୍ରୋହର ଦ୍ୱାରଦେଶରେ ଉଭା ହୋଇଛନ୍ତି ।

୪୦ ଖ୍ରୀଷ୍ଟାବ୍ଦ । ନିଜ ଗୃହରେ ବିଦେଶୀ ମାଲିକାନାକୁ ଆଉ ବରଦାସ୍ତ କରିହେଲା ନାହିଁ । ମୁକ୍ତି କାଙ୍ଗାଳ ଭିଏତନାମୀ ବେଶୀଦିନ ସାମ୍ରାଜ୍ୟର ଘେର ମଧ୍ୟରେ ରହିପାରିଲେ ନାହିଁ । ଶୃଙ୍ଖଳର ଅବରୁଦ୍ଧ ପ୍ରାଚୀରକୁ ଭାଙ୍ଗିବା ପାଇଁ ସହସ୍ର ବର୍ଷୀୟ ଯୁଦ୍ଧର ଆହ୍ୱାନ ଦେଲେ ସେମାନେ । ବିଦେଶୀମାନଙ୍କ ବିରୁଦ୍ଧରେ ଏହି ପ୍ରଥମ ବିଦ୍ରୋହ ଘୋଷଣା କଲେ ଟ୍ରୁଙ୍ଗ ଭଗ୍ନୀଦ୍ୱୟ । କିନ୍ତୁ ପରାକ୍ରମଶାଳୀ ଚୀନା ସେନାବାହିନୀ ପ୍ରତିରୋଧର ଅନ୍ତିମ ପୁରସ୍କାର ସ୍ୱରୂପ ମୃତ୍ୟୁର ଅତଳ ଗର୍ଭକୁ ଠେଲି ଦେଲେ ସେମାନଙ୍କୁ । ଟ୍ରୁଙ୍ଗଙ୍କର ମୃତ୍ୟୁ ପରେ ବିଦ୍ରୋହର ବହ୍ନିଶିଖା ନିର୍ବାପିତ ହୋଇଗଲା ସତ, କିନ୍ତୁ ନବୀନ ତେଜ ନେଇ ପୁନର୍ବାର ସେ ଜଳିଉଠିଲା ଆଉ ଜଣେ ବୀର ରମଣୀ ଟ୍ରିଉଙ୍କ ଦ୍ୱାରା । ସେତେବେଳେ ଟ୍ରିଉ ଅସାମାନ୍ୟ ବୀରତ୍ୱ ଓ ସାହସର

ପରିଚୟ ଦେଇଥିଲେ । ଜଣେ ନାରୀ ହୋଇ ମଧ୍ୟ ହାତୀ ପିଠିରେ ବସି ସେ ସେନାବାହିନୀକୁ ଯେପରି ପରିଚାଳିତ କରୁଥିଲେ ତାହା ଉଲ୍ଲେଖଯୋଗ୍ୟ ।

ଏହି ବିଦ୍ରୋହ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଏବଂ ସ୍ୱାଭାବିକ ଥିଲା । କାରଣ ରକ୍ତ ମାଂସର ଶରୀରକୁ ବଞ୍ଚି ରହିବାର ଅଧିକାରରୁ ଯଦି କେହି କେବେ ବଳପ୍ରୟୋଗ କରି ଛଡ଼ାଇନିଏ, ସେଠାରେ ନିଶ୍ଚିତ ଯେତେ ଶାନ୍ତ, କାନ୍ତ, କମନୀୟ ହେବାକୁ ଚେଷ୍ଟା କଲେ ମଧ୍ୟ ପାରେନାହିଁ । ଜୀବନର ଅତୁଟ ମୋହ ତାକୁ ବାନ୍ଧି ରଖେ । ଭୟଙ୍କର ଧ୍ୱଂସ ହେବାପାଇଁ ବାଧ୍ୟ କରାଏ । ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଚୀନର ଜମିଦାରୀ ବଂଶ ଭିଏତନାମର ଅଙ୍ଗପ୍ରତ୍ୟଙ୍ଗରୁ ରକ୍ତ ହିଁ ଶୋଷି ନେଇଛନ୍ତି । ବେପାର, ବଣିଜ, ଘୁଷ ମାଧ୍ୟମରେ ଦେଶୀୟ ଉତ୍ପାଦନମାନ ବିଦେଶକୁ ଘୁଞ୍ଚି ନେଇଛନ୍ତି । ଭିଏତନାମର ଶାସନ ପଦ୍ଧତିରେ ଚୀନା ନୀତି ପ୍ରୟୋଗ କରିଛନ୍ତି । ସ୍ଥାନୀୟ ଜନତାଙ୍କୁ ଶାସନ କରିବା ନିମନ୍ତେ ନିମ୍ନସ୍ଥ କର୍ମଚାରୀ ଠାରୁ ଆରମ୍ଭ କରି ପଦସ୍ଥ ସେନାଧ୍ୟକ୍ଷ ଯାଏ ଆମଦାନୀ କରି ନେଇଛନ୍ତି । ତଦୋପରି କହିବାକୁ ଗଲେ ଶିକ୍ଷା, ସଂସ୍କୃତି, ଅର୍ଥନୀତି ଏବଂ ସାମାଜିକ ଜୀବନରେ ଚୀନର ଆଧିପତ୍ୟ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଛି । ଯେଉଁ ଭିଏତନାମୀମାନେ ଚୀନ ସାମନ୍ତବାଦୀମାନଙ୍କର ଗୋଲାମ ହୋଇ ରହିବାର ପକ୍ଷପାତୀ ଥିଲେ, ସେମାନଙ୍କୁ ସାଧାରଣ ବେତନଭୋଗୀ କର୍ମଚାରୀଙ୍କ ଠାରୁ ଅଧିକ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରଦାନ କରାଯାଉଥିଲା । ସେମାନଙ୍କୁ ହାତବାରିସି କରି ଭିଏତନାମ ସଂସ୍କୃତି ମଧ୍ୟରେ ପ୍ରବେଶ କରିବା ଆହୁରି ସୁବିଧାଜନକ ହୋଇପଡ଼ିଲା । ଭିଏତନାମ ବିଦ୍ୟାଳୟ ଶିକ୍ଷାନୁଷ୍ଠାନ, ପାଠ୍ୟପୁସ୍ତକରେ ଚୀନାଲିପି ପ୍ରଚଳନ ହେଲା । ଭିଏତନାମର ଜନଜୀବନକୁ ବିକଳାଙ୍ଗ, ବିରୂପ ଓ କ୍ରୀତଦାସ କରାଇବା ଉଦ୍ଦେଶ୍ୟ ରଖି ବୌଦ୍ଧ, ଟାଓ ଏବଂ କନ୍‌ଫୁସିଅସ୍ ଧର୍ମକୁ ସରକାରୀ ଧର୍ମଭାବେ ଘୋଷଣା କରାଗଲା । ଚୀନା ପାରମ୍ପରିକ ବ୍ୟବହାର ଆଦି ପ୍ରଚଳନ ପାଇଁ ସହସା ଚୀନରୁ ଶିକ୍ଷାବିତ୍, ବୁଦ୍ଧିଜୀବୀମାନଙ୍କୁ ଡକାଇ ଭିନ୍ନଭିନ୍ନ ସ୍ଥାନରେ ନିଯୁକ୍ତ କରାଗଲେ । ସାମନ୍ତବାଦୀ ଶିକ୍ଷାର ପରିପ୍ରସାର ନିମନ୍ତେ ଆବଶ୍ୟକୀୟ ଧର୍ମ, ଶିକ୍ଷାବ୍ୟବସ୍ଥା, ସଂସ୍କୃତି ଓ ନୀତିଗତ ପନ୍ଥାର ଅନୁସରଣ ଫଳରେ ଦେଶୀୟ ବୁଦ୍ଧିଜୀବୀ ତଥା ଜାତୀୟତାବାଦୀ ଏବଂ ବିଦେଶରୁ ଆମଦାନୀ ହୋଇଥିବା ମୁନିବମାନଙ୍କ ମଧ୍ୟରେ ବିରାଟ ଦ୍ୱନ୍ଦ୍ୱ ଉପୁଜିଲା । ସମୁଦାୟ ଭିଏତନାମୀ ସମାଜ ସେତେବେଳେ ବିଦେଶୀ ଏବଂ ଦେଶୀୟ ବୃଟ୍‌କାରମାନଙ୍କ ଦ୍ୱାରା ଜର୍ଜରିତ । ଆର୍ଥିକ ଦୁର୍ଦ୍ଦଶା ଦିନକୁ ଦିନ ବଢ଼ି ଚାଲିଛି । ପ୍ରଶାସନିକ ସ୍ୱୈରାଚାରରେ ଦୁଃସ୍ଥ ଜନତାର ମନବଳ ଭାଙ୍ଗି ପଡ଼ୁଛି । ନୈତିକ ଅଧୋଗତି ଜାତୀୟତାବାଦୀ ଚେତନାର ତଣ୍ଟି ଚିପି ଦେବାକୁ ବସିଛି । ସାମାଜିକ ବ୍ୟବସ୍ଥାର ବେଗବତୀ ସ୍ରୋତ ପଶ୍ଚିମ ଆଡ଼େ ମାଡ଼ି ଚାଲିଛି ।

ଜମିଦାରୀ ଶାସକ ଏବଂ ଶୋଷିତ ପ୍ରଜା ମଧ୍ୟରେ ଅର୍ଥନୈତିକ ବୈଷମ୍ୟ ବିକଟ ରୂପ ଧାରଣ କରିଛି । ଈର୍ଷା, ଦ୍ୱେଷ, ଅହଂକାର, ବିଦ୍ରୋହର କରାଳ ଛାୟା ସମଗ୍ର ଭିଏତନାମକୁ ଘୋଡ଼ାଇ ପକାଇଛି ।

ଠିକ୍ ଏତିକି ବେଳେ ଐତିହାସିକ ଚୀନା କୃଷି ବିଦ୍ରୋହର ଜନ୍ମ । ବିପ୍ଳବର ଏନ୍ଦୁଡ଼ିଶାଳରୁ ଅର୍ବାଚୀନ ଭିଏତନାମ କୁଆଁ କୁଆଁ ରାବ ଦେଉଛି । ଆତ୍ମ-ମୁକ୍ତିର କରୁଣ କ୍ରନ୍ଦନ । ଅବରୁଦ୍ଧ କାରାକକ୍ଷରୁ ଗବାକ୍ଷ ଦେଇ ପ୍ରଭାତ ସୂର୍ଯ୍ୟୋଦୟ ଦେଖିବାର ବଳବତୀ କ୍ଷୁଧା । ଶୁକ୍ଳ ଦ୍ୱିତୀୟାର ଫୁଟନ୍ତ ଚନ୍ଦ୍ରମା ପରି । ବିଦେଶୀ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢିବା ପାଇଁ ସୁପ୍ତ ଭିଏତନାମୀ ପ୍ରାଣରେ ଜୀବନର ନୂତନ ଜାଗୃତି । ମୃତାହତ ହୃଦୟତନ୍ତ୍ରରେ ବଞ୍ଚିବାର ଅନବଚ୍ଛିନ୍ନ ଝଙ୍କାର । କ୍ଷତବିକ୍ଷତ ଇତିହାସକୁ ସଜାଡ଼ିବା ପାଇଁ ଦୃଢ଼ ସ୍ପନ୍ଦନର ଆହ୍ୱାନ । ଜାଣତରେ ହେଉ ବା ଅଜାଣତରେ ହେଉ ବା ଇତିହାସର ବୈଜ୍ଞାନିକ କର୍ମପ୍ରକ୍ରିୟା ଫଳରେ ହେଉ ଭିଏତନାମର ସ୍ୱାଧୀନତାକାମୀ ବିଦ୍ରୋହୀ ଜନସାଧାରଣଙ୍କ ସହିତ ଚୀନା କୃଷି-ବିପ୍ଳବର ଯୋଦ୍ଧାମାନଙ୍କର ନୀତିଗତ ଐକ୍ୟ ପ୍ରତିଷ୍ଠିତ ହୋଇପାରିଛି । ଉଭୟ ଦେଶର ଜାତୀୟ ସ୍ୱାର୍ଥ, ସ୍ୱାଧୀନ ଅର୍ଥନୀତି, ସମାଜବ୍ୟବସ୍ଥାକୁ ବଞ୍ଚାଇ ରଖିବା ପାଇଁ ଉଭୟ ପକ୍ଷ କୃଷକମାନେ ଆଗେଇ ଆସିଲେ । ଉଦ୍ଦେଶ୍ୟ ଥିଲା ଏକ—"ନିଜ ନିଜ ଦେଶରେ ଥାଇ ବିଦେଶୀ ଦଲାଲ ଏବଂ ଦେଶୀୟ ଜମିଦାର ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରଖିବା ଏବଂ ଆବଶ୍ୟକ ସ୍ଥଳେ ଉଭୟ ଦେଶର ଜନତାର ସାଧାରଣ ସ୍ୱାର୍ଥ ପାଇଁ ମିଳିତ ବିଦ୍ରୋହ ଘୋଷଣା କରିବା ।"

୫୪୪ ଖ୍ରୀଷ୍ଟାବ୍ଦ । ଚୀନ ଅଧିକୃତ ସାମନ୍ତବାଦୀ ଭିଏତନାମର ଇତିହାସ ନୂତନ ରୂପ ନେବାକୁ ଯାଉଛି । ଲି'ବନ୍ ନାମକ ଜଣେ ବିଦ୍ରୋହୀ 'ଭନ୍‌ସୁଆନ' ସ୍ୱାଧୀନ ରାଷ୍ଟ୍ର ପ୍ରତିଷ୍ଠା କଲେ । ଏହାର ରାଜଧାନୀ ଥିଲା ଲଙ୍ଗ ବିଏନ୍ । କିନ୍ତୁ ଏହି ସ୍ୱାଧୀନ ରାଷ୍ଟ୍ର ମାତ୍ର ୫୮ ବର୍ଷ ବୟସରେ ଅକାଳ ମୃତ୍ୟୁ ବରଣ କଲା । ୬୦୩ ଖ୍ରୀଷ୍ଟାବ୍ଦରେ ଚୀନ ସାମନ୍ତବାଦୀ ସାମ୍ରାଜ୍ୟର ଫାଶୀ ମଞ୍ଚ ଉପରୁ ଏହି ଉନ୍ମେଷ-ମୁଖୀ ସ୍ୱାଧୀନ ପ୍ରାଣଟିର ମୃତ୍ୟୁ ଘୋଷଣା କରାଗଲା । ପୁନର୍ବାର ଭିଏତନାମ ବହୁ ଅନିଚ୍ଛାସତ୍ତ୍ୱେ ପରାଧୀନତାର ଅତଳଗର୍ଭକୁ ଠେଲିହୋଇ ଆସିଲା । ବର୍ଷେ ଦୁଇବର୍ଷ ପାଇଁ ନୁହେଁ ଦୀର୍ଘ ୩୦୦ ବର୍ଷ ପର୍ଯ୍ୟନ୍ତ । ଐତିହାସିକ କାଏ ବିଏନଙ୍କ ଶାସନ-କାଳ ଯାଏ ।

ଏହି ୩୦୦ ବର୍ଷ ଭିଏତନାମ ଜନତା ଅକଥନୀୟ ଅତ୍ୟାଚାର, ଶୋଷଣ, ନିର୍ଯାତନାର ସମ୍ମୁଖୀନ ହୋଇଛନ୍ତି । ନ୍ୟାଯ୍ୟ ପ୍ରାପ୍ୟ ସେମାନଙ୍କ ହାତରୁ ଛଡ଼ାଇ ନିଆଯାଇଛି । ଶ୍ରମଲବ୍ଧ ସକଳ ସମ୍ପତ୍ତି ଲୁଟି ନିଆ ହୋଇଛି । ବ୍ୟକ୍ତିଗତ ମାଲିକାନା ବୋଲି ଯାହା ଥିଲା ସେ ସବୁ ଚୀନା ରାଜଦରବାରରେ ଠୁଳ । ଜୀତଦାସର

ନିଃସହାୟ ନିଃଶ୍ୱାସ ବ୍ୟତିରେକେ ଅନ୍ୟ କିଛି ସମ୍ବଳ ନାହିଁ ତାଙ୍କର । କେତେଦିନ, କେତେ ଯୁଗ, କେତେ ଶତାବ୍ଦୀ ଏହିପରି ଭାବେ କଟିଆସିଲା ! ଅନ୍ତର୍ଦ୍ୱନ୍ଦ୍ୱ ଚାଲିଲା ସତ, କିନ୍ତୁ ଆତ୍ମପ୍ରକାଶ ପାଇଁ ସେ ସବୁବେଳେ ସୁଯୋଗ ଖୋଜୁଥିଲା । ଦଶମ ଶତାବ୍ଦୀର ପ୍ରଥମାର୍ଦ୍ଧ । ଚୀନ ଟାଙ୍ଗ ସାମ୍ରାଜ୍ୟର ସୌଧ ପୁଣି ଆଉ ଏକ କୃଷକ ବିଦ୍ରୋହରେ ଟଳି ପଡ଼ିଲା । ସାମନ୍ତବାଦୀ ରାଜବଂଶ ଗାଦିଚ୍ୟୁତ ହେଲା । ଏହି ପ୍ରେରଣା, ଉତ୍ସାହ, ଉଦ୍ଦୀପନା କେବଳ ଚୀନ ମଧ୍ୟରେ ଆବଦ୍ଧ ରହିଲା ନାହିଁ । ପଡ଼ୋଶୀ ଭିଏତନାମର ଅଣୁ ପରମାଣୁରେ ତାହାର ସ୍ୱର ପ୍ରତିଧ୍ୱନିତ ହେବାକୁ ଲାଗିଲା । ୯୩୮ ଖ୍ରୀ: ରେ ଭିଏତନାମର ନୌସେନା ମୁଖ୍ୟ ନୌ କୁଏନ୍ ବାଚଡ଼ାଙ୍ଗ ଠାରେ ଚୀନା ସୈନ୍ୟଙ୍କୁ ପରାସ୍ତ କଲେ । ଭିଏତନାମ ସ୍ୱାଧୀନତାର ପ୍ରଥମ ପାହାଚରେ ପାଦ ଦେଲା ।

ପରାଜୟ ପରେ ଚୀନର ଜମିଦାରୀ ଶାସକମାନେ ଯେ ଭିଏତନାମକୁ କବଳିତ କରିବାକୁ ଚେଷ୍ଟା ନ କରିଛନ୍ତି, ତା ନୁହେଁ । କିନ୍ତୁ ସେମାନଙ୍କର ଶାସନ-କାଳ ପୂର୍ବବତ୍ ଦୀର୍ଘସ୍ଥାୟୀ ହୋଇ ପାରି ନାହିଁ । ୯୩୮ ଖ୍ରୀଷ୍ଟାବ୍ଦରୁ ୧୦୧୦ ଖ୍ରୀ. ଯାଏ ଲି. ରୟାଲ ସାମ୍ରାଜ୍ୟ, ତ୍ରାନ ବଂଶ ପରେ ବଂଶ ଭିଏତନାମରେ ଶାସନ ପ୍ରତିଷ୍ଠା କରି ଆସିଛନ୍ତି । କିନ୍ତୁ ଭିଏତନାମୀ ଜନତାର କ୍ରମାଗତ ଅସନ୍ତୋଷ ବିଦ୍ରୋହ ଫଳରେ ସେମାନଙ୍କର ସାମ୍ରାଜ୍ୟଲିପ୍ସୁ ସ୍ୱପ୍ନ ସାର୍ଥକ ହୋଇ ପାରିନାହିଁ । ୧୦୧୦ ଖ୍ରୀଷ୍ଟାବ୍ଦରେ ଭିଏତନାମ ନିଜ ଶାସନାଧୀନକୁ ଆସିଲା । ଶାସନର କେନ୍ଦ୍ରୀ-କରଣ, ଜାତୀୟ ସଂସ୍କୃତିର ଉତ୍‌ଥାନ ଫଳରେ ଜନଚେତନା ମଧ୍ୟ କ୍ରମଶଃ ବିଦ୍ରୋହମୁଖୀ ହୋଇପଡ଼ିଲା ।

ଭିଏତନାମର ଅର୍ଥନୀତି କହିଲେ କୃଷିକୁ ହିଁ ବୁଝାଏ । ରାଜା ରାଜୁଡ଼ାଙ୍କ ରାଜୁତି କାଳରେ ସମସ୍ତ ଚାଷଯୋଗ୍ୟ ଜମି ସେମାନଙ୍କର ବ୍ୟକ୍ତିଗତ ମାଲିକାନା ମଧ୍ୟକୁ ଚାଲିଯାଇଥିଲା । ସେଥିରୁ ଉତ୍ପନ୍ନ ରାଜସ୍ୱରୁ ଅର୍ଦ୍ଧାଧିକ ଭାଗ ରାଜବଂଶର ସଂଭୋଗ ସୁଖ ସ୍ୱାଚ୍ଛନ୍ଦ୍ୟ, ରାଜଭୋଗ, ରାଜକୀୟ ବିଳାସ ବ୍ୟସନରେ ବ୍ୟୟିତ ହେଉଥିଲା । ସବୁ ବ୍ୟୟ ବହନ କରି ଯାହା କିଛି ସ୍ୱଳ୍ପ ବଳୁଥିଲା ତାହା ରାଜାଙ୍କ କୃପାରୁ ରାଜକର୍ମଚାରୀ, ରାଜରକ୍ଷୀ, ରାଜପୁରୋହିତ, ବୌଦ୍ଧଭିକ୍ଷୁମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ବିଶାଳ ପ୍ରଜାକୁଳ ଦୀନହୀନ ବେଶରେ ଭିକ୍ଷୁକର ଜୀବନ ହିଁ କଟାଉଥିଲେ । କାରଣ ସେମାନେ ବାସ୍ତବରେ କିଛି ପାଉ ନ ଥିଲେ । ଜୀବନସାରା ରାଜଦ୍ୱାରରେ ସେମାନଙ୍କୁ ବେଠି ଖଟିବାକୁ ପଡୁଥିଲା । ପାରିଶ୍ରମିକ ବଦଳରେ ମିଳୁଥିଲା କେବେ କପରି ମୁଠାଏ ଖାଦ୍ୟ, ଆଉ କିଛି ନାହିଁ । ସମ୍ବଳହୀନ ଭାବେ ଖଟିବା ଛଡ଼ା ସେମାନଙ୍କର ଅନ୍ୟ ଉପାୟ ନ ଥିଲା । ଯେଉଁ ମଧ୍ୟବିତ୍ତ ଶ୍ରେଣୀର କୃଷକମାନଙ୍କ ହାତରେ ଚାଷଜମି ରହିଥିଲା, ବଳପ୍ରୟୋଗ କରି ସେମାନଙ୍କଠାରୁ ତାହା ଛଡ଼ାଇ

ନେଇ ବୌଦ୍ଧଯାଜକମାନଙ୍କ ମଧ୍ୟରେ ବାଣ୍ଟି ଦିଆଗଲା । କୁଳୀନ ଶ୍ରେଣୀମାନଙ୍କୁ ସବୁ କ୍ଷେତ୍ରରେ ଅଗ୍ରାଧିକାର ମିଳିଲା । ସରଳ ଭାଷାରେ କହିବାକୁ ଗଲେ କୃଷକ ଓ ଶ୍ରମିକମାନଙ୍କୁ ସାମାଜିକ ସୁଖ ସ୍ୱାଚ୍ଛନ୍ଦ୍ୟରୁ ବାସନ୍ଦ କରିଦିଆଗଲା । ଫଳରେ ସେମାନେ ଏହି ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ କମରକସି ବାହାରି ପଡ଼ିଲେ । କୃଷକ, ଶ୍ରମିକ, ଦୀନ ଦୁଃଖୀ, ଭିକ୍ଷୁକଙ୍କର ସମାବେଶରେ ଗଣବିଦ୍ରୋହର ଯାତ୍ରାପଥ ଥରହଟିଲା । ବୌଦ୍ଧ ଯାଜକ, ସରକାରୀ ଅମଲା, ସାଂପ୍ରଦାୟିକ ଶ୍ରେଣୀ, ରାଜକର୍ମଚାରୀ, ବିଦେଶୀ ସାମନ୍ତବାଦୀ ଦେଶୀୟ ଜମିଦାର, ଆକ୍ରମଣକାରୀ ସେନା-ବାହିନୀର ସୁଚକ୍ରାନ୍ତ ଯୋଜନା ଶତାବ୍ଦୀ ସିଦ୍ଧ ଶୋଷଣରେ ରାଜୁତିକୁ ବଞ୍ଚାଇବା ପାଇଁ ସେମାନଙ୍କର ବଳ କାହିଁ ? ପାଥେୟ କାହିଁ ? ଶାସନକଳର ରଥଚକ୍ର ତଳେ ବିଦ୍ରୋହର ପ୍ରଥମ କଳିଟି ପେଷି ହୋଇଗଲା ସତ; ତାର ଅଗଣନ ବୀଜ ସେହି ମାଟିରେ ଚେର ବାନ୍ଧିଦେଇଗଲା । ଅସନ୍ତୋଷର ଧୂଆଁ କୁହୁଳିବାକୁ ଲାଗିଲା ।

ସେହି ସମୟବେଳକୁ ୧୪୦୦ ଖ୍ରୀଷ୍ଟାବ୍ଦ ପରେ ମିଙ୍ଗ ବଂଶ ମଙ୍ଗୋଲୀୟମାନଙ୍କୁ ବିତାଡ଼ିତ କରି ଚୀନରେ ନିଜ ରାଜତ୍ୱ ପ୍ରତିଷ୍ଠା କରି ସାରିଥିଲେ । ସେମାନେ ମଧ୍ୟ ଚୀନର ଆକ୍ରମଣବାଦୀ ପରମ୍ପରା ଅନୁସରଣ କରିବାକୁ ଚାହିଁଲେ । ସାମ୍ରାଜ୍ୟର ଲୋଭ, ଦେଶ ଜୟ କରିବାର ପିପାସା ଦୁର୍ବାର ଗିରିପଥକୁ ମଧ୍ୟ ଲଙ୍ଘନ କରି ମାଡ଼ିଚାଲେ । ଭିଏତନାମର ତତ୍କାଳୀନ ଅବସ୍ଥା ବଡ଼ କରୁଣ । ପ୍ରଶାସନିକ ବ୍ୟଭିଚାରର ହେତୁ ଦେଶୀୟ ଦୁର୍ବଳତାର ମିଳନ । ୧୪୦୬ ଖ୍ରୀଷ୍ଟାବ୍ଦରେ ମିଙ୍ଗ ରାଜବଂଶକୁ ସାଦରେ ଅଭ୍ୟର୍ଥନା ଜଣାଇଲା ଭିଏତନାମ । ୧୪୦୭ରୁ ୧୪୧୩ ମିଙ୍ଗମାନଙ୍କର ସୁବର୍ଣ୍ଣ ଅଧ୍ୟାୟ ।

ମିଙ୍ଗ ଏକ ଦୁର୍ଦ୍ଧର୍ଷ ଜାତି । ଇତିହାସର ପୃଷ୍ଠାରୁ ଭିଏତନାମକୁ ସମୂଳନ ପାଇଁ ଉଠାଇଦେବା ପାଇଁ ପ୍ରବଳ ପ୍ରୟାସ ସେମାନଙ୍କର । ଭିଏତନାମରେ ପ୍ରବେଶ କଲାମାତ୍ରେ ଶାସନ ଓ ସାମାଜିକ ବ୍ୟବସ୍ଥା କ୍ଷେତ୍ରରେ ଅତି ଭୟଙ୍କର ଓ ଦୃଢ଼ ପଦକ୍ଷେପମାନ ଗ୍ରହଣ କଲେ । ଆଗରୁ ରହିଥିବା ମୁକ୍ତିକାମୀ, ବିଦ୍ରୋହୀ ଭିତ୍ତିଭୂମିକୁ ଭାଙ୍ଗିରୁଜି ମାଟିପିଣ୍ଡରେ ପରିଣତ କରିଦେବାପାଇଁ ଚାହିଁଲେ । ତେଣୁ ଜାତୀୟ ଚେତନା, ସଂସ୍କୃତି ଓ ଐତିହ୍ୟ ଉପରେ ଆକ୍ରମଣ ଚାଲିଲା ସର୍ବପ୍ରଥମେ । ଶାରୀରିକ ଅତ୍ୟାଚାରର ସୀମା ରହିଲା ନାହିଁ । ବର୍ବରତା, ନିର୍ମମତାରେ ପୀଡ଼ନରେ ପ୍ରଜାମାନେ କାକୁସ୍ଥ ରହିବାକୁ ବାଧ୍ୟ ହେଲେ । ଗାଁ ଗଣ୍ଡା, ବନ ଭୂମିରେ ବହିଚାଲିଲା ଶୋଷଣର ଖରସ୍ରୋତ । ବାଧା, ବନ୍ଧନର ପ୍ରାଚୀର ଭାଙ୍ଗି ସମଗ୍ର ଭିଏତନାମକୁ କ୍ରୀତଦାସର ଆସ୍ତାରେ ଲୀନ କରିଦେଲା । ସହିବାର ସୀମା ଅତିକ୍ରମ କରିଗଲେ ନ ପାରିଲା ନିଶିଷ୍ଟ ମଧ୍ୟ ବଳବାନ୍ ହୋଇଉଠେ । ବିଦ୍ରୋହର ଧ୍ୱଜା ଧରି ଏଥର ଆସିଲେ ଜଣେ ସାହସୀ, ବୀର, ସନ୍ତାନ । କୌଣସି ରାଜକୀୟ, ସମ୍ଭ୍ରାନ୍ତ ପରିବାରରୁ ନୁହେଁ—କପଟ

ସାଧାରଣ ମଫସଲର ଏକ ପର୍ଣ୍ଣକୁଟୀରରୁ । ଦରିଦ୍ର ଜନ୍ମ ପରିଜନମାଁ, ଶୋଷିତ ଜନ୍ମ ବିଦ୍ରୋହୀ । ସମୟ ୧୪୧୮ ଖ୍ରୀଷ୍ଟାବ୍ଦ । କୃଷକ ପରିବାରର ଅଖ୍ୟାତନାମା ଲେ ଲେଇ ମିଙ୍ଗ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଘନ ପାର୍ବତ୍ୟ ଅଞ୍ଚଳରେ ସେମାନଙ୍କର ଘାଟୀ । ପଶୁପରି ବଞ୍ଚି ରହିଥିବା ମଣିଷମାନଙ୍କୁ ନେଇ ପାହାଡ଼ ଉପକଣ୍ଠରେ ଗରିଲାଯୁଦ୍ଧ ନିମନ୍ତେ ସଂଗଠିତ କରାଇଲେ । ଘଞ୍ଚ ବନାନ୍ତର ସବୁଜ ପଲ୍ଲବ ଥରିଉଠିଲା ବିଦ୍ରୋହ ବାଦ୍ୟରେ । ମିଙ୍ଗ ସାମ୍ରାଜ୍ୟର ସମସ୍ତ ରାଜକୀୟ ରଣକୌଶଳ ବ୍ୟର୍ଥ ହୋଇଗଲା ଏହି ସାମରିକ ଘାଟୀ ନିକଟରେ । ବିଜ୍ଞନର ସମସ୍ତ ବିପ୍ଳବ ପରାଭବ ପାଇ ଫେରିଆସିଲା । ଲେ-ଲେଇଙ୍କର ପାର୍ବତ୍ୟ ଶିବିର ଅଛପା ରହିଥିଲା ସେମାନଙ୍କ ନିକଟରେ । କ୍ରମଶଃ ଏହାର ଖ୍ୟାତି ନିକଟସ୍ଥ ଗ୍ରାମ, ସହର, ଜନପଥରେ ପ୍ରଚାରିତ ହେବାକୁ ଲାଗିଲା । ଶୁଖିଲା ପତ୍ର ପରି ଥରି ଥରି ଦିନ କାଟୁଥିବା ମଣିଷ ମନରେ ଆଶାର ସଂଚାର ହେଲା । ନୂତନ ଜୀବନର ଆକାଂକ୍ଷା ବଳବତ୍ତର ହୋଇଉଠିଲା । ଗୋଟିକ ପରେ ଗୋଟିଏ ଏହି ସାମରିକ ବିଦ୍ରୋହାନଳରେ ଝାସ ଦେବାକୁ ଆସିଲେ । ଯୁଏନ-ତ୍ରାଇଙ୍କ ପରି ଜଣେ ବିଚକ୍ଷଣ ବୁଦ୍ଧିସଂପନ୍ନ କୌଶଳୀ ଶାସକ, ଅସାଧାରଣ ଲେଖକ, ଜ୍ଞାନର ଭଣ୍ଡାର, ଶେଷରେ ଏହି ତାଲିକାରେ ନାମ ଲେଖାଇଲେ । ଦୁଇ ବନ୍ଧୁଙ୍କର ପ୍ରତ୍ୟକ୍ଷ ସହାୟତାରେ ଲମସିନ ଗିରିସଂକଟ ସୈନ୍ୟଶ୍ରେଣୀରେ ଭର୍ତ୍ତି ହୋଇଗଲା । ପ୍ରଥମ ଥର ପାଇଁ ଭିଏତ୍‌ନାମୀ ଜନତାର ଶୋଷଣବିରୋଧୀ ଏହି ସ୍ୱତଃସ୍ଫୂର୍ତ୍ତ ବିଦ୍ରୋହ ପରବର୍ତ୍ତୀ ସମୟରେ ବିରାଟ ଏକ ଗଣ ସଂଗଠନରେ ପରିଣତ ହେଲା । ଦୁଇବନ୍ଧୁ ସ୍ୱଦେଶୀ ସୈନ୍ୟଙ୍କ ପରାକ୍ରମରେ ରାଜ୍ୟପରେ ରାଜ୍ୟ ଜୟ କରି ଚାଲିଲେ । ସେତେବେଳର ଜରାଜୀର୍ଣ୍ଣ ଇତିହାସର ପୃଷ୍ଠାକୁ ଆଜି ଯଦି ଲେଉଟାଇ ଦିଆଯାଏ, ତେବେ ଜଣାପିବ—ସେହି ବିଦ୍ରୋହର ପୁରୋଭାଗରେ ଥିଲେ ତତ୍‌କାଳୀନ କୃଷକ ଶ୍ରେଣୀ, ଶ୍ରମିକ, ଶୋଷିତ ଜନତା, ବିଭିନ୍ନ ସମୟରେ ବିଭିନ୍ନ ଉପାୟ ଅବଲମ୍ବନ କରି ସେମାନେ ରାଜଶାହୀ ଶାସନ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି । ରାଜନୈତିକ କୌଶଳ ଦିଗରୁ ସେମାନେ ଅପରିପକ୍ୱ ଥିଲେ ମଧ୍ୟ କ୍ରମବର୍ଦ୍ଧମାନ ଜନ ସମର୍ଥନ ସେମାନଙ୍କୁ ଆହୁରି ଶକ୍ତିଶାଳୀ କରି ଗଢ଼ିତୋଳିଛି । ଶେଷରେ ୧୪୨୭ ମସିହା ଡିସେମ୍ବର ଶୀତକାଳରେ ଦୁର୍ଦ୍ଧର୍ଷ ମିଙ୍ଗ ସାମ୍ରାଜ୍ୟ ପରାଜୟ ସ୍ୱୀକାର କରିଛନ୍ତି ।

ବହୁ ଦୁଃଖଲବ୍ଧ ଏହି ସ୍ୱାଧୀନତା, ଶୋଣିତସିକ୍ତ ଏହି ମୁକ୍ତି ହିଁ ନିଜର ରାଜନୈତିକ ଭିତ୍ତିକୁ ଦୃଢ଼ କରିବା ନିମନ୍ତେ ଜନସମର୍ଥନ ଲୋଡ଼ିଲେ । ସେତେବେଳର ସମାଜ ବ୍ୟବସ୍ଥା ଯାହା ସେଥିରେ ସମର୍ଥନ ପ୍ରକାଶ କରିବାପାଇଁ କୌଣସି ନିର୍ଦ୍ଦିଷ୍ଟ କ୍ଷେତ୍ର ବା ସ୍ଥାନ ନ ଥିଲା । ଅର୍ଥନୈତିକ ଶୋଷଣରୁ ମୁକ୍ତିଲାଭ କରିବା ହିଁ ସମର୍ଥନର ଅନ୍ୟ ଏକ ମହାନ୍ ଦିଗ ବୋଲି ବୁଝାଯାଉଥିଲା । କାରଣ ରାଜ୍ୟର ପ୍ରଜାମାନଙ୍କର

ସିନା ହେଲ୍ପ ସ୍ୱାଧୀନତା ଉପଭୋଗ କରିବାର ଅଧିକାର ଅଛୁ ପ୍ରଜାଙ୍କର ନାହିଁ । ତେଣୁ ଲ ଅର୍ଥନୀତି ଓ ସମାଜବ୍ୟବସ୍ଥା କ୍ଷେତ୍ରରେ ପ୍ରଗତିଶୀଳ ପଦକ୍ଷେପମାନ ଗ୍ରହଣ କଲେ । ରାଜା ଜମିର ମାଲିକ ହୋଇ ରହିଲେ ସତ; ତାଙ୍କ ତରଫରୁ କର୍ମଚାରୀମାନଙ୍କ ମଧ୍ୟରେ ଭାଗବଣ୍ଟରା ହୋଇଗଲା । ଗୋତିପ୍ରଥାକୁ ବାସନ୍ଦ କରାହେଲା । ବାର୍ଷିକ ଖଜଣା ହାରରେ କୃଷକମାନେ ଜମି ମାଲିକଙ୍କଠାରୁ ଜମି ନେଇ ଚାଷ କଲେ । ଚାଷୀ ଜମିର ମାଲିକାନା ନ ପାଇଲେ ମଧ୍ୟ ଦାସତ୍ୱରୁ ମୁକ୍ତ ହେଲା । ଫଳରେ ଜମିଦାରମାନଙ୍କର ଯେଉଁ ଆଧିପତ୍ୟ ଥିଲା, ତାହା ଲୋପ ପାଇବାକୁ ଲାଗିଲା । ବଂଶଗତ ମାଲିକାନା ଚାଷଜମି ଉପରେ ରହିଲା ନାହିଁ । ବେଳକୁ ବେଳ ଏହିପରି କୃଷକମାନଙ୍କ ସଂଖ୍ୟା ବଢ଼ି ଚାଲିଲା । କୃଷିକୁ ବାଦ ଦେଲେ ଶାସନ ବ୍ୟବସ୍ଥାରେ ନିଜସ୍ୱ ରୂପ ପରିବର୍ତ୍ତନମାନ ଦେଖାଦେଲା । ଉତ୍ପାଦନ, ବଣ୍ଟନ କ୍ଷେତ୍ରରେ ମୌଳିକ ପରିବର୍ତ୍ତନ କରାଗଲା । ରାଜାମାନେ ଅମଲାତନ୍ତ୍ର ଜରିଆରେ ଶାସନକାର୍ଯ୍ୟ ନିଜ ହାତକୁ ନେଲେ । ଅତ୍ୟାଚାରର ସୀମା ସଙ୍କୁଚିତ ହୋଇଆସିଲା । କୃଷକମାନେ ସେନାବାହିନୀରେ ଯୋଗଦେଲେ । କାରଣ, ନିଜର ଆସନକୁ ଦୃଢ଼ କରିବାପାଇଁ ସେମାନେ ସେନାବାହିନୀରେ ଯୋଗ ଦେବାକୁ ନିରାପଦ ବୋଲି ଭାବୁଥିଲେ । ୧୪୬୦-୧୪୯୭ ବେଳକୁ ସାମନ୍ତବାଦ ଉପରେ କଳା ବାଦଲ ମାଡ଼ିଆସିଲା । ନୂତନ ଧରଣର ଶିକ୍ଷା, ସଂସ୍କୃତି, ଚାଲିଚଳନର ପ୍ରଚଳନ ଫଳରେ ସମାଜର ଗତି ମଧ୍ୟ ଦିଗ ପରିବର୍ତ୍ତନ କଲା । ଏକ ସୁସ୍ଥ, ସୁନ୍ଦର, ମାର୍ଜିତ ସମାଜ ନିର୍ମାଣ କରିବା ଦିଗରୁ କନଫୁସିଅସ ଧର୍ମକୁ ଅପରିହାର୍ଯ୍ୟ ମନେକରି ତାକୁ ସରକାରୀ ନୀତି ରୂପେ ଗ୍ରହଣ କରାଗଲା । ବୌଦ୍ଧ ଓ ଟାଓ ଧର୍ମର ପ୍ରଭାବ କମିଯିବାକୁ ଲାଗିଲା । ରାଜଭକ୍ତି, ଆନୁଗତ୍ୟ, ପିତୃଭକ୍ତିକୁ ସବୁଠୁ ଉଚ୍ଚ ଆସନ ଦିଆଯାଉଥିଲା । ସାଧାରଣ ଶିକ୍ଷାକ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ପରିଲକ୍ଷିତ ହେଲା । ସାହିତ୍ୟ ସୃଷ୍ଟିରେ ସ୍ୱାଧୀନତା ପାଇଁ ଯୁଏନ-ଚି ନାମକ ଜଣେ ତତ୍କାଳୀନ ଲେଖକ ଚୀନ ଓ ନମ୍ ଭାଷାରେ ବିଦ୍ରୋହୀ ସାହିତ୍ୟମାନ ସୃଷ୍ଟିକଲେ । ଗଳ୍ପ, କବିତା, ଇତିହାସ, ରାଜନୀତି, ଭୂଗୋଳ ଏବଂ ସାମାଜିକ ଶିକ୍ଷା, ଏ ସବୁ କ୍ଷେତ୍ରରେ ଆଗାମୀ ଯୁଗ ପାଇଁ ନୂତନ ପ୍ରଭାତର ସୂଚନା ଦେଇଗଲା । ସାମନ୍ତବାଦୀ ଯୁଗର ଅନ୍ତପର୍ବରେ ଭିଏତ୍‌ନାମ ସମାଜକୁ ଇତିହାସର ଏହା ହିଁ ମହାନ୍ ଦାନ ।

## ସାମନ୍ତବାଦର ଶେଷ ଯୁଗ

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗଯାଏ ସାମନ୍ତବାଦର ରାଜୁତି ଅକ୍ଷୁଣ୍ଣ ରହିଥିଲା । ମଣିଷ ସଭ୍ୟତାର ଆଂଶିକ ବିଭବ ସବୁ ସାମନ୍ତବାଦୀ ଜୈଫ ତଳେ ଚୂର୍ଣ୍ଣ ହୋଇଥିଲେ । କିନ୍ତୁ ଏହି ରାଜୁତି ମାନବିକ ମୂଲ୍ୟବୋଧକୁ ଉତ୍ତମ ରୂପେ

ବୃଷ୍ଟିପାତ ନ ଥିବାରୁ, ତାର ସୂକ୍ଷ୍ମସତ୍ତାକୁ ଏତେ ଟିକେ ସମ୍ମାନ ଦେଇ ନ ଥିବାରୁ ପ୍ରଥମେ ନିମ୍ନଶ୍ରେଣୀର କୃଷକମାନେ ହିଁ ତାହା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଏହି ସାମୟିକ ବିଦ୍ରୋହକୁ ଦମନ କରିଦେବା ପାଇଁ ରାଜବଂଶ ହାତରେ କିଛି କମ୍ ଶକ୍ତି ନ ଥିଲା । କିନ୍ତୁ ସପ୍ତଦଶ ଶତକର ପ୍ରାରମ୍ଭରେ ସାମନ୍ତବାଦୀ କୁକର୍ମ ସବୁ ସୀମା ଘାଟକୁ ଆସି ସାରିଥିଲା । ସାମନ୍ତବାଦୀ ସମାଜ ବ୍ୟବସ୍ଥା, ଶାସନ କଳ ଓ ପ୍ରଜାପୀଡ଼ନ ବିରୁଦ୍ଧରେ କୃଷକମାନେ ଯେଉଁ ବିଷୋଦ୍‌ଗାର କଲେ, ତାର ପ୍ରଧାନ ଓ ମୌଳିକ କାରଣ ଥିଲା—ପ୍ରଥମତଃ ଜମିଦାର ଓ ଅତ୍ୟାଚାରୀ ରାଜନ୍ୟବର୍ଗଦ୍ୱାରା କୃଷକମାନଙ୍କୁ ଜବରଦସ୍ତ ଗୋଡ଼ି ଖଟିବାକୁ ପଡ଼ୁଥିଲା । ପରିଶ୍ରମ ତୁଳନାରେ ସେମାନଙ୍କୁ ଉପଯୁକ୍ତ ପାରିଶ୍ରମିକ ମିଳୁ ନ ଥିଲା । ଦ୍ୱିତୀୟରେ ସାଂପ୍ରଦାୟିକ ଭିତ୍ତିରେ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରିବାର ସୁଯୋଗ ମିଳୁଥିଲା—ବ୍ରାହ୍ମଣ, କ୍ଷତ୍ରିୟମାନଙ୍କ ପରି କୁଳୀନ ଏବଂ ରାଜାନୁଗତ ସଂପ୍ରଦାୟ ହିଁ ସବୁ ପ୍ରକାର ସ୍ୱାଧୀନତାର ଅଧିକାରୀ ହୋଇପାରୁଥିଲେ । କୃଷକମାନଙ୍କ ସ୍ୱାଧୀନତା ତ ଦୂରର କଥା, ଦୁଇଓଳି ମୁଠାଏ ପେଟପୂରା ଖାଇବାକୁ ମିଳୁ ନ ଥିଲା । ତୃତୀୟରେ ଜମିଦାର, ସରକାରୀ କର୍ମଚାରୀ, ଅମାତ୍ୟମାନେ କୃଷକ ଓ ଦରିଦ୍ର ଶ୍ରମଜୀବୀଶ୍ରେଣୀକୁ ସବୁବେଳେ ଦୂରେଇ ରଖୁଥିଲେ । ତାଙ୍କୁ ସମାଜରେ ଅସ୍ପୃଶ୍ୟ କହି ବାସନ୍ଦ କରୁଥିଲେ । ଅପର ପକ୍ଷରେ ସେମାନଙ୍କର ଶ୍ରମଲବ୍ଧ ଫଳକୁ ଛଡ଼ାଇ ନେଇଯାଉଥିଲେ । କୃଷକମାନଙ୍କର ଏହି ବିଦ୍ରୋହୀ ଭିତ୍ତିକୁ ଦୃଢ଼ କରିବାପାଇଁ ତତ୍‌କାଳୀନ ସାମାଜିକ ଅବସ୍ଥା ମଧ୍ୟ କମ୍ ଖୋରାକ ଯୋଗାଇ ନାହିଁ । ସେତେବେଳକୁ କୁଟୀରଶିଳ୍ପ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିସାରିଥିଲା । ଗ୍ରାମାଞ୍ଚଳରେ ଆବଶ୍ୟକୀୟ ପଦାର୍ଥମାନ ତିଆରି ହୋଇପାରୁଥିଲା । କିନ୍ତୁ ମାଣ୍ଡ୍ରାରିନ୍ ଅମଲାତନ୍ତ୍ର ତାଙ୍କର ଏହି କାରିଗରୀ ସାମର୍ଥ୍ୟକୁ ସୀମିତ କରିଦେବା ଉଦ୍ଦେଶ୍ୟରେ ପ୍ରତ୍ୟେକ ଉତ୍ପାଦନ ଉପରେ ଭୟଙ୍କର ସରକାରୀ କଟକଣା ପ୍ରୟୋଗ କଲେ । ଉତ୍ପାଦନ ବନ୍ଦ ହେବା ଫଳରେ ଦେଶୀୟ ଶ୍ରେଷ୍ଠ ବେପାରୀ, ଗ୍ରାମୀଣ ବ୍ୟବସାୟୀମାନଙ୍କ, ହାତଗୋଡ଼ ବନ୍ଧା ହୋଇଗଲା । ଲୁଜ୍‌ରିଣ ମେଣ୍ଟି ପାରିଲା ନାହିଁ । ଏହି ଅତ୍ୟାଚାରୀ ଦମନରେ ସେମାନେ ନିଜ ନିଜ ସ୍ଥାନରୁ ବିଦ୍ରୋହ କରି ଉଠିଲେ । କେବଳ ସେତିକି ନୁହେଁ, ସୁଦୂର ପାର୍ବତ୍ୟ ଭୂମିକୁ ଆଶ୍ରୟ କରି ରହିଥିବା ଭିଏତ୍‌ନାମୀ ଅଧିବାସୀଙ୍କ ନାଗରିକତ୍ୱକୁ ମଧ୍ୟ ବିଦେଶୀମାନେ ସ୍ୱୀକାର କଲେ ନାହିଁ । 'ଭିଏତ୍‌ନାମ-ଭିଏତ୍‌ନାମୀର ନୁହେ—ତାହା ଚୀନା ସାମ୍ରାଜ୍ୟବାଦର' ଏହି ନୀତିରେ ସେମାନେ ଭିଏତ୍‌ନାମର ବସୁଧାରେ ବିଜିତ କରିବାକୁ ଚାହୁଁଥିଲେ । ମୁକ୍ତ ଆକାଶ ତଳେ ମୁଣ୍ଡ ଗୁଞ୍ଜିବା ପାଇଁ ଛାଉଣୀ ନ ଥାଇପାରେ; କିନ୍ତୁ ପାଦରଖିବା ପାଇଁ ମାଟିର ଆବଶ୍ୟକତା ଅଛି । ସେହି ଅଧିକାରକୁ ଛଡ଼ାଇନେବ କିଏ ? ଜଙ୍ଗଲୀ ସଭ୍ୟତାରେ ପ୍ରତିପାଳିତ ଦୁର୍ଦ୍ଦାନ୍ତ ସିଂହଶିଶୁ ଗ୍ରାମୀଣ କୃଷକ ସହିତ ବାହାରି ଆସିଲା

ମୁଛର ମଇଦାନକୁ । ଦେଶୀସ୍ଥ କୃଷକ ଓ ଶବଦେଶୀ ଦଲମାନଙ୍କ ଶବ୍ଦରେ ସ୍ଥାନୀୟ ଅଧିବାସୀମାନଙ୍କର ମୃଦୁଚବାଦ ଅହରହ ଲାଗିରହିଲା । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଏହି କ୍ରମ ବର୍ଦ୍ଧିଷ୍ଣୁ ଅସନ୍ତୋଷର ବହ୍ନି ସାମନ୍ତବାଦୀ ଛଷକୁ କାଲପୋଡ଼ି ଛାରଖାର କରିଦେଲା ।

୧୫୨୭ ରେ ମାକ ପରିବାର ଥାଙ୍ଗଲଙ୍ଗରେ ନିଜ ରାଜଧାନୀ ପ୍ରତିଷ୍ଠା କଲେ । ଲି ଉପରେ ଦକ୍ଷିଣପଟେ ଆତ୍ମଗୋପନ କଲେ । ୧୫୯୧ରେ ଟ୍ରିନ୍ ଜମିଦାର ବଂଶ ମାକଙ୍କୁ ପରାସ୍ତ କଲେ ଏବଂ ଥାଙ୍ଗଲଙ୍ଗ ଦଖଲ କଲେ । ଟ୍ରିନ୍ ଏବଂ ନ୍ଗୁଏନ ଲି ରାଜବଂଶର ଅନୁଗତ ହୋଇ ରହିବାର ଛଳନା କରୁଥିଲେ ମଧ୍ୟ କ୍ଷମତା ଦଖଲର ଆଶା ସେମାନଙ୍କ ମଧ୍ୟରେ ପ୍ରବଳ ହୋଇଉଠିଲା । ଟ୍ରିନ ଏବଂ ଲି ଏହି ଦୁଇ ଶାସକ ବଂଶ ମଧ୍ୟରେ ୧୬୨୭ରୁ ୧୬୭୨ ପର୍ଯ୍ୟନ୍ତ ଆତ୍ମବିବାଦ ଲାଗି ରହିଲା । ଠିକ୍ ଏହି ସମୟରେ ଚୀନା କୃଷିବିଦ୍ରୋହର ଜନ୍ମ । ବିଦେଶୀମାନେ ଦେଶୀସ୍ଥ ବିବାଦରୁ ଫାଇଦା ଉଠାଇବାପାଇଁ ଚେଷ୍ଟା କରି ବ୍ୟର୍ଥ ହେଲେ ।

ଉତ୍ତର ପଟରେ ଟ୍ରିନ୍‌ମାନେ ଲି-ଙ୍କର ଆନୁଗତ୍ୟ ସ୍ୱୀକାର କରି ଶାସନ ପରିଚାଳନାରେ ଅପୂର୍ବ ଦକ୍ଷତା ପ୍ରଦର୍ଶନ କଲେ । କିନ୍ତୁ କୃଷକ ଓ ଅସନ୍ତୁଷ୍ଟ ଗୋଷ୍ଠୀ ସେମାନଙ୍କର ମନମୁଖୀ ଶାସନକୁ ମାନିନେଇ ପାରିଲେ ନାହିଁ । ଅପର ପକ୍ଷରେ ବିଭିନ୍ନ ରାଜବଂଶ ମଧ୍ୟରେ ଥିବା ଅନ୍ତର୍ଦ୍ୱନ୍ଦ୍ୱ ଏହି ସମସ୍ୟାକୁ ଆହୁରି ଜଟିଳ କରିଦେବା ପାଇଁ ପ୍ରଚୁର ଖାଦ୍ୟ ଯୋଗାଇଦେଲା । ରାଜପରିବାର ପ୍ରତି ଥିବା ସମ୍ମାନ, ସମ୍ଭ୍ରମ ବୋଧ ଦିନକୁ ଦିନ ହ୍ରାସ ପାଇଲା । ରାଜତନ୍ତ୍ରର ଅବସ୍ଥାନ ପରେ ପ୍ରକାର ଆପନ ଆଉ ବା କ'ଣ ? ସାମନ୍ତବାଦର ଘୋର ଦୁର୍ଦ୍ଦିନରେ ଗ୍ରାମ୍ୟ ଅର୍ଥନୀତି ଭୁଷୁଡ଼ିପଡ଼ିବା ପରିବର୍ତ୍ତେ ବଳବତ୍ତର ହୋଇଉଠିଲା । ବିଶେଷ କରି ସରକାରୀ କଟକଣା ଉପରେ ଦବି ଯାଇଥିବା କାରିଗର, ମିସ୍ତ୍ରୀ, ବଢ଼େଇ, କୁମ୍ଭାର ସ୍ୱାଧୀନତା ପାଇ ଦ୍ୱିଗୁଣ ଉତ୍ସାହରେ ମାତିଗଲେ । ଉତ୍ତର ପଟରେ ମାଟିପାତ୍ର ତିଆରି, ବସ୍ତ୍ରବୁଣା, ଯୋତା ତିଆରି, ଛାପାଖାନା, କାଗଜକଲ, ବ୍ରୋଞ୍ଜ, ଶିଳଭଳି ଧାତୁ ତିଆରି ପ୍ରଭୃତି ଆଦି କ୍ଷୁଦ୍ର ଶିଳ୍ପମାନ ଗଢ଼ି ଉଠିଲା । ଏହି ସଂସ୍କୃତି ନୂତନ ଭାବରେ ନୁହେଁ, ପୁନର୍ଜୀବିତ ରୂପ ନେଇ, ଭିଏତନାମରେ ମୁଣ୍ଡ ଟେକିଲା । ତମ୍ବା ଏବଂ ଲୁହା ଖଣିମାନଙ୍କରେ ଉଦ୍ଧାର କାର୍ଯ୍ୟ ଆରମ୍ଭ ହେଲା । ସରକାରୀ ଉଦ୍ୟମରେ କଲ କାରଖାନାମାନ ପ୍ରତିଷ୍ଠା ହୋଇ ଦିନରାତି କାମ ଚାଲିଲା । ରାଜପରିବାରର ଚାହିଦା ଅନୁଯାୟୀ ମୂଲ୍ୟବାନ ଦ୍ରବ୍ୟ ପ୍ରସ୍ତୁତ ହେଲା । କାରିଗର, ବେପାରୀମାନେ ଏଥିରେ ଖୁବ୍ ଲାଭବାନ ହୋଇପାରିଲେ । କ୍ରମେ କ୍ରମେ କୁଟୀରଶିଳ୍ପର ଖ୍ୟାତି ଘନ ପାର୍ବତ୍ୟ ଅଞ୍ଚଳକୁ ବ୍ୟାପିଲା । ଅଷ୍ଟାଦଶ ଶତାବ୍ଦୀବେଳକୁ ଦକ୍ଷିଣ ଓ ଉତ୍ତର ଏହି ଉଭୟ ପଟରେ ଧସେଇ ଶିଳ୍ପୋଦ୍ୟୋଗର ପ୍ରତିଷ୍ଠା ବଢ଼ି ବଢ଼ି ଚାଲିଲା । ଭିଏତନାମର ଦେଶୀସ୍ଥ ଶ୍ରମଜୀବୀ ମେଣ୍ଟାଇ ସାରିବା ପରେ ବଳକା ପଦାର୍ଥସବୁ ବାହାର ଦୁନିଆ ଦେଖିବା ପାଇଁ ପଥ ଖୋଜିଲା ।

ଏହାକୁ ସାଥୀରେ ବୋହିନେବା ପାଇଁ ଚୀନ, ଜାପାନ, ଇଣ୍ଡୋନେସିଆରୁ ସାଗର-ପୋତମାନ ଆସି ଭିଏତ୍‌ନାମ ଉପକୂଳରେ ଲଙ୍ଗର ପକାଇଲେ । ପ୍ରାଚ୍ୟ ନଗରରୁ ସାଦର ସମ୍ମାନ ଲାଭ କରି ଭିଏତ୍‌ନାମର ପ୍ରସ୍ତୁତ କାରୁକାର୍ଯ୍ୟ ଖଚିତ ଦ୍ରବ୍ୟ ଓ ବିଳାସ ସାମଗ୍ରୀ ପାଶ୍ଚାତ୍ୟ ରାଜ୍ୟରେ ଚହଳ ସୃଷ୍ଟି କରିଦେଲା । ଭିଏତ୍‌ନାମର ଉନ୍ନତ ଶିଳ୍ପ ସମୃଦ୍ଧି, କୃଷି, ଅର୍ଥନୀତିର ଅନୁକୂଳ ଅବସ୍ଥା ଦେଖି ବଣିକ ନାମରେ ଜାହାଜ ବୋଝାଇ କରି ଆସିଲେ ଦଳ ଦଳ ପଶ୍ଚିମା ବେପାରୀ । ଖାଲ, ଢିପ, ନଦୀ-ନାଳ, ବନ-ପର୍ବତ କିଛି ନ ମାନି ଚରିଗଲେ ସାରା ଭିଏତ୍‌ନାମରେ । ନିଜ ଅସ୍ଥାନ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ କରି ପୁନର୍ବାର ଫେରିଲେ ନିଜ ଦେଶକୁ । ପ୍ରାଚ୍ୟର ସୁନ୍ଦରୀ ଭିଏତ୍‌ନାମର ନବଯୌବନ, ମୁକ୍ତ ଅନ୍‌ଲାଘ୍ରିତ ଅଙ୍ଗଶିଷ୍ଟର ମୋହକୁ ଏଡ଼ାଇ ପାରିଲେ ନାହିଁ ସେମାନେ । ଏଥର ଫେରିଲେ ଖ୍ରୀଷ୍ଟାନ ପାଦ୍ରୀ, କେତେକ ସାମ୍ରାଜ୍ୟ ଲୋଲୁପ ଶେଠଙ୍କୁ ଧରି । ଖ୍ରୀଷ୍ଟାନ ଧର୍ମଯାଜକର ଆପାଦଲମ୍ବିତ ଡ୍ରେସ୍ ତଳେ ବୋହି ଆଣିଥିଲେ ପାଶ୍ଚାତ୍ୟ ଦେଶରୁ ଅକଳନ ଅସ୍ତ୍ର ଶସ୍ତ୍ର, ବନ୍ଧୁକ । ତରବାରୀ··· । ରାଜ୍ୟଲୋଭ, ସାମ୍ରାଜ୍ୟ କ୍ଷୁଧା, ବିଳାସ ବ୍ୟସନର ନିଶାରେ ପକାଇଦେଲେ ରାଜପରିବାରମାନଙ୍କୁ·· ରାଜରାଜୁଡ଼ା ଅମାତ୍ୟ ଦଳଙ୍କୁ । ବିଶ୍ୱ ବିଖ୍ୟାତ ଖ୍ରୀଷ୍ଟଧର୍ମର ମହାମାନସ୍ ବାହୁଚ୍ଛାୟା ତଳେ ଜାବୋଡ଼ି ଧରିଲେ ଚେତନାହୀନ, ମୋହଗ୍ରସ୍ତ ଜମିଦାରମାନଙ୍କୁ । ରାଜପରିବାର ବିଦେଶୀ ଦଲାଲମାନଙ୍କ ପଦଲେହନକାରୀ କୁକୁର ଦଳରେ ପରିଣତ ହେଲେ । ଗୁପ୍ତରେ ରାଜବଂଶ, ଜମିଦାର ଓ ଅନ୍ୟାନ୍ୟ କୁଳୀନ ବଂଶ ସହିତ ସମ୍ପର୍କ ଦୃଢ଼ତର କରି ସମୁଦାୟ ସମାଜକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଦେଲେ । ଧନୀ-ଦରିଦ୍ର, ରାଜା-ପ୍ରଜା, ଶାସକ-ଶୋଷିତ ବୈଷମ୍ୟ ସୃଷ୍ଟି କରିବା ଥିଲା ସେମାନଙ୍କର ମୂଳ ଉଦ୍ଦେଶ୍ୟ । ଫଳରେ ନିଜ ମଧ୍ୟରେ ବିବାଦ ଉପୁଜିବା ସ୍ୱାଭାବିକ । କଳହ ଲାଗି ରହିବା ନିହାତି ବାସ୍ତବ । ଦିନକୁ ଦିନ ଅସନ୍ତୋଷ ବୃଦ୍ଧି ପାଇଲା । ଏହି ଅସନ୍ତୋଷର କୌଣସି ବାହ୍ୟ ରୂପ ନଥିଲା । କାରଣ ଶାସନ ଭୟରେ କେହି ମୁହଁ ଖୋଲିବାକୁ ସାହସ କରିପାରୁ ନଥିଲେ । ଦରିଦ୍ର ପ୍ରଜାଙ୍କୁ ଦମନ କରିବା ପାଇଁ ପାଶ୍ଚାତ୍ୟ ବେପାରୀ ମାନେ ରାଜପରିବାର, ଜମିଦାର ବର୍ଗ ହାତରେ ନୂତନ ଅସ୍ତ୍ରଶସ୍ତ୍ର ଧରାଇଲେ । ନିଜ ଦେଶର ସାମରିକ ପଦାର୍ଥ ପାଇଁ ବଜାର ପାଇବା ସଙ୍ଗେ ସଙ୍ଗେ ସେ ଭିଏତନାମର ଜନତାକୁ ଦ୍ୱିଧାଗ୍ରସ୍ତ କରାଇ ଫାଇଦା ଉଠାଇବା ପାଇଁ ଚାହିଁଲେ । ଗୋଟିଏ ପଟରେ ରାଜାମାନଙ୍କୁ ଅତ୍ୟାଚାରୀ କରାଇ ଦରିଦ୍ର ପ୍ରଜାଙ୍କୁ ଶୋଷଣ କଲେ ଏବଂ ଅପର ପଟରେ ନିଷ୍ପେଷିତ, ନିପୀଡ଼ିତ ଶ୍ରେଣୀକୁ ବାହ୍ୟ ସାନ୍ତ୍ୱନା ଦେଇ ରାଜାଙ୍କ ବିରୁଦ୍ଧରେ ସେମାନଙ୍କର ଅସନ୍ତୋଷ ଜାଗ୍ରତ କରାଇଲେ । କାଳସାପ ହୋଇ ଲାଗିବା ଗୁଣିଆ ହୋଇ ଝାଡ଼ିବା କାର୍ଯ୍ୟରେ ସେମାନେ ଖୁବ୍ ପାରଦର୍ଶୀ ଥିଲେ ବୋଲି ଏଥିରୁ ବୁଝାଯାଏ । ଦୁଇ ବିବଦମାନ ଶ୍ରେଣୀକୁ

ଦୁଇ ହାତରେ ନଷ୍ଟ କରି ସେମାନେ ନିଜର ବାଣିଜ୍ୟିକ ସ୍ୱାର୍ଥକୁ ପ୍ରତିଷ୍ଠା କରି ପାରିଲେ । ତତ୍‌କାଳୀନ ଭିଏତନାମର ସାମାଜିକ ଦୁର୍ବଳତାର ସୁଯୋଗ ନେଇ ସେମାନେ ଲୁଣ୍ଠନ ବୃତ୍ତି ଆରମ୍ଭ କଲେ । ଯାହା ବା କିଛି ଦେଶ ମଧ୍ୟରେ ଲୁଚି ଛପି ରହିଥିଲା ସେ ସମସ୍ତ ଗୋପନ ତଥ୍ୟ ସାଗରଦରିଆ ଆରପାରିରେ ପହଞ୍ଚିଗଲା । ଦଳ ଦଳ ହୋଇ ବିଦେଶୀ ବେପାରୀ ଆସି ଭିଏତ୍‌ନାମରେ ପହଞ୍ଚି ଗଲେ । ଜଣ ଜଣ କରି କଳ, କାରଖାନା, ଶିଳ୍ପୋଦ୍ୟୋଗମାନଙ୍କରେ କାମ କରିବାକୁ ଲାଗିଲେ । ଖୁବ୍ କମ୍ ସମୟ ଭିତରେ ଦେଖାଗଲା ଭିଏତ୍‌ନାମୀ ଉତ୍ପାଦନ କ୍ଷେତ୍ରରେ ନିଜର ଲୋକ ଅଳ୍ପ କେହି ନାହାନ୍ତି । ଯେଉଁମାନେ ପରିଚାଳନା ଦାୟିତ୍ୱରେ ଅଛନ୍ତି ସେ ସମସ୍ତେ ବିଦେଶୀ ବେପାରୀଦଳ ।

ଘରୋଇ ଶିଳ୍ପ, କୃଷି, କଳକାରଖାନାମାନଙ୍କରେ ଉତ୍ପାଦନର ପରିମାଣ ସଙ୍କୁଚିତ ହୋଇ ଆସିଲା । ଉତ୍ପାଦନ ବଢ଼ାଇବା ପାଇଁ ବିଦେଶୀମାନେ ବା କାହିଁକି ଚେଷ୍ଟା କରିବେ ! ଅପର ପକ୍ଷରେ ଉତ୍ପାଦନକୁ ଯଦି କଳ୍ପନାତୀତଭାବେ ଖସାଇ-ଦିଆଯାଏ ତେବେ ଆର୍ଥିକ ଦୃଷ୍ଟିକୋଣରୁ ସେମାନେ ଲାଭବାନ୍ ହୋଇ ପାରିବେ । ତାହାହିଁ ହେଲା । ଦେଖୁଁ ଦେଖୁଁ ଦିନ କେତୋଟାରେ ଭିଏତ୍‌ନାମ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ତାଲା ପଡ଼ିଲା । କର୍ମଚ୍ୟୁତି ଛଟେଇ ହେଲେ । ଦେଶୀୟ ବ୍ୟବସାୟୀ ଶିଳ୍ପପତିମାନଙ୍କୁ ଜବରଦସ୍ତି କଳକାରଖାନାମାନଙ୍କରୁ ବାହାର କରି ଦିଆଗଲା । ଚଢ଼ା ମୂଲ୍ୟରେ ସେମାନଙ୍କର ସମସ୍ତ ସମ୍ପତ୍ତି କିଣି ନିଆଗଲା । ଭିଏତ୍‌ନାମ ବର୍ତ୍ତମାନ ଦାଣ୍ଡର ଭିକାରୀ । ତା ଘରେ ଆଜି ଶୃଗାଳର ଆସ୍ଥାନ । କଞ୍ଚାମାଲ ସବୁ ଜାହାଜ ବୋଝେଇ ହୋଇ ବିଦେଶକୁ ଗଲା । ସେଥିରେ ଯାବତୀୟ ବିଳାସ ସାମଗ୍ରୀମାନ ପ୍ରସ୍ତୁତ ହୋଇ ଆସି ଭିଏତନାମ ବଜାରରେ ବହୁମୂଲ୍ୟରେ ବିକ୍ରୀ ହେଲା । ଆଖି ଥାଇ ମଧ୍ୟ ଅନ୍ଧ । ଜୀବନ ଥାଇ ମଧ୍ୟ ମୃତ । ବିଲୁପ୍ତ, ବିକଳାଙ୍ଗ ଭିଏତ୍‌ନାମ ଏହି ଐତିହାସିକ ଗତିକୁ ବାଧା ଦେଇ ପାରିଲା ନାହିଁ । ଦରିଆ ସେପାରି ବଣିକମାନଙ୍କ ହାତରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ ହେଲା । ଦରିଦ୍ର ପ୍ରଜାମାନେ ମୁହଁ ଖୋଲି ପାରିଲେ ନାହିଁ । ଯେଉଁମାନେ ସେମାନଙ୍କର ଏହି ଅପକର୍ମର ମୁକାବିଲା କରିପାରି ଥାନ୍ତେ ସେମାନେ ନିଜକୁ ହରାଇ ବସିଥିଲେ । ଦେଶୀୟ ରାଜା, ଜମିଦାର, ଗରନ୍ତିଆମାନଙ୍କୁ ସୁହାଇଲା ଭଳି ବିଦେଶୀମାନେ ନୀତି, ନିୟମ, ଆଇନମାନ ପ୍ରଣୟନ କରୁଥିଲେ । ତେଣୁ କେବଳ ବିଶାଳ ଏବଂ ଦରିଦ୍ର ପ୍ରଜା ଏହି ଅମାନୁଷିକ ଶୋଷଣର ଶୀକାର ହେଲେ । କାରଣ ସେମାନେ ଉଭୟ ପଟରୁ ଧକ୍କା ଖାଉଥିଲେ । ଗୋଟିଏ ପଟରେ ନିର୍ଦ୍ଦୟ ବିଦେଶୀ ବେପାରୀ ଅନ୍ୟ ପଟରେ ସେମାନଙ୍କର ଗୁଣ୍ଡୁକାଟ ଦେଶୀୟ ଶାସକଗୋଷ୍ଠୀ । କୃଷିକାର୍ଯ୍ୟ ସମ୍ପୂର୍ଣ୍ଣ ବାଧାପ୍ରାପ୍ତ ହେଲା । ଶିଳ୍ପର ଚିହ୍ନବର୍ଣ୍ଣ ରହିଲା ନାହିଁ । ଐଶ୍ୱର୍ଯ୍ୟ, ବିଭବର କର୍ପୂର ଖଣ୍ଡିକ ଶୋଷଣର ଝାଞ୍ଜି ମାଡ଼ରେ କେଉଁଆଡ଼େ

ମିଳାଇ ଗଲା । କିନ୍ତୁ ଗ୍ରସ୍ତ ହୋଇଗଲା ସେହି କ୍ଷୁଦ୍ର ଜନା ଖଣ୍ଡିକ ଯାହାକୁ ଦେଖି ଆଜି ପ୍ରତି ଭିଏତ୍‌ନାମୀ ଆଖିରୁ ଲୁହ ଗଡ଼େ । ଅନ୍ତରର ନିଭୃତ କୋଣରୁ ଊର୍ଦ୍ଧ୍ୱଶ୍ୱାସ ବାହାରି ଆସେ । କଣ୍ଠ ବାଷ୍ପରୁଦ୍ଧ ହୋଇଯାଏ । କି ଥିଲା ଏ ଦେଶ ! କି ହୋଇଛି ଆଜି !! ନୀରବ ବିଦ୍ରୋହରେ ନିଃସ୍ୱ ଆତ୍ମା ଚିତ୍କାର କରି ଉଠେ ।

ଅଷ୍ଟାଦଶ ଶତାବ୍ଦୀ ବେଳକୁ ସାମନ୍ତବାଦର ଆକାଶ ଉପରେ କଳାମେଘ ଘୋଟିସାରି ଥିଲା । କୃଷକ ଓ ଶ୍ରମିକମାନଙ୍କର ସମ୍ମିଳିତ ଅସନ୍ତୋଷ ଏହାକୁ ଅଧିକ ଘନ ଓ ବର୍ଷଣମୁଖୀ କରିଦେଲା । ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ବିଦେଶୀମାନଙ୍କ ଇସାରାରେ ଟ୍ରିନ୍. କୃଷକମାନଙ୍କ ଉପରେ, ଦମନମୂଳକ କଟକଣାମାନ ଜାରି କଲେ । ଫଳରେ ସାରା ଭିଏତ୍‌ନାମର କୃଷକମାନେ ବିଦ୍ରୋହ କରି ଉଠିଲେ । ଉତ୍ତରରୁ ଦକ୍ଷିଣ, ପୂର୍ବରୁ ପଶ୍ଚିମ, ପ୍ରତି କୋଣ ଅନୁକୋଣରେ ଏହି ବିଦ୍ରୋହର ନିଆଁ ଜଳି ଉଠିଲା । ସେହି ସମସ୍ତ ମଧ୍ୟରେ ଏପରି କୌଣସି ଗୋଟିଏ ଦିନ ନଥିଲା ଯେଉଁ ଦିନ ଟେସମାନେ ଶାନ୍ତିରେ ନିଃଶ୍ୱାସ ମାରିଛନ୍ତି । କେତେକ ଅଞ୍ଚଳରେ ଦେଖାଗଲା କୃଷକମାନେ ସଂଘବଦ୍ଧ ବିଦ୍ରୋହ କରି ଶାସନ କ୍ଷମତା ଦଖଲ କରି ସାରିଛନ୍ତି । ଏହି ସୁଯୋଗ ଦେଖି ବିଦ୍ରୋହର ଅନୁକୂଳ ପରିବେଶକୁ ହୃଦୟଙ୍ଗମ କରି ନ୍ଗୁଏନହୁଇନ୍ କାଉ ନାମକ ଜଣେ କୃଷକ ନେତା ନେତୃତ୍ୱ ନେବା ପାଇଁ ଆଗେଇ ଆସିଲେ । ୧୭୪୧ରୁ ୧୭୫୧ ଯାଏ ହୁଇନ୍ କାଓ ଏବଂ ଟ୍ରିନ୍ ସେନା ବାହିନୀ ସହିତ ଲଢ଼େଇ ଲାଗି ରହିଲା । ସେ ନିଜ ବୁଦ୍ଧି କୌଶଳ ଖଟାଇ ଏକ ସୁଦକ୍ଷ ଗରିଲା ବାହିନୀ ଗଠନ କଲେ । ଏହି ଗରିଲା ବାହିନୀର ମୁଖ୍ୟ କାମ ଥିଲା ଧନୀ ଜମିଦାର ହାତରୁ ଜମି ଛଡ଼ାଇ ନେଇ ଦରିଦ୍ର କୃଷକମାନଙ୍କ ମଧ୍ୟରେ ବାଣ୍ଟି ଦେବା, ରାଜକୋଷ ଲୁଟି ଶୋଷିତ ପ୍ରଜାମାନଙ୍କୁ ବିତରଣ କରିବା । ତାଙ୍କର ଏହି ଦୁଃସାହସିକ କାର୍ଯ୍ୟ ପାଇଁ ସେ 'ଜାଏକୋଁ'ର ଆଖ୍ୟା ବହନ କରିଥିଲେ । ହୁଇନକାଓଙ୍କ ଜୀବନରେ ପରାଜୟ ଯେ ନଥିଲା ତା ନୁହେଁ । କିନ୍ତୁ ସେ ନିଜର ଦକ୍ଷତା ବଳରେ ଏପରି ଏକ ଗଣ ସଙ୍ଗଠନ ଠିଆ କରାଇ ପାରିଲେ ଯାହାର ଅକାଳ ମୃତ୍ୟୁରେ ଅଗଣିତ ସଙ୍ଗଠନ ସାଙ୍ଗେ ସାଙ୍ଗେ ଜନ୍ମ ନେଇ ପାରୁଥିଲା । ହୁଇନ୍ କାଓ ପରାଜିତ ହୋଇଥିଲେ ମଧ୍ୟ କୋଟି କୋଟି ହୁଇନ୍ କାଓ ପରବର୍ତ୍ତୀ ସମୟରେ ନୂତନ ରୂପନେଇ ଦେଖାଦେଇ ଥିଲେ । ଏହି ଥିଲା ସେ ବିଦ୍ରୋହର ବିଶେଷତ୍ୱ । ଗଣ ଅସନ୍ତୋଷର ହୋମାଗ୍ନି ମଧ୍ୟରୁ ଜନ୍ମଲାଭ କରିଥିବା ହୁଇନ କାଓ ଭିଏତ୍‌ନାମରେ ଏକ ବିଦ୍ରୋହର କିମ୍ବଦନ୍ତୀ ସୃଷ୍ଟି କରିଗଲେ ।

ନ୍ଗୁଏନହୁଙ୍କର ବ୍ୟକ୍ତିଗତ ପ୍ରଶଂସା ସହିତ ଦିନକୁ ଦିନ ସଙ୍ଗଠନର ଐକ୍ୟ ଦୃଢ଼ୀଭୂତ ହେବାକୁ ଲାଗିଲା । ସାମନ୍ତବାଦୀ ତଥା ବିଦେଶୀ ବେପାରୀମାନଙ୍କ ମନରେ ଅନୁଲ୍ଲେଖ୍ୟ ଭୟ ସଞ୍ଚାର ହେଲା । ନ୍ଗୁଏନଙ୍କ ଯାତାପଥକୁ ଅବରୋଧ କରିବା ପାଇଁ

ସେମାନେ ସମ୍ମିଳିତ ହେଲେ ବାହାର ଆସିଲେ । କିନ୍ତୁ ଗୁଏନ୍ ସେତେବେଳେ ଅତି ଜଣେ ବ୍ୟକ୍ତି ହୋଇ ନାହାନ୍ତି, ସେ ଏବଂ ବିପ୍ଳବୀ ଗଣ ଅନୁଷ୍ଠାନ । ସଂଘବଦ୍ଧ ଐକ୍ୟତାନରେ ଗଗନ ପବନ ମୁଖରିତ । ବିଦ୍ରୋହର ବୃକ୍ଷ ବଣ, ପର୍ବତ, ପୁର-ପଲ୍ଲୀ ସବୁଠି ବିକ୍ଷିପ୍ତ । ଦୁର୍ଦ୍ଧର୍ଷ ଗରିଲାମାନଙ୍କ ରଣ ହୁଙ୍କାରରେ ଆକାଶ-ଧରିତ୍ରୀ ପ୍ରକମ୍ପିତ । ଶତାବ୍ଦୀର ଶେଷ ମୁହୂର୍ତ୍ତରେ ଗୁଏନଙ୍କ ସହିତ ଟେଇସନ ଏହି ଗରିଲା ବାହିନୀରେ ଯୋଗ ଦେଲେ । ତାଙ୍କର ମିଳିତ ଅଭିଯାନ ଭିଏତ୍‌ନାମର ସୀମାରୁ ଟ୍ରିନ୍ ଶାସକ ଶ୍ରେଣୀଙ୍କୁ ବିତାଡ଼ିତ କଲା । ଦୀର୍ଘ ୩୦୦ ବର୍ଷ ଧରି ମାଟି କାମୁଡ଼ି ପଡ଼ି ରହିଥିବା ରାଜ ପରିବାରର ମହାଦ୍ରୁମ ବିପ୍ଳବର ବାତ୍ୟାରେ ଟଳିପଡ଼ିଲା । ଏହି ଐତିହାସିକ ଅଭିଯାନର ସଫଳତା ପାଇଁ ଭିଏତ୍‌ନାମ ବିଦ୍ରୋହୀ ଜାତିଙ୍କ ଐକ୍ୟବଦ୍ଧ ପରିବାରରେ ଟାଇସନଙ୍କର ଦାନ ଅପୂରଣୀୟ ।

ଟାଇସନଙ୍କର ଏହି ଜନପ୍ରିୟ ଗଣ ସଙ୍ଗଠନକୁ ବାଧା ଦେବାପାଇଁ ଚାରି ପଟରୁ ଶତ୍ରୁ ଧାଇଁ ଆସିଲେ । ଗୁଏନ ବଂଶର ଅନୁଚରମାନେ ଆତ୍ମରକ୍ଷା ପାଇଁ ଶ୍ୟାମ ସେନାବାହିନୀର ଦ୍ୱାରସ୍ଥ ହେଲେ । ଇତିହାସ ସବୁବେଳେ ଏହି ନାରକୀୟ କମୃ-ଦଳୀଙ୍କୁ ଲିପିବଦ୍ଧ କରିଛି— 'ଯେତେବେଳେ ଦେଶଦ୍ରୋହୀ ଶାସକବର୍ଗ ଜନ ଅସନ୍ତୋଷକୁ ଦମନ କରିବା ପାଇଁ ନିଜେ ସମର୍ଥ ହୋଇ ପାରନ୍ତି ନାହିଁ, ସେତେବେଳେ ସେମାନେ ବିଦେଶୀ ଶତ୍ରୁର ସହାୟତା ଲୋଡ଼ନ୍ତି ।'' କିନ୍ତୁ ଇତିହାସ ସେମାନଙ୍କୁ କ୍ଷମା ଦେଇ ପାରେନାହିଁ । ଆଗରେ ହେଉ ବା ବିଳମ୍ବରେ ହେଉ ସ୍ୱାଧିକାର ପାଇଁ ସଂଗ୍ରାମର ବିଜୟ ସୁନିଶ୍ଚିତ । ୧୭୮୪ର ଏକ ଶୁଭ ମୁହୂର୍ତ୍ତରେ ବିପ୍ଳବୀ ଗୁଏନହୁ ମେକଙ୍ଗ ନଦୀର ତଟ ଦେଶରେ ୫୦,୦୦୦ ଶ୍ୟାମ ସେନାବାହିନୀଙ୍କୁ ପରାସ୍ତ କଲେ । ଏହି ବିଜୟର ବାର୍ତ୍ତା ତଡ଼ିତ ବେଗରେ ଚାରିଆଡ଼େ ଖେଳିଗଲା ।

ସେହିପରି ଉତ୍ତର ପଟରୁ ଟାଇସନଙ୍କୁ ବାଧାଦେବା ପାଇଁ ଲି ଉତ୍ତରାଞ୍ଚଳ ଶାସନ ଦାୟିତ୍ୱରେ ଥିବା ମିଁଙ୍ଗ ରାଜବଂଶକୁ ପ୍ରଭୂତ ସାହାଯ୍ୟ ଦେଲେ । ଭିଏତ-ନାମକୁ କରକବଳିତ କରିବାର ଦୁର୍ବାର ଆଶା ତାଙ୍କର ଦ୍ୱିଗୁଣ ତେଜରେ ଜଳି ଉଠିଲା । ଦକ୍ଷିଣ ପଟରେ ହୋଇଥିବା ପରାଜୟର ଗ୍ଳାନିକୁ ଧୋଇଦେବା ପାଇଁ ସେ ଉତ୍ତରାଞ୍ଚଳକୁ କୌଣସି ପ୍ରକାରେ ଦଖଲ କରିବାକୁ ଚାହୁଁଥିଲେ । ତେଣୁ ଚିଁଙ୍ଗ ୨ଲକ୍ଷ ସୈନ୍ୟ ଥାଙ୍ଗଲଙ୍ଗ ଅଭିମୁଖେ ପଠାଇଲେ । କିନ୍ତୁ ସେ ଖୁବ୍ ଚତୁର ଏବଂ ସୁଦକ୍ଷ ସେନାପତି ଥିଲେ । ସେନାବାହିନୀ ଉପରେ ତାଙ୍କର ପ୍ରଭାବ ଓ ଆୟତ୍ତ ଅସୀମ । ଭିଏତନାମର କେନ୍ଦ୍ରାଞ୍ଚଳରୁ ଆରମ୍ଭ କରି ୬୦୦ କିଲୋମିଟର ଅଞ୍ଚଳ ଯାଏ ତାଙ୍କର ଗରିଲା ବାହିନୀ ଭିତରପଟୁ ଅବରୁଦ୍ଧ କରିଦେଲେ । ଲି ଙ୍କର ସେନାବାହିନୀ ଶତ ଚେଷ୍ଟା ସତ୍ତ୍ୱେ ସେହି ଦୁର୍ଗ ମଧ୍ୟକୁ ପ୍ରବେଶ କରି ପାରିଲେ ନାହିଁ । ଗରିଲା ସେନାବାହିନୀ କେନ୍ଦ୍ରାଞ୍ଚଳରେ ଆବଦ୍ଧ

ନଗଦ ବସ୍ତୁର ଇଲକା ଖଣ୍ଡକୁ ନିଜ ଦୁର୍ଗରେ ପରାସ୍ତ କରିଦେଲେ । ଫଳରେ ମାତ୍ର ଷୋଳଦିନର ଅନାବରତ ସଂଗ୍ରାମ ପରେ ସେମାନେ ଶତ୍ରୁ ପକ୍ଷର ବିଶାଳ ସେନାଙ୍କୁ ପରାଭୂତ କରିବା ପାଇଁ ସମର୍ଥ ହୋଇ ପାରିଲେ । ଶେଷରେ ଫ୍ରେଞ୍ଚ ପକ୍ଷ ଭିଏତନାମ ଛାଡ଼ିବା ପାଇଁ ବାଧ୍ୟ ହେଲେ । ଭିଏତନାମ ଇତିହାସରେ ଏହି ଅଭିନବ ରଣକୌଶଳ ଏକ ମୁଖ୍ୟ ସ୍ଥାନ ଅଧିକାର କରିଛି । ଝାଇସନ ଯେ ଏ ସମସ୍ତ ଗୌରବ ପାଇଁ ହକଦାର ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଇଲକା ପରେ ଇଲକା, ଗଡ଼ପରେ ଗଡ଼ ଜିଣିଲା ପରେ ଝାଇସନ ୧୦୦୦ କିଲୋମିଟରର ବ୍ୟାସାର୍ଦ୍ଧ ଅଞ୍ଚଳକୁ ନିଜ ଆୟତ୍ତକୁ ଆଣି ପାରିଲେ । ଏଥିପାଇଁ ବିଶେଷ ସମୟର ପ୍ରୟୋଜନ ହୋଇନାହିଁ । ଯେଉଁ ଦରିଦ୍ର କୃଷକ ପ୍ରଜା ଭାବିଥିଲେ ଯେ ଭିଏତନାମ ସବୁଦିନ ପାଇଁ ତାଙ୍କ ସ୍ୱପ୍ନ ରାଜ୍ୟରୁ ମିଳାଇ ଗଲା ଏହି ଘଟଣା ପରେ ସେମାନଙ୍କର ସଂଜ୍ଞା ଫେରି ଆସିଲା । ରୁଦ୍ଧ ନୟନ ଖୋଲି ଦେଖିଲେ ଭିଏତନାମକୁ ସେମାନେ । ଉତ୍ସାହ, ପ୍ରେରଣା, ଉନ୍ମାଦନାରେ ଅନ୍ତର ନାଚି ଉଠିଲା । ଗଣ ବିଦ୍ରୋହର କମ୍ପମାନ ଚକିତେ !! ଶୁଣୁ ଶୁଣୁ ଗଗନ ଶିଖରରେ ଜନସମୁଦ୍ରର ଢେଉ । ଯେ ମୁଅତେ ଉପରେ ମୁହଁ ଲୁଚାଇ ରହିଥିଲେ ସେମାନେ ପରଦା ଠେଲି ପଦାକୁ ବାହାରି ଆସିଲେ । କେବଳ ଗରିବମାନେ ନୁହନ୍ତି — କୃଷକ, ଶ୍ରମିକ, ସ୍ୱେଚ୍ଛାସେବକ, ଶିକ୍ଷିତ, ବୁଦ୍ଧିଜୀବୀ, ଛାତ୍ର, ଆବାଳ ବୃଦ୍ଧବନିତା ରୁଣ୍ଡ ହେଲେ ସେହି ମୁକ୍ତିବାହିନୀର ତଳପାଠିରେ । ଝାଇସନଙ୍କର ସ୍ୱପ୍ନରେ ଥିବା 'ଗଣତାନ୍ତ୍ରିକ' ପ୍ରକାଶ୍ୟ ରୂପ ନେଲା ଯେତେବେଳେ ସେ ଭିଏତନାମର ଶାସନ ଦାୟିତ୍ୱ ନିଜ ମୁଣ୍ଡରେ ବହନ କଲେ ।

କୃଷି, ଶିଳ୍ପ, ବାଣିଜ୍ୟ କ୍ଷେତ୍ରରେ ପ୍ରଗତିବାଦୀ ପଦକ୍ଷେପମାନ ନିଆଗଲା । କିନ୍ତୁ ସାମନ୍ତବାଦୀ ଚେରକୁ କାଟିବା ପାଇଁ ତାଙ୍କର ଏହି ସହଜ ସରଳ ଅର୍ଥ-ନୈତିକ ଭୂମିକା କୌଣସି ଫଳ ଦେଖାଇଲା ନାହିଁ । ସାଧାରଣ ଜନତାର ତୃଷ୍ଣା ସେଥିରେ ମେଣ୍ଟିଲା ନାହିଁ । କ୍ଷୁଧା ଦୂର ହେଲା ନାହିଁ । ଯେଉଁମାନେ ବ୍ୟବସାୟ, ବାଣିଜ୍ୟ କ୍ଷେତ୍ରରେ ଅଗ୍ରଣୀ ଥିଲେ, ଯେଉଁମାନେ ନିଜକୁ ଶିକ୍ଷିତ ବୁଦ୍ଧିଜୀବୀ ବୋଲି ସାମାଜିକ ମହଲରେ ପ୍ରତିଷ୍ଠା ଲାଭ କରିଥିଲେ, ସେମାନେ କୃଷକ ଆନ୍ଦୋଳନର ନେତୃତ୍ୱ ନେଇ ପାରିଲେ ନାହିଁ । ଫଳରେ ସାମନ୍ତବାଦ ବଟବୃକ୍ଷର ମୁଣ୍ଡ ଟେକୁଥିବା ବିଦ୍ରୋହର ଅଙ୍କୁରଗୁଡ଼ିକ ଶୁଖିଯିବାକୁ ଲାଗିଲା । ଉପଯୁକ୍ତ ନେତୃତ୍ୱର ଅଭାବରେ ବୁର୍ଜୁଆ ଶ୍ରେଣୀ ବାଧ୍ୟ ହୋଇ ସାମନ୍ତବାଦୀ ଜାଲରେ ପଡ଼ିଗଲା । ତା' ବ୍ୟତୀତ ସେତେବେଳେ ଅନ୍ୟ ପନ୍ଥା ନଥିଲା । କାରଣ ବୁର୍ଜୁଆ ସମ୍ପ୍ରଦାୟକୁ ଛାଡ଼ି ଦେଲେ ଅନ୍ୟ କେହି ମୁଖ ଖୋଲିପାରୁ ନଥିଲେ । କୃଷକ ସମାଜ ତ ସବୁଦିନେ ଅବହେଳିତ ଓ ଅଶିକ୍ଷିତ । ସାମାଜିକ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ନୈତିକ ବଳ ସେମାନଙ୍କର ନ ଥିଲା । ସଂସାର ସ୍ୱପ୍ନ ଥିଲେ

ଯତ କିନ୍ତୁ ବୈପ୍ଳବିକ ପରିବର୍ତ୍ତନ ପାଇଁ ଯେଉଁ ପୃଷ୍ଠଭୂମିର ଆବଶ୍ୟକତା ଥିଲା ତାହା
ସେମାନେ ପୂରଣ କରି ପାରିଲେ ନାହିଁ । ସଂକ୍ଷେପରେ କହିବାକୁ ଗଲେ ହଠାତ୍
ଏକ ପରିବର୍ତ୍ତନକୁ ଗ୍ରହଣ କରିନେବା ପାଇଁ ସେମାନେ ସମର୍ଥ ନଥିଲେ । ଏହିସବୁ
ଦୁର୍ବଳତା ଓ ଅସ୍ଥିରତାର ସୁଯୋଗ ନେଇ ରାଜତନ୍ତ୍ର ଶାସନର ଗାଦି ଦୃଢ଼ ହେବାକୁ
ଲାଗିଲା । ପୁରୁଣା ଯାଇ ନୂଆ ଶାସନ ଆସିଲା । ପ୍ରଜାମାନଙ୍କର ସାମୟିକ ଉନ୍ନତି
ହେଲା । କିନ୍ତୁ ସେହି ଶୋଷଣ ଅତ୍ୟାଚାରର ସ୍ରୋତ ବୋହି ଚାଲିଲା ସବୁଦିନ
ପାଇଁ । ପ୍ରଜାମୁଖୀ ଶାସନ ପରିବର୍ତ୍ତେ ଜମିଦାରୀ ଶାସନର ଚେର ଗଭୀରକୁ ଚାଲିଗଲା ।
ନୁଏନଙ୍କ ଦ୍ୱାରା ହୁଏତ ଏହି ଗଣ ଆନ୍ଦୋଳନ ସଫଳ ହୋଇ ପାରି ଥାଆନ୍ତା;
କିନ୍ତୁ ସେ ଏହି ଦୁର୍ଦ୍ଦିନରେ ଅକାଳ ମୃତ୍ୟୁ ବରଣ କଲେ । ଭିଏତନାମ ନେତାହୀନ
ହୋଇ ପଡ଼ିଲା । ତାଙ୍କପରେ ତାଙ୍କର ପୁଅ ଓ ପୁତୁରାମାନଙ୍କ ମଧ୍ୟରେ ସବୁବେଳେ
ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଲା । ସେମାନଙ୍କର ବ୍ୟକ୍ତିଗତ ଅଭିଳାଷ ଏତେ ବେଶୀ ଥିଲା ଯେ
ହୁଏନଙ୍କର ପରମ୍ପରା ଉପରେ ପାଦରଖି ସେମାନେ ନିଜ ବାଟରେ ଚାଲିଲେ ।
ଅପର ପକ୍ଷରେ ନିଜ ସ୍ୱାର୍ଥ ପାଇଁ ସୁବିଧା ଦେଖି ଶାସକଗୋଷ୍ଠୀ ସହିତ ସନ୍ଧି ସ୍ଥାପନ
କଲେ । ଟାଇସନଙ୍କର ମଧ୍ୟ ସେହି ସମୟରେ ମୃତ୍ୟୁ ଘଟିଲା । ବିପ୍ଳବର ଅସ୍ତାଚଳରେ
ନବାରୁଣ ବିଦାୟ ନେଲେ ।

ସବୁଦିନେ କଳାବାଦଲ ଆକାଶକୁ ଢାଙ୍କି ରହି ପାରିବ ନାହିଁ । ସବୁଦିନେ
ପୃଥିବୀ ଏ ରାତିର ଭାର ସହିପାରିବ ନାହିଁ । ପୁଣି ପ୍ରଭାତ ଆସିଲା । ନୁଏନ ହୁ,
ଟାଇସନ, ଆସିଲେ ନାହିଁ ସତ । ବିପ୍ଳବ କିନ୍ତୁ ପଥହରା ହୋଇ ଫେରି ଆସିଲା
ନୂତନ ପଥ ପାଇବା ପାଇଁ । ଅଷ୍ଟାଦଶ ଶତାବ୍ଦୀ ଇତିହାସର ଏକ ସ୍ୱର୍ଣ୍ଣ ଯୁଗ ।
ମାନବବାଦୀ ସଭ୍ୟତାର ସୃଷ୍ଟି ପାଇଁ ଏହା ଏକ ନିର୍ଭରଯୋଗ୍ୟ ପ୍ରବେଶ ଦ୍ୱାର ।
ସେହି ସମସ୍ତ ମଧ୍ୟରେ ଭିଏତନାମରେ ଯେପରି ଗଣଚେତନାର ସୃଷ୍ଟି ହୋଇଛି
ମାନବ ଇତିହାସରେ ତାହାର ପଟ୍ଟାନ୍ତର ନାହିଁ । ଏହି ଶତାବ୍ଦୀର ପ୍ରାରମ୍ଭରୁ ଶେଷ
ପର୍ଯ୍ୟନ୍ତ ଯାହା ଯାହା ଘଟି ଯାଇଛି, ତାହା କେବଳ ଭିଏତନାମ କାହିଁକି ସାରା
ବିଶ୍ୱକୁ ବହୁ ଦିଗରୁ ପ୍ରଭାବିତ କରିଛି । କଳା, ସଂସ୍କୃତି, ସାହିତ୍ୟ, ଶିଳ୍ପ
ଉତ୍ପାଦନ ସବୁ କ୍ଷେତ୍ରରେ ଭିଏତନାମ ଉଲ୍ଲେଖଯୋଗ୍ୟ ପ୍ରଗତିର ଅଧିକାରୀ ହୋଇ
ପାରିଛି । ସଂସ୍କୃତିର ସ୍ତର ଏତେ ଉଚ୍ଚକୋଟୀର ଥିଲା ଯେ ଜାତୀୟ ଚେତନା ଓ
ଜନ ଜାଗରଣକୁ ଲୋକପ୍ରିୟ କରାଇବା ପାଇଁ ଲୋକ ସଙ୍ଗୀତର ପ୍ରଚଳନ ଖୁବ୍
ବେଶୀ ଥିଲା । ଜାତୀୟ ସାହିତ୍ୟ, ଉପନ୍ୟାସ, ଗଳ୍ପକୁ ଭିନ୍ନ ଭିନ୍ନ ଭାଷାରେ
ଅନୁବାଦ କରାଯାଇ ସାଧାରଣ ଜନତା ପାଖରେ ପହଞ୍ଚା ଯାଇଥିଲା । ମୂଢ଼ ମାନସକୁ
ଉଦ୍‌ବୁଦ୍ଧ କରାଇବା ନିମନ୍ତେ ନୁଏନ ହୁ ଏକ ଅଭିନବ ପ୍ରଣାଳୀର ଆଶ୍ରୟ ନେଇ-
ଥିଲେ । ପ୍ରେମ କାହାଣୀ ମାଧ୍ୟମରେ, ପ୍ରେମ କବିତା ଆଳରେ ଜାତିପ୍ରେମ, ଜାତି-
ସ୍ୱାର୍ଥ ଓ ସ୍ୱାଧୀନତାକୁ ଏପରି ଏକ ସ୍ଥାନ ଦିଆଯାଇ ଥିଲା ଯେପରି ତାହା ପ୍ରତ୍ୟେକ

ଯୁବ ପ୍ରାଣକୁ ଆନ୍ଦୋଳିତ କରି ପାରୁଥିବ । ସାଂସ୍କୃତିକ ଚେତନାରେ ଏହି ଅଭିନବ ଭାବଦର୍ଶନର ପ୍ରୟୋଗ ଫଳରେ ସମୁଦାୟ ସମାଜର ଚିତ୍ର ମଧ୍ୟ ବଦଳି ଯାଇଥିଲା । ସାମନ୍ତବାଦୀ ଶାସକ କୁଳର ଓ ମହାଜନମାନଙ୍କ ବିରୁଦ୍ଧରେ ବ୍ୟଙ୍ଗ ରଚନା ଓ ଆକ୍ରୋଶମୂଳକ ପ୍ରବନ୍ଧମାନ ପ୍ରକାଶିତ ହେଲା । ନାରୀ କବି ହେ-ହେଙ୍ଗ ନାରୀ ସ୍ୱାଧୀନତା ଦାବୀ କରି ଆଧୁନିକ ସାହିତ୍ୟ ମାଧ୍ୟମରେ ଜନଚେତନା ସୃଷ୍ଟି କଲେ । ଘୁଏନ ଦୁ ନିକେ 'କିଉ' ନାମକ ଏକ ଉପନ୍ୟାସ ରଚନା କରିଥିଲେ । ଊନବିଂଶ ଶତାବ୍ଦୀର ପହିଲି ଭାଗରେ ଏହା ଜନ୍ମ । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ସାମାଜିକ ଜନଜୀବନକୁ ନେଇ ଏହାକୁ ମୁଖ୍ୟତଃ ଲେଖା ଯାଇଥିଲା ।

ଏହା ପରେ ଧୀରେ ଧୀରେ ବୈଜ୍ଞାନିକ ମତବାଦ ଜନ୍ମ ନେଲା । ଡାକ୍ତର, ଐତିହାସିକ, ଦାର୍ଶନିକ, ବୈଜ୍ଞାନିକ ମାନଙ୍କ ଆବିର୍ଭାବ ଫଳରେ ସମାଜ ବ୍ୟବସ୍ଥାର ଚରିତ୍ର ମଧ୍ୟ ଭିନ୍ନ ରୂପ ଧାରଣ କଲା । ବିଭିନ୍ନ ପରିବର୍ତ୍ତନ ଦେଇ ଗତି କରିଥିଲେ ମଧ୍ୟ ଊନବିଂଶ ଶତାବ୍ଦୀ ଯାଏ ସାମନ୍ତବାଦୀ ପ୍ରଭାବ ସମାଜର ପ୍ରତ୍ୟେକ କ୍ଷେତ୍ରରେ ବଜାୟ ରହିଥିଲା । ଝାଇସନ, ଘୁ ଦୁଏନଙ୍କ ପରି ବିପ୍ଳବୀମାନେ ପରିବର୍ତ୍ତନର ଗତିପଥକୁ ଦ୍ରୁତଗାମୀ କରାଇବା ପାଇଁ ବିପୁଳ ସାହାଯ୍ୟ ଅଜାଡ଼ି ଦେଇଥିଲେ ମଧ୍ୟ ପ୍ରଶାସନିକ ଦୁର୍ବଳତାର ସୁଯୋଗ ନେଇ ସାମନ୍ତବାଦୀ ବିଦେଶୀ ଦଲାଲମାନେ ସେମାନଙ୍କର ଆସ୍ଥାନ ଖୁବ୍ ଦୃଢ଼ କରିନେଇ ଥିଲେ । ପ୍ରତି ପର୍ଯ୍ୟାୟରେ ସେମାନେ ଦେଶ ଭିତରୁ ପ୍ରତିବାଦ ପ୍ରତିରୋଧର ସମ୍ମୁଖୀନ ହୋଇଛନ୍ତି । ଏହି ପ୍ରତିବାଦର ସାକ୍ଷୀ ଥିଲେ ସେତେବେଳର କୃଷକ ସମାଜ ।

ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ପୁଞ୍ଜିବାଦୀ ଭାବଧାରା ଏସିଆ ଭୂଖଣ୍ଡରେ ଚହଲ ପକାଇ ଦେଇଛି । ପୁଞ୍ଜିବାଦୀ ଅର୍ଥନୀତିର ବାହ୍ୟ ଚାକଚକ୍ୟ, ଐଶ୍ୱର୍ଯ୍ୟ, ବିଭବର ପ୍ରଲୋଭନ ଦେଖାଇ ଏସିଆ ମହାଦେଶର ଅନେକ ସ୍ଥାନରେ ସେମାନେ ଆସ୍ଥାନ ଜମାଇ ବସିଛନ୍ତି । ତତ୍କାଳୀନ ସମାଜର ଯାହା ଦୁରବସ୍ଥା, ଦୁର୍ବଳତା ସେ ସବୁ ଗୋପନ କାହାଣୀ ବିଦେଶୀ ଶାସକ ମାନଙ୍କୁ ଯୋଗାଇ ଦିଆଯାଇଛି । ଦେଶ ଭିତରେ ଲାଗି ରହିଥିବା ଅନ୍ତର୍ଦ୍ୱନ୍ଦ୍ୱ, ଶାସକ ଗୋଷ୍ଠୀ ମାନଙ୍କର ଗୃହ ବିବାଦ, ସେମାନଙ୍କୁ ଆହୁରି ସୁଯୋଗ ଆଣି ଦେଇଛି । ଭାରତବର୍ଷରେ ଇଂରେଜ ବଣିକ ମାନଙ୍କର ଗରୁଡ଼ ପାଶ୍ଚାତ୍ୟ ଜାତିମାନଙ୍କର ଦେଶଜୟୀ ବଳାସକୁ ତୀବ୍ରତର କରି ତୋଲିଛି । ଭାରତବର୍ଷରେ ସେମାନେ ଉପନିବେଶ ସୃଷ୍ଟିକରି ବ୍ରିଟିଶ ରାଜକୋଷକୁ ସମୃଦ୍ଧ କରିବାରେ ଲାଗିଛନ୍ତି । କେବଳ ସେତିକି ନୁହେଁ ... ଅନେକ ... ଅନେକ ଜାତି, ଅନେକାଧିକ ବିଦେଶୀ ଉପନିବେଶରେ ... ଇଛନ୍ତି । ଭିଏତନାମ ସେଥିମଧ୍ୟରୁ ଅନ୍ୟତମ ହୋଇ ପାରେ । ଏହି ପରିଣତି ହୋ... ।ସିକ ପ୍ରତିଷ୍ଠା ନିକଟରେ ଭିଏତନାମ ମୁଣ୍ଡ ନୁଆଁଇଲା । ଫରାସୀ ବଣି... ଐତିହ... ।ନେ ଭିଏତନାମରେ ନିଜ ବସା ବାନ୍ଧିଲେ । ଏଥିପାଇଁ ଅନ୍ୟ ଉପନିବେଶୀମ... ରଚନା ଓ ଆକ୍ରୋଶମୂଳକ ପ୍ରବନ୍ଧମାନ ପ୍ରକାଶିତ ହେଲା । ନାରୀ କବି ହେ-ହେଙ୍ଗ

କେହି ଦାୟୀ ନୁହଁନ୍ତି । ଦେଶର ଜନତା ଓ ଶାସକଗୋଷ୍ଠୀ, ରାଜା ଓ ପ୍ରଜା ଉଭୟ ଦାୟୀ । ବିଦେଶୀ ଶକ୍ତିଙ୍କୁ ବାଧା ଦେବାପାଇଁ ଜନସାଧାରଣଙ୍କ ନିକଟରେ ଆବଶ୍ୟକୀୟ ଚେତନା, ଜ୍ଞାନର ଅଭାବ ଥିଲା । ଅପରପକ୍ଷରେ ଦେଶୀୟ ରାଜାମାନେ ସେମାନଙ୍କର ଏହି ସାମ୍ରାଜ୍ୟ ଲୋଭକୁ ପ୍ରଜାଙ୍କ ବିରୁଦ୍ଧରେ ମହାନ୍ ଅସ୍ତ୍ର ବୋଲି ଭାବୁଥିଲେ । ଭିଏତନାମ ସହିତ ଆଉ ଯେଉଁ କେତୋଟି ସନ୍ଦେହଦରପମ ରାଷ୍ଟ୍ର ଏସିଆ ମହାଦେଶ ମଧ୍ୟରେ ଥିଲା ସେ ମଧ୍ୟ ବିଦେଶୀ ଶାସନ ଅଧୀନକୁ ଚାଲି ଯାଇଛି । ପଡ଼ୋଶୀ କାମ୍ବୋଡ଼ିଆ, ଲାଓସର ଅବସ୍ଥା ତଦ୍ରୂପର । ଗୋଟିକ ପରେ ଗୋଟିଏ ଧନ୍ତିବାଦର କୁଳଗ୍ରେଟରେ ଟଳି ପଡ଼ିଛନ୍ତି । ବିଦେଶୀ ଉପନିବେଶ-ମାନଙ୍କ ସେତେବେଳେ ଯେଉଁମାନେ ଏହି କାର୍ଯ୍ୟରେ ପ୍ରଭୂତ ସାହାଯ୍ୟ କରିଥିଲେ ସେମାନେ ହେଉଛନ୍ତି ପଶ୍ଚିମା କ୍ୟାଥଲିକ ଖ୍ରୀଷ୍ଟିୟାନ । ଧର୍ମକୁ ମୂଳଭିତ୍ତିକରି ସେମାନେ ପ୍ରଥମେ ସାମାଜିକ ଜୀବନକୁ ବ୍ୟାପ୍ତ କରିବାକୁ ଚାହିଁଲେ । ବାଇବେଲକୁ ବାଓନେଟ୍ କରି ଗରିବ ଦୁର୍ବଳ ଜନତାର ପ୍ରାଣରେ ଭୟ ସଞ୍ଚାର କରାଇଲେ । ପ୍ରଥମରୁ ସେମାନେ ଭିଏତନାମର ଅଧିକାଂଶ ଲୋକଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇ ଦେଲେ । ଫଳରେ ଧର୍ମ ଭୟରେ ସେମାନେ ଖ୍ରୀଷ୍ଟାନ ଧର୍ମଯାଜକମାନଙ୍କୁ ସମର୍ଥନ ଜଣାଇବା ପାଇଁ ବାଧ୍ୟ ହେଲେ । ଧର୍ମାନ୍ତର ପାଇଁ ଫରାସୀମାନେ ଯେ ଭିଏତନାମରେ ମୂଳଧନ ଖଟାଇ ନଥିଲେ ତାହା ନୁହେଁ, କିନ୍ତୁ ଯାହା ସେ ଖର୍ଚ୍ଚ କରିଥିଲେ ତାର ଶତଗୁଣ ଲାଭ ସାଙ୍ଗେ ସାଙ୍ଗେ ଉଠାଇ ନେଉଥିଲେ । ଦରିଦ୍ର ମାନଙ୍କୁ ମୁଠାଏ ଖାଦ୍ୟ, ଖଣ୍ଡିଏ କନା ଯୋଗାଇ ଦେଇ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିଥିଲେ । ଏଥିରେ ବାଧା ଦେବାକୁ କେହି ସାହସ କରି ପାରୁ ନଥିଲେ, କାରଣ ସେତେବେଳେ ଧର୍ମ ଭୟ ପ୍ରବଳ ।

କାହିଁ କେମିତି ବିରୋଧ ପ୍ରକାଶ ପାଉଥିଲା । ଅଷ୍ଟାଦଶ ଶେଷ ବେଳକୁ ଭିଏତନାମରେ ପ୍ରବଳ ଗୃହଯୁଦ୍ଧ ଦେଖାଗଲା । ପ୍ରଜାମାନେ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଭିଏତନାମର ତତ୍କାଳୀନ ଶାସକ ଯୁବରାଜ ନୁଏନଆନ ଅନ୍ୟ ଉପାୟ ନ ଦେଖି ଆତ୍ମରକ୍ଷା ପାଇଁ ଫରାସୀ ପାଦ୍ରୀ ମନସିନର ବେହାଇନଙ୍କର ଶରଣ ଭିକ୍ଷା କଲେ । ପାଦ୍ରୀ ମହାଶୟ ଏହି ସୁଯୋଗକୁ ଚାହିଁ ବସିଥିଲେ । ସମ୍ବାଦ ପାଇଲା ମାତ୍ରେ ୧୭୮୫ରେ ସେ ପ୍ୟାରିସ ଯାଇ ପଞ୍ଚଦଶ ଲୁଇଙ୍କ ସହିତ ଯୁବରାଜଙ୍କର ଗୋପନ ସନ୍ଧିପତ୍ର ସ୍ୱାକ୍ଷର କରିନେଇ ଆସିଲେ । ଆଇନତଃ ଭିଏତନାମ ଆଜି ଫରାସୀ ରାଜଦାଣ୍ଡରେ । ଉପନିବେଶୀମାନେ ପେଡ଼ିପୁଟୁଳା ଧରି ଫ୍ରାନସ ଛାଡ଼ି ଭିଏତନାମ ଆସିଲେ । ଭିଏତନାମର ରାସ୍ତା ସେମାନଙ୍କ ପାଇଁ ପରିଷ୍କାର । ଭିଏତନାମର ମୁକ୍ତଆକାଶ ତଳେ ସେମାନଙ୍କର ଅବାଧ ଗତି । ରାହୁଁ-ରାହୁଁ ପ୍ରତ୍ୟେକ କ୍ଷେତ୍ରରେ ସେମାନେ ଆଧିପତ୍ୟ ବିସ୍ତାର କରିଗଲେ । କୃଷି, ଶିଳ୍ପ, ବାଣିଜ୍ୟର ପରିଚାଳନା ଭାର ସେମାନଙ୍କ ହାତରେ ରହିଲା । କୁଲି, ମଜଦୁର,

ହୋଇ ବେଠି ଖଟିଲେ ଭିଏତନାମୀମାନେ । ଏହି ସନ୍ଧି କିନ୍ତୁ ବେଶୀଦିନ ସ୍ଥାୟୀ ରହିପାରିଲା ନାହିଁ । ଫରାସୀ ରାଷ୍ଟ୍ରବିପ୍ଳବ ପରେ ପ୍ୟାରିସର ନେତୃବୃନ୍ଦ, ଜନନାୟକ, ଶାସକମାନେ ନିଜ ଦେଶର ଅବସ୍ଥା ସମ୍ଭାଳିବାରେ ବ୍ୟସ୍ତ ରହିଲେ । ଏସିଆ ମହାଦେଶ ପ୍ରତି ନଜର ବେଶୀ ରହିଲା ନାହିଁ । ଦୁଇ ପକ୍ଷର ସନ୍ଧିମାନ ଶିଥିଳ ହୋଇ ଆସିଲା । କିନ୍ତୁ ପାଦ୍ରୀମାନେ ମହାଧୂର୍ତ୍ତ । ଫରାସୀ ଅଧିକୃତ ଇଲାକା ଛାଡ଼ି ସେମାନେ ଗଲେ ନାହିଁ । ଫରାସୀ ଅଧିକୃତ ଭାରତୀୟ ଉପନିବେଶମାନଙ୍କରୁ ଯୁବରାଜଙ୍କ ପାଇଁ ସୈନ୍ୟସାମନ୍ତ ବ୍ୟବସ୍ଥା କରିଦେଲେ । ଏହି ସେନାବାହିନୀ ଫ୍ରାନ୍ସ ସରକାରଙ୍କର ବେତନଭୋଗୀ କର୍ମଚାରୀ ହୋଇଥିବାରୁ, ସେମାନେ ପରବର୍ତ୍ତୀ ସମୟରେ ଭିଏତନାମକୁ ସାମ୍ରାଜ୍ୟବାଦୀ ଶିବିର କରିବାରେ ବହୁତ ସାହାଯ୍ୟ କରିଥିଲେ । ୧୮୦୨ରେ ଯୁବରାଜ ନୁଏନ-ଆନ, ଫରାସୀମାନଙ୍କର ଆଶୀର୍ବାଦ ପାଇଁ ଗିଆଲଙ୍ଗର ସିଂହାସନ ଆରୋହଣ କଲେ ।

ଆଗରୁ କୁହାଯାଇଛି, ଦେଶୀୟ ରାଜାମାନଙ୍କର ନୈତିକ ଏବଂ ପ୍ରଶାସନିକ ଦୁର୍ବଳତାର ସୁଯୋଗ ନେଇ ବିଦେଶୀମାନେ ଇଣ୍ଡୋଚୀନ ମଧ୍ୟକୁ ପ୍ରବେଶ କରିଥିଲେ । କାରଣ ସେମାନେ ଏତେ ଭୀରୁ, କାପୁରୁଷ ଥିଲେ ଯେ ଆତ୍ମରକ୍ଷା ପାଇଁ ମଧ୍ୟ ବିଦେଶୀର ଦ୍ୱାରସ୍ଥ ହେଉଥିଲେ । ୧୮୫୮ରେ ଡାନାଙ୍ଗ ଏବଂ ୧୮୫୯ରେ ସାଇଗନ ଫରାସୀ ହାତରେ ପଡ଼ିଲା । ଅନାଗତ ଭବିଷ୍ୟତକୁ ଚାହିଁ ଚାହିଁ ସାଇଗନ ସୁନ୍ଦରୀ ବନ୍ଦୀ କୋଠରୀରେ ଆତ୍ମଗୋପନ କଲା । ଏହିପରି ଦୀର୍ଘ ୨୫ ବର୍ଷ ଫରାସୀମାନେ ଦେଖିଲେ ଯେଉଁମାନଙ୍କର ପ୍ରତ୍ୟକ୍ଷ ସହାୟତା ଓ ଦକ୍ଷତା ଫଳରେ ସେମାନେ ଏହି ଅଯାଚିତ ରାଜଭୋଗର ଅଧିକାରୀ ହୋଇ ପାରିଲେ ସେହି କ୍ୟାଥଲିକ ପାଦ୍ରୀମାନଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିବ । କାରଣ ସେମାନେ ମଧ୍ୟ ରାଜ୍ୟରୁ ଅଧେ ଭାଗ ଚାହୁଁଥିଲେ । ପାଦ୍ରୀମାନଙ୍କ ହାତରେ ରଖିବା ପାଇଁ ଫରାସୀ ସେନାବାହିନୀ ଭିଏତନାମ ରାଜବଂଶକୁ ସ୍ୱେଚ୍ଛାରେ କିଛି ଅଞ୍ଚଳ ଦାନ ସ୍ୱରୂପ ପାଦ୍ରୀଙ୍କ ହାତରେ ଛାଡ଼ି ଦେବା ପାଇଁ ବାଧ୍ୟ କରାଇଲେ । କିନ୍ତୁ ପରବର୍ତ୍ତୀ କାଳରେ ଦେଖାଗଲା ସେମାନେ ଆଉ ଆପୋଷ, ଆଲୋଚନା ବା ସନ୍ଧି ମଧ୍ୟରେ ଆବଦ୍ଧ ନାହାନ୍ତି । ମନମୁଖୀ ଭାବେ ଭିଏତନାମର ଅନ୍ୟାନ୍ୟ ଅଞ୍ଚଳକୁ ମାଡ଼ି ବସିଛନ୍ତି । ସେଠାରେ ନିଜର ସ୍ୱତନ୍ତ୍ର ସମାଜ, ସାମାଜିକ ବ୍ୟବସ୍ଥା, ସ୍ୱତନ୍ତ୍ର ପରିବେଶ । ନିଜକୁ ସୁହାଇଲା ଭଳି ଅନୁକୂଳ ଅବସ୍ଥା ସୃଷ୍ଟି କରି ସାରିଛନ୍ତି । ୧୮୮୪ ପର୍ଯ୍ୟନ୍ତ ଏହିପରି ଭାବରେ ଚାଲିଲା । ହୁ ରାଜବଂଶ ସମ୍ପୂର୍ଣ୍ଣ ଭାବେ ଫରାସୀ ମାନଙ୍କ ନିକଟରେ ଆତ୍ମସମର୍ପଣ କରି ସାରିଥାନ୍ତି । ସାମାନ୍ୟତମ ନିଜର ସ୍ୱାର୍ଥ ପାଇଁ ସେମାନେ ପାରମ୍ପରିକ ରୀତିରେ ଚାଲିଆସୁଥିବା ସାମନ୍ତବାଦୀ ଶାସନତନ୍ତ୍ରକୁ ସାମ୍ରାଜ୍ୟବାଦୀ ଫରାସୀମାନଙ୍କ ହାତରେ ଟେକିଦେଲେ । ସାମନ୍ତବାଦର ମୃତ୍ୟୁ ଓ ପୁଞ୍ଜିବାଦର ଜନ୍ମ ଏହି ଦୁଇ ବିବଦମାନ ସତ୍ୟର ସନ୍ଧିକ୍ଷଣରେ ରାଜପରିବାର ବା ଜମିଦାରମାନେ ନିଜ ଜୀବନ ଭୟରେ ସାମ୍ରାଜ୍ୟବାଦୀ ଗୋଷ୍ଠୀ

ସହିତ ହାତ ମିଳାଇବାକୁ ବାଧ୍ୟ ହେଲେ । ସାଧାରଣ ପ୍ରଜାର ଅବସ୍ଥା ସୁଧୁରିଲ ନାହିଁ । ଅଧିକନ୍ତୁ ଆଗରୁ ଚାଲି ଆସୁଥିବା ସାମନ୍ତବାଦୀ ଅତ୍ୟାଚାରର ସହିତ ନୂତନ ରୂପରେ ଦେଖାଦେଇଥିବା ପୁଂଜିବାଦୀ ଶୋଷଣ ବେଷ୍ଟନୀରେ ବାନ୍ଧିହୋଇ ପଡ଼ିଲେ । ଦୁଇପଟରୁ ସେମାନଙ୍କର ଜୀବନ ସଙ୍କଟାପନ୍ନ ହେଲା । ରାଜଦରବାର ନିଜ ସ୍ୱାର୍ଥ ପାଇଁ ଦେଶକୁ ବିଦେଶୀ ହାତରେ ଜଳାଞ୍ଜଳି ଦେଲେ ସିନା, ହେଲେ ଜନ-ସାଧାରଣ ଫରାସୀ ମାନଙ୍କର ଏହି ଅବାଞ୍ଛିତ ଅନୁପ୍ରବେଶକୁ ବରଦାସ୍ତ କରି ପାରୁ ନଥିଲେ । ନିଜ ସମ୍ପତ୍ତିକୁ କରଗତ କରିବାକୁ କିଏ ବା ଇଚ୍ଛା କରେ !! ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଘନୀଭୂତ ହେବାକୁ ଲାଗିଲା । କୃଷକମାନଙ୍କ ସହିତ ମେଣ୍ଟ ବାନ୍ଧିଲେ ଦେଶଭକ୍ତ, ବୁଦ୍ଧିଜୀବୀ, ଗ୍ରେଟ ବ୍ୟବସାୟୀ. ଶ୍ରମିକ, ମଜଦୁର ଏବଂ ରାଜଦରବାରରେ ଟିକିଏ ଖଟୁଥିବା କର୍ମଚାରୀଗଣ, ମୌଖିକ ନ ହେଲେ ମଧ୍ୟ ଆନ୍ତରିକ ସମର୍ଥନ ଜଣାଇଲେ । ୧୮୬୨ ମସିହାରେ ଏହି ବିଭିନ୍ନ ଗୋଷ୍ଠୀ ମାନଙ୍କୁ ନେଇ ଏକ "ମିଳିତ ପ୍ରତିରୋଧୀ ମେଣ୍ଟ" ଗଠନ କରାଗଲା । ଏହି ସାମ୍ମୁଖ୍ୟ ଖୁବ୍ କମ୍ ସମୟ ମଧ୍ୟରେ ଗାଁ ଗହଳରେ ଲୋକପ୍ରିୟତା ଅର୍ଜନ କରି ପାରିଲା । ଆଗରୁ ଯେଉଁ ଗରିଲାମାନେ ସଙ୍ଗଠିତ ହୋଇଥିଲେ କିନ୍ତୁ ଅନୁକୂଳ ଅବସ୍ଥା ନ ପାଇ ଧିମେଇ ପଡ଼ିଥିଲେ ସେମାନେ ମଧ୍ୟ ଏଥିରେ ଯୋଗଦେଲେ । ଦରବାରୀ ଶାସନ ପ୍ରତି ସେମାନେ ଯେତେ ବେଶୀ ବିରୋଧୀ ନ ଥିଲେ ଫରାସୀ ବିଦେଶୀମାନଙ୍କ ପ୍ରତି ସେମାନଙ୍କ ଅନ୍ତରରେ ତୀବ୍ର ଘୃଣା, କ୍ରୋଧ ଓ ପ୍ରତିଶୋଧର ଭାବ ପୁରି ରହିଥିଲା । କାରଣ ଉପନିବେଶୀ ଶାସନ କାଳରେ ସେମାନଙ୍କୁ ଘରଡିହ, ଭିଟାମାଟି ହରାଇବାକୁ ପଡ଼ିଲା । ବଣଜଙ୍ଗଲରେ ଅଭୁକ୍ତ ପଶୁଭଳି ଦିନ କାଟିବାକୁ ହେଲା ।

ପାଲ୍ଭିଡ. ଲ ବ୍ୟାରିଅର ନାମକ ଜଣେ ଫରାସୀ ପ୍ରତ୍ୟକ୍ଷଦର୍ଶୀ ଭିଏତନାମର ଏହି ଜନବିପ୍ଳବର ଜୁଆର ଦେଖି ଲେଖିଥିଲେ: "ମନେ ହେଉଥିଲା ଜାଗରଣର ସ୍ରୋତ ସତେ ଯେପରି ଏ ମାଟିରୁ ଉଦ୍‌ଗତ ଏକ ସ୍ରୋତସ୍ୱିନୀ ଝରଣା । ଯାହାର ପ୍ରତିବନ୍ଧ ପ୍ରତିରୋଧର ପ୍ରଖର ଗତି ନେଇ ମାଡ଼ି ଚାଲିଛି ଯୋଜନଯୋଜନ ଦୂରକୁ... ଯେଉଁଠାରେ ଭିଏତନାମୀ ସ୍ୱାଧୀନତା ନୟନରେ ଗ୍ରନ୍ଥି ରହିଛି । କୋଟି କୋଟି ଆନାମୀର ପାଦଦେଶରେ ବଧାଇ ଜଣାଉଛି ଏହି ଗିରିକନ୍ୟା । ପ୍ରତି କୃଷକର ଶସ୍ୟକ୍ଷେତ୍ରରୁ ଭାସି ଆସୁଛି ବିଦ୍ରୋହର ଆହ୍ୱାନ ।"

ଗଣ ସାମ୍ମୁଖ୍ୟର ଅସଂଖ୍ୟ ଯୋଦ୍ଧା ଟଳି ପଡ଼ିଲେ ରଣାଙ୍ଗନରେ । କିନ୍ତୁ ଅମର ମୁକ୍ତି ସଂଗ୍ରାମର ଶେଷ ନାହିଁ କେବେ । ଗୁଏନ ଡିନ୍ ଚିଉ ନାମକ ଜଣେ ଦେଶବତ୍ସଳ ଲେଖକ ଶହୀଦମାନଙ୍କ ଉଦ୍ଦେଶ୍ୟରେ ୧୮୬୧ ମସିହାରେ ଲେଖିଥିଲେ । "ସେମାନେ ଯୁଦ୍ଧ ବ୍ୟବସାୟୀ ନଥିଲେ ଯେ ଯୁଦ୍ଧକୁ ନେଇ ବେପାର କରି ଥାଆନ୍ତେ । ନିପଟ ମଫସଲର ସାଧାରଣ କୃଷକ ସେମାନେ । ପିତୃଭୂମି ପ୍ରତି ଅତୁଟ ଆସ୍ଥା ପାଇଁ ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଯୁଦ୍ଧକୁ ଓହ୍ଲାଇ ଆସିଛନ୍ତି । ସାମରିକ

ପୋଷାକ କାଢ଼ିଲେ ତାଙ୍କ ଦେହରେ ଯାଉଥିଆ ବଗଡ଼ା କନା । ସେମାନେ କେବେ ଘୁଳକାରୁଦ ଗୁନ୍ଧି ନାହାନ୍ତି । ଅସ୍ତ୍ର ବୁଝାଇଲେ ବାଉଁଶ ଛଆଳ ଧନୁଶର । ଖଣ୍ଡା, ଶିରସ୍ତ୍ରାଣ କେବେ ସେମାନଙ୍କର ଦରକାର ପଡ଼େ ନାହିଁ । ଆଗନ କାନୁନ କମ୍ପୁ ସଙ୍ଗୀନ ମୂନକୁ ଭୟ ନକରି ସେମାନେ ଆଗକୁ ମାଡ଼ି ଚାଲିଛନ୍ତି । ଶତ୍ରୁ ଶିବିରର ମୁଖ୍ୟ ଦ୍ୱାର ଦେଶକୁ ଅବରୋଧ କରୁଛନ୍ତି । ପ୍ରଚଣ୍ଡରୋଷରେ ମଦାନ୍ଧୋନ୍ମତ୍ତ ଶତ୍ରୁ ସେନାମାନଙ୍କୁ ଭୟ ତ୍ରାସ ନେଇଛି । ବିଜୟ କୋଳାହଳରେ ଭୈରବନାଦର ବନଭୂମି ପ୍ରକମ୍ପିତ । ବିଦେଶୀ କମାଣର ଧ୍ୱନି ଥର ଥର ମିଳେଇ ଯାଉଛି ଅନନ୍ତ ଆକାଶରେ......... ।”

ବିଦ୍ରୋହର ଚାରା ବେଶୀ ଦିନ ରହି ପାରିଲା ନାହିଁ । ଶତାବ୍ଦୀ ଶତାବ୍ଦୀ ଧରି ଯେଉଁ ରାଜା, ରାଜଦରବାର ଦେଶ ଶାସନ କରୁଥିଲେ ଯାହାଙ୍କୁ ସାଧାରଣ ଲୋକେ ହର୍ତ୍ତା କର୍ତ୍ତା ବୋଲି ଭାବୁଥିଲେ, ସେମାନଙ୍କର ଆତ୍ମସମର୍ପଣ ପରେ ଲୋକଙ୍କର ମନବଳ ଚୂର୍ଣ୍ଣ ପଡ଼ିଲା । ଉପଯୁକ୍ତ ନେତୃତ୍ୱ ଏବଂ ଯୋଗାଯୋଗର ଅଭାବରୁ ବିଦ୍ରୋହର ଜୁଆରରେ ଭଟ୍ଟା ପଡ଼ିଗଲା । ସେତେବେଳେ ବିଦେଶୀମାନଙ୍କୁ ସାମନା କରିବା ପାଇଁ ସାମର୍ଥ୍ୟ ଥିଲା କେବଳ ରାଜାମାନଙ୍କର, ରାଜପରିବାରର । ସେମାନେ ଯେତେବେଳେ ନିଜ ସ୍ୱାର୍ଥ ପାଇଁ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିଦେଲେ ସେତେବେଳେ ଜନ ଅସନ୍ତୋଷର ନେତୃତ୍ୱ ନେବ କିଏ ? ୧୮୮୪ରେ ଦେଶୀୟ ରାଜଦରବାର ବିଦେଶୀ ହାତକୁ ଚାଲିଗଲା । ଦେଶଭକ୍ତ ଜନତା ସହ୍ୟ କରିପାରିଲେ ନାହିଁ ଏହି ପରାଜୟକୁ । ବିଦ୍ରୋହୀ ଯୋଦ୍ଧା, ବୁଦ୍ଧିଜୀବୀ ଗୁରୁମାନଙ୍କୁ ନେଇ ଦେଶର ମୁଖ୍ୟ ସ୍ଥାନ ମାନଙ୍କରେ ଆନ୍ଦୋଳନକୁ ବଞ୍ଚାଇ ରଖିବାକୁ ଚାହିଁଲେ । କିନ୍ତୁ ଆବଶ୍ୟକୀୟ ପରିମାଣର ଅସ୍ତ୍ର ଶସ୍ତ୍ର ସେମାନଙ୍କର ନଥିଲା । ଅପର ପକ୍ଷରେ ବିଦ୍ରୋହକୁ ଏକ ସଂଘବଦ୍ଧ ଗଣତାନ୍ତ୍ରିକ ରୂପ ଦେବା ପାଇଁ ଯେଉଁ କୌଶଳର ପ୍ରୟୋଜନ ଥିଲା ତାହା ମଧ୍ୟ ପୂରଣ ହୋଇ ପାରିଲା ନାହିଁ । କନଫ୍ୟୁସିଅସ ଧର୍ମ ଏବଂ ରାଜବଂଶକୁ ଫେରାଇ ଆଣିବା ନିମନ୍ତେ ନେତାମାନଙ୍କ ତରଫରୁ ଯେଉଁ ଉଦ୍ୟମ ପ୍ରକାଶ ପାଉଥିଲା ତାହାକୁ କୃଷକ, ବିଶେଷକରି ଯୁବକମାନେ, ଗ୍ରହଣ କରି ପାରୁ ନଥିଲେ । କାରଣ ସେମାନେ ଆଉ ଇତିହାସର ପଛକୁ ଫେରି ଯିବାକୁ ଚାହାନ୍ତି ନାହିଁ । ୧୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଯେତେସବୁ ଗଣ ବିଦ୍ରୋହ ସଂଗଠିତ ହୋଇଥିଲା ସେ ସମସ୍ତ ଅନ୍ତର୍ନିହିତ ଦ୍ୱନ୍ଦ୍ୱ, ଦୁର୍ବଳତାକୁ ଏଡ଼ାଇ ପାରିନଥିବାରୁ ଅକାଳରେ ମୃତ୍ୟୁ ବରଣ କରିଛି ।

୧୯୦୦ ଖ୍ରୀଃ ପରେ ସାମ୍ରାଜ୍ୟବାଦୀ ଶକ୍ତି ଦେଖିଲା ତାର ମହୌଷଧି ଏସିଆ ମହାଦେଶରେ ଖୁବ୍ ଫଳ ଦେଖାଇଛି । ଅତ୍ୟାଚାର ଓ ଦମନ ଭୟରେ ଗରିଲା ବାହିନୀମାନ ପାହାଡ଼ୀ ଗୁମ୍ଫାରେ ମୁହଁ ଲୁଚାଇ ଦେଇଛନ୍ତି । ପ୍ରାଚ୍ୟ ଇଲାକାରେ ସେମାନେ ବର୍ତ୍ତମାନ ଅପ୍ରତିଦ୍ୱନ୍ଦ୍ୱୀ ମାଲିକ । ନୂତନ ରୂପରେ

ଉପନିବେଶୀ ଶୋଷଣ ବଢ଼ି ବଢ଼ି ଚାଲିଛି । ଦ୍ୱାତଗଣିଦେଲପଣ କେତୋଟି ଘରୋଇ କମ୍ପାନୀ ଭିଏତନାମ ସଂପତ୍ତିକୁ ଅଧିକାର କରି ବସିଛନ୍ତି । ସେମାନଙ୍କ ତରଫରୁ ରାଜକର୍ମଚାରୀମାନଙ୍କୁ ଟିକସ ଆଦାୟ ନିମନ୍ତେ ନିଯୁକ୍ତ କରାଯାଇଛି । ଟିକସର ବୋଝ ନିଃସ୍ୱ ଦରିଦ୍ର ପ୍ରଜାଙ୍କ ଉପରେ ଜବରଦସ୍ତି ଲଦି ଦିଆଯାଇଛି । ଯେଉଁ କେତୋଟି ଦେଶଦ୍ରୋହୀ ଦଲାଲ ବିଦେଶୀମାନଙ୍କ ତରଫରୁ ଟିକସ ବା ଖଜଣା ଆଦାୟର ଦାୟିତ୍ୱ ବହନ କରନ୍ତି ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ସୁଯୋଗ ମିଳିଛି । ନିଜର ଏକେଣ୍ଟିକକ ସ୍ୱାର୍ଥ ପାଇଁ ସେମାନେ ନିଜ ଭାଇ ବେକରେ ଛୁରୀ ଦେବା ପାଇଁ ପଛାଇ ନାହାନ୍ତି ।

ନିଜ ଜାତି, ସମାଜ ଓ ଦେଶ ମଧ୍ୟରେ ଏହି ଅନ୍ତର୍ଘାତୀ କାର୍ଯ୍ୟକଳାପ ଭିଏତନାମୀଙ୍କୁ ସ୍ୱଭାବତଃ ବିଦ୍ରୋହୀ କରି ଗଢ଼ି ତୋଳିବା ପାଇଁ ଅସୀମ ପ୍ରେରଣା ଯୋଗାଇଛି । ଯେଉଁ ଭିଏତନାମ ନିଜ ଇତିହାସର ଆଦିପର୍ବରେ ଏକତା ଓ ସଂହତିର ଜ୍ୱଳନ୍ତ ପ୍ରମାଣ ଥିଲା, ତାହା ଆଜି ଘଟଣାଚକ୍ରରେ ଦ୍ୱିଖଣ୍ଡିତ । ଶ୍ରେଣୀ ଶ୍ରେଣୀ ମଧ୍ୟରେ, ଜାତି ଜାତି ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବିରାଟ ପ୍ରାଚୀର ଦଣ୍ଡାୟମାନ । ଗୋଟିଏ ପଟରେ ସାମ୍ରାଜ୍ୟବାଦର, ପୁଂଜିବାଦର, ଜାଗ୍ରତ ପ୍ରହରୀ ଫରାସୀ ଉପନିବେଶୀ ଏବଂ ତାଙ୍କୁ ଦେଶ ମଧ୍ୟରେ ଥାଇ ସାହାଯ୍ୟ କରୁଥିବା ସାମନ୍ତବାଦୀ ଜମିଦାର ରାଜନ୍ୟବର୍ଗ ଓ ସେନାବାହିନୀ ଏବଂ ସରକାରୀ କର୍ମଚାରୀ । ଅନ୍ୟ ପଟରେ ଭିଏତନାମର ଅନନୁମେୟ ମୁକ୍ତିପିପାସୁ ଜନସାଧାରଣ । ବିଦେଶୀ-ମାନଙ୍କୁ ଦେଶରୁ ତଡ଼ିବା ସଙ୍ଗେ ସଙ୍ଗେ ଦେଶଦ୍ରୋହୀ ଗୋଲାମମାନଙ୍କୁ ନିପାତ କରିବା ସେମାନଙ୍କର ମୂଳ ଉଦ୍ଦେଶ୍ୟ । ଗଣତନ୍ତ୍ର ଓ ଉନ୍ନୟନର ଭିତ୍ତି ଉପରେ ଏକ ମୁକ୍ତ, ସ୍ୱାଧୀନ ସମାଜ ନିର୍ମାଣ କରିବା ସେମାନଙ୍କର ଲକ୍ଷ୍ୟ । ଏହି ସ୍ୱପ୍ନକୁ ବାସ୍ତବ ରୂପ ଦେବା ପାଇଁ ଜାତୀୟ ସ୍ତରରେ ଆନ୍ଦୋଳନ ଅପରିହାର୍ଯ୍ୟ । ବିପ୍ଳବର ପ୍ରଥମ ପର୍ଯ୍ୟାୟରେ ଏହା ମୁଖ୍ୟତଃ ଜାତୀୟତାବାଦୀ ଏବଂ ଗଣତାନ୍ତ୍ରିକ ହେବା ଉଚିତ । କିନ୍ତୁ କିଏ ଏହି ଗଣତାନ୍ତ୍ରିକ ଜାତୀୟତାବାଦୀ ସଂଗ୍ରାମକୁ ଠିକଣା ବାଟରେ ଆଗେଇ ନେବ ? ସମାଜର କେଉଁ କେଉଁ ଶ୍ରେଣୀ ସ୍ୱାଧୀନତା ଓ ପ୍ରଗତିର ମହାଜୈଫକୁ ତୋଳି ଧରିବ ? ସେମାନେ କିଏ ?

ଉପନିବେଶୀ ଶାସନର ଲକ୍ଷଣ—ଦେଶକୁ ବିଭେଦଗ୍ରସ୍ତ କରି ନ ପାରିଲେ ସେମାନଙ୍କର ସ୍ୱାର୍ଥ ବଜାୟ ରହି ପାରିବ ନାହିଁ । ତେଣୁ ଫରାସୀ ଶାସନ ପ୍ରତିଷ୍ଠା ପରେ ପରେ ଭିଏତନାମରେ ନୂତନ ଶ୍ରେଣୀ ବିଭାଗ ଜନ୍ମ ନେଲା—ଶ୍ରମିକଶ୍ରେଣୀ ଓ ବୁର୍ଜ୍ଜୁଆ ବା ଶୋଷକଶ୍ରେଣୀ । ଭିଏତନାମ ଶ୍ରମିକଶ୍ରେଣୀର ଚରିତ୍ର ସାଧାରଣ ଶ୍ରମଜୀବୀର ତାତ୍ତ୍ୱିକ ଚରିତ୍ରଠାରୁ ଭିନ୍ନ ଥିଲା । କାରଣ ଶୋଷଣବାଦୀ ସାମ୍ରାଜ୍ୟ ପ୍ରତିଷ୍ଠାର ବହୁପୂର୍ବରୁ ଏହି ଶ୍ରେଣୀ ଭିଏତନାମରେ ମୁଣ୍ଡଟେକି ସାରିଥିଲା । ପୁଂଜିପତି ଶ୍ରେଣୀର ପ୍ରବେଶ ତାର ବହୁତ ପରେ । ତେଣୁ ସେମାନେ ଯେତେବେଳେ

ଶିଳ୍ପର ସ୍ୱାତନ୍ତ୍ର୍ୟ ହରାଇ ରବର ବଗିଚ୍ଛ, ରେଳ ଧାରଣା ନିର୍ମାଣ, କଳକାରଖାନା, ଖଣି ଖାଦାନରେ ନିର୍ଯ୍ୟାତିତ ହେଲେ, ତାଙ୍କ ପ୍ରାଣ ସ୍ୱତଃ ବିଦ୍ରୋହ କରି ଉଠିଲା । କୋଶମାନା ଓ ଅନ୍ୟାନ୍ୟ କାରଖାନାରେ ସେମାନେ ସଢ଼ି ଯାଉଥିଲେ । ତେଣୁ ସମାଜରେ ଥିବା ଅନ୍ୟ ଶ୍ରେଣୀମାନଙ୍କଠାରୁ ସେମାନେ ସର୍ବପ୍ରଥମେ ଏହି ଯାତନା, ଶୋଷଣ ଓ ଅନ୍ୟାୟ ବିରୁଦ୍ଧରେ ସଚେତନ ହୋଇ ଉଠିଲେ । ଆଧୁନିକ ଦୁନିଆର ଯାନ୍ତ୍ରିକ ପ୍ରଗତି ସେମାନଙ୍କୁ ଏହି ଦିଗରେ ଅଂହୁଜ କର୍ମଚଞ୍ଚଳ କରିଦେଲା । ଜନ୍ମ କୃତ୍ରିମ ବେକାରି, ବାଧ୍ୟତାମୂଳକ ଛଟେଇ ଫଳରେ ଶ୍ରମିକମାନଙ୍କୁ ଗାଁଭୂଇଁକୁ ଫେରିଯିବାକୁ ହେଲା । ଯେଉଁମାନେ ଗାଁଗଣ୍ଡାରେ ରହି ଚାଷବାସ କରି ଚଳି ଯାଉଥିଲେ, ନାହିଁ ନ ଥିବା ଦୁର୍ଭିକ୍ଷ ଓ ବନ୍ୟାଯୋଗୁଁ ସେମାନେ ଗାଁଗଣ୍ଡା ଛାଡ଼ି ସହରକୁ ପଳାଇ ଆସିଲେ । ଉଭୟ ଶ୍ରେଣୀର ଅର୍ଥନୈତିକ ଶୋଷଣ ଓ ସାମାଜିକ ସ୍ଥିତିହୀନତା ସେମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ସମ୍ପର୍କକୁ ଆହୁରି ଦୃଢ଼ୀଭୂତ ଓ ନିକଟତର କରାଇ ଆଣିଲା । ବିଶେଷ କରି ଯେଉଁ ଅଞ୍ଚଳର କୃଷକମାନେ ଶୋଷଣ ଭାରରେ ଜର୍ଜରିତ ହୋଇ ପଡ଼ିଥିଲେ, ସେମାନଙ୍କର ସମ୍ପର୍କ ଅପେକ୍ଷାକୃତ ନିବିଡ଼ ଓ ଜୋରଦାର ଥିଲା । ଅସନ୍ତୋଷ ମଧ୍ୟରୁ ଏକତାର ଜନ୍ମ । ବିଦ୍ରୋହ ମଧ୍ୟରୁ ଆଦର୍ଶର ସୃଷ୍ଟି । ବନ୍ଦର ଅଞ୍ଚଳରେ କୁଲିଗିରି କରୁଥିବା ଦୀନ ମଜଦୁରମାନଙ୍କର ଅବସ୍ଥା ମଧ୍ୟ ସେହିପରି । ହେକ ଉପବାସରେ ଅନେକ ସମୟ କଟିବାକୁ ପଡ଼ୁଥିଲା । ସମ୍ବଳହୀନ, ସ୍ଥିତିହୀନ ଏହି ଶ୍ରମିକ ବାସ୍ତୁହରା ଜାତିକୁ ଏକତ୍ରିତ କରି ପାରିଲା ସେମାନଙ୍କ ମଧ୍ୟରେ ଥିବା ମୌଳିକ ଅସନ୍ତୋଷ, ଅଭାବ ଓ ଦାରିଦ୍ର୍ୟ । ଜାତିଗତ କାରଣରୁ ସେମାନେ ଏକାଠି ହେବା ପାଇଁ ବାଧ୍ୟ ହେଲେ । କାରଣ ଯାହା ବ୍ୟକ୍ତିଗତ ଭାବେ କରିହୁଏ ନାହିଁ ସଙ୍ଘବଦ୍ଧ ଭାବେ ତାର ସମ୍ଭାବନା ଉଜ୍ଜ୍ୱଳ । ଚୂଲିଚୂଲିର ସ୍ଥାୟୀ ବ୍ୟବସ୍ଥା କରିବା ନିମନ୍ତେ ସହର ମଫସଲର କୃଷକ ଶ୍ରମିକ ସଙ୍ଗଠନ ଗଢ଼ି ଉଠିଲା । ଗ୍ରାମାଞ୍ଚଳରେ ଥିବା ଘରୋଇ ଶିଳ୍ପ ବହୁତ ଆଗରୁ ଧ୍ୱଂସ ପାଇ ସାରିଥିଲା । ତାର କବର ଉପରେ ଗଢ଼ି ଉଠିଥିଲା ଫରାସୀ କମ୍ପାନୀମାନଙ୍କର ବୃହତ୍ ଅଟ୍ଟାଳିକା । କୃଷକମାନଙ୍କ କ୍ଷେତ ବାଡ଼ି ଉପରେ ଫଳୁଥିଲା ଫରାସୀ ରାଜକୋଷର ଶସ୍ୟଭଣ୍ଡାର । କେବଳ ଟିକସର ବୋଝ ବୋହିବା ପାଇଁ ଭିଏତନାମୀମାନଙ୍କୁ ଯେମିତି କି ବଞ୍ଚାଇ ରଖାହୋଇଥିଲା । କ୍ରୀତଦାସ ପରି ବଞ୍ଚି ରହିବା ସେମାନଙ୍କର ଥିଲା ଜୀବିକା । ସ୍ୱାଧିକାରର ମୃତ୍ୟୁରେ ସ୍ୱାଭିମାନର ସମାଧି ଦିଆହୁଏ । ବୃଷ୍ଟୀ, ଶ୍ରମିକମାନଙ୍କର କାମ କରିବାର ଶକ୍ତି ଉତ୍ସାହ କମିଗଲା । କାହାପାଇଁ, କି ସ୍ୱାର୍ଥପାଇଁ ମୁଣ୍ଡଝାଳ ତୁଣ୍ଡରେ ଦେଇ ବେଠି ଖଟିଆସୁଛନ୍ତି ?? ନିଜ ପାଇଁ ? ପୁଅ ନାତିଙ୍କ ପାଇଁ ? ଆଗାମୀ ଯୁଗର ବଂଶଧରଙ୍କ ପାଇଁ ନା କେଉଁ ଦରିଆପାରିରୁ ଉଡ଼ି ଆସିଥିବା ଶାଗୁଣା ଦଳ ପାଇଁ ? ପୃଥିବୀ ଇତିହାସରେ କୃଷି ଉତ୍ପାଦନ ପାଇଁ ନାମକରା ଭିଏତନାମ ବହୁତ ତଳକୁ ଖସି ଆସିଲା । କୃଷି ସହିତ ଶିଳ୍ପ, ବାଣିଜ୍ୟ, ସ୍ୱଦେଶୀ ଉତ୍ପାଦନ ସମୂଳେ ନଷ୍ଟ

ହୋଇଗଲା । ଉପନିବେଶବାଦର କୁପ୍ରଭାବ ଇତିହାସର ପୃଷ୍ଠାକୁ ମାଡ଼ି ଚାଲିଲା । ୧୯୦୦ରେ ମୁଣ୍ଡପିଛା ଚାଉଳର ବ୍ୟୟ ୨୭୨ କିଲୋଗ୍ରାମ ଥିବାବେଳେ ୧୯୩୭ରେ ମୁଣ୍ଡପିଛା ଚାଉଳ ୧୮୨ କିଲୋଗ୍ରାମକୁ ଖସିଆସିଲା । ଉତ୍ପାଦନ ତୁଳନାରେ ଜନସଂଖ୍ୟା ଦ୍ରୁତ ବଢ଼ି ଚାଲିଲା । ତା ସହିତ ତାଳ ଦେଇ ବଢ଼ି ଚାଲିଥିଲା ଧନୀ ଦରିଦ୍ରର ପାର୍ଥକ୍ୟ, ଅର୍ଥନୈତିକ ବୈଷମ୍ୟ । ଧନୀ ଜମିଦାରମାନେ ସେତେବେଳେ ବିଳାସ ସାମଗ୍ରୀ ଆମଦାନୀ କରିବା ପାଇଁ ଉପନିବେଶରୁ ଉତ୍ପନ୍ନ ଚାଉଳକୁ ବାହାରକୁ ରପ୍ତାନି କରୁଥିଲେ । ଏହି ଖାଦ୍ୟ ସଂକଟରେ ଦେଶର କୋଟି କୋଟି ଜନତା ମୁଠାଏ ଖାଇବାକୁ ନ ପାଇ ଅକାଳ ମୃତ୍ୟୁ ବରଣ କଲେ । ଏପରିକି ସହରାଞ୍ଚଳର ଶ୍ରେଷ୍ଠ ବ୍ୟବସାୟୀ, ସ୍ୱଳ୍ପ ବେତନଭୋଗୀ କର୍ମଚାରୀ, ନିମ୍ନବିତ୍ତ ଚାଷୀମାନଙ୍କର ଦୁରବସ୍ଥା କହିଲେ ନ ସରେ । ଦେଶୀୟ ଶିଳ୍ପମାନଙ୍କରେ ତାଲା ପଡ଼ିଥିବାରୁ ଏହି ବେକାର ଲୋକମାନଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତ ଦିଆଯାଇ ପାରୁ ନ ଥିଲା । ସର୍ବୋପରି ଉପନିବେଶର ଅର୍ଥନୀତି ଫରାସୀ କମ୍ପାନୀମାନଙ୍କର ସମ୍ପୂର୍ଣ୍ଣ ନିୟନ୍ତ୍ରଣାଧୀନ ଥିଲା । ପୁଂଜିପତି ମାନଙ୍କର ଉପନିବେଶୀ ଦମନ ଫଳରେ ଜାତୀୟ ଶିଳ୍ପ, ଜାତୀୟ ପୁଂଜିର ବିନିଯୋଗ ହୋଇ ପାରିଲା ନାହିଁ । ତେଣୁ ଜାତୀୟ ବୁର୍ଜୁୟା ବା ଯେଉଁ କେତୋଟି ମିଲ୍ ମାଲିକ ଥିଲେ, ସେମାନେ ବିଦେଶୀ ତାଡ଼ନାରେ ସଙ୍କୁଚିତ ହୋଇଗଲେ । ସେମାନଙ୍କର ସ୍ୱାର୍ଥ ବାଧାପ୍ରାପ୍ତ ହେଲା । ଦେଶୀୟ ଅର୍ଥନୈତିକ ପ୍ରଗତିର ଚେରମୂଳକୁ କାଟି ବାହାର କରି ଦିଆଯାଇଛି । ମାତ୍ର କେତେଜଣ ମଧ୍ୟମ ଧରଣର ବ୍ୟବସାୟୀ ରହିଗଲେ, ଯେଉଁମାନେ କି ଫରାସୀ ବେପାରୀମାନଙ୍କ ସହିତ ସାଲିସ କରି ସେମାନଙ୍କଠାରୁ ଜିନିଷପତ୍ର କ୍ରୟ କରି ଗାଁ ଗଣ୍ଡାରେ କିଣାବିକା ଆରମ୍ଭ କରିଦେଲେ । କିନ୍ତୁ ସମୟକ୍ରମେ ସେମାନଙ୍କର ବେପାର ବାଣିଜ୍ୟରେ ଆଉ ବ୍ୟକ୍ତିଗତ ସ୍ୱାଧୀନତା ରହିଲା ନାହିଁ । ସେମାନେ ନିର୍ଦ୍ଦିଷ୍ଟ ବେତନ ହାରରେ ଦଲାଲ ରୂପେ ନିଯୁକ୍ତ ହେଲେ ।

## ଗଣ ଅଭିଯାନର ଅବାରିତ ସ୍ରୋତ :

ଉପନିବେଶୀ ପୁଞ୍ଜିବାଦୀ ଶାସନର କ୍ରମବର୍ଦ୍ଧିଷ୍ଣୁ ଦମନ ଫଳରେ ଅସନ୍ତୋଷ ବୃଦ୍ଧି ପାଇଲା । ଏହି ଅସନ୍ତୋଷର ନିଆଁ ଆଉ ଗୋଟିଏ ସ୍ଥଳରେ ସୀମାବଦ୍ଧ ନୁହେଁ । ସ୍ଥଳକୁ ସ୍ଥଳ ଗ୍ରାମକୁ ଗ୍ରାମ ଦେଇ ସେ ମାଡ଼ି ଚାଲିଛି । ସମାଜର ସବୁ ସ୍ତରରେ ବିଦ୍ରୋହ । ବଡ଼ ପୁଞ୍ଜିପତିଙ୍କଠାରୁ ଆରମ୍ଭ କରି ଦୀନ ମଜଦୁର ଯାଏ । ଜାତୀୟ ବୁର୍ଜୁୟାଠାରୁ ବାସ୍ତୁହରା କ୍ରୀତଦାସ ପର୍ଯ୍ୟନ୍ତ ନିଜ ନିଜର ସ୍ୱାର୍ଥ ପାଇଁ ସମସ୍ତେ ଆଜି ଏକତାବଦ୍ଧ । ଶ୍ରେଣୀଗତ ବିଭିନ୍ନତା ଥିଲେ ମଧ୍ୟ ଜାତୀୟ ସ୍ୱାର୍ଥ ପାଇଁ ଜଣ ଜଣ ହୋଇ ବାହାରି ଆସିଛନ୍ତି । ସାମ୍ରାଜ୍ୟବାଦୀମାନଙ୍କର ବିବେଚିତ ଦମନ ଫଳରେ ଗଣ ଅଭିଯାନର

ସ୍ରୋତ ଅବାରିତ ରହିଛି । ଏହି ଅଭ୍ୟୁତ୍‌ଥାନର ଅଗ୍ରଭାଗରେ ଆଜି ଜାତୀୟ ବୁର୍ଜୁଆ । ବୁର୍ଜୁଆ ଗଣତାନ୍ତ୍ରିକ ନୀତି ଉଦେଶନାମର ସକଳ ପାରମ୍ପରିକ ନୀତିକୁ ଭାଙ୍ଗିଦେବାକୁ ବାହାରିଲା । ପ୍ରତିଶୋଧର ଅନଳରେ ଜାଳି ହୋଇଗଲା ମାନବିକ ସ୍ନେହ, ଶ୍ରଦ୍ଧା ଭୟର ଆଶଙ୍କା । ବର୍ତ୍ତମାନ ଗୋଟିଏ ସାଧନା, ଗୋଟିଏ ସିଦ୍ଧି । ଉପନିବେଶର ଜାତୀୟ ମୁକ୍ତି । ଔପନିବେଶିକ ଦାସତ୍ୱରୁ ସ୍ୱାଧୀନତା ।

ଶିଳ୍ପପତି ଓ ବ୍ୟବସାୟୀମାନେ ଲାଗିପଡ଼ିଲେ ବାଣିଜ୍ୟିକ ଅଭିବୃଦ୍ଧି ପାଇଁ । ବୁଦ୍ଧିଜୀବୀମାନେ ସଂସଦୀୟ ଗଣତନ୍ତ୍ର ମାଧ୍ୟମରେ ଏହି ଅର୍ଥନୈତିକ ସ୍ୱପ୍ନକୁ ସାର୍ଥକ କରିବାର ଆଶା ସେମାନଙ୍କ ମଧ୍ୟରେ ଜାଗ୍ରତ କରିଦେଲେ । ସେମାନଙ୍କର ଏହି ଆଦର୍ଶ ପ୍ରତି ଅନୁପ୍ରାଣିତ ହୋଇ ଶହ ଶହ ସଂଖ୍ୟାର ପେଟି ବୁର୍ଜୁଆମାନେ ଆନ୍ଦୋଳନରେ ଝାସ ଦେଲେ । ସେତେବେଳେ ପ୍ରଥମ ବିଶ୍ୱମହାସମର । ପୃଥିବୀର ରାଜନୈତିକ ମାନଚିତ୍ରରେ ଅଶାନ୍ତ କଳଙ୍କର ଦାଗ । ରକ୍ତଭିଜା ଇତିହାସରେ ମାନବିକ ମୂଲ୍ୟବୋଧର ପ୍ରଥମ ସ୍ୱାକ୍ଷର । ଜନ୍ମ, ସ୍ଥିତି ଓ ଜୀବନକୁ ବଞ୍ଚାଇ ରଖିବା ପାଇଁ ନୂତନ ଇସ୍ତାହାର ସୃଷ୍ଟି । ପ୍ରଥମ ମହାସମର ଏହି ଜାତୀୟବାଦୀ ଚେତନାକୁ ଆଣିଦେଲା ଭିନ୍ନରୂପ । ତା ପରେ ପରେ ଅନେକ ଏହି ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଆଗେଇ ଆସିଲେ । ଗୋଟିଏ ପତାକା ତଳେ "ଜାତୀୟ ପ୍ରତିରକ୍ଷା ସାମ୍ମୁଖ୍ୟ" ଗଠନ କରାଗଲା । ଦିନକୁ ଦିନ ଜନ ଅସନ୍ତୋଷ ଅଶାନ୍ତି ବଢ଼ି ଚାଲିଲା । କିନ୍ତୁ ଏହି ଅସନ୍ତୋଷର ସୁଯୋଗ ବୁର୍ଜୁଆମାନେ ନେଇ ପାରିଲେ ନାହିଁ । ସେମାନଙ୍କର ବ୍ୟକ୍ତିଗତ ତଥା ରାଜନୈତିକ ଦୁର୍ବଳତା ଯୋଗୁଁ ଉଦେଶନାମୀ ପ୍ରତିରକ୍ଷା ସାମ୍ମୁଖ୍ୟକୁ ଉପଯୁକ୍ତ ନେତୃତ୍ୱ ଦେବାରେ ବ୍ୟର୍ଥ ହେଲେ ସେମାନେ । ଉପନିବେଶୀମାନଙ୍କର ଦମନମୂଳକ ଶାସନ ବଢ଼ି ବଢ଼ି ଚାଲିଲା । ସାମୟିକ ବିଜୟ ପରେ ଅଧିକନ୍ତୁ ସେମାନେ ଭୟଙ୍କର ହୋଇ ଉଠିଲେ । ଆନ୍ଦୋଳନର ପୁରୋଭାଗରେ ଥାଇ ନେତୃତ୍ୱ ନେଉଥିବା ବୁର୍ଜୁଆମାନେ ଦମନ ଓ ଶୋଷଣର ଲାଠିଚାଲନା ଆଗରେ ମୁଣ୍ଡ ନୁଆଇ ଦେବାକୁ ଶ୍ରେୟ ମଣିଲେ । କାରଣ ସେମାନେ ବୁର୍ଜୁଆ ଓ ସେମାନଙ୍କର ସ୍ୱାର୍ଥ ଶ୍ରମିକ ଓ କୃଷକ ଶ୍ରେଣୀର ସ୍ୱାର୍ଥଠାରୁ ସ୍ୱତନ୍ତ୍ର ଥିଲା । ତେଣୁ ସେମାନେ ଜମିଦାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ତାଙ୍କ ମାଧ୍ୟମରେ ଉପନିବେଶୀଙ୍କର ନିକଟତର ହେବାପାଇଁ ଚେଷ୍ଟା କଲେ । ଫଳରେ କୃଷକ ଓ ଶ୍ରମିକମାନଙ୍କର ଦୁଃଖର ସୀମା ରହିଲା ନାହିଁ । ଗଣସାମ୍ମୁଖ୍ୟ ସମ୍ବଳ ଓ ଆଦର୍ଶର ଅଭାବରେ ଭାଙ୍ଗି ପଡ଼ିଲା । ଜନସମୁଦ୍ରର ଲହରୀ ଆସ୍ତେ ଆସ୍ତେ ଦୂର ଦିଗ୍‌ବଳୟରେ ମିଶି ଗଲା । ବ୍ୟକ୍ତିଗତ କଳହ ଘରେଇ ଦ୍ୱନ୍ଦ୍ୱ ଓ ସମସ୍ୟାରେ ଜଡ଼ିତ ରହି ଗଣସାମ୍ମୁଖ୍ୟ ଲୋକସମର୍ଥନ ହରାଇ ବସିଲା । ଏକତାର ଆକସ୍ମିକ ମୃତ୍ୟୁ ଘଟିଲା ।

ଏହି ଚରମ ବିଫଳତା ମଧ୍ୟରୁ ଜନ୍ମ ନେଲା ଗୋଟିଏ ପକ୍ଷରେ ସମ୍ବାରବାଦ ଏବଂ ଅନ୍ୟ ପକ୍ଷରେ ଉତ୍କଟ ସନ୍ତ୍ରାସବାଦ । ଯେଉଁମାନେ ସାମାନ୍ୟତମ ସୁଖ ସୁବିଧା ଦେଖି ଲୋଭ ସମ୍ବରଣ କରିପାରୁ ନ ଥିଲେ, ସେମାନେ ସମ୍ବାରବାଦର ଆଶ୍ରୟ ନେଲେ ଏବଂ ଆଉ ଯେଉଁ ସ୍ୱଳ୍ପ କେତେଜଣ ଏହି ଶୋଷଣ, ନିର୍ଯାତନା ବିରୁଦ୍ଧରେ ନିତ୍ୟ ବିଦ୍ରୋହୀ ଥିଲେ, ସେମାନେ ଆଦରି ନେଲେ ସନ୍ତ୍ରାସବାଦକୁ । ଏହି ଦୁଇ ବିପରୀତମୁଖୀ ଚିନ୍ତା ମଧ୍ୟରେ ଭାରସାମ୍ୟ ରକ୍ଷା କରି ଗଣସାମ୍ମୁଖ୍ୟ ବ୍ୟକ୍ତି ପାରିଲା ନାହିଁ । ଭାଙ୍ଗି ଯିବା ନିତାନ୍ତ ସ୍ୱାଭାବିକ ।

୧୯୨୮-୩୦ବେଳକୁ ଆଉ ଜଣେ ପ୍ରତିଭାବାନ୍ ଦେଶପ୍ରେମିଙ୍କର ଆବିର୍ଭାବ ଘଟିଲା । ତାଙ୍କ ନେତୃତ୍ୱରେ 'କୋକ-ଡାନ୍-ଡାଙ୍ଗ' ପାର୍ଟି ଗଠନ କରାଗଲା । ଏହି ଦଳ ସେହି ସମୟରେ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଥିଲା । କିନ୍ତୁ ଏଥିରେ ମାତ୍ର ଅଳ୍ପ କେତେକ ବଡ଼ ବଡ଼ ବୁଦ୍ଧିଜୀବୀ ଓ ନିପୁଣ ସେନାଧ୍ୟକ୍ଷ ଥିଲେ । କେଣୁ ଜାତୀୟତାବାଦୀ ଆନ୍ଦୋଳନର ବିଶାଳ ରଣାଙ୍ଗନରେ ଏମାନେ ଦୃଢ଼ ନେତୃତ୍ୱ ଦେଇ ପାରିଲେ ନାହିଁ । ଫଳରେ ସାଧାରଣଙ୍କ ମଧ୍ୟରେ ଏମାନେ ବେଶୀ ଖ୍ୟାତି ଅର୍ଜନ କରି ପାରି ନ ଥିଲେ । ୧୯୩୦ ଫେବୃୟାରୀ ମାସରେ ଏହି ଦଳ—'ୟେନବେ' ଠାରେ ଏକ ସାମରିକ ଅଭ୍ୟୁତ୍ଥାନ ଆରମ୍ଭ କରିଦେଲେ । ସମୟୋପଯୋଗୀ ହୋଇ-ନ ଥିବାରୁ ଏବଂ ଉପଯୁକ୍ତ ସଙ୍ଗଠନ ଓ ସମର୍ଥନ ଅଭାବରେ ଏହି ବିଦ୍ରୋହ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହେଲା । ପାର୍ଟିର ନେତୃବୃନ୍ଦଙ୍କ ସମେତ ବହୁ ବହୁ ଜଙ୍ଗୀ ଯୁବକମାନେ ଅକାଳମୃତ୍ୟୁ ବରଣ କଲେ । ଯେଉଁମାନେ ପ୍ରତୀକ୍ଷା କରି ଆତ୍ମଗୋପନ କରିଥିଲେ, ସେମାନେ ବିଦେଶୀ ପୋଲିସ ହାତରେ ଧରାପଡ଼ି ହତ୍ୟାଗ୍ରସ୍ତ ହେଲେ । ବିଦ୍ରୋହର ଦାବାନଳ ଶାନ୍ତ ପଡ଼ିଲା । କୋକ୍-ଡାନ ଡାଙ୍ଗ ପାର୍ଟି ଶତାବ୍ଦୀର ଅତଳ ଗର୍ଭରେ ଲୀନ ହୋଇଗଲା ।

ଏସବୁ ଅସନ୍ତୋଷ, ବିଦ୍ରୋହ, ଜାଗରଣ ସତ୍ତ୍ୱେ ଅର୍ଥନୈତିକ ଦୁରବସ୍ଥା କିଛିଲେ ନ ସରେ । ଭିଏତନାମର ସବୁଜ-ଶ୍ୟାମଳ ଶସ୍ୟକ୍ଷେତ୍ର ମରୁପ୍ରାନ୍ତରରେ ପରିଣତ ହୋଇଛି । ଭିଏତନାମର ସୀମା ସରହଦରେ ଯୁଦ୍ଧର ନିଆଁ ଜଳୁଛି । ନଦୀ ··· ନାଳ ··· ସମୁଦ୍ରତଟରେ ଶୋଣିତର ଢେଉ ମୁଣ୍ଡ ପିଟି ଫେରି ଯାଉଛି । କେତେ ଦିନ ଆଉ ଫେରାଇ ହେବ ଏହି ଭବିଷ୍ୟତର ଆହ୍ୱାନ । ଅଧିକାଂଶ ଜିଲ୍ଲାରେ, ବିଶେଷ କରି ଗିତେହନ୍ ଏବଂ ହାର୍ଟିନ ପ୍ରଦେଶରେ କୃଷକମାନେ ତାତି-ଉଠିଲେ । ଶସ୍ୟକେନ୍ଦ୍ରାର ··· ପ୍ରତିଟି ଅଣୁରୁ ଉଦ୍‌ଗୀରଣ ହେଲା ଅଭ୍ୟୁତ୍ଥାନର ଅଗ୍ନିସ୍ଫୁଲିଙ୍ଗ । ସବୁଜ ଗାଲିଚାରେ ଶୁଣାଗଲା ହୋରି । ଦରିଦ୍ର କୃଷକର ଲଙ୍ଗଳ ମୂନକୁ ବିଦ୍ରୋହର ଶାଣିତ ଛୁରିକା ଆତ୍ମପ୍ରକାଶ କଲା । 'ଗିତେହନ ସଙ୍ଘ' ନାମରେ କୃଷକ ପ୍ରଜାମେଳ ସଙ୍ଗଠନର ଜନ୍ମ ।

୧୯୩୦ ବିଶ୍ୱଅର୍ଥନୀତିର ସଙ୍କଟର ବର୍ଷ । ଏସିଆ, ୟୁରୋପ, ଆମେରିକା, ଆଫ୍ରିକା...ସବୁଠି ଦାରିଦ୍ର୍ୟର କରୁଣ ଚିତ୍କାର । ପୁଞ୍ଜିବାଦୀ ପ୍ରଭୁତ୍ୱର ନିର୍ମମ ଶାସନ । ବିଶ୍ୱଜନତାର ଜୀବନ ବିପନ୍ନ । ଦେଶ-ଦେଶ, ମହାଦେଶ-ମହାଦେଶ ମଧ୍ୟରେ ଯୁଦ୍ଧର ଘନଘଟା । ପୃଥିବୀ ଦୁଇ ବିପକ୍ଷୀତବାଦୀ ଶିବିରରେ ବିଭକ୍ତ । ପ୍ରାଚ୍ୟଖଣ୍ଡରେ ଭାରତବର୍ଷର ସ୍ୱଦେଶୀ ଆନ୍ଦୋଳନ ଜାତୀୟ କଂଗ୍ରେସ ନେତୃତ୍ୱରେ ଜାତୀୟସାମ୍ପ୍ରଦାୟିକ ସ୍ୱରୂପ ଧାରଣ କରିଛି । ସାମ୍ରାଜ୍ୟବାଦ ବିରୋଧରେ ଗଣସଂଗ୍ରାମର ଜୁଆର ଛୁଟି ଚାଲିଚି । ଭିଏତନାମରେ ଏହାର ପ୍ରଭାବ କୌଣସି ଦିଗରୁ କମ୍ ନୁହେ । କ୍ୱାଙ୍ଗ୍ କାଇ ପ୍ରଦେଶର କୃଷକମାନେ ବିଦ୍ରୋହର ଡାକରା ଦେଇଛନ୍ତି । ସୁଦୂର ରବର ବଣରୁ ବିପ୍ଳବର ମହାବଳ ଗର୍ଜି ଉଠୁଛି । ସାଇଗନ ଉପକଣ୍ଠ କୋଇଲା ଖଣିରୁ ଶୂନ୍ୟତାର ଉତ୍ତପ୍ତ ଖରଶ୍ୱାସ ଛୁଟି ଚାଲିଛି ଅମଡ଼ା ପଥରେ । ନାମବନ୍ ନ୍‌ଗାଙ୍କଳରେ ସବୁଦିନ ପାଇଁ ତାଲା ବନ୍ଦ । ମେକଂ ନଦୀର ପଶ୍ଚିମ ଧାରରେ କୃଷକମେଳ । ଲଢ଼େଇ ଆଉ ଧର୍ମଘଟରେ ଜୀବନର ଜୟଯାତ୍ରା ଉଡ୍ଡୀନ ପିଟୁଛି । ୧୯୩୦ ବିଶ୍ୱରାଜନୈତିକ ଇତିହାସ ଏକ ଉଦ୍‌ବେଗ ପର୍ବ । ପରିବର୍ତ୍ତନକାମୀ ଜନତାକୁ ଦମନ କରିବା ପାଇଁ ଫରାସୀ ଶାସନକଳ ସଚେଷ୍ଟ ଚେଷ୍ଟା ଚଳାଇଲା । ନିରୀହ ଦେଶପ୍ରେମୀ ଜନତା ଉପରେ ମାତ୍ରା ଗ୍ଲାଇଲା ଗୁଲିଡ଼ୋଳର ଉଦ୍ଧାମମାନ ସଭ୍ୟତାର ଚରମତନ ଧ୍ୱଂସ ପାଇଁ । କିନ୍ତୁ ଦେଶମାତୃକାର ସେବାରେ ନିଷ୍ଠିତ ନିଷ୍ଠୋଜିତ ଦେଶଭକ୍ତମାନେ ପୁଣି ମୁଣ୍ଡ ଟେକିଲେ । ଉତ୍ତାଳ ସମୁଦ୍ରଗର୍ଭରୁ ଲୀନ ହୋଇଥିବା ପ୍ରବାଳଖଣ୍ଡ ··· କୂଳ ଧରିଲା ।

ସେତେବେଳେ ହୋ ତ ପାଖରେ ଥିଲା ଚୀନ୍ । ପଛକୁ ମୁହଁ ଫେରାଇଲେ ତାର ବିଜୟଦୀପ୍ତ କାହାଣୀ କାନରେ ଆସି ବାଜିଯାଏ । ଆଗକୁ ବାଟ ଚାଲିଲାବେଳେ ଚୀନ କୃଷି ବିପ୍ଳବର ସମସ୍ତ ଛବି ଆଖି ଆଗରେ ନାଚି ଯାଏ । କାହାଣୀ-କଥା, ଗଳ୍ପ, ଉପନ୍ୟାସ, ଇତିହାସରେ ଚୀନ ହିଁ ଭିଏତନାମର ସାକ୍ଷୀ, ସହୋଦର, ସାଥିପ୍ରଥମ; କିନ୍ତୁ ସେଠାରୁ ପ୍ରେରଣା ଉତ୍ସାହ ପାଇ ସଦ୍ୟ ଫେରିଥିବା ବନ୍ଧୁମାନେ ଦେଶକୁ ଫେରି କୌଣସି କ୍ଷେତ୍ରରେ ସାହାଯ୍ୟ କରିପାରିଲେ ନାହିଁ । ଅପର ପକ୍ଷରେ ଦେଶୀୟ ବୁଦ୍ଧିଜୀବୀ, ଦେଶପ୍ରେମୀ ନେତାମାନଙ୍କ ସହିତ ସେମାନଙ୍କର ସମ୍ପର୍କ ମଧ୍ୟ ନ ଥିଲା । ବୁର୍ଜ୍ଜୁଆ ଦଳମାନଙ୍କର ଏହିପରି କ୍ରମାଗତ ପରାଜୟ ତତ୍କାଳୀନ ଜାତୀୟବାଦୀ ନେତାମାନଙ୍କୁ ସଚେତନ କରାଇ ଦେଲା ଯେ ସାମ୍ରାଜ୍ୟବାଦ ପରି ଗୋଟିଏ ବଳଶାଳୀ ଦୁର୍ଦ୍ଧର୍ଷ ଶତ୍ରୁର ସାମନା କରିବାକୁ ହେଲେ ଭିଏତନାମ ବିପ୍ଳବର ଗତିପଥକୁ ଅନ୍ୟ ଦିଗରେ ମୁହାଁଇବାକୁ ପଡ଼ିବ ।

ଐତିହାସିକ କ୍ରିୟା ପ୍ରତିକ୍ରିୟା ମଧ୍ୟରୁ ୧୯୩୦ ମସିହାରେ ଭିଏତନାମ ଶ୍ରମିକ ଦଳ ବା କମ୍ୟୁନିଷ୍ଟ ପାର୍ଟିର ଜନ୍ମ । ନୁଏନ୍-ଆଇ-କୋକ୍ ନାମକ ଜଣେ ମହାନ ବିପ୍ଳବୀ ଏହି ପାର୍ଟିର ପ୍ରାଣଦାତା । ଭିଏତନାମ ଜାତୀୟ ଆନ୍ଦୋଳନକୁ ନୂତନ ରୂପ, ଆନ୍ତର୍ମୁଖୀ ଦେଇ ସ୍ୱାଧୀନତାର ପଥରେ ଆଗେଇ ନେବା ଏହାର ପ୍ରଥମ ଉଦ୍ଦେଶ୍ୟ ଥିଲା । ତେଣୁ ସମସ୍ତ ଓ ଜନସାଧାରଣଙ୍କର ଦାବୀକୁ ନେଇ ନୂତନ ଆଦର୍ଶ ଓ ନୀତି ପ୍ରବାହର ସୃଷ୍ଟି ହେଲା । ମାର୍କସ୍‌ବାଦ ଓ ଲେନିନବାଦର ଜ୍ୱଳମାନ ଦୀପଶିଖାରେ ସାମ୍ରାଜ୍ୟବାଦର ମୁଖା ପଦାରେ ପଡ଼ିଗଲା । ଜାତୀୟ ସମସ୍ୟା, ପରାଧୀନତା, ରାଜନୈତିକ ଶୃଙ୍ଖଳ ଓ ତାକୁ ଦ୍ରୁତହତ କରିବାର ଅଭିନବ କୌଶଳର ସୂତ୍ରପାତ ହେଲା । ବିଶ୍ୱ-ବିପ୍ଳବ ଆଗରେ ଦେଖା ଦେଇଥିବା ଉପନିବେଶୀ ସମସ୍ୟାମାନ ବିଭିନ୍ନ ଦେଶରେ ଥିବା ସ୍ୱଦେଶଭକ୍ତ ବୀରମାନଙ୍କ ନିମନ୍ତେ ଅଜଣା ରହିଲା ନାହିଁ । ସର୍ବୋପରି ଐତିହାସିକ ମହାନ୍ ଅକ୍ଟୋବର ବିପ୍ଳବ ପୃଥିବୀର ସମସ୍ତ ଶାନ୍ତିକାମୀ, ମୁକ୍ତିକାମୀ, ଜନତାର ପଥକୁ ଆହୁରି ଶାଣିତ, ବୁଦ୍ଧିମନ୍ତ କରି ଗଢ଼ି ତୋଳିବାରେ ସାହାଯ୍ୟ କରିଛି । ସୋଭିଏତ ରାଷ୍ଟ୍ରସଂଘରେ ଶୋଷଣର ସମାପ୍ତି ଘଟିଛି । ଏହି ଐତିହାସିକ ଘଟଣାବଳୀ ଯୋଭିଏତ ଜନଗଣଙ୍କ ମନରେ ସ୍ୱାଭାବିକ ଉନ୍ମାଦନା ସୃଷ୍ଟି କରିଛି ନିଶ୍ଚୟ । ଭିଏତନାମ କ'ଣ ସବୁଠୁ ତଳେ ପଡ଼ିଥିବ !!!

କମ୍ୟୁନିଷ୍ଟ ପାର୍ଟି ବଳପୂର୍ବକ କୃଷକମାନଙ୍କୁ ଜମି ଦେବା ପାଇଁ ଲଢ଼ାଇ ଆରମ୍ଭ କରିଦେଲା । "ଚାଷୀକୁ ଜମି" ଏହି ପଣ ରଖି ଲଢ଼ାଇର ମଇଦାନରେ ଠିଆ ହେଲା ମାର୍କସ୍‌ବାଦୀ-ଲେନିନ୍‌ବାଦୀ ପାର୍ଟି । ଭିଏତନାମ ବିଦ୍ରୋହର ସମ-ପର୍ଯ୍ୟାୟ ସ୍ୱୀକୃତ ହେଲା ଜନମ ମନରେ । ଅତୀତରେ ହୋଇଥିବା ଗଣ-ଅଭ୍ୟୁତ୍ଥାନର ଦୋଷ, ଦୁର୍ବଳତା, ଜୟ, ପରାଜୟର ସମସ୍ତ ଚିହ୍ନ ଜଳ ଜଳ ହୋଇ ଉଠିଲା । ବୈଜ୍ଞାନିକ ବିବର୍ତ୍ତନକୁ ଆମୋଘ ଅସ୍ତ୍ର କରି କମ୍ୟୁନିଷ୍ଟ ପାର୍ଟି ଆଗେଇ ଚାଲିଲା ଭିଏତନାମରେ । ବୁଦ୍ଧିଜୀବୀ, ଦେଶପ୍ରେମୀ, ଛାତ୍ର, ଯୁବକ, କୃଷକ, ଶ୍ରମିକ ନୂତନ ରାହା ପାଇଁ ରୁଣ୍ଡ ହେଲେ ଲାଲ ପତାକା ତଳେ । ଦୁଃଖ, ଦାରିଦ୍ର୍ୟରେ ମଂଜପିଞ୍ଜା ଶରୀର ନେଇ ଶ୍ମଶାନରୁ ଲେଉଟି ଆସିଲା ମଣିଷ । ନୂଆ ଆଶା, ନୂଆ ଜୀବନ ଶକ୍ତିର ସଂଚାର ହେଲା ପ୍ରତି ପ୍ରାଣରେ । ଝୁମ୍ପୁଡ଼ିରେ କାଳକାଟୁଥିବା ଭିଏତନାମୀ ମୁକ୍ତଆକାଶ ତଳେ ସ୍ୱସ୍ତିର ନିଃଶ୍ୱାସ ମାରିଲେ । କୁଲି, ତକ୍‌ସାବାଲକ ବାସ୍ତୁହରା ସମାଜରେ ଦେଖାଗଲା ପ୍ରବଳ ଉଦ୍‌ବେଳନ । ସେ ମୁକ୍ତି ଚାହେଁ, ସେ ସ୍ୱାଧୀନତା ଚାହେଁ, ସେ ଜୀବନକୁ ଉପଭୋଗ କରିବାକୁ ଚାହେଁ । ସେ କ୍ରୀତଦାସ ନୁହେଁ । ସେ ଭୂ-ସ୍ୱାମୀର ଭୃତ୍ୟ ନୁହେଁ । ସେ ମଣିଷ । ସେ ମୁକ୍ତ-ପାଗଳ ସ୍ୱାଧୀନ ମଣିଷ । ଭିଏତନାମ କମ୍ୟୁନିଷ୍ଟ ପାର୍ଟିର ଏହି ହିଁ ଥିଲା ସାଦର ଆହ୍ୱାନ ।



୨

# ପଣ୍ଡିତ-ବିଦ୍ରୋହ

୧୯୧୪ ପୂର୍ବରୁ ଭିଏତନାମୀ ଅଧିବାସୀମାନଙ୍କର ନିଜର ବୋଲି କିଛି ନ ଥିଲା । ନିଗ୍ରୋ-କ୍ରୀତଦାସ ପରି ଗୋରୁ ଗୁହାଳରେ ସେମାନଙ୍କର ଜୀବନ କଟିଛି । ରିକ୍‌ସା ବୋହି ବୋହି ତାର ପିଠିରେ କୁଜ ବାହାରି ପଡ଼ିଛି । ପାହାଡ଼ୀ ବନ୍ୟ-ଭୂମିରୁ ପଥର କାଟି କାଟି ବିଶାଳ ସୌଧ ସେ ନିର୍ମାଣ କରିଛି । ଦୈହିକ କଷଣରେ ମେରୁଦଣ୍ଡ ଭାଙ୍ଗି ପଡ଼ିବା ଉପରେ । ପ୍ରଥମ ବିଶ୍ୱଯୁଦ୍ଧର ଡାକରା । ଫ୍ରାନ୍‌ସର ସ୍ୱାଧୀନତା ଓ ସାର୍ବଭୌମତ୍ୱ ଧ୍ୱଂସମୁଖୀ ଆହ୍ୱାନର ସମ୍ମୁଖୀନ । ଫରାସୀ ସେନାବାହିନୀ ଯଥେଷ୍ଟ ନୁହନ୍ତି । ଜାପାନୀ ସମରବାଦୀ ଜର୍ମାନୀ ସହିତ ଆକସ୍ମିକ ଯୁଦ୍ଧ ଘୋଷଣା ନିମନ୍ତେ ଭିଏତନାମ ଉପନିବେଶରୁ ସୈନ୍ୟ ରପ୍ତାନି ହୋଇ ପାରିଲେ ଅବସ୍ଥା ସୁଧୁରି ଯାଆନ୍ତା !! ଫରାସୀ ଶାସକଗୋଷ୍ଠୀ ପ୍ରମାଦ ଗଣିଲେ । ବ୍ୟବସାୟୀସୁଲଭ ଛଳନାପୂର୍ଣ୍ଣ ବ୍ୟବହାରରେ ସନ୍ତୁଷ୍ଟ କଲେ ଭିଏତନାମୀଙ୍କୁ । 'ବୀର ସନ୍ତାନ'ର ଆଖ୍ୟା ମିଳିଲା । ଅସ୍ତ୍ର ସହିତ ଶିରସ୍ତ୍ରାଣ ମଧ୍ୟ ହସ୍ତରେ ଧରାଇ ଦିଆଗଲା । ଯେଉଁମାନଙ୍କୁ ଖାଦ୍ୟ ନ ଦେଇ ବେଠି ଖଟାଇ ଖଟାଇ ମାରିଦିଆ ହେଉଥିଲା, ସେମାନେ ଜାହାଜ ବୋଝାଇ ହୋଇ ଚାଲିଲେ ପ୍ୟାରିସ ଅଭିମୁଖେ । ସ୍ୱାଧୀନତା ଓ ନ୍ୟାୟର ତାତ୍ତ୍ୱିକ ବ୍ୟାଖ୍ୟା କରି ସେମାନଙ୍କୁ ବୁଝାଇ ଦିଆଗଲା, ଯୁଦ୍ଧଭୂମିରୁ ଫେରି ଆସିଲେ ରାଜ୍ୟ ପ୍ରାପ୍ତିର ଆଶା । ଘର, ଦ୍ୱାର, ପିଲା, କବିଲା ଜିମା ଦେଇଗଲେ ଫରାସୀମାନଙ୍କୁ । ୟୁରୋପରେ ବିଦେଶୀଙ୍କ ସ୍ୱାର୍ଥକୁ ବଜାୟ ରଖିବା ପାଇଁ ଯୁଦ୍ଧଭୂମିକୁ ବାହାରି ପଡ଼ିଲେ । ୧୯୧୫, ୧୬, ୧୭-୧୮ ଦୀର୍ଘ ଚାରିବର୍ଷ । ମାତୃଭୂମି ଆଜି ବହୁତ ଦୂରରେ । ସନ୍ତାନସନ୍ତତି, ପ୍ରିୟତମା ପତ୍ନୀ ଆଜି ସାତ ଦରିଆର ସେପାରିରେ । କାହାପାଇଁ ସେ ଲଢ଼ୁଛି ? କାହା ସ୍ୱାର୍ଥ ପାଇଁ ସେ ବିନ୍ଦୁ ବିନ୍ଦୁ ରକ୍ତ ନିଗାଡ଼ି ଦେଉଛି ! କି ଆଶା କରି ସେ ଉଦ୍ଦାମ ପୌରୁଷରେ ରଣାଙ୍ଗନରେ ଠିଆ ହୋଇଛି !! ସ୍ୱପ୍ନରେ ନିଶ୍ଚିନ୍ତ ଅଛି ଭିଏତନାମ । ଫେରିଲେ ରାଜ୍ୟପ୍ରାପ୍ତି । ଦେଶ ଜୟ କରି ପାରିଲେ ପୁରସ୍କାର ସ୍ୱରୂପ ମିଳିବ ପ୍ରାଣୋପମା ଭିଏତନାମ ।

ଯୁଦ୍ଧ ସରିଲା । ଅଧ ଫେରିଲା ଘରେ । କିନ୍ତୁ ଫେରିଲେ ନାହିଁ ଯୁଦ୍ଧବାହୁଡ଼ା କ୍ରୀତଦାସ ଦଳ । ପୁତ୍ର, କନ୍ୟା ବନ୍ଧା ପଡ଼ିଛନ୍ତି ଫରାସୀ ରାଜଗାଦି ହାତରେ । କି ନିର୍ମମ ସେମାନେ । କି ନିଷ୍ଠୁର ସେମାନଙ୍କର ହୃଦୟ ! ରକ୍ତ, ମାଂସ, ଅସ୍ଥି

ମିଳେଇ ଗଲା ବିଦେଶୀ ମାଟିରେ । ସ୍ୱତଃ ବିଦ୍ରୋହ କରି ଉଠେ ମନ । ରକ୍ତର ବନ୍ଧନ ନେଇ ପଡ଼ି ରହିଥିବା ବୃକ୍ଷମାନ ଶାଖା ପତ୍ର ମେଲିଲେ । ନାଚି ଉଠିଲା ପୁଣି ଭିଏତନାମ । ବିଦ୍ରୋହୀ ସନ୍ତାନମାନେ ଗର୍ଜି ଉଠିଲେ ଏଥର, ପିତୃଋଣ ପରିଶୋଧ ପାଇଁ । ଅଗଣିତ ବିଧବା କଣ୍ଠରୁ ଝରିଲା ବ୍ୟଥାର ସଙ୍ଗୀତ । ପିତୃହୀନ ସନ୍ତାନସନ୍ତତି ହୃଦୟରେ ବିଦ୍ରୋହର ତୁମୁଳ ଝଡ଼ । ମା'ର ଆଖି ଲୁହକୁ ନିଜ ହାତରେ ପୋଛି-ଦେବା ପାଇଁ ସମସ୍ତେ ବ୍ୟାକୁଳ । ଆଗ୍ନେୟାସ୍ତ୍ର ଶପଥର ଆମନ୍ତ୍ରଣ । ବର୍ବର ଫରାସୀ-ମାନଙ୍କୁ ଏ ମାଟିରୁ ବିଦାୟ ଦେବାକୁ ପଡ଼ିବ । ପିତୃହନ୍ତା ନରଘାତକଙ୍କୁ ଶ୍ମଶାନରେ ଅନ୍ତିମ ଭେଟି ଦେବାକୁ ହେବ । ଦୈହିକ ନିର୍ଯାତନା, ଲାଞ୍ଛନା ଅତିଷ୍ଠ କରିଦେଇଛି ଭିଏତନାମର ସନ୍ତାନମାନଙ୍କୁ । ବୀରପ୍ରସୂ ଭିଏତନାମ ଉପନିବେଶୀ ଘୋରଡ଼ା ଗ୍ରାସରେ ବରଡ଼ା ପତ୍ର ପରି ଥରୁଛି । ଉତ୍ତରରୁ ଦକ୍ଷିଣ, ପୂର୍ବରୁ ପଶ୍ଚିମ, ସ୍ୱାଧୀନତାର ମୃତ୍ୟୁବାଦ୍ୟ ରହି ରହି ବାଜି ଉଠୁଛି । ଦାରିଦ୍ର୍ୟର ଉତ୍କଟ ପୀଡ଼ା, ଭୋକ ଉପବାସର ଜ୍ୱାଳା ଆଉ ସହ୍ୟ କରି ହେଉନାହିଁ । ଆମାଜର ଉତ୍ତରୀ ପଟେ ଗେଟିନ୍ କରୁଣ ସ୍ୱରରେ କାନ୍ଦୁଛି ।

ଗେଟିନ, ଭିଏତନାମର ରାଜରାଣୀ । ଅପରୂପ ଲାବଣ୍ୟର ପସରା ମେଲି ବସିଛି ଉତ୍ତର ପଟେ। ନୀଳ ଆକାଶ ତଳେ ସବୁଜ ବନାନୀ । ପାହାଡ଼ର କୂଳେ କୂଳେ...ଛୁଟି ବୁଲୁଛି...ତୁଷାର କନ୍ୟା । ଆନମର କବିକୁଳ ଗାଇ ଉଠେ— ଗେଟିନକୁ ଚାହିଁ । ପାଶୋରି ଯାଏ ସେ ତାର ସମସ୍ତ ଖିଆଲକୁ । ଅପଲକ ନୟନରେ ଚାହିଁ ରହେ...ପୁଣି ଥରେ । ଫେରି ଯାଉଥିଲେ ବି ଗେଟିନର ଗଛ-ଲତା, ଗିରି-କାନ୍ତାର ବାହୁଡ଼ି ଡାକନ୍ତି । ଗ୍ରୀଷ୍ମ, ଶରତ, ବସନ୍ତ, ବର୍ଷା..... ରେ ତାର ଅନ୍ତହୀନ ସୌନ୍ଦର୍ଯ୍ୟର ଉପମା ବ୍ୟାପି ଯାଇଛି ସୀମା ସରହଦ ଡେଇଁ । କାମ୍ବୋଡ଼ିଆ... ଲାଓସର କୂଳରୁ ଭାସି ଆସିଛି ତା ପାଇଁ ସାଦର ଆଲିଙ୍ଗନ । କେଉଁ ଅଜଣା ପବନରେ ତାର ସ୍ୱରଲାଳିତ୍ୟ ମିଳାଇ ଯାଉଛି... । ଏ ଧରାକୁ ସ୍ୱର୍ଗୀୟ, ସୁନ୍ଦର, ମଧୁମୟ କରିବା ଆଶାରେ ।

ଗେଟିନର ପରିଚୟ କ'ଣ କେବଳ ଏୟା ? ରୂପବତୀ, ଲାବଣ୍ୟମୟୀ ! ବୀରଶ୍ରେଷ୍ଠା ସେ । ତାର ମୁଠାଏ ମାଟି ଅଯୁତ ବୀରଙ୍କର ରକ୍ତରଂଜିତ ଇତିହାସର କାହାଣୀ । ତାର ପାଣି ପବନରେ କେତେ କବିଙ୍କର କାବ୍ୟ—ଗୀତ ଗାଇ ବୁଲୁଛି । ଗେଟିନର ପାହାଡ଼ୀ କାନ୍ଥରେ କେତେ ବୀରଙ୍କର···ସ୍ୱପ୍ନିଳ ଭବିଷ୍ୟତ ଲେଖା ହୋଇ ରହିଛି ।

ଏସବୁ ମହାର୍ଘ ସମ୍ପଦ ଥାଇ ଗେଟିନ ଏତେ ହୀନମାନ କାହିଁକି ? ତା ଗର୍ଭଭେଦ ଜନ୍ମିଥିବା ଛୁଆ ପିଲା ଦାଣ୍ଡରେ ଭିକାରୀ କାହିଁକି ?

ଇତିହାସର ଅନ୍ଧଯୁଗରୁ ଗେଟିନର ଆଖି ଖୋଲିଛି । ସଭ୍ୟତାର ଶୁକତାରା ସମସ୍ତ ଅନ୍ଧାର, କାଳିମାକୁ ଲିଭାଇ ଦେଇ ଯାଇଛି...ଉଷାର ପାହାନ୍ତ କିରଣରେ ତା' ଦ୍ୱାର ସମ୍ମୁଖରେ ଭେଟିଛି ସେ କେତେ ସନ୍ତାନ ସନ୍ତତିଙ୍କୁ···କବି, ମହା-କବିଙ୍କୁ ବିଦ୍ରୋହୀ, ମହାବିପ୍ଳବୀଙ୍କୁ । ଗେଟିନ ପରିବାର ଦିନକୁ ଦିନ ବଢ଼ି ଚାଲିଛି । କେତେ ପୁଷ୍ପବତୀ ସେ । ଉର୍ବରା ତାର ··ବକ୍ଷରେ ଜାବୋଡ଼ି ଧରିଛି, ନିଜର ପୁତ୍ର କନ୍ୟାମାନଙ୍କୁ । କାହାକୁ ଫେରାଇ ଦେଇ ପାରିବ ନାହିଁ ସେ ।

ଭିଏତନାମର ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ଗେଟିନର ଲୋକସଂଖ୍ୟା ଖୁବ୍ ବେଶୀ । ଆଠଟି ପରିବାର ପିଛା ଏକ ଏକର କରି ଚାଷଜମି । ତେଣୁ କେବଳ କୃଷି ଉପରେ ନିର୍ଭର କରି ବଞ୍ଚି ରହିବା ସମ୍ଭବ ହୋଇପାରେ ନାହିଁ । ଅନ୍ୟାନ୍ୟ ଧନ୍ଦା କରିବା ପାଇଁ ସେମାନେ ବାଧ୍ୟ । ଗେଟିନର ଶ୍ରେଷ୍ଠ ଶିଶୁ···ଜାଣେ ତାକୁ ଭବିଷ୍ୟତରେ ସ୍କୁଲ ମାଷ୍ଟର, ପ୍ରାଦେଶିକ ରାଜକର୍ମଚାରୀ, କିରାଣୀ କିମ୍ବା ଅନ୍ୟାନ୍ୟ କିଛି ଜୀବିକା ଧାରଣ କରିବାକୁ ପଡ଼ିବ । ତାକୁ ଏହି ପ୍ରିୟତମା ଗେଟିନ ଗ୍ରାମ.. ବାହାରକୁ ଯିବା ପାଇଁ ପଡ଼ିବ । ଏଥିପାଇଁ ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ, ଲାଞ୍ଚ-ମିଛର ଆଶ୍ରୟ ନେବାକୁ ପଡ଼େ ନାହିଁ । ନିଜର ବୁଦ୍ଧି ପ୍ରତିଭା ବଳରେ ହିଁ ସେମାନେ ଯୋଗ୍ୟତା ହାସଲ କରନ୍ତି । ସେ ଦୃଷ୍ଟିରୁ ଗେଟିନ ମହାପୁଣ୍ୟବତୀ ।

ସମସ୍ତକମେ ସେହିମାନେ ଭିଏତନାମର ଇତିହାସ ଲେଖିଯାଇଛନ୍ତି । ସମଗ୍ର ଇଣ୍ଡୋଚୀନରେ ଯେତେ ବଡ଼ ବୀରପୁରୁଷ, କବି, ଲେଖକ, ବୁଦ୍ଧିଜୀବୀ, ଶାସକ ଜନ୍ମ ନେଇଛନ୍ତି ସେ ସମସ୍ତେ ଏହି ଗେଟିନର...ଗର୍ଭରୁ । ସଂଖ୍ୟାରେ ଅଳ୍ପ ହେଲେ ମଧ୍ୟ···ସଂଖ୍ୟାଧିକ ଜନତାର ସେମାନେ···ମଉଡ଼ମଣି । କିନ୍ତୁ ଗେଟିନ ତାର ଏହି ପ୍ରିୟତମ ଦୁଲାଳମାନଙ୍କୁ କ'ଣ ଦେଲା ? ମାତୃବକ୍ଷର ଅମୃତୋଦକ ଟିକିଏ ମଧ୍ୟ ସେମାନେ ପାଇ ପାରିଲେ ନାହିଁ । ସୁଖ ପରିବର୍ତ୍ତେ ଦୁଃଖ, ଜୀବନ ପରିବର୍ତ୍ତେ ମରଣ ! ଶାନ୍ତି ପରିବର୍ତ୍ତେ ଯୁଦ୍ଧ ! ଜନ୍ମରୁ ଦୁଃଖ, ଦାରିଦ୍ର୍ୟ, ଶୋଷଣ, ନିର୍ଯାତନା, ବିଫଳତା, ସଙ୍କଟ ଓ ମାନସିକ ଅସ୍ଥିରତା ମଧ୍ୟରେ ପେଷିହୋଇ ଗେଟିନ ସନ୍ତାନର ଯୁଦ୍ଧଭରା ମସ୍ତିଷ୍କ ଖରସାନ୍ତ ହୋଇ ଉଠେ । ସେ ସ୍ୱତଃ ବିଦ୍ରୋହ କରେ— । ଏହି ପୁଞ୍ଜିଭୂତ ବେଦନାରୁ ଆରମ୍ଭ ହୋଇଛି ଯୁଦ୍ଧ । ଗେଟିନ···ଶାନ୍ତିରେ ନିଃଶ୍ୱାସ ମାରିପାରୁ ନାହିଁ । ବିଦ୍ରୋହର ଝାଞ୍ଜି ବତାସୀ ପିଟି ହୋଇଯାଉଛି ତାର ଦେହରେ । ସବୁଦିନେ···ବର୍ଷାର ବିଜୁଳି ଝଲକ । ତା କୋମଳ ହୃଦୟ କମ୍ପି ଉଠୁଛି ଅଜଣା ଆଶଙ୍କାରେ । ତା ଆଖିରେ ଭୟର ଶ୍ରାବଣୀ ବାରିପାତ । କିନ୍ତୁ ଉପାୟ କ'ଣ ? ପ୍ରକୃତି ଆଗରେ ସେ ମୁଣ୍ଡ ନୋଇଁବାକୁ ବାଧ୍ୟ । ଚିରନ୍ତନ ସୁଖର ଆଶାରେ ତାର ଏ ସହସ୍ର ବର୍ଷୀୟ ସଂଘର୍ଷର

ଘୋଷଣା । ସବୁଦିନେ ଓଠରେ ହସ ଖେଳାଇବାକୁ···ଆଜି ତା କଣ୍ଠରେ ବାଷ୍ପରୁଦ୍ଧ ସ୍ୱର ।

ବିଦ୍ରୋହର କୁରୁକ୍ଷେତ୍ରରେ ସେ ଶପଥ ନେଇଛି । ଭିଏତନାମକୁ···ନିର୍ଜନ କାରାକକ୍ଷରୁ ମୁକ୍ତି ଦେବା ପାଇଁ, ସାମ୍ରାଜ୍ୟବାଦୀ କଏଦୀଖାନାର ଦୃଢ଼ଙ୍ଗ ପ୍ରାଚୀର ଭାଙ୍ଗିବା ପାଇଁ, ତାର ସୁନେଲି ଭବିଷ୍ୟତ ଆଜି ପ୍ରତିଜ୍ଞାବଦ୍ଧ । ଫରାସୀ ଶାସକ-ମାନଙ୍କଦ୍ୱାରା ସେମାନେ ସମ୍ପୂର୍ଣ୍ଣ ଅବହେଳିତ । ଯୋଗ୍ୟତା ଥାଇ ମଧ୍ୟ କେନ୍ଦ୍ରୀୟ ଶାସନ ସଭାରେ ସେମାନଙ୍କୁ ନିଯୁକ୍ତି ମିଳୁନାହିଁ । କାରଣ ସେମାନେ ଚିରନ୍ତନ ବିଦ୍ରୋହୀ । ସରକାରୀ କାର୍ଯ୍ୟରେ ସେମାନେ ବିଶ୍ୱାସଯୋଗ୍ୟ ନୁହନ୍ତି ।

ଏସବୁ ସରକାରୀ ନିରୁତ୍ସାହ ସତ୍ତ୍ୱେ ଗେଟିନ ଇତିହାସର ଗତି କ'ଣ କେବେ ଧିମେଇ ଯାଉଛି ? ଯେଉଁମାନଙ୍କ ପାଇଁ ଇତିହାସ ଆଉ ଯେଉଁମାନେ ଇତିହାସ ପାଇଁ ..ଗେଟିନକୁ ବଞ୍ଚାଇବାକୁ ସୃଷ୍ଟି ଥିଲେ··ସେ ବୁଦ୍ଧିଙ୍କର ଗତି ଅବାରିତ, ପ୍ରଖର ଏବଂ ସଙ୍କଳ୍ପବଦ୍ଧ । ପ୍ରାତଃ-ସ୍ମରଣୀୟ ମାଇ-ହାକ-ଡ଼ୋ ସେମାନଙ୍କ ମଧ୍ୟରୁ ଜଣେ । ଅଷ୍ଟାଦଶ ଶତାବ୍ଦୀରେ ତତ୍କାଳୀନ ଶାସକ ଚୀନା ସାମନ୍ତବାଦୀ ଜମିଦାରଙ୍କୁ ତଡ଼ି ସେ ନିଜେ ନିଜକୁ ଶାସକ ବୋଲି ଅଭିହିତ କରିଥିଲେ । ସେହିପରି ଆଉ ଜଣେ ସାହିତ୍ୟିକ ନୁଏନଜୁ । 'କିମ-ଭାନ୍ କିଉ' ରଚୟିତା । ଭିଏତନାମୀ ସାହିତ୍ୟର ଏକ ଅନବଦ୍ୟ ସୃଷ୍ଟି । ଏହି ପୁସ୍ତକର ପ୍ରତିପୃଷ୍ଠାରେ, ପ୍ରତି ଶବ୍ଦରେ, ପ୍ରତି ଅକ୍ଷର—ବକ୍ଷରେ ଯେପରି ସମଗ୍ର ଭିଏତନାମ ଶାନ୍ତିରେ ନିଃଶ୍ୱାସ ମାରୁଛି । ପ୍ରତି ଅଣୁକଣାରେ ଯେପରି ଭିଏତନାମ ରହି ରହି ନାଚି ଉଠୁଛି । ଦୀର୍ଘ ଅତୀତରୁ ମନେ ପକାଇ ସୁଦୂର ଭବିଷ୍ୟତ ପର୍ଯ୍ୟନ୍ତ ସେ ଦୌଡ଼ି ଚାଲିଛି ଭିଏତନାମର ଏକୂଳରୁ···ସେ କୂଳକୁ । ଅତୀତ···ବର୍ତ୍ତମାନ ଏବଂ ଭବିଷ୍ୟତର··· ଏକ ମହତ୍ ମିଳନର ରକ୍ଷୁ ।

ଭିଏତନାମୀ ସାହିତ୍ୟଭଣ୍ଡାରକୁ ଗେଟିନର ଦାନ ଅତୁଳନୀୟ । ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ସମ୍ରାଟ ଲେ-ଲଇ ତାଙ୍କର ମୁକ୍ତିଯୁଦ୍ଧ ଆରମ୍ଭ କରିଥିଲେ ଚୀନ ଆକ୍ରମଣକାରୀଙ୍କ ବିରୁଦ୍ଧରେ । ସମ୍ରାଟଙ୍କର ସମସ୍ତ ଦକ୍ଷତା, ସାହସ, ଧୈର୍ଯ୍ୟ ଓ ବୀରତ୍ୱର ଉତ୍ସ ଥିଲା ଗେଟିନର ସାହିତ୍ୟ ଓ ସଂସ୍କୃତି । ପଞ୍ଚଦଶ ଶତାବ୍ଦୀର ଆଦ୍ୟମୁହୂର୍ତ୍ତରେ ସମ୍ରାଟ ଲେ-ଲଇ ଯେଉଁ ଗରିଲା ଯୁଦ୍ଧର ସୂତ୍ରପାତ କରିଥିଲେ ତାହା ବିଂଶଶତାବ୍ଦୀର ପ୍ରଥମାର୍ଦ୍ଧ ଯାଏ ଜୀବନ୍ତ ରହିଲା ପ୍ରତି ଭିଏତନାମୀ ପ୍ରତି ଆନାମୀ ପ୍ରତି ଗେଟିନର ହୃଦୟ ମନ୍ଦିରରେ । ଫ୍ରାନ୍ସ ସାମ୍ରାଜ୍ୟବାଦୀଙ୍କ ପରେ ମାର୍କିନ ଯୁଦ୍ଧଖୋରମାନଙ୍କ ସହିତ ଲଢ଼ିଲାବେଳେ ସମ୍ରାଟ ଲେ-ଲଇ-ଙ୍କର ଅନାଶ୍ର ପାର୍ବତ୍ୟ ଦୁର୍ଗମାହିଁ ଆଗରେ ଠିଆହୁଏ ଅନେକ ଅକୁହା କାହାଣୀ

ଗପି ଗପି ଯାଏ । ଅନ୍ଧାରୀ ସଭ୍ୟତାରୁ ଆରମ୍ଭ କରି ଆଜିର ଆଲୋକିତ ଦୁନିଆ ସମ୍ବନ୍ଧରେ ନିତି ନୂଆ ନୂଆ କେତେ ପ୍ରଶ୍ନ ଶୁଣାଏ । ସେ ଗେଟିନ—ସ୍ୱୟଂ-ପୂର୍ଣ୍ଣା ସେ ବୀରଭୋଗ୍ୟା । ତାର ସେ କାଳର ଅଲେଖା ଅତୀତ ହିଁ ଆଜି ଇତିହାସର ପ୍ରଥମ ପୃଷ୍ଠାରେ ଲେଖା ହେଉଛି ।

ଗେଟିନର ଦୈନନ୍ଦିନ ଜୀବନଯାତ୍ରାରେ ଆଜି ଅତୀତ ଖେଳି-ବୁଲୁଛି । ଗେଟିନ ତାକୁ ଛାଡ଼ି ଆଗକୁ ଯାଇପାରୁ ନାହିଁ । ମରଣାବଧି ଅତୀତର ସ୍ମୃତି ନେଇ ସେ ବଞ୍ଚିବ । କିମ୍ବଦନ୍ତୀ ହେଲେ ମଧ୍ୟ ସେ କୁହେ ତାର ଜୀବନ-କାହାଣୀ ସେ । ଗପ ହେଲେ ମଧ୍ୟ ସେ କୁହେ ସେ ତାର ନିଜସ୍ୱ ସମ୍ପତ୍ତି । ସେଥିପାଇଁ କେତେ ଜିନିଷ ସେ ସାଇତି ନ ରଖିଛି !!! ସେ ଦିନର ଧନୁଶର, ସେ କାଳର ବର୍ଚ୍ଛା, ସେ ଯୁଗର ବାଉଁଶ ତିଆରି ତୀର୍··· ସବୁକୁ ସେ ମହାର୍ଘ ଦାନ ଭାବି ବକ୍ଷରେ ଜାକୁଡ଼ି ଧରିଛି । ତାକୁ ଭୁଲିଗଲେ ନିଜକୁ ଭୁଲିଯାଇ ହେବ ।

ଗେଟିନ ଭିଏତନାମର ଉପାନ୍ତ ଅଞ୍ଚଳ । ସାମ୍ରାଜ୍ୟବାଦୀ ଉପନିବେଶୀ-ଯୁଗର ଆରମ୍ଭରୁ···ଗେଟିନ ତାର ସନ୍ତାନମାନଙ୍କୁ ଉଚିତ ଶିକ୍ଷା ଦେଇଛି । ଆକ୍ରମଣକାରୀ ବିଦେଶୀମାନଙ୍କୁ ପରିହାସ କରିବା ଛଳରେ ସେମାନେ ଗେରୁଆ ବସ୍ତ୍ର ପିନ୍ଧନ୍ତି । ଆଜି ମଧ୍ୟ ସେହି ବସ୍ତ୍ରର ପ୍ରଚଳନ ଭିଏତନାମରେ ଖୁବ୍ ବେଶି । କେନ୍ଦ୍ର-ସରକାର ଅରୁଚିକର ଅସଭ୍ୟ କହି ସେତେବେଳେ ଏହି ପୋଷାକ ସାଧାରଣ ବ୍ୟବହାର ପାଇଁ ନିଷିଦ୍ଧ କରିଥିଲେ । କିନ୍ତୁ ସେମାନଙ୍କ କଥା ଶୁଣିଲା କିଏ ? ଏପରିକି ସ୍ତ୍ରୀ ଲୋକମାନେ ବିଦ୍ରୋହର ଚିହ୍ନ ସ୍ୱରୂପ ଆମ୍ବଲଙ୍କା ପରିହାର କରି ପୁରୁଷମାନଙ୍କ ପରି ପୋଷାକ ପିନ୍ଧୁଥିଲେ । ପାଇଜାମା ସେମାନଙ୍କର ଅତି ପ୍ରିୟ ଥିଲା । ଆଜି ବି ସେମାନେ ସେହି ପାଇଜାମା ପିନ୍ଧିବାର ବ୍ୟବସ୍ଥାକୁ ଅତୁଟ ରଖି ପାରିଛନ୍ତି । ସହଜରେ କହିବାକୁ ଗଲେ ବିଦ୍ରୋହୀ ଅତୀତକୁ ଛାଡ଼ି ଗେଟିନ ଆଗକୁ ଚାଲିବାକୁ ପ୍ରସ୍ତୁତ ନୁହେଁ ।

ପ୍ରାକ୍ ସାମ୍ରାଜ୍ୟବାଦୀ ଯୁଗରୁ ଗେଟିନ ଇତିହାସରେ ମୁଖ୍ୟ ପୃଷ୍ଠା ଅଳଙ୍କୃତ କରିଛି । ବିପ୍ଳବର ଚିରନ୍ତନ ପୀଠ ହିସାବରେ ତାର ନାମ କାନ୍ଥବାଡ଼ରେ ଅଙ୍କା ହୋଇଯାଇଛି । ୧୮୮୫ରେ ଆନାମକୁ ଫରାସୀ ଶାସିତ ଇଲାକା ମଧ୍ୟକୁ ଆଣିବା ପାଇଁ ରାଜାମାନଙ୍କ ସହିତ ଯେତେବେଳେ ସନ୍ଧିପତ୍ର ସ୍ୱାକ୍ଷରିତ ହେବାକୁ ଗଲା ସେତେବେଳେ ରାଜାଙ୍କ ପରିବର୍ତ୍ତେ, ଯେଉଁ ଯୁବରାଜ ଶାସନ ଦାୟିତ୍ୱରେ ଥିଲେ ସେ ରାଜ୍ୟଛାଡ଼ି ପଳାଇଗଲେ । ଯୁବରାଜଙ୍କଠାରୁ ନୀରବ ସମର୍ଥନ ପାଇ ଜାତୀୟ-ବାଦୀ ମାଣ୍ଡାରିନ୍‌ମାନେ ଫରାସୀ ଉପନିବେଶୀମାନଙ୍କର ଏତାଦୃଶ ଅବାଞ୍ଛିତ ହସ୍ତକ୍ଷେପ

ବିରୁଦ୍ଧରେ ଜନମତ ଆହ୍ୱାନ କଲେ । ଫଳରେ ଆନାମୀ, ଗେଟିନ ଏବଂ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ବୁଦ୍ଧିଜୀବୀ, ସାହିତ୍ୟିକ, ଐତିହାସିକ, କଥାକାର ମାନଙ୍କୁ ନେଇ ଏକ ନୂତନ ଅଭ୍ୟୁଦୟର ଯୁଗ ଆରମ୍ଭ ହେଲା । ଦେଖାଗଲା ଖୁବ୍ କମ୍ ସମୟ ମଧ୍ୟରେ ଏହି ଅଭିଯାନ ଭିଏତନାମର ସ୍ୱଳ୍ପରେ ପ୍ରସାର ଲାଭ କରିଛି ଏବଂ ବହୁଳ ସଂଖ୍ୟାରେ ଶିକ୍ଷିତ ବୁଦ୍ଧିଜୀବୀ ଏହାର ମୁଖ୍ୟ ଦାୟିତ୍ୱ ଗ୍ରହଣ କରିଛନ୍ତି । ବୁଦ୍ଧିଜୀବୀମାନଙ୍କର ଏହି ଗଣ ଜାଗରଣ ତତ୍କାଳୀନ ଇତିହାସରେ 'ପଣ୍ଡିତ ବିଦ୍ରୋହ' (Scholars' revolt) ନାମରେ ନାମିତ । ପଣ୍ଡିତମାନଙ୍କୁ ସାମାଜିକ ବିଦ୍ରୋହର ସେନାନୀ କରି ପାରିଥିବାରୁ ଗେଟିନ ଭିଏତନାମ ସ୍ୱାଧୀନତା ସଂଗ୍ରାମରେ ନୂତନ ପର୍ଯ୍ୟାୟ ଉନ୍ମୋଚନ କରିଛି । ପ୍ରକୃତରେ ଗେଟିନରୁ ଏହି ବିଦ୍ରୋହର ସୂତ୍ରପାତ ହୋଇଥିଲା ଏବଂ ସେତେବେଳେ ଏହାର ନେତା ଥିଲେ ଫାନ୍ ଡ଼ିନ୍ ଫୁଙ୍ଗ୍ । ପରେ ପରେ ତାଙ୍କସହ ଯୋଗ ଦେଲେ ଫାନ୍ ଗ୍ୱିହ । ଫନ୍ ଗ୍ୱିଙ୍କ ସହିତ ଏହି ବିଦ୍ରୋହୀ ସାମ୍ମୁଖ୍ୟରେ ଆଉ ଯେଉଁ କେତେଜଣ ନାମକରା ବ୍ୟକ୍ତି ସଂଶ୍ଳିଷ୍ଟ ଥିଲେ, ସେମାନେ ହେଲେ ସଂସ୍କାରପନ୍ଥୀ ଫାନ୍ ଗ୍ୱିଉ ଚ୍ରିନ୍ ଏବଂ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ଦୁଇ ସାଧାରଣ ସମ୍ପାଦକ ତ୍ରନ୍ ଫୁ ଏବଂ ଲେ ହଙ୍ଗ ଫଙ୍ଗ । ସର୍ବୋପରି ଏହି ଗଣଅସନ୍ତୋଷକୁ ଜନଜାଗରଣର ରୂପ ଦେଇ ଯେଉଁ ମହାନ୍ ଚରିତ୍ର ଏହାକୁ ସ୍ୱୟଂସମ୍ପୂର୍ଣ୍ଣ କରି ଭିଏତନାମ ମୁକ୍ତି ଆନ୍ଦୋଳନର ପଥକୁ ସରଳ, ସହଜ କରି ଗଢ଼ି ତୋଳିଥିଲେ, ସେ ହେଲେ ଗ୍ୱୟେନ ସିନ୍ କଙ୍ଗ୍ ଓରଫ୍ ଗ୍ୱୟେନ ଆଇ କୋକ୍ ବା ପରବର୍ତ୍ତୀ ସମୟରେ ବିଶ୍ୱମୁକ୍ତି କାମୀ ଜନତାର ନେତା ହୋ-ଚି-ମିନ୍ ।

ଊନବିଂଶ ଶତାବ୍ଦୀର ଶେଷ ଯୁଗ । ୧୮୮୯ରୁ ୧୯୦୦ ; ଭିଏତନାମ ସମ୍ପୂର୍ଣ୍ଣଭାବେ ଉପନିବେଶୀ ଶାସନର ଅନ୍ଧାରି କୋଣରେ ପଡ଼ି ରହିଛି । ଦେଶସାରା ସାଧାରଣ ଜନତାର ନାଗରିକ ଅଧିକାରକୁ ଲୋପ କରିଦିଆହୋଇଛି । ନ୍ୟାୟ, ବିଚାର, ନୀତି, ଧର୍ମ, ଆଦର୍ଶ ଆଦି ମାନବିକ ମୂଲ୍ୟବୋଧର ତଣ୍ଟିଚିପି ହତ୍ୟା କରା-ହୋଇଛି । ସ୍କୁଲ, ପାଠଶାଳା ଓ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନଙ୍କରେ ସ୍ଥାନୀୟ ନାଗରିକଙ୍କର ପ୍ରବେଶାଧିକାର ନାହିଁ । ରୋଗ, ବୈଷମ୍ୟର ପ୍ରାଦୁର୍ଭାବ ଦିନକୁ ଦିନ ବଢ଼ି ଚାଲିଛି । ଚିକିତ୍ସାର ସୁବ୍ୟବସ୍ଥା ରହିଛି କେବଳ ଫରାସୀ ସାହେବ ଓ ବିଦେଶୀୟ ଧର୍ମଯାଜକ ମାନଙ୍କ ପାଇଁ । ଜାତୀୟତାର ଅସ୍ମିତା ରହି ରହି କାନ୍ଦି ଉଠୁଛି । ପଥ ଖୋଜୁଛି ବାହାରକୁ ଚାଲିଯିବା ପାଇଁ, ପାହାନ୍ତି ସୂର୍ଯ୍ୟାଲୋକ ଦେଖିବା ପାଇଁ । 'ପଣ୍ଡିତ ବିଦ୍ରୋହ'ର ମୃତ କବରତଳୁ ବିଦ୍ରୋହର ଅମର-ଆତ୍ମା ଚିତ୍କାର ଶୁଣୁଛି । ୧୯୦୮ରେ ଫାଇ ଫୋ ଏହି ସମାଧି ଦ୍ୱାରର ବୁକ

କପାଟ ଉନ୍ମୁକ୍ତ କରି ବାହାରି ଆସିଛନ୍ତି ରାଜଦରବାର ସମ୍ମୁଖକୁ । ଜାତୀୟତା, ପରାଧୀନତାରୁ ମୁକ୍ତି, ସ୍ୱାଧୀନତାର ଜୟଗାନ କରି ଉପନିବେଶୀଗୁଡ଼ିକ ଉପରେ ମୁକ୍ତ ଭିଏତନାମର ଧ୍ୱଜା ଉତ୍ତୋଳନ କରିବା ପାଇଁ ! ୧୯୧୭ରେ ଏହି ପଣ୍ଡିତ-ମାନଙ୍କ ମଧ୍ୟରୁ ଆଉଜଣେ ତୃଇଟାନ, ସଶସ୍ତ୍ର ଅଭିଯାନର ନୀତିକୁ ଗ୍ରହଣ କରି ନେଲେ ; କିନ୍ତୁ ତାହା ଅଚିରେ ମିଳାଇଗଲା । ବ୍ୟର୍ଥ ଆଉ ନିରସ୍ତ୍ର ହୋଇ ଜାତୀୟତାବାଦୀ ଭିଏତନାମୀମାନେ ଦେଶ ଛାଡ଼ି ବିଦେଶ ଚାଲିଯିବା ପାଇଁ ଶ୍ରେୟଃ ମନେକଲେ । ବିଦେଶରେ ଥାଇ ଗୁପ୍ତ ସଙ୍ଗଠନ ମାଧ୍ୟମରେ ଜାତୀୟତାବାଦୀ ଆନ୍ଦୋଳନକୁ ଚାଲୁରଖିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ବିଦେଶରେ ଯେଉଁ କେତୋଟି ଗୁପ୍ତ ବିଦ୍ରୋହୀ ସମାଜ ଗଢ଼ି ଉଠିଥିଲା, ସେମାନଙ୍କ ମଧ୍ୟରୁ କ୍ୱାଙ୍ଗ ଫୂକିଙ୍ଗ ନାମ ଉଲ୍ଲେଖଯୋଗ୍ୟ ।

ପ୍ରତିଶୋଧ, ପ୍ରତିହିଂସାର ତାତିଲା ନିଃଶ୍ୱାସ ନେଇ ସେମାନେ ଦେଶ ଛାଡ଼ିଲେ । ବାହାରେ ଥାଇ ଗୋପନ ହତ୍ୟା, ଗୋପନ ଅସ୍ତ୍ରଯୋଗାଣ, ଗୋପନ ଅନ୍ୟାନ୍ୟ ଆଦି ଭୟଙ୍କର କାର୍ଯ୍ୟରେ ଲିପ୍ତ ରହିଲେ । ଏସବୁର ଗୋଟିଏ ଲକ୍ଷ୍ୟ ଥିଲା ବିଦେଶୀ ଘାତକ ହାତରୁ ଭିଏତନାମକୁ ମୁକ୍ତ କରିବା ।

ବୁଦ୍ଧିଜୀବୀମାନଙ୍କର ପ୍ରାଣକେନ୍ଦ୍ର ରେଟିନ, ତା'ପରେ ଅନାମ, ତା'ପରେ ଟନକିନ୍, ତା'ପରେ ସାରା ଭିଏତନାମ । ପଣ୍ଡିତମାନଙ୍କର ବିଦ୍ରୋହାଗ୍ନିରେ ଜଳିଉଠିଛି ଫରାସୀ ଉପନିବେଶୀମାନଙ୍କର ଶାସନବାଦ । ନୂତନ ସଭ୍ୟତାର ଅରୁଣୋଦୟ ଦେଖି ଫରାସୀ ଶାସନବଳ ସ୍ତମ୍ଭିତ, ବିସ୍ମିତ । କୃଷକ, ଶ୍ରମିକ, ଶୋଷିତମାନଙ୍କ ପରିବର୍ତ୍ତେ ବୁଦ୍ଧିଜୀବୀମାନଙ୍କର ବିଦ୍ରୋହ ରଣଅଭିଯାନ··· ବିପ୍ଳବର ଜୟଯାତ୍ରା । ଭିଏତନାମର ହୃତ ଗୌରବ, ବ୍ୟକ୍ତିତ୍ୱ, ପୂର୍ବ୍ବସାନ୍ତନେ ଜମାଟବନ୍ଧା ମଣିଷ ସହିତ ମଣିଷର ରକ୍ତସମ୍ପର୍କକୁ ଫେରାଇ ଆଣିବା ନିମନ୍ତେ ବ୍ୟାକୁଳ । ଟନକିନ୍‌ରେ ହୋଆଙ୍ଗ ହୋଆ ନାମକ ଜଣେ ବିଦ୍ରୋହୀ 'ଗଣମୁକ୍ତି ସଙ୍ଗଠନ' ଗଠନ କଲେ । ତାଙ୍କର ମତ ଥିଲା କେବଳ ସାମରିକ ବଳରେ ହିଁ ଫରାସୀ ଉପନିବେଶୀମାନଙ୍କୁ ଏ ମାଟିରୁ ତଡ଼ି ଦିଆଯାଇ ପାରିବ । ଅନ୍ୟପକ୍ଷରେ "ଟନକିନ୍‌ରେ ଥିବା 'ଦେଶପ୍ରେମୀ ଶିକ୍ଷାସଙ୍ଗଠନ' ମାଧ୍ୟମରେ ଭିଏତନାମୀ ଏକ ପୁର୍ବାଞ୍ଚଳର ବିଦ୍ରୋହୀ, ମୁକ୍ତିକାମୀମାନଙ୍କୁ ଉପଯୁକ୍ତ ଶିକ୍ଷା-ଦେଇ ଫରାସୀ ଶିକ୍ଷା ସଂସ୍କୃତିର ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତ କରିବା ଏବଂ ପଶ୍ଚିମା ଶିକ୍ଷାର ପ୍ରଭାବଠାରୁ ସେମାନଙ୍କୁ ବହୁ ଦୂରରେ ରଖିବା"—ଏହା ଏକ ଜାତୀୟତାବାଦୀ ଗୋଷ୍ଠୀର ଦୃଢ଼ମତ ଥିଲା । ଏହିପରି ବିଭିନ୍ନ ସ୍ତରରେ ବିଦ୍ରୋହ କାର୍ଯ୍ୟ କରୁଥିବା

ବୁଦ୍ଧିଜୀବୀ ପଣ୍ଡିତମାନେ ଭିଏତନାମର ଜାତୀୟତାକୁ ସବୁଦିଗରୁ ପୁନରୁତ୍‌ଥିତ କରିବାକୁ ଆପ୍ରାଣ ଚେଷ୍ଟା ଚଳାଇଲେ ।

ଊନବିଂଶ ଶତାବ୍ଦୀର ପରାର୍ଦ୍ଧରେ ଭିଏତନାମ ପ୍ରତିହିଂସାର ଅଗ୍ନିକୁଣ୍ଡ ମଧ୍ୟରେ ଜଳୁଛି । ତାର ଉତ୍ତାପ ଗ୍ରୀଷ୍ମ ଶିଶୁ ନୁଏନ ଭାଙ୍ଗ ସାଙ୍ଗଙ୍କ ଶରୀରରେ ବାଜିବା ସ୍ୱାଭାବିକ । ଗ୍ରୀଷ୍ମ ପାଦରେ ଗାଁର ବଙ୍କାରାସ୍ତା ଦେଇ ଚାଲିଲାବେଳେ ଅଦୂରବର୍ତ୍ତୀ ନାରିକେଳ ବଣ ମନେ ପଡ଼େ···ଆଖି ଆଗରେ ଦିଶିଯାଏ ଶ୍ୟାମଳ-ବନଘେର ଆନାମୀ, ଆମ୍ରତରୁତୋଟା । ହୋ-ଙ୍କର କୋମଳ ଶିଶୁପାଦ ଅଟକି ଯାଏ । ମନ୍ଦିରର ଅଗ୍ରଭାଗରୁ ପବିତ୍ର ଧ୍ୱଜାର ଶେଷାବଶେଷ ଲହି ଲହି ପୁଣି ଆଖି ସାମନାକୁ ଚାଲିଆସେ । ମନ୍ଦିର ପାଦର ଗଢ଼ ଦ୍ୱିଭୂଷିତ ଗଢ଼ରେ ବଢ଼ି ଚାଲେ ଆଗକୁ । ଅମୂର୍ତ୍ତା ଦେଉଳର ଖୁବ୍ ନିକଟତର ହୋଇ ନୁଏନ ଚାହିଁ ରହନ୍ତି ତାର ଅଗ୍ରଚୂଡ଼ାକୁ । କାହା ପାଇଁ, କେଉଁଥି ପାଇଁ ଏହି ନିର୍ଜନ ବନଭୂମିରେ ମନ୍ଦିରଟି ପ୍ରତୀକ୍ଷା କରି ରହିଛି ? ? କାରୁକାର୍ଯ୍ୟ ଖଚିତ ମନ୍ଦିରର ପ୍ରସ୍ତରଦେହରେ ହାତବୁଲାଇ ଆଣନ୍ତି ସେ । କେତେ ଛଟମନ୍ତ ତାର ଶୋଭା ! କେତେ ଅଦ୍ଭୁତ ତାର କାହାଣୀ । କିଏ ଲେଖିଛି ? କାହା ପାଇଁ ? କେବେ ? ଘରକୁ ଫେରନ୍ତି ସେ । ସେହି ପଦଚଲା ରାସ୍ତା ଦେଇ । ଆଈମା, ବାପା, ମା, ଖୁଡ଼ୀ, ଦାଦାଙ୍କ ଆଗରେ ପଚାରି ବସନ୍ତି ..ଅନେକ ଅନେକ କଥା । ଉତ୍ତର ଖୁବ୍ ସରଳ ଏବଂ ସ୍ପଷ୍ଟ । ମାତ୍ର କେତୋଟି ଦଶନ୍ଧିର କଥା । ଭିଏତନାମକୁ ବିଦେଶୀ ଆକ୍ରମଣ-କାରୀଙ୍କ ହାତରୁ ରକ୍ଷା କରିବାକୁ ଯାଇ ଜଣେ ଜାତୀୟତାବାଦୀ ସମ୍ରାଟ ସେତେବେଳେ ତାଙ୍କର ଜଣେ ତରୁଣ ବନ୍ଧୁଙ୍କୁ ସେନାଧ୍ୟକ୍ଷର ଦାୟିତ୍ୱ ଅର୍ପଣ କରିଥିଲେ । ଦୁର୍ଭାଗ୍ୟ-ବଶତଃ ସେହି ବୀର ତରୁଣ ଜଣଙ୍କ ଶତ୍ରୁ ହାତରେ ନିହତ ହେଲେ । ତାଙ୍କରି ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏହି ସୁଦୃଶ୍ୟ ମନ୍ଦିର ଯୁଗ ଯୁଗ ଧରି ଠିଆ ହୋଇଛି । ସେହିଦିନଠାରୁ ଭିଏତନାମ ମାଟିରେ ଯେ କେହି ବୀର ଜନ୍ମ ନେଇଛନ୍ତି, ସମସ୍ତେ ଏହି ମନ୍ଦିରର ଦ୍ୱାରଦେଶରେ ଆସି ଠିଆ ହୁଅନ୍ତି, ଉତ୍ସାହ, ପ୍ରେରଣା ଓ ସାହସ ଭିକ୍ଷା କରି । ସେ କାଳରୁ, ସେହି ଶୈଶବର ଜନ୍ମକାଳରୁ, ଶିଶୁ ନୁଏନଙ୍କ ହୃଦୟକନ୍ଦରରେ ଲାଗିରହିଛି ସେହି ମନ୍ଦିରର ଝଲେଳିତ ଆତ୍ମା ; ଯାହାକୁ ସେ ଭୁଲି ପାରୁ ନାହାନ୍ତି । ଯାହାକୁ ସେ ଜୀବନସାରା ଆପଣାର କରି ରଖିବାକୁ ଚାହାନ୍ତି । କିନ୍ତୁ ଜୀବନର ନିରାପତ୍ତା କାହିଁ ? ସବୁର ନିୟନ୍ତ୍ରିତ ଫରାସୀ ଯମ ହାତରେ !

ଭିଏତନାମର ରାସ୍ତା ଘାଟରେ, ନାଳ, ନର୍ଦ୍ଦମାରେ ବାଡ଼ ବଗିଚାରେ, କଳ କାରଖାନାରେ, ଖଣି ଖାଦାନରେ ଫରାସୀ ଇଞ୍ଜିନିୟର, ଫରାସୀ ଓଭରସିଅର, ଫରାସୀ କଣ୍ଟ୍ରାକ୍ଟର । ଦେଶୀୟ ମିସ୍ତ୍ରୀ-କାରିଗର ବଦଳରେ ଫରାସୀ

ବିଶେଷଜ୍ଞ । ଦେଶୀ କଲେକ୍ଟର ପରିବର୍ତ୍ତେ ଶାସନ ପରିଚାଳନାରେ ବିଦେଶୀ ମାଜିଷ୍ଟ୍ରେଟ । ଯେଉଁଠି ଦେଖିବ କୁଲି ମଜଦୁର, ମେହନ୍ତରଙ୍କର ବସ୍ତି । ଭିଏତନାମର ବଜାରରେ ଚାଉଳ ନାହିଁ, ଲୁଗାପଟା ନାହିଁ ପିନ୍ଧାପିନ୍ଧିବା ନାହିଁ, ତା ବଦଳରେ ଆସୁଛି—ଜାହାଜ ବୋଝେଇ ହୋଇ ମଦ, ଓପିଅମ୍, ହିରୋଇନ୍, ଗଞ୍ଜା ଓ ଯାବତୀୟ ବିଦେଶୀ ଆମଦାନି ସୌଖୀନ ପଦାର୍ଥ ! ପ୍ରତି କୁଲି, ମଜଦୁର ହାତରେ ପରିଶ୍ରମ ଶ୍ରାନ୍ତ ବିନୋଦନର ଅମୋଘ ମହୌଷଧି ହିରୋଇନ୍, ଓପିଅମ୍ । ସନ୍ଧ୍ୟାବେଳର ଚାଲେ ଚାଲେ ସହରତଳି ଶ୍ରମିକ ବସ୍ତିରେ ବାଇନାଚ । ଭିଏତନାମର ସୁନ୍ଦରୀ ଅନୂଢ଼ା କିଶୋରୀ ପୁରରେ ଫରାସୀ ପୋଲିସ, ସରକାରୀ କର୍ମଚାରୀ, ଟିକସ ଆଦାୟକାରୀ, ସୈନ୍ୟମାନଙ୍କର ବ୍ୟଭିଚାରର ତାଣ୍ଡବଲୀଳା । ଯୌବନର ନଗ୍ନ ବକ୍ଷପରେ ଦାରିଦ୍ର୍ୟର ଉତ୍କଟ ପରିହାସ । ପ୍ରତି ଫରାସୀର ଅଙ୍କ ମଣ୍ଡନ କରୁଛି. ଭିଏତନାମ କୁଲି, ମଜଦୁର, ଚାକରବାକର, ଭିକାରୀର କୁମାରୀ କନ୍ୟା । ଗୋଟିଏ ରାତି ପାଇଁ, କେତେଟି ମୁଦ୍ରା ପାଇଁ ମାତ୍ର । ଭିଏତନାମ ବୀର ରକ୍ତରେ ସଞ୍ଚିତ ଯାଉଛି ସାମ୍ରାଜ୍ୟବାଦର ହିଂସ୍ର ସ୍ୱାର୍ଥ । ଜାରଜ ସନ୍ତାନମାନଙ୍କର ସମାବେଶରେ ଭିଏତନାମର ସହର ରାସ୍ତା ମସଗୁଲ । କେଉଁ ବିବେକବାନ୍, ବୁଦ୍ଧିମାନ, ଚରିତ୍ରବାନ ବ୍ୟକ୍ତି ଏହା ଦେଖି ସହି ପାରିବ ? ମାନବିକ ଦୁର୍ବଳତାର ଚରମ ସୋପାନ—ନାରୀର ଇଜ୍ଜତ, କନ୍ୟାର ଗୌରବ, ମା'ର ସମ୍ମାନ ରକ୍ଷା । ଐଶ୍ୱର୍ଯ୍ୟ-ମାଳିନୀ ଭିଏତନାମ ଦେଶମାତୃକା ଦେଶରେ ପରିଣତ ହେବ—ଏହା ଏକ ବେକାର ବୀରସନ୍ତାନମାନେ ସହ୍ୟ କରି ପାରିବେ ନାହିଁ ? ଭିଏତନାମର ମଧ୍ୟବିତ୍ତ ନାଲିନାଲି ବଜାରରେ ଓପିଅମ, ହିରୋଇନ ମଦର ଆସ୍ତରଣ ହୋଇ ଖେଳିବ ତା କେବେ ଭିଏତନାମର ବୀର ଶିଶୁ ହେବାକୁ ଦେବ ନାହିଁ । ଊନବିଂଶ ଶତାବ୍ଦୀର ଏହି ବିକୃତ ଭିଏତନାମକୁ ନୂତନ ରୂପ ଦେବାକୁ ହେବ । ସହରର ଅମୂର୍ତ୍ତ ଗମ୍ଭୀର ମଧ୍ୟରୁ କିଏ ଯେପରି ଶୁଣାଇ ଶୁଣାଇ ଏ କାହାଣୀସବୁ ଗପିଯାଉଛି !!!

ଅନ୍ୟ ପଣ୍ଡିତମାନଙ୍କ ପରି ଲୁଏନଙ୍କ କାନରେ ମଧ୍ୟ ସେହି ବାଣୀର ପ୍ରତି-ଧ୍ୱନି । ବୁଦ୍ଧି, ପ୍ରତିଭା, ପ୍ରଜ୍ଞା ନେଇ ଜନ୍ମ ହୋଇ ଯଦି ଏତାଦୃଶ ଦୁର୍ଦ୍ଦଶାର ସମନା କରି ନ ପାରିଲେ, ତେବେ ମସ୍ତିଷ୍କ ଜୀବନ ଧିକ୍ !! ପୁତ୍ର, କନ୍ୟା ହୋଇ ଯଦି ଦୁଃଖିନୀ ମା'ର ଆଖିରୁ ଲୁହ ପୋଛି ନ ପାରିଲ, ତେବେ ବଞ୍ଚି ରହିବାରେ ସାର୍ଥକତା କାହିଁ ? ମୁକ୍ତ ଆକାଶ ତଳେ ପାଦ ରଖି ଯଦି ସ୍ୱାଧୀନ ଭାବରେ ଚାଲି ନ ପାରିଲ, ତେବେ ପାଦ ରହିବାରେ ଆବଶ୍ୟକତା କ'ଣ ?...ଜଣେ ନୁହେଁ, ଦୁଇଜଣ ନୁହେଁ...ଘର ଆଗରେ ସେହି ଏକକ ପ୍ରଶ୍ନ ! ବିଦ୍ରୋହ ଅନିବାର୍ଯ୍ୟ । ବୁଦ୍ଧିଜୀବୀ, ସାହିତ୍ୟିକ, କଳାକାର, ବିଶେଷଜ୍ଞ, କାରିଗରମାନଙ୍କର ଅଭ୍ୟୁତ୍‌ଥାନ, 'ପଣ୍ଡିତ ବିଦ୍ରୋହ' ।



# ୩

## ବାଲ୍ୟଜୀବନ

ସଙ୍ଗଲମ୍ ଉପତ୍ୟକାକୁ ବେଢ଼ି ରହିଛି କିମ୍‌ଲିଏନ୍ । ଭିଏତନାମର ନାମ୍‌ଡାନ ଜିଲ୍ଲାର ଶ୍ରେଷ୍ଠ ଗାଁଟିଏ । ସରଳା ଗ୍ରାମ୍ୟ କିଶୋରୀ ପରି । ବିସ୍ତୃତ ଶସ୍ୟ-କ୍ଷେତର ସବୁଜ ଓଢ଼ଣୀତଳୁ ମୁଣ୍ଡଟେକି ଚାହିଁ ରହିଛି କିମ୍‌ଲିଏନ୍ । ଅନନ୍ତ ଆକାଶ ଆଡ଼େ, ନୀଳ-ସମୁଦ୍ର ପଟେ, ସଙ୍ଗଲମର ଘନ ନୀଳାଞ୍ଚଳ ଯାଏ । ସତେ ଯେପରି ସେ ଚାହିଁବାରେ ଟିକିଏ ବିରାମ ନାହିଁ । ବିଷାଦ ନାହିଁ । ଆଜିକାଲି ନୁହେଁ, ଯୁଗ ଯୁଗରୁ, ଶତାବ୍ଦୀ ଶତାବ୍ଦୀରୁ । ଗହଳ ଅଖୁବୁଦା ତଳୁ ତାର କାନ୍ତ-କମନୀୟ-ରୂପଶ୍ରୀ ଦିଶିଯାଏ ମାଇଲ ମାଇଲ ବ୍ୟବଧାନରୁ । ଉନ୍ନତ ଶାଳଶ୍ରେଣୀ ମଧ୍ୟରୁ ତାର ନୀଳାଭ ଆଖିଯୋଡ଼ିକ କଳ୍ପନାର ଇନ୍ଦ୍ରଜାଲ ସୃଷ୍ଟିକରେ ପ୍ରବୁଦ୍ଧ ମନରେ । ଅନେକେ କହନ୍ତି, କିମ୍‌ଲିଏନ୍ ପରି ଅଗଣିତ ଅନୂଢ଼ା କିଶୋରୀଙ୍କର ପଦମଧୁକୁ ଲୋଭ କରି ବିଦେଶୀ ମାନେ ଏ ମାଟିକୁ ଆସିଥିଲେ । ତାର ସବୁଜ ଫସଲ କିଆରିରେ ଶୋଷଣର ହରିଲୁଟ ଖେଳିବା ପାଇଁ, ତାର ରୂପଧନକୁ ବଳପୂର୍ବକ ଛଡ଼ାଇ ନେବା ପାଇଁ ।

ଆମ୍ବ, ପଣସ, ନଡ଼ିଆ, ଆଖୁ, ମକ୍‌କା, ବାଜରା, ମାଣ୍ଡି ଆଉ ବହଳ ଅରଣ୍ୟ ମଧ୍ୟରେ କିମ୍‌ଲିଏନ୍—ନବବଧୂ ପରି ଲୁଚି ଯାଉଛି କେଉଁଠି ! ବର୍ଷା, ଶୀତ, ବସନ୍ତ, ଶରତ୍, ସବୁ ଋତୁରେ ସେ ସେଇଠି । କିନ୍ତୁ ଭିନ୍ନ ଭିନ୍ନ ରୂପସଜ୍ଜାରେ । ବର୍ଷକର ବାର ମାସରେ ତାର ବାରସହସ୍ର ରୂପ । ତାକୁଇ ଦେଖିଲେ ସାରା ଭିଏତନାମକୁ ଦର୍ପଣ ଆଗରେ ଦେଖିଲା ପରି ମନେହୁଏ, ଏହି କିମ୍‌ଲିଏନ୍ ହିଁ ଭିଏତନାମର ପ୍ରତିରୂପ । ପ୍ରାଚ୍ୟର ସୁନ୍ଦରୀ । ମର୍ତ୍ତ୍ୟର ଉର୍ବଶୀ । ଉଚ୍ଛୁଳ ଝରଣା-ପରି ତା'ର ଚାଲି, ପକ୍ଷୀର କାକଳି ପରି ତାର ସ୍ୱର ।

୧୮୯୦ ମସିହା । ମେ' ମାସ ୧୯ ତାରିଖ । ପ୍ରଚଣ୍ଡ ରୌଦ୍ରଜ୍ୱାଳରେ କିମ୍‌ଲିଏନ୍‌ର କୋମଳ ତରୁଲତା ଝାଉଁଳି ପଡ଼ୁଛି । ତାର ସବୁଜ ବନାନୀ ନଇଁ ପଡ଼ୁଛି ମାଟି ଉପରେ । ଗାଁର ପାଦଚଲା ରାସ୍ତା ଉପରେ ଗ୍ରୀଷ୍ମର ଘୂର୍ଣ୍ଣି-ବାତ୍ୟା । ଧୂଳିକୁପର ଉଡ଼ାଇ ନେଉଛି ନିର୍ଜନ ପ୍ରାନ୍ତର ଆଡ଼େ । କିମ୍‌ଲିଏନ୍ ସାମୟିକ ଅସ୍ଥିର ହୋଇ ଉଠିଛି । ରୌଦ୍ରତାପରେ ତାର ସଜଳ ମୁଖଶ୍ରୀ ଲାଲ ହୋଇ ଉଠିଛି । କିମ୍‌ଲିଏନ୍ ଶ୍ରାନ୍ତି ଅପନୋଦନ ପାଇଁ ପହିଲି ବର୍ଷା ଆଡ଼େ

ପ୍ରତୀକ୍ଷା କରି ରହିଛି । ଗାଁର ଶେଷ ମୁଣ୍ଡରେ ଥିବା ସେହି ଗୁଳ ଘରଟିକୁ ଦେଖିଲେ ଅନେକ କଥା ମନେ ପଡ଼େ । ପୁରୁଷ, ପୁରୁଷ ଧରି ସେହି ସ୍ୱଳଚ୍ଛ ଘର ଠିଆ ହୋଇଛି ଠିକ ସେହି ସ୍ଥାନରେ । ନୀରବ, ନିଶ୍ଚଳ, ପାଷାଣ ମୂର୍ତ୍ତିପରି ବାଉଁଶ ଝାଟିରେ ମାଟିଘେରା କାନ୍ଥଗୁଡ଼ିକ ଜୁଳୁଜୁଳୁ କରି ଦେଖୁଛନ୍ତି ଆଗକୁ । ସେହି ବାଟରେ ଯାତାୟତ କରୁଥିବା ସମସ୍ତ ପଥିକ ତାର ଆପଣାର । ସମସ୍ତଙ୍କୁ ସେ ନିକଟକୁ ଡାକୁଛି । କରୁଣ ନିବେଦନ ଜଣାଉଛି । ଟିକେ ସାନ୍ନିଧ ପାଇଁ, ଅନ୍ତରଙ୍ଗତା ପାଇଁ, ସାଦର ଆଲିଙ୍ଗନ ପାଇଁ । କି'ଣ ପାଇଁ ସେ ଏତେ ବ୍ୟାକୁଳ ?

ଦାଣ୍ଡପିଢ଼ା ଟିକକ ଅଟକି ଯାଆନ୍ତୁ ସେଠି । ସୁରମ୍ୟ ଅଟ୍ଟାଳିକା ନ ହେଲେ ବି ବହୁତ ଆକର୍ଷଣୀୟ । ନିଃସଙ୍ଗ ହେଲେ ମଧ୍ୟ ଭୂତକୋଠୀ ନୁହେଁ । ଥରେ ପାଦ ଦେଇ ପଛକୁ ମୁହଁ ଫେରାଇ ହୁଏ ନାହିଁ । ଘଡ଼ିଏ ବସିବାକୁ ଇଚ୍ଛା ହୁଏ । କାନରେ କେତେ କଥା ବାଜେ । ମନ କେତେ କି'ଣ କଳ୍ପନା କରିଯାଏ । ଶତାବ୍ଦୀର ଶେଷ ସୀମାରେ ଏହି ଘର ପହଞ୍ଚିଛି । ଏହାର ଭିତରେ କେତେ କି'ଣ ସଞ୍ଚିତ ହୋଇଥିଲା । ଆଜି ସେସବୁ ଉଭେଇ ଯାଇଛି । ଗୃହକର୍ତ୍ତ୍ରୀଙ୍କର ଜରାଜୀର୍ଣ୍ଣ କଣ୍ଠରୁ ବାହାରିଆସୁଛି କେତେ ବାଷ୍ପରୁଦ୍ଧ ଭାଷା । କହିବାକୁ ଇଚ୍ଛା କରି ମଧ୍ୟ କହି-ପାରୁନାହାନ୍ତି । ଗୃହକର୍ତ୍ତ୍ରୀ ଷଷ୍ଠୋର୍ଦ୍ଧ୍ୱ । ଦାରିଦ୍ର୍ୟ ଦୁଃଖ ବେଦନାର ସ୍ପଷ୍ଟ ଚିହ୍ନ ତାଙ୍କର ଶରୀର ମଧ୍ୟରୁ ଫୁଟି ଉଠୁଛି । ଛିନ୍ନବସ୍ତ୍ରର ଢାଙ୍କୁଣୀ ତଳେ ସେ ପ୍ରୌଢ଼ା ବୟସକୁ ଲୁଚାଇବାକୁ ଶତଚେଷ୍ଟା ଚଳାଇଛନ୍ତି । ଶ୍ଳଥ ଚର୍ମର ଅପାରଗ ସାମର୍ଥ୍ୟ ମଧ୍ୟରୁ ବିକଟ ହସ ଉକୁଟି ଉଠୁଛି ତାଙ୍କ ମୁହଁରୁ । ସଦ୍ୟପ୍ରସବା ସେ । ବିଶ୍ରାମ ଆରାମ ଲୋଡ଼ା । କିନ୍ତୁ ସେ ଭାଗ୍ୟ ତାଙ୍କର କାହିଁ ? ଘରେ ନିଜକର୍ମବିମୁଖ ସ୍ୱାମୀଙ୍କ ବ୍ୟତୀତ ନିଜର ସନ୍ତାନସନ୍ତତି ଶାଶୂଶ୍ୱଶୁର ଏବଂ ପରିବାର ଅନ୍ୟ ସଦସ୍ୟ ଗଣ । ଅଭାବ ଅନାଟନ ମଧ୍ୟରେ ଏ ପରିବାରଟି ସବୁବେଳେ ଗତି କରି ଆସିଛି । ଶିକ୍ଷିତ ହେଲେ ମଧ୍ୟ ମନମୁତାବକ ଚାକିରି ମିଳିପାରେ ନାହିଁ । ସାମର୍ଥ୍ୟ ଥିଲେ ମଧ୍ୟ ରୋଜଗାର ମେଣ୍ଟାଇବା ପାଇଁ ସମ୍ବଳ ନାହିଁ । ସେହି ଦାରୁଣ ଅଭାବ ମଧ୍ୟରେ ଆଜି ତାଙ୍କର ତୃତୀୟ ସନ୍ତାନ ଜନ୍ମ ନେଇଛି, ପୁତ୍ର ସନ୍ତାନ । ଅନ୍ୟ ଦୁଇଜଣଙ୍କ ପରି ତାକୁ ମଧ୍ୟ ପାରିବାରିକ ଶୋକ, ଉପବାସ ମଧ୍ୟରେ କାଳ କାଟିବାକୁ ପଡ଼ିବ । ପ୍ରୌଢ଼ା ମହିଳା ଜଣକ ଭାବପ୍ରବଣ ହୋଇ ଉଠିଲେ । କୋଳରେ ସଦ୍ୟଜନ୍ମ ଶିଶୁ ପୁତ୍ରକୁ ଜାବୁଡ଼ି ଧରିଲେ ସେ । କ୍ଷଣିକ ଆଗରୁ ନିଜ ମୁହଁରେ କହିଯାଇଥିବା ଅଭାବ ଅସୁବିଧାରେ ତାକୁ ଭାଗୀ ନ କରିବା ପାଇଁ, ଆସନ୍ନ ଦୁଃଖ, ବିପଦର ଘେର ମଧ୍ୟରୁ ତାକୁ ଚିରନ୍ତନ ମୁକ୍ତି ଦେବା ପାଇଁ । ସନ୍ତାନ ତାଙ୍କର ଦୁନିଆର କପଟ ନଜାଣୁ । ବିପଦ ନ ଘେରୁ, ଦୁଃଖ ନ ଭେଟୁ···ଏହା ତାଙ୍କର ବାସ୍ତବ ଇଚ୍ଛା ।

ସେଦନର ଏହ ଶିଶୁପୁତ୍ର, ଗୁଏନ ସିନ୍ । ମେ' ୧୯ ତାରଖ, ୧୮୯୦ ମମିହାର ଦାନ । ଭିଏତନାମର ଧରାସ୍ୱର୍ଗକୁ ନୁହେଁ...ସମଗ୍ର ମାନବଜାତିକୁ... ଗୁଏନ୍ ଆଇ କୋକ୍ ନାମରେ...ହୋଚ ମିନ୍ ରୂପରେ ; ତାପିତ, ଦଳିତ ମାନବଜାତିର ତୃଷା ନିବାରଣ ଅର୍ଥରେ...ଶୋଷଣ ମୋଚନ ଉଦ୍ଦେଶ୍ୟରେ... ଦୁଃଖ ଦାରଦ୍ର୍ୟର ଚରମ ହତ୍ୟାର ପଥରେ ।

ଗୁଏନ-ସୁଇଚ ଜନ୍ମ, ଶୈଶବର ଗାଥା ଆଜି ମଧ୍ୟ ଅନ୍ଧାରରେ, ସରକାରୀ ନଥିପତ୍ରରେ ଯାହା ନା ଅଛି ତା'ର ସତ୍ୟତାକୁ ସମ୍ପୂର୍ଣ୍ଣ ବିଶ୍ୱାସ କରାଯାଇ ନ ପାରେ । ଏହି ଅଖ୍ୟାତନାମା ପରିବାର ସମ୍ବନ୍ଧରେ କିଏ ବା ତାହାଁଙ୍କ ଖବର ରଖିଥାଆନ୍ତା ? ଲୋକମୁଖରେ ଯାହା ଶୁଣାଯାଏ—ତାକୁ କେବଳ ଆଧାର କରି ଯାହା ଲେଖାଯାଇ ପାରେ । ତା ଛଡ଼ା ପରବର୍ତ୍ତୀ ସମୟରେ ଯେତେବେଳେ ଗୁଏନ୍-ସୁଇ, ଗୁଏନ୍ ଆଇ କୋକ୍ ହୋ-ଚି-ମିନରେ ପରିଣତ ହୋଇଛନ୍ତି, ସେତେବେଳେ ତାଙ୍କର ଅନେକ ବନ୍ଧୁ ଅନେକ ଶତ୍ରୁ ତାଙ୍କ ବିଷୟରେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ବନ୍ଧୁଙ୍କ ଅପେକ୍ଷା ଶତ୍ରୁଙ୍କ ସଂଖ୍ୟା ସେମାନଙ୍କ ମଧ୍ୟରେ ବେଶି ।

ଗୁଏନ୍ ସୁଇଙ୍କର ପିତା ଗୁଏନ୍ ସିନ୍ ସାକ୍ ସେତେବେଳ ସମୟରେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଥିଲେ । ଗୋଟିଏ ଦରିଦ୍ର ପରିବାର କୃଷକ ପିତା ଏବଂ ନିମ୍ନ-କୁଳର ଜଣେ ମହିଳାଙ୍କ ଔରସରୁ ଜନ୍ମ ହୋଇ ମଧ୍ୟ ସେ ନିଜର ସାଧନା ବଳରେ ବେଶ୍ କିଛି ଶିକ୍ଷାଦୀକ୍ଷା ଅର୍ଜନ କରି ପାରିଥିଲେ । ଶୈଶବରୁ ମଇଁଷି, ଗାଈ, ଛେଳି ଚରାଇବା ତାଙ୍କର ପ୍ରଧାନ କାମ ଥିଲା । ତା ବ୍ୟତୀତ ସାମୟିକଭାବେ ସେ ଜମିମାଲିକର ଶସ୍ୟକ୍ଷେତ୍ରରେ କାମ କରି କିଛି କିଛି ଉପାର୍ଜନ କରୁଥିଲେ । କିଛିଦିନ ପରେ ଜଣେ କୃଷକ କନ୍ୟାଙ୍କୁ ସେ ବିବାହ କଲେ । ଯୌତୁକ ସ୍ୱରୂପ ତାଙ୍କୁ ମିଳିଥିଲା ଖଣ୍ଡିଏ ଧାନଜମି ଏବଂ ଆଉ ଗୋଟିଏ ଶ୍ରେଷ୍ଠ ଗୃହଘର । ସ୍ତ୍ରୀଙ୍କୁ ସେ ଖୁବ୍ ଭଲ ପାଉଥିଲେ ଓ ସ୍ତ୍ରୀ ମଧ୍ୟ ସ୍ୱାମୀଙ୍କ ପ୍ରତି ଗଭୀର ଅନୁରକ୍ତ ଥିବାରୁ ପରିବାରର ସମସ୍ତ ଝଞ୍ଜାଳ ସେ ନିଜେ ବହନ କରୁଥିଲେ । ଯୌବନା-ବସ୍ଥାରେ ସ୍ତ୍ରୀଙ୍କର ଏତାଦୃଶ ସାହାଯ୍ୟ, ସମର୍ଥନ ଲାଭ କରି ଗୁଏନ ସାକ୍ ପାଠ ପଢ଼ିବାକୁ ମନ ବଳାଇଲେ । ତିନୋଟି ସନ୍ତାନର ପିତା ସେ । ତଥାପି ଜ୍ଞାନ-ଲାଭର ପିପାସା ସମ୍ବରଣ କରିପାରିଲେ ନାହିଁ । ଚୀନା ଭାଷାରେ ପାଣ୍ଡିତ୍ୟ ଲାଭ କରି ପ୍ରତିଦ୍ୱନ୍ଦ୍ୱିତାମୂଳକ ପରୀକ୍ଷାରେ କୃତିତ୍ୱ ସହିତ ଉତ୍ତୀର୍ଣ୍ଣ ହେଲେ । ପ୍ରଥମରେ ହୁ ଏବଂ ପରେ ଆନ୍ ହୋଆଠାରେ ଶିକ୍ଷକତା କଲେ । ୧୯୦୫ରେ ସରକାରୀ ନିଯୁକ୍ତି ପାଇ ହୁ ରାଜପ୍ରାସାଦରେ ପ୍ରଥମ ସେକ୍ରେଟାରୀର ଦାୟିତ୍ୱ ଗ୍ରହଣ କଲେ ।

ସେତେବେଳକୁ ତାଙ୍କର ପ୍ରିୟତମା ପତ୍ନୀ ଏବଂ କନିଷ୍ଠ ସନ୍ତାନ ଅକାଳ ମୃତ୍ୟୁ ବରଣ କରିଥାନ୍ତି । କିନ୍ତୁ ସରକାରୀ କାର୍ଯ୍ୟରେ ସେ ଇଚ୍ଛାନୁରୂପ ସାଫଲ୍ୟ ଅର୍ଜନ କରି ପାରିଲେ ନାହିଁ । ବିଂଶ ଶତାବ୍ଦୀର ଆଗମନରେ ଫରାସୀ ଅଧିକୃତ ଭିଏତ-ନାମର ସାମାଜିକ ବାତାବରଣ ଯାହା, ସେ ଅବସ୍ଥାରେ କୌଣସି ଶିକ୍ଷିତ ବୁଦ୍ଧିଜୀବୀ ସରକାରୀ ପଦବୀରେ ନିଜକୁ ସୁଖୀ ମନେ କରି ପାରିବ ନାହିଁ । ତାସହିତ ଯଥ ପଦମର୍ଯ୍ୟାଦା ହିଏ ତେବେ ନ୍ଗୁଏନ୍ ସାକ୍ ଯୋହ୍ନ ପଦବୀକୁ ଯଥୋଚିତ ସମ୍ମାନ ଦେଇ ପାରୁ ନ ଥିଲେ । ତାର ଅବ୍ୟବହିତ ପୂର୍ବରୁ ଭିଏତନାମରେ ଥରକୁ ଥର ଅନେକ ଥର ବିଦ୍ରୋହମାନେ ବିଦେଶୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି-ଛନ୍ତି । ନ୍ଗୁଏନ୍ ସାକ୍ ସେମାନଙ୍କ ବଂଶଧରରୁ ଜଣେ । ବିନ୍ ଖେ ଠାରେ ସହକାରୀ ପ୍ରଶାସକରୂପେ ନିଯୁକ୍ତି ପାଇଥିବା ବେଳେ ଫରାସୀ କର୍ତ୍ତୃପକ୍ଷଙ୍କ ଦ୍ୱାରା କାର୍ଯ୍ୟରୁ ବହିଷ୍କୃତ ହେଲେ । ତାଙ୍କ ବିରୁଦ୍ଧରେ ଔଦ୍ଧତ୍ୟ, ଅନମନୀୟତା ଓ ବିନମ୍ରତାହୀନତାର ଅଭିଯୋଗ ଥିଲା । ସେ ସରକାରଙ୍କର ବାଧ୍ୟ କର୍ମଚାରୀ ନ ଥିଲେ । କାରଣ ଭିଏତନାମୀଙ୍କ ବାଧ୍ୟତାମୂଳକ ଫରାସୀ ଭାଷା ଶିକ୍ଷା ଦିଆ-ଯିବାର, ସେ ପ୍ରବଳ ବିରୋଧ କରୁଥିଲେ । ଭିଏତନାମ ମାଟିରେ ଫରାସୀ ପରି ଗୋଟିଏ କଷ୍ଟସାଧ୍ୟ ଭାଷାକୁ ଅଙ୍ଗୀକାର କରିବାର କୌଣସି ଆବଶ୍ୟକତା ନାହିଁ ବୋଲି ସେ ପ୍ରଚାର କରୁଥିଲେ । ଯେଉଁ ଆନାମୀମାନେ ଫରାସୀ ଭାଷାକୁ ବିରୋଧ କରି ବିଦ୍ରୋହରେ ଯୋଗ ଦେଉଥିଲେ, ସେ ସେମାନଙ୍କୁ ଅକୁଣ୍ଠ ସମର୍ଥନ ଜଣାଉଥିଲେ । ଏହି ସରକାରୀ ଅନୁଶାସନର ଆଜ୍ଞାବହ ହୋଇ ନପାରି ସେ କାର୍ଯ୍ୟରୁ ଅନ୍ତର ହେଲେ । ଜୀବିକାନିର୍ବାହର ନିର୍ଭରଶୀଳ ଯୋଗ-ସୂତ୍ରଟି ସମ୍ପୂର୍ଣ୍ଣ ପାଇଁ ଛିଣ୍ଡିଗଲା । ନ୍ଗୁଏନ୍ ସାକ୍ ବାଉଳିଆ ଜୀବନ ଆଦରି ନେଲେ । ଏ ପିଣ୍ଡାରୁ ସେ ପିଣ୍ଡା, ଏ ଓଳିରୁ ସେ ଓଳି ହୋଇ ଅନେକ ଦିନ କଟିଛି । ଶୀତ, ବର୍ଷା, ଖରା ମାଡ଼ରେ ପଡ଼ିରି ସିଝିସରିକାଠି ଆଉରି ଶକ୍ତ, ମଜଭୁତ ହୋଇ ଉଠିଛି । କେତେବେଳେ ସାଇଗନ୍ ଓ କେତେବେଳେ ନାମ୍‌ପେନ୍, କେତେବେଳେ ଅବା ଅଙ୍କରଠାରେ ତାଙ୍କ ଦେଖା ମିଳେ । ଏହିପରି ୧୦ବର୍ଷ ବିତି ଯାଇଛି । କୋଡ଼ିଏଟି ବସନ୍ତର ମଧୁର ଲଗ୍ନ ତାଙ୍କ ଜୀବନକୁ ଛୁଇଁ ଛୁଇଁ ଯାଇଛି । ହେଲେ ବସ୍ତ୍ରସ, ଅନୁଭୂତର ମାଧୁରୀମା ତାଙ୍କଠାରେ କାହିଁ ? କେତେଦୂରରେ ସେ ଆଜି ଆପଣା ପୁଅ କନ୍ୟାଠାରୁ !! ରାସ୍ତାରେ ବୁଲି ବୁଲି ମାଗି ଯାଚ ଚିଠିପତ୍ର ଲେଖିଦେଇ ପୁଜାପଣ ମେଣ୍ଟାଇବାକୁ ହୁଏ । କେତେବେଳେ କେମିତି ଭଙ୍ଗା ହାଡ଼ ଦିଖଣ୍ଡ ଯୋଡ଼ି ଗଳ୍ପ ଲେଖି ସରକାରୀ ପତ୍ରିକାମାନଙ୍କୁ ଯୋଗାଇବାକୁ ପଡ଼େ । ଯେତେ-ବେଳେ ଯାହା ମିଳେ ସେଥିକରେ ସନ୍ତୋଷ, ନ ହେଲେ ନାହିଁ । ଦରିଦ୍ରର ଜୀବନରେ କୌଣସି ରୁଚି ନାହିଁ । ଦାରିଦ୍ର୍ୟ ନିକଟରେ ଭଲ-ମନ୍ଦର ପ୍ରଶ୍ନ

ମୂଲ୍ୟହୀନ । କିନ୍ତୁ ମୁକ୍ତ ସ୍ୱାଧୀନ ଜୀବନର ମୂଲ୍ୟ କେତେ ବେଶୀ ! କେତେ ଆଦର ସେ ପ୍ରାଣରେ । କେତେ ଗାଢ଼, ନିବିଡ଼ତାର ସାନ୍ନିଧ୍ୟ । ୧୯୩୦ରେ ଏହି ମହାନ୍ ସ୍ୱାଧୀନ ଅଥଚ ଦରିଦ୍ର ଜୀବନର ଅବସାନ ଘଟିଲା ପଶ୍ଚିମ-କୋଚିନର କୌଣସି ଏକ ପାହାଡ଼ର ପାଦଦେଶରେ ।

ସାନଙ୍କର ନିର୍ବାସିତ ଜୀବନ ଏବଂ ମୃତ୍ୟୁ ପରେ ଜ୍ୟେଷ୍ଠ ପୁତ୍ରକନ୍ୟାମାନେ ସାହାଯ୍ୟହୀନ ହୋଇ ପଡ଼ିବା ସ୍ୱାଭାବିକ । କିନ୍ତୁ ଜଣେ ମଧୁର ସମ୍ପର୍କୀୟ ଦାଦାଙ୍କର ପ୍ରଭାବରେ ସେମାନେ ଏହି ଦୁଃଖର ବୋଝକୁ ସମ୍ଭାଳି ନେଲେ । ପିଲାଦିନୁ ସେମାନଙ୍କୁ କଠିନ ଶାରୀରିକ ଶ୍ରମ କରିବାକୁ ପଡ଼ିଲା ନିଜ ପରିବାରର ଭରଣ ପୋଷଣ ପାଇଁ । ଦାଦାଙ୍କର ପ୍ରଭାବରେ ସୁନଙ୍କର ପୁତ୍ରକନ୍ୟାମାନେ ଜାତୀୟତାବାଦୀ ହୋଇ ଉଠିଲେ ।

ସେତେବେଳେ ହୋ-ର ପିତୃଦତ୍ତ ନାମ ହେଉଛି ଙ୍ୟୁଏନ୍ ସିନ୍ କୁଙ୍ଗ । ତାଙ୍କୁ ୧୫ବର୍ଷ ବୟସ ହେବା ପର୍ଯ୍ୟନ୍ତ ସେ ଏହି ନାମ ହିଁ ସବୁବେଳେ ବ୍ୟବହାର କରୁଥିଲେ । ଙ୍ୟୁଏନ୍‌ର ବଡ଼ ଭଉଣୀ ଥାନ୍ ଦେଶୀୟ ଚିକିତ୍ସା ବିଦ୍ୟା ସମାପ୍ତ କରି ଭିନ୍‌ଠାରେ ଅବସ୍ଥାପିତ ଏନ୍.ସି.ଓଚ୍. ମେଡ଼୍‌ର ପରିଚାଳିକାଭାବେ ନିଯୁକ୍ତ ହୋଇ-ଥା'ନ୍ତି । ସେଠାରେ ଥିବା ସମୟରେ ସେ ସୁବିଧା ଓ ସୁଯୋଗ ଦେଖି ଜାତୀୟତାବାଦୀ ଗରିଲାମାନଙ୍କୁ ଅସ୍ତ୍ରଶସ୍ତ୍ର ଔଷଧ ଯୋଗାଉଥିଲେ । କିନ୍ତୁ ଧରାପଡ଼ି ଜେଲ ଗଲେ । ପ୍ରାଦେଶିକ ପୋଲିସ କର୍ତ୍ତା ତାଙ୍କୁ ଜେଲ ପଠାଇବା ସମ୍ପର୍କରେ ମନ୍ତବ୍ୟ କରିଥିଲେ "ଅନ୍ୟ ନାରୀମାନେ ସନ୍ତାନ ଉତ୍ପାଦନ" କରନ୍ତି, ତୁମେ ଉତ୍ପାଦନ କରୁଛ ଅସ୍ତ୍ର । ବିଜୟୋନ୍ମତ୍ତ ଅଧରକୋଣରେ ମୃଦୁହସ ଫୁଟାଇ ତରୁଣୀ ଜଣେ ସାଦରେ କାରାକକ୍ଷକୁ ପ୍ରବେଶ କରିଥିଲେ । ବହୁତ ଥର ତାଙ୍କୁ ସେହି ନିଭୃତ କାରାଗାରରେ ରହିବାକୁ ପଡ଼ିଛି । ସେ ବିବାହ କରି ନ ଥିଲେ । ୧୯୪୫ ମସିହାରେ ଭିଏତନାମର ନବନିର୍ବାଚିତ ରାଷ୍ଟ୍ରପତିଙ୍କ ସହିତ ନିଜର ଜ୍ୟେଷ୍ଠ ଭାଇର ଅଦ୍ଭୁତପୂର୍ବ ସାମଞ୍ଜସ୍ୟ ଦେଖି ସେ ଚମକି ଉଠିଥିଲେ । ଗୌରବାତିଶଯ୍ୟରେ ଗୋଟିଏ ଝୁଡ଼ିରେ ଦୁଇ ଡଜନ ସରିକି ଅଣ୍ଡା ନେଇ ସେ ହାନୋଇ ଯାତ୍ରା କଲେ । ଅନେକ ବସନ୍ତ ପରେ ରକ୍ତର ନିବିଡ଼ ଆକର୍ଷଣ । ହୋ-ନିଜର ପ୍ରଶସ୍ତ ବାହୁବନ୍ଧନ ମଧ୍ୟରେ ଭଉଣୀଙ୍କୁ ଜାବୁଡ଼ି ଧରିଲେ । ଆଖିରେ ଆସିଏ ଲୁହ । ଭଉଣୀ ସମ୍ଭାଳି ପାରିଲେ ନାହିଁ । କିଛିଦିନ ଏକତ୍ର ଅବସ୍ଥାନ କରିବାପରେ ସେ ପୁଣି ନିଜ ଗାଁକୁ ବାହୁଡ଼ି ଆସିଲେ । ୧୯୫୪ରେ ତାଙ୍କର ସେହିଠାରେ ହିଁ ମୃତ୍ୟୁ ହେଲା ।

ସେହିପରି ଥିଲେ ହୋ-ଙ୍କର ଭାଇ ଖିଏମ୍ । ଶୈଶବର ପ୍ରାତଃ କାଳରୁ ସେ ଜଣେ ଜଙ୍ଗୀ ଜାତୀୟତାବାଦୀ ରୂପେ ପରିଚିତ ହୋଇଥିଲେ । କିନ୍ତୁ ନିଜର ଖିଆଲ ଓ

ଅତ୍ୟଧିକ ମଦ୍ୟପାନ ତାଙ୍କୁ ରାଜନୀତିରେ ଆଗକୁ ଆଗେଇ ନେଇ ପାରିଲା ନାହିଁ । ସେ କେବଳ ରୋମାନ୍ ଲିପିରେ ଲିଖିତ ଭିଏତନାମ ଭାଷା ଶିକ୍ଷା ଦେଉଥିଲେ । ରାଜନୈତିକ ଜୀବନର କମାଗତ ସମସ୍ୟାକୁ ସମ୍ଭାଳିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ସେ ତୁରନ୍ତ ଭାଙ୍ଗି ପଡ଼ିଲେ । ୧୯୫୦ ମସିହାରେ ତାଙ୍କର ମୃତ୍ୟୁ ହେଲା । ଗ୍ରାମବାସୀମାନେ ହୋଙ୍କୁ ତାରବାର୍ତ୍ତାରେ ଦୁଃଖସମ୍ବାଦ ଜଣାଇଦେଲେ । ସେତେବେଳେ ହୋ ଭିଏତନାମ ସାଧାରଣତନ୍ତ୍ରର ରାଷ୍ଟ୍ରପତି । ଉତ୍ତର ଆସିଲା, "ସାଧାରଣ ଜନତାର ଦାୟିତ୍ୱ ତାର ଅସୁଖ ସମୟରେ ମୋତେ ଦେଖାଶୁଣା କରିବା ପାଇଁ ଛୁଟି ଦେଉନାହିଁ । ଆଜି ତାର ଅନ୍ତ୍ୟେଷ୍ଟିକ୍ରିୟାରେ ମୁଁ ଯୋଗ ଦେଇ ପାରୁନାହିଁ । ଭାଇ ପ୍ରତି ଗଭୀର ଭକ୍ତି ଓ ଆନ୍ତରିକତା ସହିତ ମୁଁ ଏହି ଅସାମର୍ଥ୍ୟ ଯୋଗୁଁ ଆପଣଙ୍କ ନିକଟରୁ ବିନୀତ କ୍ଷମାଭିକ୍ଷା କରୁଛି । ଯେଉଁ ସନ୍ତାନ ପାରିବାରିକ ସୁଖ ଅନୁଭୂତିର ଊର୍ଦ୍ଧ୍ୱରେ ଜାତିର ଦାୟିତ୍ୱବୋଧକୁ ତୁଳାଇବା ପାଇଁ ବାଧ୍ୟ ହୋଇଛି ତାଙ୍କୁ କ୍ଷମା କରିବା ନିମନ୍ତେ ମୁଁ କରଯୋଡ଼ ପ୍ରାର୍ଥନା କରୁଛି—ହୋ-ଚି-ମିନ୍ ।"

ହୋ-ଚି-ମିନ୍‌ର ଜନ୍ମ, ଶୈଶବ ନିହାତି ସାଧାରଣ ଅବସ୍ଥା ଦେଇ ହିଁ କଟିଛି । ଠିକ୍ ଗାଁ ଗଣ୍ଡାର ଅନ୍ୟ ପାଞ୍ଚଜଣ ଶିଶୁଙ୍କ ପରି ପିତୃହୀନ ପରିବାରର ଛେଉଣ୍ଡ ପିଲାଙ୍କ ପରି । ମୁରବିହୀନ, ଭରସାହୀନ ଅନାଥ ଶିଶୁଙ୍କ ପରି । ବାପା, ପଲାତକର ଜୀବନ ବରଣ କରି ନେଲା ପରେ ଗାଁରେ ସେମାନେ ଏକା । ଏ ଦାଣ୍ଡରୁ ସେ ଦାଣ୍ଡ କେଉଁ ବୁଲି ଖେଳିବା ହିଁ ମୁଖ୍ୟ କାମ । ଦର୍ଶୀବର୍ଷ ବୟସରୁ ମା'ଙ୍କର ମୃତ୍ୟୁ ହୋଇ ଯାଇଛି । ଆକଟ କରିବା ପାଇଁ ଅନ୍ୟ କେହି ନାହିଁ । ଚଇତାଳି ଖରା, ଶ୍ରାବଣୀ ଧାରାପାତ, ଶାରଦୀ ଜହ୍ନ, ଶୀତୁଆ ପବନରେ···ସେମାନେ ମୁକ୍ତ । ଗାଁର ଶ୍ରେଷ୍ଠ ପିଲା ସାଙ୍ଗମାନଙ୍କ ସହିତ ମିଶି ଖରାବେଳିଆ ତୋଟା ବୁଲା, ଗଛଚଢ଼ା, ଆମ୍ବ, ନଡ଼ିଆ ମିଛିମିଛିକା ଚୋରି । ସ୍କୁଲରୁ ଲୁଚି ଖସି ଯାଇ ଅନ୍ୟ ସାଙ୍ଗମାନଙ୍କ ସହିତ ଖେଳ ପଡ଼ିଆରେ ଅନେକ ସମୟ କଟାନ୍ତି । ବନଶି ପକାଇ ମାଛଧରିବାର ସଉକ ମଧ୍ୟ କିଛି କମ୍ ନୁହେଁ । ହ୍ୟୁ ନିଜ ଗାଁଠାରୁ କେତେବାଟ । ଥରେ ଗ୍ରେଟଦିନେ ବାପାଙ୍କ ସହିତ ସେଠାକୁ ବୁଲି ଯାଇଥିଲେ । ସମୟ ପାଇଲେ ବନଶିଖଡ଼ା ଧରି ଦୌଡ଼ି ଦୌଡ଼ି ହ୍ୟୁକୁ ଚାଲି ଯାଆନ୍ତି । ମାଛ ମାରି ପୁଣି ଘରକୁ ଫେରନ୍ତି । ପଥଶ୍ରାନ୍ତି ବାଧେ ନାହିଁ । ଅଧିକନ୍ତୁ ଆନନ୍ଦରେ ସେ ବିଭୋର । ଭିଏତନାମର ପିଲାମାନେ ସେତେବେଳେ ଏକପ୍ରକାର ମୁଣ୍ଡ କୁଣ୍ଡାଇବାରେ ଅଭ୍ୟସ୍ତ ଥିଲେ । ମଝିରେ ଶିଖାକରି ଦୁଇପଟକୁ ବାଳ ଭାଙ୍ଗିଦେବା ଥିଲା ସେମାନଙ୍କର ଏକ ଅଭିନବ ପରିପାଟୀ । ଏହି ଚଳଣୀ ଭିଏତନାମର ପ୍ରାୟ ସବୁସ୍ଥାନରେ ପ୍ରଚଳିତ ଥିଲା । ହୋ ସେଥିରୁ ବାଦ ପଡ଼ିନ୍ତେ କିପରି ।

•

ନୁଏନ୍ ଟାଟ୍ ଥାନ୍ ଯେତେବେଳେ ସ୍କୁଲ୍ ବାହାରିଲେ ସେତେବେଳେ ଭିଏତନାମର ସାମାଜିକ ପରିବେଶ ଅତୀବ ଜଟିଳ ଏବଂ ଅଶାନ୍ତିକର । ଫରାସୀ ସାହେବ ପିଲାମାନଙ୍କ ବ୍ୟତୀତ ପାଠପଢ଼ିବାର ଅଧିକାର ଅନ୍ୟମାନଙ୍କ ପାଇଁ ସଙ୍କୁଚିତ । କଳା ଲୋକମାନେ ସ୍କୁଲମାନଙ୍କରେ ଅସ୍ପୃଶ୍ୟ ଭାବେ ପରିଚିତ । ଯେଉଁମାନେ ଯାବତୀୟ ଧକ୍କା, ଲାଞ୍ଛନା ସହ୍ୟକରି ଚାଟଶାଳୀ ଯାଉଥିଲେ ସେମାନଙ୍କର ଦୁର୍ଦ୍ଦଶା କହିଲେ ନ ସରେ । ହୋ ସେମାନଙ୍କ ମଧ୍ୟରୁ ଜଣେ । ଫରାସୀମାନେ ଭିଏତନାମ ଜାତିକୁ ସବୁଦିନ ପାଇଁ ଦୁନିଆ ଆଗରେ ଅସଭ୍ୟ, ଅଶିକ୍ଷିତ, ଅରୁଚିକର କରି ରଖାଇବା ଉଦ୍ଦେଶ୍ୟରେ ଜାଣିଶୁଣି ସେମାନଙ୍କୁ ଶିକ୍ଷାଦାନରୁ ବଞ୍ଚିତ କରୁଥିଲେ । ଯେଉଁମାନେ ସ୍କୁଲ ଯାଉଥିଲେ ସେମାନଙ୍କ ପାଇଁ ଏପରି ଅବସ୍ଥା ସୃଷ୍ଟି କରାଯାଉଥିଲା ଯେ ସେମାନେ ବାଧ୍ୟ ହୋଇ ଶିକ୍ଷାକ୍ଷେତ୍ର ଛାଡ଼ି ଚାଲିଆସୁଥିଲେ । ଏହି ଉପଲକ୍ଷେ ଗୋଟିଏ ଶ୍ରେଷ୍ଠ ଘଟଣା କୁହାଯାଇ ପାରେ । ହ୍ୟୁରୁ ଭିନ ବହୁତ ଦୂର । ଏ ଗାଁରୁ ସେ ଗାଁ ନୁହେଁ, କି ଏ ସହରରୁ ସେ ସହର ନୁହେଁ । ଫରାସୀମାନଙ୍କ ସ୍ୱାର୍ଥ ପାଇଁ, ଯାତାୟାତର ସୁବିଧା ପାଇଁ ହ୍ୟୁରୁ ଭିନ୍‌କୁ ରାସ୍ତା ପଡ଼ିବ । ରାସ୍ତା ତିଆରି କରିବ କିଏ ? ଯେଉଁ କୁଲିମାନେ ମଜୁରି ଖଟୁଥିଲେ ସେମାନଙ୍କୁ ବିଦା କରିଦେଇ ତାଙ୍କ ସ୍ଥାନରେ ନିଯୁକ୍ତ କରାଗଲା ଗାଁ ଚାଟଶାଳୀର ଅବୋଧ ଶିଶୁ, କିଶୋରମାନଙ୍କୁ । ସ୍କୁଲରେ ପାଠ ପଢ଼ିଲେ ଫରାସୀ ସାହେବ ପିଲା । ସେମାନଙ୍କ ପାଇଁ ରାସ୍ତା ତିଆରି କଲେ ଭିଏତନାମ ଜାତିର ଉଜ୍ଜ୍ୱଳ ବଂଶଧରମାନେ । ସ୍କୁଲ ଗ୍ରାଉଣ୍ଡରୁ କୁଲି ମଜଦୂରଙ୍କୁ ସେମାନଙ୍କର ପ୍ରମୋସନ ହେଲା । ଯେଉଁମାନେ ଏହାର ପ୍ରତିରୋଧ କଲେ ସେମାନଙ୍କୁ ସବୁଦିନ ପାଇଁ ସ୍କୁଲରୁ ତଡ଼ିଦିଆ ଗଲା । କେତେକ ହୋଙ୍କ ଘରେ ଆଶ୍ରୟ ନେଲେ ।

ଏହାପୂର୍ବରୁ ଭିଏତନାମରେ ବିଭିନ୍ନ ସମୟରେ ମୁଣ୍ଡଟେକିଥିବା ଜାତୀୟବାଦୀ ବିଦ୍ରୋହ ଫେଲ ମାରିଥାଏ । ଥରକୁ ଥର ପରାଜୟର ଭାର ବହନ କରି ବିଦ୍ରୋହୀମାନେ ନିରୁତ୍ସାହ ହୋଇ ପଡ଼ିଥାନ୍ତି । ଫାନ ଡିନ୍ ଫୁଙ୍ଗ୍ ପରାଜିତ ହୋଇସାରିଥାନ୍ତି, ଡି ଥ୍ୟାମ ବିଦ୍ରୋହର ପଥ ପରିତ୍ୟାଗ କରି ପଳାତକ, ନେ ଆନ୍ ଦୁର୍ଗ ଅଧିକାର କରିବାକୁ ଯାଇ ଫାନ ବୋଇ ଚାଉ ବ୍ୟର୍ଥ । ଏହିପରି ଗୋଟିକ ପରେ ଗୋଟିଏ କରି ଜାତୀୟବାଦୀ ବିଦ୍ରୋହୀମାନେ ଆସନ୍ନ ରଣକ୍ଷେତ୍ରରୁ ନିଜକୁ ଓହରାଇ ଆଣିଛନ୍ତି । ଭିଏତନାମରେ ବିଦ୍ରୋହ ଜୁଆର ସାମୟିକ ଉତ୍ତେଜନା ହରାଇ ବସିଥାଏ । ୧୯୦୧-୧୯୦୨ ମସିହାର କଥା । ହୋ-ଙ୍କୁ ସେତେବେଳେ ବୟସ ମାତ୍ର ବାର କି ତେର । ଏହାରି ଭିତରେ ନୁଏନ୍ ସିନ୍ ହୁଇର ପରିବାରରେ ଦେଖାଦେଲେ ଜଣେ ମହାନ୍ ପ୍ରଚାରକ, ଯେ କି ଏକାଧାରରେ ଜାତୀୟବାଦୀ ବିଦ୍ରୋହକୁ ନୈତିକ ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ସେଥିପାଇଁ ପ୍ରକାଶ୍ୟରେ

କାର୍ଯ୍ୟ ମଧ୍ୟ କରୁଥିଲେ । ତୁରଙ୍କ ହୃଦ୍ଗତ ଘନିଷ୍ଠତା ବଢ଼ିଉଠିବା ସଙ୍ଗେ ସଙ୍ଗେ ପିଲାମାନଙ୍କ ପ୍ରତି ସୌହାର୍ଦ୍ଦ୍ୟ ବଢ଼ିବା ସ୍ୱାଭାବିକ । ଅନ୍ୟପକ୍ଷରେ ପିଲାମାନଙ୍କର କର୍ମକୁଶଳତା, ମେଧାଶକ୍ତି ଓ ଜାତୀୟତାବୋଧ ଦେଖି ସେ ତାଙ୍କୁ ଖୁବ୍ ଭଲ ପାଉଥିଲେ । ତେଣୁ ସେ ପିଲାମାନଙ୍କୁ ନିଜ ସହିତ ଜାପାନ ନେଇଯିବା ପାଇଁ ଚାହିଁଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଦେଶ ମଧ୍ୟରେ ଯେଉଁ ବିପ୍ଳବାତ୍ମକ କାର୍ଯ୍ୟ ସମ୍ଭବ ହୋଇପାରୁ ନାହିଁ ; ଦେଶ ବାହାରେ ହୁଏତ ତାହା କମ୍ ଆୟାସରେ ହୋଇପାରନ୍ତା ! ଜାପାନରେ ଗୋଟିଏ ଶକ୍ତିଶାଳୀ ଜାତୀୟତାବାଦୀ ସାଙ୍ଗଠନ୍ୟ ଗଢ଼ିଉଠନ୍ତା । କିନ୍ତୁ ତୁର ସେ ପରାମର୍ଶରେ ରାଜି ହୋଇ ନ ଥିଲେ । ତାଙ୍କର ଇଚ୍ଛା ଥିଲା ଯୁବମାନେ ଫରାସୀ ଭାଷା ଶିକ୍ଷା କରିବେ, ଯାହା ଫଳରେ ସେମାନେ ଭିଏତନାମର ଜାତୀୟତାବାଦୀ ସାଂସ୍କୃତିକ ଉପନ୍ୟାସକୁ ପରିବ୍ୟାପ୍ତ କରିବା ପାଇଁ ସୁଯୋଗ ପାଇ ପାରିବେ । ଫରାସୀ ଭାଷା ଶିକ୍ଷାକରି ଉପନିବେଶୀ ଶାସନ କଳର କର୍ଣ୍ଣଧାର ହୋଇ ରହିବା ତାଙ୍କର କଳ୍ପନାରେ ସୁଦ୍ଧା ନ ଥିଲା । ପିଲାମାନେ ଜାପାନ ଗଲେ ନାହିଁ ସତ, କିନ୍ତୁ ଫନ୍‌ବୋଇଚାଉ ହୋଙ୍କ ମାନସପଟରେ ସବୁଦିନ ପାଇଁ ଅଙ୍କା ହୋଇ ରହିଗଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ଏହି ଜାତିପ୍ରେମୀ ବ୍ୟକ୍ତିଙ୍କର କଥାକୁ ଭୁଲି ନ ଥିଲେ, "ଯେଉଁମାନେ ଦେଶକୁ ମୁକ୍ତ କରିବାକୁ ଚାହାନ୍ତି, ସେମାନଙ୍କୁ ଏକ ଶକ୍ତିଶାଳୀ ଦଳ ଗଠନ କରିବାକୁ ହିଁ ହେବ ।"

ପନ୍ଦର ବର୍ଷ ବୟସରେ ହୋ, କୋକ୍ ହୋକ୍ ମାଧ୍ୟମିକ ସ୍କୁଲରେ ଭର୍ତ୍ତି ହେଲେ । ସେଠାରେ ସେତେବେଳକୁ ଫରାସୀ ଓ ଭିଏତନାମୀ, ଏ ଦୁଇଟି ଭାଷା ଶିକ୍ଷା ଦିଆଯାଉଥିଲା । ସେଠି ଥିଲାବେଳେ ୧୯୦୮ର ବିଦ୍ରୋହାତ୍ମକ ଆନ୍ଦୋଳନରେ ସେ ନିଜକୁ ସାମିଲ କରିଦେଲେ । ଏହାପରେ ସେଠାରେ ଚାରି ବର୍ଷ କଟିଛି । କିନ୍ତୁ ସବୁବେଳେ ସେହି ଅବସ୍ଥା । ଗଣ୍ଡଗୋଳିଆ ପରିବେଶ । ପାଠପଢ଼ା ସୁରୁଖୁରୁରେ ଚାଲି ପାରିଲା ନାହିଁ । ହୋ ବାଧ୍ୟ ହୋଇ ସେ ସ୍ଥାନ ଛାଡ଼ି ଦକ୍ଷିଣ ପଟରେ ଫାନ ଥିଏଟ ଅଭିମୁଖେ ଯାତ୍ରା କଲେ । ଫାନ ଥିଏଟ୍ ବନ୍ଦର ଥିବା ଏକ ଶ୍ରେଷ୍ଠ ସହର । ସେଠାରେ ଥିବା ବନ୍ଦର ପରିଚାଳିତ ଏକ ସ୍କୁଲରେ ସେ ଭିଏନନାମୀ ଓ ଫରାସୀ ଭାଷା ପଢ଼ାଉଥିଲେ । ତାଙ୍କର ରହଣି କାଳ ମାତ୍ର ନଅ ମାସ, ଜାନୁୟାରୀରୁ ସେପ୍ଟେମ୍ବର ୧୯୧୧ ପର୍ଯ୍ୟନ୍ତ । ଦିନେ ଦେଖାଗଲା, ସ୍କୁଲରେ ସେ ନାହାନ୍ତି ।

ସେ ସେଠାରୁ ସାଇଗନ ହିଁ ଯାତ୍ରା କରିଥିଲେ । ସାଇଗନରେ ପହଞ୍ଚିବା ମାତ୍ରେ କାଳ ବିଳମ୍ବ ନ କରି ପୁରୁଣା ବଜାର ନିକଟରେ ଥିବା ବୈଷୟିକ ତାଲିମ କେନ୍ଦ୍ରରେ ସେ ନିଜକୁ ଭର୍ତ୍ତି କଲେ । ସେଠାରେ ତାଙ୍କର ଅଧ୍ୟୟନର ବିଷୟ ଥିଲା—'ଗଭୀର ସମୁଦ୍ର ମଧ୍ୟରେ ନାବିକବୃତ୍ତି' ।



# ୪

## ନୀଳ ଦରିଆର ଛାତିରେ

ଅଗ ଅଧ୍ୟାୟରେ କୁହା ଯାଇଛି, ଗେଟିନ, ନେ ଆନର ଉର୍ବର ମାଟିରୁ ଅଙ୍କୁରିତ କୁନ୍ତଳତା ସେହି ସୀମିତ ଅଞ୍ଚଳ ମଧ୍ୟରେ ଆବଦ୍ଧ ରହିବାକୁ ଚାହୁଁ ନ ଥିଲେ । ମଧ୍ୟମସ୍ତ-ଧରଣୀର ପ୍ରଶସ୍ତ ବକ୍ଷରେ କେଟିପିବା ଥିଲା ସେମାନଙ୍କର ଐକାନ୍ତିକ ବାସନା । କାମନା, ବାସନାକୁ ଚରିତାର୍ଥ କରିବା ପାଇଁ ନେ ଆନ, ରେଟିନ, କେତେ ସୁବିଧା ଦେଇ ପାରନ୍ତେ ? କେତେ ପ୍ରାଚୁର୍ଯ୍ୟରେ ସେମାନଙ୍କର ଭିକ୍ଷାଥାଳ ପୂରଣ କରନ୍ତେ ? ନିଜେ ତ ଭିକାରୁଣୀ, ନିଜେ ତ ବିଦେଶୀ ହାତରେ ବନ୍ଦିନୀ ! ଯା'ର ନିଜର ସ୍ୱାଧୀନତା ନାହିଁ, ସେ ଅନ୍ୟର ଶୂନ୍ୟପାତ୍ର ଭରିଦେବ ବା କିପରି ?

ଖାଇବାକୁ ମୁଠିଏ ଥିଲେ ସିନା ମାଟି କାମୁଡ଼ି ପଡ଼ିରହିବାକୁ ମନ ବଳେ । ଯେଉଁଠି କ୍ଷୁଧାର ତାଡ଼ନା ଏତେ ପ୍ରବଳ, ସେଠି ମୋହ, ମମତା ନିରର୍ଥକ, ଅବାସ୍ତବ । କେବଳ ଭିଏତନାମରେ ଯେ ଏହି ଘଟଣା ଘଟୁଥିଲା ତା ନୁହେଁ, ପୃଥିବୀର ଚାରିଆଡ଼େ, ସବୁ ପଟର ଅବସ୍ଥା ହିଁ ସେଇଆ । ନିଜ ଦେଶରେ ପେଟର ଦାଉକୁ ସମ୍ଭାଳି ନ ପାରି ଅନେକ ଦେଶାନ୍ତରୀ ହେଉଥିଲେ । କୁଲି, ମଜଦୁର, ରିକ୍ସାବାଲାଙ୍କର ଯେ କେବଳ ଦୁର୍ଦ୍ଦଶା ଥିଲା ତା ନୁହେଁ, ଉଚ୍ଚ ଶିକ୍ଷିତ, ବୁଦ୍ଧିଜୀବୀ ମହଲରେ ମଧ୍ୟ ସେହି କରୁଣ ପରିସ୍ଥିତି । ଔପନିବେଶିକ ଶାସନ-ବର୍ଚ୍ଛା ସବୁରି ବେକରେ ଚେପ୍ଟ ମାଡ଼ିଥିଲା । ସମସ୍ତଙ୍କର ଲଙ୍ଗୁଡ଼ କଟିଥିଲା । ଯେଉଁଠି ଯେଉଁଠି ଉପନିବେଶୀ ଶାସନ ଜାରି ହୋଇଥିଲା ସେ ସ୍ଥାନ ଛାଡ଼ି ଲୋକେ ନିକଟସ୍ଥ କୌଣସି ଏକ ଦେଶକୁ ପଳାଇ ଯାଉଥିଲେ । ଉଦ୍ଦେଶ୍ୟ ଅନ୍ୟ କିଛି ନ ଥିଲା । ଅତ୍ୟନ୍ତ ସ୍ପଷ୍ଟ । ମୂଳଲଗି ପେଟ ପୋଷିବା, ବିଦେଶୀ କୋରଡ଼ା ମାଡ଼ରୁ ତ୍ରାହି ପାଇବା । ଆୟର୍ଲଣ୍ଡ, ଗ୍ରୀସ, ସିସିଲିରୁ ବହୁଳ ପରିମାଣରେ ଲୋକ ବିଭିନ୍ନ ସ୍ଥାନକୁ ପଳାଇ ଯାଉଥିଲେ । ବନ୍ଦରକୂଳିଆ ଦେଶମାନଙ୍କରେ ଏଥିପାଇଁ ଅବସ୍ଥା ବେଶ ଅନୁକୂଳ । କାରଣ ଜାହାଜ, ବୋଇତ, ଆଦି ଯାତାୟତର ସମସ୍ତ ସୁବିଧା ସେଠାରେ । ଭିଏତନାମ ଏହିଦୃଷ୍ଟିରୁ ଖୁବ୍ ଭାଗ୍ୟବତୀ ।

ଚାରିପଟରେ ଅନନ୍ତ ନୀଳ ସମୁଦ୍ର । ଯେତେବେଳେ ଦେଖିବ ସେତେବେଳେ ଜାହାଜ ବାଣିଜ୍ୟିକ ପୋତମାନଙ୍କର ଅସଂଖ୍ୟ ଭିଡ଼ । ଭିଏତନାମର ସିନ୍ଧୁତଟ

ସବୁବେଳେ ଜନାରଣ୍ୟ, ଯିବା ଆସିବାର ନିତ୍ୟ ବ୍ୟବସାୟ ଚାଲି ରହିଛି । ଯାଉଛି କେତେ, ଆସୁଛି କେତେ, ତାର କୌଣସି ହିସାବ ନ ଥିଲେ ମଧ୍ୟ ଲୋକ ମୁଖରେ ତା'ର ନାଁ ଖୁବ୍ ପ୍ରଶସ୍ତ ।

ଏହି ସୁବିଧା ଦେଖି ଅନେକେ ଚାଲିଯାଉଥିଲେ ଜାହାଜ ଭିତରେ ଦୂର ଦେଶକୁ, ଦରିଆ ସେପାରିକୁ, ଜାହାଜରେ କୁଲି ରୂପରେ, ମଜଦୂର ଖେପେସ୍ୱା ହିସବରେ, ପଟରୁହା ଶ୍ରମିକ ଭାବରେ । ଯେଉଁମାନେ ଏହି ସୁଯୋଗ ପାଉଥିଲେ ସେମାନେ ନିଜକୁ ଭାଗ୍ୟବାନ ମଣୁଥିଲେ । କାରଣ ଦେଶରେ ରହି ସବୁଦିନେ ଏପରି ଦୁଃଖ ଦାରିଦ୍ର୍ୟ ଭୋଗିବ କିଏ ? ନିରାନ୍ନ ପୁତ୍ର, କନ୍ୟା, ନିଃସହାୟା ପତ୍ନୀର ଆଖି-ଲୁହ ପୋଛିବ ବା କିପରି ? ଦୁଃଖର ଜଳନ୍ତା ନିଆଁରେ ପୋଡ଼ିହୋଇ ମରିବା ଅପେକ୍ଷା ତାର ତାପ ସମ୍ଭାଳିବା ଆହୁରି ଯନ୍ତ୍ରଣାଦାୟକ । ଜ'ଣେ ତେବେ ତା'ଠାରୁ ଦୂରେଇ ରହିବା ହିଁ ଶ୍ରେୟସ୍କର । ନୁଏନ ଆନ ଥାଟ୍ର | ପୁରୁଷମାନେ ଏହି ଆଦର୍ଶପଥର ଯାତ୍ରୀ । ଅଧିକାଂଶଙ୍କର ଶେଷ ଜୀବନ ବାହାର ଦୁନିଆରେ କଟିଛି ।

ନୁଏନଙ୍କର ଅବସ୍ଥା ଥିଲା ଭିନ୍ନ ରକମର । ଦାରିଦ୍ର୍ୟ ତ ନିଶ୍ଚୟ ଥିଲା— ତା ସହିତ ଥିଲା ଜ୍ଞାନଲାଭର ପ୍ରବଳ ପିପାସା ଏବଂ ଉପନିବେଶୀ ଶାସନ ପ୍ରତି ତୀବ୍ର ଘୃଣା । ଏହି ଉଭୟଟିର ସମ୍ମିଳିତ ଆହ୍ୱାନ ତାଙ୍କୁ ଦେଶଠାରୁ ଦୂରକୁ ଘେନିଗଲା । ୧୯୧୧ ମସିହାର ପ୍ରାନ୍ତ କାଳ । ନୁଏନ୍ ଲା-ଟୁସେ-ଟ୍ରାଭିଲେ ଜାହାଜରେ ଗୋଟିଏ ଗ୍ରେଟକୋଟିଆ ନିଯୁକ୍ତି ପାଇଲେ । ସେତେବେଳେ ବୟସ ମାତ୍ର ଏକୋଇଶ । ଲା-ଟୁସେ-ଟ୍ରାଭିଲେ ଜାହାଜ ହାଇଫଙ୍ଗ ବନ୍ଦରରୁ ନିୟମିତ ପ୍ୟାରିସ ଯାତାୟାତ କରୁଥାଏ । ଜାହାଜରେ କାମ କରିବାକୁ ଗଲାବେଳେ ନୁଏନ ନିଜ ନାମ ପରିବର୍ତ୍ତନ କରି 'ବା' ରଖିଲେ । ନୈରାଶ୍ୟ, ଦୁଃଖ ଓ ଘୃଣାରେ ଅନ୍ତର କାନ୍ଦି ଉଠୁଥାଏ । ଜାହାଜ ଉପରେ ପ୍ରଥମ ପାଦ ସେ ରଖିଲେ, ଅନାଗତ ଭବିଷ୍ୟତକୁ କଳ୍ପନା କରି କରି । 'ବା'ର ଅର୍ଥ ସେ ଖୁବ୍ ଭଲ ଭାବରେ ବୁଝିଥିଲେ । 'ବା' ମାନେ ହୋଟେଲ ବୟ ।

ଏହି ଫରାସୀ ଜାହାଜରେ 'ମାଇ' ନାମକ ଜଣେ ନାବିକ କାର୍ଯ୍ୟ କରୁଥିଲେ । ସେ ଭଦ୍ରଲୋକ ଜଣଙ୍କ ନୁଏନଙ୍କୁ ଚାକିରି ଦେବାରେ ଖୁବ୍ ସାହାଯ୍ୟ କରିଥିଲେ । ସେଥିପାଇଁ ପରବର୍ତ୍ତୀ ସମୟରେ ଦୁହିଁଙ୍କ ମଧ୍ୟରେ ଗଭୀର ଆନ୍ତରିକତା ଜମି ଉଠିଥିଲା, ହୋଙ୍କର ଜୀବନ ଯେତେବେଳେ ସାଧାରଣ କ୍ଷେତ୍ରରେ ଆଲୋଚନାର ବିଷୟବସ୍ତୁ ହେବାକୁ ଲାଗିଲା, ସେତେବେଳେ ସେ ପ୍ରଥମ ଦିନର ଘଟଣାକୁ ମନେ ପକାଇ ଲେଖିଛନ୍ତି ;

“ଠିକ୍ ମନେ ନାହିଁ, ହେଲେ ୧୯୧୨-୧୩ର ମଝିଆଡ଼କୁ ହେବ, ମୁଁ ଅଫିସରମାନଙ୍କ ପାଇଁ ମେସେଜ ଘରେ ରନ୍ଧାବଢ଼ାରେ ବ୍ୟସ୍ତ ଥିଲି । ଲ-ଟୁସ-ଟ୍ରାଭିଲେ ଯାତ୍ରୀ ଓ ମାଲ ନେଇ ସାଇଗନ ବନ୍ଦରରେ ଠିଆ ହୋଇଛି । ଦିନେ ମୁହଁସନ୍ଧ୍ୟାବେଳକୁ ଜଣେ ଯୁବକ ଜାହାଜରେ ଆସି ପହଞ୍ଚିଲେ । ବିନୀତ ଏବଂ ଚିନ୍ତାକୁଳିତ ସ୍ୱରରେ ସେ ମୋ ପାଖରେ ଚାକିରି ପ୍ରାର୍ଥନା କଲେ ।”

ମୁଁ ତାଙ୍କୁ କହିଲି, ଏଠାରେ ତ କୌଣସି କାମ ଖାଲି ନାହିଁ । ଯାହା ବା ଥିବ, ସେ ଦାୟିତ୍ୱରେ ଥିବା ମାଲିକ ମଧ୍ୟ ଆଜି ନାହାନ୍ତି । ସେଦିନ ମୁଁ ହସିଥିଲି, କାରଣ ଯୁବକଟିକୁ ଦେଖି ମନେ ହେଉଥିଲା ସେ ଜଣେ ଛାତ୍ର, ଆମମାନଙ୍କ ପରି ଖାସ କୁଲି ମଜଦୁର ନୁହେଁ । ମୁଁ ଏବଂ ମୋର ବନ୍ଧୁ ଚୁପ୍ ଚାପ୍ କରି କାନରେ କୁହାକୁହି ହେଲୁ, ଏଇ ଟୋକା ଜାହାଜରେ କ'ଣ ଯାଇଁ କାମ କରିବ ? କିନ୍ତୁ କେଜାଣି କାହିଁକି ଯୁବକଟିର ଉପରେ ଆମର ଖୁବ୍ ଦୟା ଲାଗିଲା । ମୁଁ କହିଲି, “ଆସ, ମୋ ସାଙ୍ଗରେ, ମୁଁ ତୁମକୁ କ୍ୟାପଟେନ ପାଖକୁ ନେଇ ଯିବି । ହୁଏତ ସେ ତୁମକୁ ଏଥିରେ ସାହାଯ୍ୟ କରି ପାରିବେ ।”

“କ୍ୟାପଟେନ ପଚାରିଲେ, ତୁମେ କି କାମ କରିପାର ?”

“ସେ କହିଲା, ମୁଁ ସବୁ ପାରିବି ।”

“ବେଶ୍, ମୁଁ ତୁମକୁ ରନ୍ଧାଣିଆ କାମରେ ନିଯୁକ୍ତ ଦେଲି । କାଲି ସକାଳଠାରୁ ଆସି କାମରେ ଲାଗ ।”

“ଯୁବକ ତାର ନାମ କହିଲା ‘ବା’ । ମୁଁ ଏଇ ଟିକିଏ ସାହାଯ୍ୟ କରିଥିବାରୁ ସେ ମୋ ସହିତ ଗଭୀର ବନ୍ଧୁତ୍ୱରେ ବାନ୍ଧି ହୋଇଗଲା । ତା, ଛଡ଼ା ସେ ଖୁବ୍ ଭଦ୍ର ଥିଲା । ସେଥିପାଇଁ ତା ସହିତ ମୁଁ ବନ୍ଧୁତ୍ୱ କରିବା ପାଇଁ ମନ ବଳାଇଲି । ସେ କିଛି ଜାଣି ନ ଥିଲା, ତାର ପାରୁପର୍ଯ୍ୟନ୍ତ ମୁଁ ସାହାଯ୍ୟ କରୁଥିଲି । ସୌଭାଗ୍ୟବଶତଃ ସେ ଖୁବ୍ ସାହସୀ ଓ ଧୈର୍ଯ୍ୟବାନ୍ ଥିଲା । ରନ୍ଧାଣିଆର ଯୋଗାଡ଼ିଆଭାବେ ତାକୁ ଯାହାଯାହା କରିବାକୁ ପଡ଼ୁଥିଲା, ସେ ବିଷୟରେ ଟିକେ କହି ରଖିଥାଏ । ସକାଳ ଚାରିଟାରୁ ଉଠି ମସ୍ତ ଏକ ରନ୍ଧାଘର ପରିଷ୍କାର କରିବାକୁ ହୁଏ । ତାପରେ ଚୁଲିରେ ନିଆଁ ଧରାଏ । ତାପରେ ପାଖ ବଜାରରୁ କୋଇଲା, କାଠ, ପନିପରିବା, ମାଂସ, ମାଛ, ବରଫ ଇତ୍ୟାଦି ସଉଦା କିଣି ଆଣେ । ସହଜ ଜଣାପଡ଼ୁଥିଲେ ମଧ୍ୟ କାମ ବହୁତ କଠିଣ ଥିଲା । କାରଣ ରନ୍ଧାଘର ଯେତିକି ଗରମ ଥିଲା, ଜାହାଜ ଭିତରର ‘କୋଲ୍ଡ଼ ଷ୍ଟୋରେଜ’ ବା ସଉଦା ଘର ସେତିକି ଥିଲା ଥଣ୍ଡା । ଏହି ଥଣ୍ଡା ଗରମ ବ୍ୟବସ୍ଥା ମଧ୍ୟରେ ସେ ଅଣନିଃଶ୍ୱାସୀ ହୋଇ ପଡ଼ୁଥିଲା । ତାଛଡ଼ା ତାକୁ ଆହୁରି

ଏକ କଠିଣ କାମ କରିବାକୁ ପଡୁଥିଲା । ଜାହାଜ ଗଭିର ସମୁଦ୍ର ଭିତରେ ଚାଲିଲା-ବେଳେ ସମସ୍ତ ସମୟରେ ଉଠା ପକା ହୁଏ । ଏହି ସମୟରେ ବା' ଖସିବୋଲ୍ କାନ୍ଧରେ ବୋହି ତଳକୁ ଉପରକୁ ଯା' ଆସ କରୁଥାଏ । ଖୁବ୍ ସାବଧାନତାର ସହ, ସାହସର ସହ । ତା'ଛଡ଼ା ତାର ଅନ୍ୟ ଉପାୟ ନ ଥିଲା ।''

ତା'ପରେ ମଧ୍ୟ ତାର ବିଶ୍ରାମ ନାହିଁ । ରନ୍ଧାବଢ଼ା ସରିବା ପରେ ସେ ଗୃହିଣୀଆମାନଙ୍କ ପାଇଁ ଟେବୁଲ ସଜାଡ଼ି ଦିଏ, ପରିବା କାଟି ଦିଏ । ରନ୍ଧା-ଘରର ବାସନକୁସନ ଧୁଆ ମଧ୍ୟ ଅଛି । ତା ପୁଣି ଚୂଲିରେ ନିଆ ଧରା । ସକାଳୁ ରାତି, ସାରାଦିନ ତାର ଏହି କାମ ।

ଯାତ୍ରୀ ଏବଂ କର୍ମଚାରୀ ସବୁ ମିଶି ସାତଶହ ଆଠଶହ ଲୋକଙ୍କର ରୋଷେଇ ବ୍ୟବସ୍ଥା ହେଉଥିଲା । ଏତେ ଲୋକଙ୍କର ଖାଇବା ପାଇଁ ଏତେ ବଡ଼ ବଡ଼ ହାଣ୍ଡିର ବ୍ୟବହାର କରାଯାଇଥିଲା ଯେ ଯାହାକୁ ଦେଖିଲେ ପ୍ରଥମେ ଡର ଲାଗେ । ଓଜନରେ ବହୁତ ଭାରି । ସେ ତାକୁ ଠେଲା ଗାଡ଼ିରେ ପୂରାଇ ଟାଣି ଟାଣି ନେଉଥିଲା । ହାଣ୍ଡି-ଗୁଡ଼ାକ ଏତେ ଉଚ୍ଚ ଥିଲା ଯେ ତା'ର ଆଖି କାମ୍ବା ହାତ ପାଉ ନ ଥିଲା । ସେ ଟୁଲ ପକାଇ ତା ଉପରେ ଠିଆ ହୋଇ ମାଜୁଥିଲା । ସେ ସମସ୍ତ ଟିକେ କେତେବେଳେ ପାଏନା । ସବୁବେଳେ ତା ହାତରେ କାମ । ସବୁବେଳେ ସେ ସମସ୍ତଙ୍କର ଅଳି ଡାକରା । ମୋର ତ ମନେ ପଡ଼େ, ସବୁବେଳେ ମୋ କାନରେ ବାଜୁଥିଲା,

''ବା' ଜଳ ନେଇ ଆ''
''ବା' ହାଣ୍ଡି ଠିକ୍ କର''

''ସାରାଦିନ ନିଆ, ପାଣି, ବାଷ୍ପ ସହିତ ଲଢ଼େଇ କରି ସେ ବଞ୍ଚିଥାଏ । ରନ୍ଧାଘରର ତାତି ପବନରେ ନିଗିଡ଼ି ଯାଉଥାଏ ତା ଦେହରୁ ବିନ୍ଦୁ ବିନ୍ଦୁ ରକ୍ତ... ପାଣି ହୋଇ । ଆଖିବାଟେ ବାହାରି ପଡ଼େ କେତେଦିନର ସଞ୍ଚିତ ବ୍ୟଥାର ଅଶ୍ରୁ । ପୁଣି ଯାଇ ସେ ଜାହାଜର ଗ୍ରେଟ ଖିଡ଼ିକି ପାଖରେ ଠିଆ ହୋଇଯାଏ ଅନାଇ ସମୁଦ୍ରଆଡ଼େ ଚାହିଁ । ଦେହର ଝାଳ ଆପେ ଆପେ ମରିଯାଏ ସାମୁଦ୍ରିକ ଜାନୁଆ ପବନରେ । ଦେହର ଝାଳମିଶା ଗନ୍ଧରେ ସେ ନିଜେ ଭାବପ୍ରବଣ ହୋଇଉଠେ । ପୁଣି ଫେରିଆସେ କାମକୁ । ସାମର୍ଥ୍ୟ ଦେଇ କାମ ଶେଷ କରିବା ପାଇଁ ତାର ଅନ୍ତିମ ଚେଷ୍ଟା ଚାଲୁରଖେ । ଆଗରୁ ତ ସେ ଅଭ୍ୟସ୍ତ ନ ଥିଲା ଏ କାମରେ, ତେଣୁ ତାକୁ ବହୁତ କଷ୍ଟ ହେଉଥିଲା । ନିଜର ସମସ୍ତ ବୁଦ୍ଧି, ବିବେକ ଖଟାଇ ସେ କାମ କରିବାକୁ ଚାହୁଁଥିଲା । ଥରେ ମୁଁ ତାକୁ ଆଳୁ, ଗାଜର କପରି କାଟିବାକୁ ହୁଏ ଶିଖାଇ ଦେଇଥିଲି । କିନ୍ତୁ ସେସବୁ ଯେ ଭୁଲଭାଲ କାଟିଦେଲା । ଆଳୁ, ଗାଜରର

ଟ୍ରୋପା ଛଡ଼ାଉ ଛଡ଼ାଉ ସବୁ କାଟି ବାହାର କରି ଦେଇଥିବ । ମାଲିକର ଉପ୍ସରେ ମୁଁ ସେସବୁ ନେଇ ସମୁଦ୍ରରେ ଫୋପାଡ଼ି ଦେଲି । ତା'ପରେ ଭଲରେ ଶିଖାଇ ଦେଲି, କପରି କରିବାକୁ ହୁଏ । ଭାଗ୍ୟକୁ ସେଦିନ ସେପରି କିଛି ଦୁର୍ଘଟଣା ଘଟିଲା ନାହିଁ ।"

"କାମ ନ ଥିବା ଦିନ ରାତି ନଅଟା ପରିକି ଛୁଟି ମିଳେ । ତା ଆଗରୁ ନୁହେଁ । ଅମେ ଯେତେବେଳେ ଛୁଟିଦିନ ତାସ ଖେଳୁ ବା ଚୁଲିଚଲାରେ ମଉଜ ମଜଲିସ କରୁଥାଉଁ 'ବା' ତା'ର ବହିପତ୍ର କଲମ ପେନସିଲ ଧରି ବସିଯାଏ । ରାତି ୧୧ରୁ ବାର ହୁଏ । ପଦମର୍ଯ୍ୟାଦାରେ ସେ ଆମର ତଳେ ଥିଲା । ଆମ ଦମପ୍ତଙ୍କର ସ୍ୱତନ୍ତ୍ର ନାଁ, ଏକ ସ୍ୱତନ୍ତ୍ର ପଦବୀ ଥିଲା ; କିନ୍ତୁ 'ବା'ର ନାମ ସେହି ରାନ୍ଧୁଣିଆର ଯୋଗାଡ଼ିଆ । ସେ ଥିଲା ଶିକ୍ଷିତ, ବୁଦ୍ଧିମାନ । ଅମେ ମୂର୍ଖ, ନିରକ୍ଷର । ଘରକୁ ଚିଠିପତ୍ର ଦେଲାବେଳେ ସେ ଆମର ସବୁ ଲେଖିଦିଏ । କେବେ କେବେ ତା ପାଟିରୁ ଝରାପ କଥା ଶୁଣିନି । ଏହିସବୁ କାରଣରୁ ମୁଁ ସେ ପିଲାଟିକୁ ଝୁବ୍ ଭଲ ପାଉଥିଲି ।"

"ମାର୍ସାଲସରେ ପହଞ୍ଚି ଆମେ ସମସ୍ତେ ଦରମା ପାଇଲୁ । ପ୍ରତ୍ୟେକ ଭିଏତନାମୀ ଶହେରୁ ଦୁଇଶହ ଫ୍ରାଙ୍କ୍ ଦରମା ବକସିସ୍ ପାଇଲେ । ରାନ୍ଧୁଣିଆ ଯୋଗାଡ଼ିଆ ହିସାବରେ ସେ ପାଇଲା ମାତ୍ର ୧୦ ଫ୍ରାଙ୍କ୍ ।"

"ତାର ଦରମା କମ୍ ହେଲେ କ'ଣ ହେଲା, ସେ ନୂଆ କରି ଅନେକ କିଛି ଶିଖି ପାରିଥିଲା । ମୋତେ ସେ ତାର ଅନ୍ତରଙ୍ଗ ବନ୍ଧୁ ବୋଲି ମନେକରୁଥିଲା ।" ତେଣୁ ସେ ଯାହା ଦେଖୁଥିଲା ବା ଭାବୁଥିଲା ମୋତେ ସବୁ ଖୋଲି କହି ଦେଉଥିଲା;

"ଆମ ଭିଏତନାମ ଦେଶ ପରି ଫ୍ରାନସରେ ତ ବହୁତ ଗରିବ ଅଛନ୍ତି ।"

ଜାହାଜରେ ବେଶ୍ୟାମାନଙ୍କୁ ଆସିବାର ଦେଖି ସେ ମୋତେ ପଚାରିଲା; "ଫରାସୀମାନେ ଅମକୁ ସଭ୍ୟ କରିବା ଆଗରୁ ତାର ନିଜ ଦେଶବାସୀଙ୍କୁ ସଭ୍ୟ କରୁନାହାନ୍ତି କାହିଁକି ? ଏପରି କାହିଁକି ହେଉଛି, ମାଇ ଭାଇ ?"

"ଟ୍ରାମ ଗାଡ଼ି 'ବା'ର ନିକଟରେ ଥିଲା ଏକ ତାଜୁବ୍ ପଦାର୍ଥ । 'ଚଳନ୍ତାଘର' ସେ ପ୍ରଥମେ ଏଇଠି ଦେଖିଥିଲା । ସବୁ କିଛି ତା ନିକଟରେ ଥିଲା କୌତୁହଳ, କାରଣ ସବୁକୁ ସେ ନୂଆ କରି ଦେଖୁଥିଲା ।"

"ଦିନେ କାମ ଶେଷରେ ମୁଁ ତାକୁ ସଫାସୁତରା, ଜାମା ଦେଲି ପିନ୍ଧିବା ପାଇଁ । ତା ପରେ ଗଲୁ ଗୋଟିଏ କଫି ହାଉସ୍‌କୁ । ଏପରି ଜାଗାକୁ ତାର ଆସିବା ଏଇ ପ୍ରଥମ । ଅଜାଣତରେ କୌଣସି ଏକ ଫରାସୀ ଭଦ୍ରବ୍ୟକ୍ତି ତାଙ୍କୁ ମିଷ୍ଟର ବୋଲି ସମ୍ବୋଧନ କରିଥିଲେ !"

"ତା' ପରେ ଅନେକ ଦିନ ମାର୍ସାଲ୍ସଠାରେ କଟିଲା ପରେ ସେ ମୋତେ କହିଲା 'ଇଣ୍ଡୋଚୀନ୍‌ରେ ଥିବା ଫରାସୀମାନଙ୍କ ତୁଳନାରେ ଫ୍ରାନସ୍‌ର ଫରାସୀମାନେ କେତେ ଭଲ, କେତେ ଭଦ୍ର ।' ସେହିଦିନଠାରୁ ତା ମନରେ ଅନେକ ଘୂର୍ଣ୍ଣରଣ, ଅନେକ ପ୍ରଶ୍ନ, ଅନେକ ସମସ୍ୟା ।"

"ଜାହାଜ ଲି-ହାଭ୍ରର ଛାଡ଼ି ସ୍ପେନ, ପର୍ତ୍ତୁଗାଲ, ଅଲଜେରିଆ, ଟ୍ୟୁନିସିଆ, ଏବଂ ପୂର୍ବ-ଆଫ୍ରିକାର କଙ୍ଗୋ ପର୍ଯ୍ୟନ୍ତ ଗଲା । 'ବା' ସବୁ ଜାଗାକୁ ମନଧ୍ୟାନ ଦେଇ ଦେଖୁଥାଏ । ଜାହାଜ ବନ୍ଦର ଧରିବା ମାତ୍ରେ ସେ ସୁବିଧା ଉଣ୍ଡି ବାହାରି ପଡ଼େ ସହର ପରିକ୍ରମା କରିବା ପାଇଁ, ଫେରିଲାବେଳେ ପକେଟ୍ ବୋଝାଇ କରି ଆଣିଥାଏ ସ୍ଥାନୀୟ ଫଟୋ, ମାନଚିତ୍ର ଏବଂ ଦିଆସିଲି ବାକ୍ସରୁ ଗୁଡ଼ିଏ । ଏଗୁଡ଼ିକ ଜମାଇବାରେ ତାର ଭାରି ସଉକ ।"

"ଡାକାରରେ ପ୍ରଚଣ୍ଡ ଝଡ଼ ମଝିରେ ଆମ ଜାହାଜ ପଡ଼ିଗଲା । କୌଣସି ବନ୍ଦର ଖୋଜି ଅଟକି ପାରିଲା ନାହିଁ । ଜୀବନ ରକ୍ଷାତରୀ ମାନଙ୍କର ସାହାଯ୍ୟ ନିଆହୋଇ ପାରିଲା ନାହିଁ । ତୀରରେ ଥିବା ଫରାସୀମାନେ ଜାହାଜ ସହିତ ଯୋଗାଯୋଗ କରିବା ପାଇଁ ଆଫ୍ରିକୀୟମାନଙ୍କୁ ନିର୍ଦ୍ଦେଶ ଦେଲେ ଚଞ୍ଚଳ ସମୁଦ୍ର ମଧ୍ୟରେ ପହଁରିଯିବା ପାଇଁ । ଜଣ ଜଣ କରି ଅନେକ ଝାମ୍ପ ଦେଲେ ସାଗରବକ୍ଷକୁ··· ସେଥିମଧ୍ୟରୁ କେତେକ ସବୁଦିନ ପାଇଁ ଅତଳ ଜଳରେ ଡ଼ୁବିଗଲେ ।"

"ଏପରି ଘଟଣା ଅନେକ ଘଟିଛି, କିନ୍ତୁ ବା' ଖୁବ୍ ବିଚଳିତ ହୋଇ ପଡ଼ିଥିଲା । ସେ କହି କହି କାନ୍ଦୁଥିଲା । ବିସ୍ମିତ ହୋଇ ମୁଁ ପଚାରିଲି, କ'ଣ ହେଲା ? ଦୁଃଖର ସହିତ ସେ ଉତ୍ତର ଦେଲା; "ଫ୍ରାନସର ଫରାସୀମାନେ ସବୁ ଭଲ । କିନ୍ତୁ ଉପନିବେଶବାସୀ ଫରାସୀମାନେ ଅତି ନିଷ୍ଠୁର, ଅମାନୁଷିକ । ସବୁଠାରେ ଏହି ସମାନ କଥା । ଦେଶରେ ତ ମୁଁ ନିଜ ଆଖିରେ ଦେଖିଛି । ଆମ ଦେଶବାସୀ ଯେତେବେଳେ ତାଙ୍କ ପାଇଁ ମରୁଛନ୍ତି, ସେତେବେଳେ ସେମାନେ ହସି ହସି ଗଡ଼ି ଯାଉଛନ୍ତି । ଉପନିବେଶବାଦୀମାନଙ୍କ ପାଖରେ ଏସୀୟ ବା ଆଫ୍ରିକୀୟମାନଙ୍କର ଜୀବନର ମୂଲ୍ୟ କାଣିକଉଡ଼ିଏ ମଧ୍ୟ ନୁହେଁ ।"

"ଆମ ଜାହାଜ ଆଲେଜେଶ୍ୱସ୍ ମଦ ଅନ୍ୟ ଉପନିବେଶଗୁଡ଼ିକୁ ନେଇ ଯାଉଥିଲା । ଜାହାଜର ସମସ୍ତେ ସେ ମଦ ଖାଉଥିଲେ, କାରଣ ପ୍ରଚୁର ପରିମାଣରେ ତାହା ମିଳୁଥିଲା । କୌଣସି କୌଣସି ନାବିକ ସାରା ଯାତ୍ରାପଥକୁ ମଦ ନିଶାରେ କଟାଇ ଦେଉଥିଲେ । ପିମ୍ପାରେ ଗୋଟିଏ କଣା କରି ନଳ ଲଗାଇ ସେଥିରୁ ଶୋଷିବାକୁ ହେଉଥିଲା । ଏହିପରି ଭାବରେ ମନର ଓରମାନା ମେଣ୍ଟାଇ ସେମାନେ

ମଦ ଖାଉଥିଲେ । ବା' କିନ୍ତୁ କେବେ ମଦ ଛୁଇଁ ନ ଥିଲା । ମୋତେ ତ ଅନେକ ସମୟରେ ଉପଦେଶ ଦେଇଛି ସେମାନଙ୍କୁ ଅନୁକରଣ ନ କରିବା ପାଇଁ ।"

'ବା' ସମସ୍ତଙ୍କ ସହିତ ଉତ୍ତମ ବ୍ୟବହାର କରୁଥିଲା । କେବେ କାହା ସହିତ ଝଗଡ଼ା କରିନାହିଁ । ତେବେ ସେ ଗୋଟିଏ ଅଦ୍ଭୁତ ଧରଣର ପିଲା ଥିଲା । ପ୍ରତ୍ୟେକ ଦିନ ସକାଳୁ ସେ ଉଦୀୟମାନ ସୂର୍ଯ୍ୟର ପହିଲି ଦେଖା ପାଇବ ବୋଲି ଗଭୀର ନିଦରୁ ଉଠି ପଡୁଥିଲା । ଠିକ୍ ସେହିପରି ଯେଉଁଦିନ ରାତିରେ ଆକାଶରେ ଚନ୍ଦ୍ର ଥାଏ ସେ ଜମା ଶୋଇ ପାରେ ନାହିଁ । ଚନ୍ଦ୍ର ସୂର୍ଯ୍ୟଙ୍କର ଏହି ମିଳନ ରାତିକୁ ସେ ଉପଭୋଗ କରିବା ପାଇଁ ଉଜାଗରରେ କଟାଇଦିଏ । ଆକାଶ ଓ ସମୁଦ୍ର ଅନ୍ତେ ସୃଷ୍ଟି କ'ଣ କ'ଣ ଭାବୁ ଭାବୁ ସେ ଜାହାଜର ଏପଟରୁ ସେପଟ-ଯାଏ ପଇଁତରା ମାରି ଆସେ । ଜାଣିତରେ ନୁହେଁ, ଅଜାଣତରେ । ଗୋଟିଏ ଦିନ ସକାଳେ ମୁଁ ଉଠି ପଡ଼ିଥିଲି । ସମୁଦ୍ର ଖୁବ୍ ଶାନ୍ତ ଥିଲା । ଦୂରରୁ ଦିଶୁଥିଲା ଦ୍ୱୀପଟା ସମୁଦ୍ର ମଝିରେ ଦୀପଦଣ୍ଡୀ ପରି । ଉପରଟା ଝଲମଲ କରୁଛି, ଆଉ ତଳେ—ଈଷତ୍ ନୀଳର ଏକ ଆସ୍ତରଣ । ବା' ଏହି ଦୃଶ୍ୟ ଦେଖି ବିସ୍ମୟରେ ହତ୍‌ବାକ୍ ହୋଇ ପଡ଼ିଲା । ସେ ବାରମ୍ବାର ମୋତେ କହିବାକୁ ଲାଗିଲା; ଦେଖ, ଦେଖ କି ସୁନ୍ଦର !

'ପ୍ରାୟ ଦୁଇବର୍ଷ ଧରି ବା' ଜାହାଜରେ ଚାକିରି କରିଛି । ଏହି ଦୁଇବର୍ଷ ମଧ୍ୟରେ ସେ ଆଫ୍ରିକା ଓ ଭୂମଧ୍ୟସାଗରୀୟ ଅଞ୍ଚଳର ପ୍ରଧାନ ପ୍ରଧାନ ବନ୍ଦରମାନ ଦେଖିଛି । ଓରାନ୍, ଡାକାର, ଡିଏଗୋ-ସୁରେଜ, ପୋର୍ଟ ସଇଦ, ଆଲେକଜାଣ୍ଡ୍ରିଆ ଇତ୍ୟାଦି ଇତ୍ୟାଦି । ସବୁଠାରେ ତାର କିଛି ନା କିଛି ଦିନ କଟିଛି । ସବୁଠି ଥିଲାବେଳେ ତାର ମନେ ପଡ଼ୁଛି ଭିଏତନାମ । ଭିଏତନାମକୁ ଆଖିର ଆଲୋକ କରି ସେ ଦେଖିଛି ନୂତନ ନୂତନ ସ୍ଥାନମାନଙ୍କୁ । ସବୁଠି ଖୋଜିଛି ଭିଏତନାମର ପ୍ରତିରୂପ । ଆଶା, ବିଶ୍ୱାସ ଓ ଭରସାର ପ୍ରତିଶ୍ରୁତି । ଆମେରିକାର ନିୟୁର୍କ ଓ ବୋଷ୍ଟନ ସହରକୁ ମଧ୍ୟ ସେ ଯାଇଛି । ଉପନିବେଶବାଦୀମାନଙ୍କର ପ୍ରବଳ ଅତ୍ୟାଚାର, ନଗ୍ନ ଦାନବଲୀଳାରେ ଆଖି ତାର ରୁଜ ହୋଇ ଯାଇଛି । ବିଶେଷ କରି ଆଫ୍ରିକୀୟ-ମାନଙ୍କ ଉପରେ ଔପନିବେଶିକ ଶାସନର ଯେଉଁ ଦମନଲୀଳା ଦେଖିଛି, ତାର କରୁଣ କାହାଣୀ ବର୍ଣ୍ଣନା କରିଛି ତାର "ଫରାସୀ ଉପନିବେଶବାଦ ବିରୁଦ୍ଧରେ ଅଭିଯୋଗ" ପୁସ୍ତକରେ । ଘୃଣା, କ୍ରୋଧ ଓ ପ୍ରତିଶୋଧର ମିଳିତ ଇସ୍ତାହାର ।"

୧୯୧୪ ରୁ ୧୯୧୮ । ପ୍ରଥମ ମହାଯୁଦ୍ଧର ଘୂର୍ଣ୍ଣିବାତ୍ୟା ଉଣା ଅଧିକେ ସମସ୍ତଙ୍କୁ ଛୁଇଁଦେଇ ଯାଇଛି । କିଶୋର ବା ଯୌବନ ଅତିକ୍ରମ କରି ତାରୁଣ୍ୟରେ ପଦାର୍ପଣ କରିଛି । ଜାହାଜରେ ରାନ୍ଧୁଣିଆର ଯୋଗାଡ଼ିଆ କାମରେ ସେ

ଅଭୁତପୂର୍ବ ସଫଳତା ଅର୍ଜନ କରିଛୁ । ତାର ନୂତନ ନିଯୁକ୍ତି ଦରକାର । ଆଉ ଜାହାଜରେ ନୁହେଁ, କୌଣସି ଏକ ସ୍ଥାନରେ । ଗଭୀର ସମୁଦ୍ରରେ ନୁହେଁ, ବସୁଧାର ମାଟି ଉପରେ । କିଛି ସମୟ ପାଇଁ ସାମୟିକଭାବେ ବା ସେଣ୍ଟ-ଆଲ୍ଭେସିଠାରେ ମାଳୀ କାମ କରିଛୁ । ତାପରେ ତାର ମନ ଧାଇଁ ଯାଇଛି ଲଣ୍ଡନ ଆଡ଼େ । ପ୍ୟାରିସ ତାର ମନକୁ ଟାଣି ପାରୁନାହିଁ । ଯେଉଁ ଜାତି ପ୍ରତି ତା ହୃଦୟରେ ଏତେ ଘୃଣା, ଏତେ କ୍ରୋଧ, ଏତେ ରାଗ ସେ ଜାତିର, ସେ ଦେଶର ଲୋକଙ୍କ ପାଖରେ ସେ ଚାକିରି କପରି ? ସେମାନଙ୍କର ଆତିଥ୍ୟ ଗ୍ରହଣ କରିବ କପରି ?

"କମଲିଏନର ଏହି ତରୁଣ ମେଧାବୀ ଗ୍ରୁପ ଜଣକ ଲଣ୍ଡନର କାହାଣୀରେ ବିମୁଗ୍ଧ ହୋଇ ପଡ଼ିଥିଲେ । ଦୂର ପର୍ବତ ସବୁବେଳେ ସୁନ୍ଦର । ଲଣ୍ଡନର କାର୍ଲଟନ ହୋଟେଲରେ ବାସନ ମାଜିବା, ଝାଡ଼ୁ ଦେବା କାମରେ ସେ ନିଯୁକ୍ତ ହେଲେ । ହୋଟେଲରେ ଥିବା ସମୟରେ ଆଉ ଜଣେ ଭିଏତନାମୀ ଯୁବକ ସହିତ ତା'ର ପରିଚୟ ହେଲା, ଯେ କି ତାଙ୍କର ଲଣ୍ଡନ ରହଣୀକାଳ ସମ୍ବନ୍ଧରେ କିଛି ଖବରଖି ଦେଇଥିଲେ ।"

"ପ୍ରଥମ ବିଶ୍ୱଯୁଦ୍ଧର ଠିକ୍ ଗୋଟିଏ ବର୍ଷ ଆଗରୁ କାର୍ଲଟନ ହୋଟେଲରେ ବାସନକୁସନ ମାଜିବା ସମୟରେ ମୋର ଜଣେ ତରୁଣ ଏସୀୟଙ୍କ ସହିତ ସାକ୍ଷାତ ଘଟିଲା । ମୁଁ ପ୍ରଥମେ ତା ପ୍ରତି ବିଶେଷ ମନଯୋଗ ଦେଇ ନ ଥିଲି । କାରଣ ମୁଁ ତାକୁ ଚୀନା ବୋଲି ମନେ କରିଥିଲି । ତୃତୀୟ ଦିନ ସେ ମୋ ପାଖକୁ ଆସି ଭିଏତନାମୀ ଭାଷାରେ କହିବାକୁ ଆରମ୍ଭ କଲେ । ଦୂର ପ୍ରବାସରେ ଜଣେ ସ୍ୱଦେଶୀ ଭାଇ ସହିତ ଦେଖା ହୋଇଥିବାରୁ ମୋ ମନ ଆନନ୍ଦରେ ନାଚ ଉଠିବା ସ୍ୱାଭାବିକ । ସେହିଦିନଠାରୁ ଆମେ ଦୁହେଁ ପରସ୍ପରର ଘନିଷ୍ଠ ବନ୍ଧୁ ।"

"ଇଂଲଣ୍ଡ ତୁମେ କ'ଣ ପାଇଁ ଆସିଲ ?" ମୁଁ ତା'କୁ ପଚାରିଲି ।

"ଇଂରାଜୀ ଶିଖିବା ପାଇଁ ।"

"ବାଃ ଭଲ କଥା ! କିନ୍ତୁ ଇଂରାଜୀ ଶିଖିବା ଖୁବ୍ କଠିଣ । ମୁଁ ଏଠି ଦୁଇ-ବର୍ଷ ହେଲା ଅଛି ।' ଏ ପର୍ଯ୍ୟନ୍ତ ମୁଁ 'ଇୟେସ୍' ଆଉ 'ନୋ' ଛଡ଼ା କିଛି ଜାଣିନି ।"

"ଶିଖିବାକୁ ହିଁ ପଡ଼ିବ । ଆସ, ବର୍ତ୍ତମାନଠାରୁ ଦୁଇଜଣ ମିଶି ଶିଖିବା ।"
"ଏଠାକୁ ଆସିବା ଆଗରୁ ତୁମେ କେଉଁଠି ଥିଲ ?"

"ମୁଁ ପ୍ରଥମେ ଗୋଟିଏ ସ୍କୁଲରେ ବରଫ ସଫା କରିବା କାର୍ଯ୍ୟରେ ଥିଲି । କି କଷ୍ଟ ସେ କାମରେ ବାବା !" ଅନାୟାସରେ କହିଚାଲିଥିଲି ତା'ର ସେହି ଭିଏତନାମୀ ବନ୍ଧୁ ଜଣକ ନିଜ ଜୀବନର ଅପାଶୋରା କାହାଣୀ । ତା' ମଧ୍ୟ

ଖୁବ୍ ଧୈର୍ଯ୍ୟସହକାରେ ତାକୁ ଶୁଣୁଥିଲ, ସେଥିରେ ତାର ଘୋର ନିଶା । ନିଜ ଜୀବନ ସହିତ କେତେ ସାମଞ୍ଜସ୍ୟ ତାର !! କାର୍ଲଟନ ହୋଟେଲରେ କାମ ପାଇବା ଆଗରୁ ସେ ଅତ୍ୟନ୍ତ କଠିଣ କାମ କରୁଥିଲା । ଦିନ ରାତି ମିଶି ତାକୁ ଦଶ ବାର ଘଣ୍ଟା ବରଫ ଭିତରେ କଟାଇବାକୁ ପଡୁଥିଲା । କାମସାରି ରାତିରେ ବସାକୁ ଫେରିବାବେଳେ ଶୀତର ଦାଉ ଅସମ୍ଭାଳ । ଶୀତଳ ଆଖିରେ ତନ୍ଦ୍ରାର ସୀମାହୀନ ଜଡ଼ତା । ଅବିଶ୍ରାନ୍ତ ଅଭୁକ୍ତ ଶରୀରରେ ସେ ଧସେଇ ପଡ଼େ ସ୍କୁଲର ବାହାର ବାରଣ୍ଡାରେ ଅଖା ଖଣ୍ଡେ ବା ଛିଣ୍ଡାକନ୍ଥା ଖଣ୍ଡେ ଘୋଡ଼ାଇ ହୋଇ । ସେଥିପାଇଁ ସେ କିଛିଦିନ ପରେ କାମଟି ଛାଡ଼ିଦେବାକୁ ବାଧ୍ୟ ହେଲା । ସ୍କୁଲର କର୍ତ୍ତୃପକ୍ଷ ଉତ୍ତମ ସ୍ୱଭାବର ଲୋକ ଥିଲେ । ସେ ଦିନେ ତା ହାତରେ ଛ' ପେନ୍ସ ଦେଇ କାର୍ଯ୍ୟରୁ ବିଦାୟ ଦେଲେ ।''

ତା'ର ପରେ ସେ ଚୁପ୍ ହୋଇ ବସି ପାରିଲା ନାହିଁ । ଚାକିରି ଦରକାର ପଡ଼ିଲା, ଗୁଜୁରାଣ ମେଣ୍ଟାଇବା ପାଇଁ । ସୌଭାଗ୍ୟବଶତଃ ମାତ୍ର ଦୁଇଦିନ ପରେ ସେ ନୂତନ ନିଯୁକ୍ତି ପାଇଲା । ଏଥର ବରଫଗଡ଼ା ନୁହେଁ, ଚୁଲିରେ ନିଆଁ ଧରାଇବା କାମ । ଉତ୍କଟ ଶୀତ ମଧ୍ୟରୁ ପ୍ରଚଣ୍ଡ ଗରମ ମଧ୍ୟକୁ କାର୍ଯ୍ୟାନ୍ତର ହେଲା । ଜାହାଜର ଚୁଲି କହିଲେ ବିରାଟ ଏକ ଗୁମ୍ଫାକୁ ବୁଝାଏ । ସେଥିରେ ଦିନତମାମ କୋଇଲା ଧରାଇବା ଯେ କେତେ ଦୁଷ୍କର, ତାହା ଅନୁଭବୀ ଛଡ଼ା ଅନ୍ୟ କେହି ଜାଣି ପାରିବେ ନାହିଁ । ସେ ଓ ତାର ବନ୍ଧୁ ଏହି ଦୁଇ ଜଣଙ୍କ ଉପରେ ସେ ଦାୟିତ୍ୱ ନ୍ୟସ୍ତ ଥିଲା । ଭୋର ପାଞ୍ଚଟା ଠାରୁ ଆରମ୍ଭ କରି ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ, ତାର ବନ୍ଧୁ, ଥିଲା ଖୁବ୍ ଚୁପ୍ ଚାପ ପ୍ରକୃତିର । ସ୍ୱଭାବତଃ ଟିକେ ବୋବା । ସାରାଦିନ ସେ କିଛି କଥା କହେନା । କେବଳ କାମ କରୁ କରୁ ମଝିରେ ମଝିରେ ଧୂଆଁ ଖାଏ । ଦରକାର ପଡ଼ିଲେ ଠାରି କରି ଯାହା କୁହାବୋଲା କରେ—ନୋହିଲେ ନାହିଁ । ଏପରି ଏକ ନିଃସଙ୍ଗ, ନୀରବ ମୁହୂର୍ତ୍ତଗୁଡ଼ା ସେ କିପରି କାଟନ୍ତା ! ଉଚ୍ଛଳ ଯୌବନର ସିନ୍ଧୁ ତଟରେ ଠିଆ ହୋଇ ସେ ଯଦି ସବୁବେଳେ ନିଃସଙ୍ଗ ଜୀବନର ସ୍ୱପ୍ନ ଦେଖେ, ତେବେ ଜୀବନର ମୂଲ୍ୟ କେତେ ତା ନିକଟରେ ? ମନକୁ ବୁଝାଇବା ପାଇଁ ନିଜେ ନିଜେ ବାହାରି ଆସେ ଚୁଲି ଛାଡ଼ି । କ୍ଷଣିକ ପାଇଁ ଶୀତଳ ସମୀରଣରେ ନିଜକୁ ବୁଡ଼ାଇ ଦିଏ । କି ଥଣ୍ଡା ! କି ଶାନ୍ତ ! ପୁଝାରୀ ଚାକରଙ୍କର ସେତେବେଳେ ଜାମାପଟା କହିଲେ କିଛି ନାହିଁ । ଶୀତ ଲୁଗାର ପ୍ରଶ୍ନ ତ ବହୁତ ପରେ, ପିନ୍ଧିଥିବା ପୋଷାକ ହିଁ ଅନ୍ତିମ ସମ୍ବଳ ସେମାନଙ୍କର । ବାହାରର କାଲୁଆ ପବନ ଦେହରେ ବାଜି ହଠାତ୍ ଜର ହୋଇଗଲା ତାର । ଦିନେ ଦୁଇଦିନ ପାଇଁ ନୁହେଁ । ଦୀର୍ଘଦିନ ପର୍ଯ୍ୟନ୍ତ । ହାତରେ ସଞ୍ଚିତ ସମସ୍ତ ଅର୍ଥ ବ୍ୟୟିତ ହେଲା ଔଷଧ, ପାଣୀୟ ଓ

ଖାଦ୍ୟରେ । ରୋଗମୁକ୍ତ ହେଲା ବେଳକୁ ପକେଟରେ ମାତ୍ର ଛ' ପେନସ୍ ସମ୍ବଳ ଅଛି । ତାକୁଇ ପାଥେୟ କରି ବାହାରି ପଡ଼ିଲେ ସୋହୋ ଅଞ୍ଚଳକୁ । ଅନ୍ୟତ୍ର ସ୍ୱକର୍ମ ଖୋଜି । ଆଉ ସେଇଠାରୁ ଆସି ଏଠି ଧି ଢୁକି ଯାଇଛି ।

ଏଠି ରେ ମଧ୍ୟ ତା ପାଇଁ କାର୍ଯ୍ୟର ଦାୟିତ୍ୱ କିଛି କମ୍ ନୁହେଁ । କିନ୍ତୁ ଫୁର୍‌ସତ ଅଛି । ସକାଳ ଆଠଟାଠାରୁ ବାରଟା ପର୍ଯ୍ୟନ୍ତ, ପୁଣି ସନ୍ଧ୍ୟା ପାଞ୍ଚଟା-ଠାରୁ ରାତି ୧୦ଟା ଯାଏ । ଅପରାହ୍ଣରେ ଏବଂ ରାତିରେ କିଛି ସମୟ ମିଳେ ବିଶ୍ରାମ ପାଇଁ । କେଉଁଦିନ ମନ ବଳିଲେ ଫୁର୍ତ୍ତି କରିବା ପାଇଁ ହାଇଡ଼ ପାର୍କ ଆଡ଼େ ବୁଲିଯାଏ ଅବା ଖାତା ପେନସିଲ ଧରି ପଢ଼ାରେ ବସିଯାଏ । ବିଶେଷ କରି ହାଇଡ଼ ପାର୍କର ମୁକ୍ତ ଗଗନତଳେ ସେ ନିଜକୁ ଖୁବ୍ ଆନନ୍ଦିତ ମନେ କରେ । ଛୁଟି ଦିନରେ ଜଣେ ଇଟାଲୀୟ ଶିକ୍ଷକଙ୍କ ଘରକୁ ଯାଏ ଇଂରାଜୀ ଭାଷା ଶିକ୍ଷା କରିବା ପାଇଁ । ଶିକ୍ଷକ ଜଣକ ପାଠ ପଢ଼ାରେ ଖୁବ୍ ଆଗ୍ରହ ପ୍ରଦର୍ଶନ କରୁଥିଲେ; କିନ୍ତୁ ନିଜ ପକ୍ଷରୁ ତାର କୌଣସି ଉଦ୍ୟମ ନ ଥିଲା । କାରଣ ସେ ଖୁବ୍ ଅଳସୁଆ ପ୍ରକୃତିର । ବସି ବସି ସମୟ କଟାଇ ଦେବାରେ ସେମାନଙ୍କର ଏକ ପ୍ରକାର ସହଜ । ଆଉ ଆଜି, ସେ ଦିନ କଥା ମନେ ପକାଇ ଗଭୀର ଅନୁତାପରେ ଅନ୍ତର କାନ୍ଦି ଉଠେ ।

ନୂଏନ୍ ସବୁ ଶୁଣେ, ହେଲେ କିଛି ଉତ୍ତର ଦେଇ ପାରେନା । ଭାବପ୍ରବଣ ହୃଦୟ ତାର ଭିତରେ ହାହାକାର କରି ଉଠେ । ସ୍ୱଦେଶର ଜଣେ ଭାଇ ପ୍ରତି ଗଭୀର ସହାନୁଭୂତିରେ ମଥା ନଇଁଯାଏ । ସେଇଦିନଠାରୁ କେବେ ଖାଲିରେ ବସିବାର ତାକୁ କେହି ଦେଖି ନ ଥିବେ । କାମ କଲା ବେଳେ, ଖାଇଲାବେଳେ, ବିଶ୍ରାମ ନେଲାବେଳେ କିଛି ନା କିଛି ବସି ପଢ଼ୁଥିବ ବା ଲେଖାଲେଖି କରୁଥିବ । ଦିନେ ସେ ହାତରେ ଖବରକାଗଜ ଧରି ଦୌଡ଼ି ଆସିଲା ରନ୍ଧାଘରକୁ । ଆଖି ଦୁଇଟି ଲୁହରେ ଛଳ ଛଳ । ସ୍ୱତଃ ବୋହିଯାଉଛି ଗଣ୍ଡଦେଶରେ । ଅନନ୍ତମାସ୍ତ ତାର ସ୍ରୋତ । ତାକୁ ଏପରି ବିପନ୍ନ ଦେଖି ସାଥୀ କର୍ମଚାରୀମାନେ ପଚାରିଲେ, କିନ୍ତୁ ସେ ତାର ତୁଣ୍ଡ ଖୋଲି ନ ଥିଲା । ଖବରକାଗଜ ଖଣ୍ଡିକ ଅତି ସନ୍ତର୍ପଣରେ ବଢ଼ାଇ ଦେଲା ଭିଏତନାମୀ ବନ୍ଧୁ ଜଣଙ୍କ ହାତରେ । ତା' ପରେ ମୁହଁ ଖୋଲିଲା ତାର··· ଶ୍ରାବଣୀ ରାତିର ଖରସ୍ରୋତା, ନିର୍ଝରିଣୀ ପରି । କଣ୍ଠ ବାଜି ଭାଙ୍ଗି ତେଙ୍ଗି ଯାଉଛି । ଅବାରିତ ତାର ଗତିପଥ । "ଦେଖୁଛ ଭାଇମାନେ, ଖବରକାଗଜର ପୃଷ୍ଠାରେ କ'ଣ ଲେଖାଅଛି ? ଜଣେ ଆଇରିଶ୍ ଦେଶପ୍ରେମୀର କଥା । ତାର ଅପରାଧ ହେଉଛି 'ଦେଶପ୍ରେମ' । ସେହି ଅଭିଯୋଗରେ ସେ ଇଂରେଜ କର୍ତ୍ତୃପକ୍ଷଙ୍କ-ଦ୍ୱାରା ଅଭିଯୁକ୍ତ । ତାକୁ ଜେଲରେ ଭର୍ତ୍ତି କରା ହୋଇଛି । ଜେଲରେ ସେ ଧର୍ମଘଟ

ଆରମ୍ଭ କରିଛି । କିଛି ଖାଇନାହିଁ, ଜଳ ମଧ୍ୟ ସ୍ପର୍ଶ କରିନି । ଦୀର୍ଘ ଅଠାବନ ଦିନ କାଳ ସେ ଏହିପରି ଭାବରେ ରହିଛି । ସେହିଦିନ ଭିତରେ ସେ କଥା କହିନି କିମ୍ବା ଶୋଇନି ମଧ୍ୟ । ଦେଶ ପାଇଁ ସେ ହସି ହସି ଏହି କଷ୍ଟ ବରଣ କରୁଛି । ନିଜ ଜାତି ପାଇଁ ସେ ପ୍ରତି ମୁହୂର୍ତ୍ତରେ ତିଳ ତିଳ ହୋଇ ମରୁଛି, କି ପ୍ରବଳ ତାର ଦେଶ ଭକ୍ତି, କି ଦୁର୍ବାର ତାର ସାହସ ! କେଡ଼େ ବୀରସନ୍ତାନ ସେ ! ଯେଉଁ ଜାତିରେ ଏପରି ସନ୍ତାନ ଜନ୍ମ ନିଅନ୍ତି, ସେ ଜାତି କେବେ ଆତ୍ମସମର୍ପଣ କରି ପାରିବ ନାହିଁ ।

ସେହି ଆଇରିସ ଦେଶପ୍ରେମୀ ଯେ ଯୁଏନ୍‌ର ଆଖି ଆଗରେ ସ୍ଫୁଲିଙ୍ଗ ପରି ଦେଖାଦେଇ ମିଳାଇ ଯାଇଥିଲା, ତା ନୁହେଁ, ସେହି ସନ୍ଧି ମୁହୂର୍ତ୍ତଠାରୁ ଯୁଏନ୍ ନିଜ ଶରୀରରେ, ମନରେ ନୂତନ ପରିବର୍ତ୍ତନର ଧାରା ଲକ୍ଷ୍ୟ କଲା । ସେହି ପୁରୁଣା ଶରୀର ମଧ୍ୟରେ ନୂତନ ଚେତନାର ସ୍ପନ୍ଦନ, ସେହି ହୃଦୟରେ ନୂତନ ବାଦ୍ୟର ଝଙ୍କାର ସେ ଶୁଣିବାକୁ ପାଇଲା । ସେ ସ୍ୱର ଆଇରିଶ ଦେଶପ୍ରେମୀର ହେଉ ବା ସୁଦୂର ଭିଏତନାମର ଦୁଃଖ ବିଦଗ୍ଧ ଅନ୍ତରାତ୍ମାର କରୁଣ ଚିତ୍କାର ହେଉ ବା ଯୁଏନ୍‌ର ନିଜ ଅସ୍ଥିମଜ୍ଜାରୁ ଉଦ୍‌ଗତ ବିଦ୍ରୋହୀ ଜୀବନର ନିବେଦନ ହେଉ ।

ଏହାଭିତରେ ଅନେକ ଦିନ ବିତିଗଲାଣି । ୧୯୧୪ରୁ ୧୯୧୭ । ନିର୍ବାସିତର ଜୀବନ । ଘରଠାରୁ ବହୁତ ଦୂରରେ, ଅନେକ ଅନୁଭୂତି ଜମାଟ ବାନ୍ଧିଗଲାଣି, ଜୀବନର ବେଳାଭୂମି ଉପରେ । କିମ୍ ଲିଏନ୍‌ରୁ ବିଦାୟ ନେଇ ଆସିଥିବା କ୍ଷୀଣାକୃତି ଅବୋଧ କିଶୋର ଗୁଏନ୍ ଆଟ୍ ଥାନ୍ ସେ ନୁହେଁ । ସେ ବର୍ତ୍ତମାନ ଜଣେ ପ୍ରବାସୀ ତରୁଣ ବିଦ୍ରୋହୀ । ଜାହାଜରେ ମୂଲ ଲାଗି ପେଟ ପୋଷିବା ତାର ଆଉ ଲକ୍ଷ୍ୟ ନୁହେଁ, ଜୀବନର ଚିରନ୍ତନ ମୁକ୍ତି ପାଇଁ ନୂତନ ପଥର ସନ୍ଧାନୀ ସେ । ଲେ-ହାଭ୍ରେରେ ବାଣିଜ୍ୟ ପୋତର ସେ ରନ୍ଧୁଣିଆ 'ବା'' ନୁହେଁ । ଲଣ୍ଡନର ପାନ୍ଥ-ଶାଳାରେ ଭିଏତନାମର ନୂତନ ମାନଚିତ୍ର ଆଙ୍କୁଥିବା ଦରିଦ୍ର ଚିତ୍ରକାର ସେ । ଲଣ୍ଡନରେ ଆଉ ମନ ମାନୁନାହିଁ । ହାଇଡ୍ ପାର୍କର ମନଲୋଭା ସୌନ୍ଦର୍ଯ୍ୟଶ୍ରୀ ତା'ର ବେରସିକ ମନ ଉପରେ କୌଣସି ପ୍ରଭାବ ପକାଇ ପାରୁନାହିଁ । ବିଭବଶାଳୀ ଲଣ୍ଡନର ଅନନ୍ତ ମାଧୁରୀମାରେ ସେ ଭୁଲି ପାରୁନାହିଁ । ପାଦ ତା'ର ସ୍ଥିର ନୁହେଁ ଆଉ । ଭ୍ରାମ୍ୟମାଣ ଜୀବନ ହିଁ ତାର ଦର୍ଶନ । ଏ ଭ୍ରମଣର ଶେଷ କାହିଁ ? ଯେଉଁ-ଠାରେ ମୁକ୍ତି ନାହିଁ ସେଠାରେ ଗତିପଥ ଶିଥିଳ ବା ହେବ କିପରି ?

ଲଣ୍ଡନ ସେତେବେଳେ ବିଶ୍ୱରାଜନୀତିର ଏକ ନିର୍ଭରଯୋଗ୍ୟ ଦରବାର । ସେ ଦରବାରରେ ବିଶ୍ୱର ସମସ୍ତ ଘଟଣାବଳୀର ବିଚାର ହୁଏ । ଲଣ୍ଡନରେ ଥିବା

ସମୟରେ ଆଇର୍ଲଣ୍ଡ ଗଣ ଅଭ୍ୟୁତ୍ଥାନ କଥା ସେ ଜାଣିବାକୁ ପାଇଲେ । ତା ପରେ ସେ ନିଜେ ଲଣ୍ଡନରେ ଥିବା ଦରିଆପାରି ଶ୍ରମିକମାନଙ୍କ ସହିତ ମିଶିଲେ । ସେବସ୍ତାନଙ୍କ ସମ୍ପର୍କରେ ଆସି ସେ ବିଭିନ୍ନ ଦେଶରେ ଘଟୁଥିବା ଗଣ-ବିଦ୍ରୋହର ଘଟଣାବଳୀ ଜାଣିବାକୁ ଲାଗିଲେ । ବର୍ତ୍ତମାନ ସେ ସାଧାରଣ ଲେଖାପଢ଼ାର ବହୁତ ଊର୍ଦ୍ଧ୍ୱରେ । ଇଂରାଜୀ ଅକ୍ଷର ଶିକ୍ଷା, ବର୍ଣ୍ଣବୋଧ ମୁଖସ୍ଥ କରିବା ପରବର୍ତ୍ତୀ ବିଶ୍ୱର ବିଖ୍ୟାତ ରାଜନୀତିବିତ୍‌ମାନଙ୍କଦ୍ୱାରା ଲିଖିତ ପୁସ୍ତକ ପଢ଼ିବାରେ ତାଙ୍କର ଖୁବ୍ ଆଗ୍ରହ । ଖୁବ୍ କମ୍ ସମୟ ମଧ୍ୟରେ ସେ 'ବିପ୍ଳବ'ର ପ୍ରକୃତ ସଂଜ୍ଞା ବୁଝି ପାରିଲେ ।

ପ୍ରାଚ୍ୟର ପ୍ରବାସୀ ଶ୍ରମିକମାନଙ୍କ ସହିତ ଥିବା ବ୍ୟକ୍ତିଗତ ସମ୍ପର୍କ ସାଂଗଠନିକ ସମ୍ପର୍କରେ ପରିଣତ ହେଲା । ସେ ସେମାନଙ୍କୁ ସଂଗଠନର ଭିତ୍ତି, ଆଦର୍ଶ ଓ ସଫଳତା ସମ୍ବନ୍ଧରେ ବୁଝାଇବାକୁ ଲାଗିଲେ । ସେଠାରେ ଥିବା ସମୟରେ ସେ ' ଲଓ ଡଙ୍ଗ ହ୍ୱାଇ-ଗେଆଇ" ବା 'ଦରିଆପାରି ଶ୍ରମିକ ସଂଘ' ଗଠନ କଲେ । ଏହି ସଂଗଠନ ସେତେବେଳେ ଗୁପ୍ତରେ କାର୍ଯ୍ୟ କରୁଥିଲା । ନୁଏନ୍ ଜୀବନରେ ସଂଗଠନ ମଧ୍ୟଦେଇ କାର୍ଯ୍ୟ କରିବା ଏହାହିଁ ପ୍ରଥମ । ଏହାପରେ ଆରମ୍ଭ ହେଲା ତାର ଗଣଜୀବନର ଯାତ୍ରା । ତା ପୂର୍ବରୁ ସେ ଓ ତାର ଜୀବନ ଥିଲା ଏକ ବ୍ୟକ୍ତିକୈନ୍ଦ୍ରିକ ବିଦ୍ରୋହୀ ମନର ପ୍ରକାଶ୍ୟ ଅଭିବ୍ୟକ୍ତି ।

୧୯୧୭ ମସିହାର ଡିସେମ୍ବର ମାସ । ଐତିହାସିକ ଅକ୍ଟୋବର ବିପ୍ଳବର ଜନ୍ମ ଉତ୍ସବ ସାରାବିଶ୍ୱରେ ଚମକ ସୃଷ୍ଟି କରିଛି । ଦୁର୍ଦ୍ଦାନ୍ତ ଜାରସାହି ହାତରୁ 'ଉଇଣ୍ଟର ପ୍ୟାଲେସ'କୁ ଛଡ଼ାଇ ଆଣିଛନ୍ତି ରୁଷୀୟ ଶ୍ରମିକଶ୍ରେଣୀ । ମାନବବାଦର ମୌଳିକ ଭିତ୍ତି ଉପରେ ଠିଆ ହୋଇଛି ମହାନ୍ ସୋଭିଏତ ୟୁନିଅନ । ଶ୍ରେଣୀହୀନ, ବିଦ୍ୱେଷହୀନ, ଜାତିହୀନ ସମାଜବାଦୀ ରାଷ୍ଟ୍ର ଆହ୍ୱାନ କରିଛି ଦୁନିଆର ସକଳ ମେହନତି ଜନତାକୁ । ମହାମନା ଲେନିନ୍ ବାହୁ ପ୍ରସାରି କୋଳାଗତ କରୁଛି ଖଟିଖିଆ ମଜଦୁର ଶ୍ରମିକଜାତିକୁ । ଦଳିତ ଜନତାର ଦାବୀ ସାବ୍ୟସ୍ତ କରିବା ପାଇଁ ନିବେଦନ କରୁଛି । ଅବଲୁଣ୍ଠିତ ଜାତିର ଉତ୍ଥାନ ପାଇଁ ଗୁରୁଗମ୍ଭୀର ସ୍ୱରରେ ଚିତ୍କାର କରୁଛି । ସେ ଡାକ ବାଜୁଛି ପୃଥିବୀର ସ୍ତରପଟେ ଅନନ୍ତ ଆକାଶରେ, ନୀଳ ସମୁଦ୍ରରେ, ପାହାଡ଼ୀ ଅରଣ୍ୟରେ ସବୁଜ ସବୁଜ କିଆରୀରେ ସର୍ବୋପରି ଦୁଃଖିତ ତାପିତ ଜନତା ଅନ୍ତରରେ ସେ ଡାକ ବାଜୁଛି । ଲଣ୍ଡନର କାର୍ଲଟନ ହୋଟେଲର ବାସନମଜା 'ବା' ର କାନରେ ପଡ଼ୁଛି ସେ ଡାକ ।

ଲଣ୍ଡନରେ ଆଉ ମୁହୂର୍ତ୍ତେ ପାଇଁ ରହିବାକୁ ହେବ ନାହିଁ । ଏଠି ଜୀବନ ପାଇଁ ଲଢ଼ିବାର ସୁଯୋଗ କାହିଁ ? ପ୍ୟାରିସ ଯିବାକୁ ପଡ଼ିବ । ପ୍ରବାସୀ ଆନାମୀ ଶ୍ରମିକ-ଶ୍ରେଣୀକୁ ସେଠାରେ ସଙ୍ଗଠନ କରିବା ଯଥେଷ୍ଟ ସୁବିଧାଜନକ ହେବ । କାରଣ ଜାହାଜ ବୋଝେଇ ହୋଇ ପ୍ୟାରିସ ବନ୍ଦରରେ ଅବତରଣ କରୁଥିବା ଭିଏତନାମୀ କୁଲି ମଜଦୁରଙ୍କ ସଂଖ୍ୟା ସେଠି ପ୍ରବଳ । ୧୯୧୭ର ଏକ ଶୀତକାଳର ଅନ୍ଧାରି ମୁହୂର୍ତ୍ତରେ ସେ ମିଳାଇ ଗଲେ ପ୍ୟାରିସ ଅଭିମୁଖେ । ସେତେବେଳକୁ ବୟସ ମାତ୍ର ଅଠାଇଶ ବର୍ଷ ।



# ୪

## ପ୍ୟାରିସରେ ଥିବା ଦିନଗୁଡ଼ିକ

ସମରୋତ୍ତର ଫ୍ରାନସ୍ । ୧୯୧୭ ବେଳକୁ ଏକ ନୂତନ ରୂପରେ ଆତ୍ମ-ପ୍ରକାଶ କରିଛି । ବିଦ୍ରୋହ, ଅଶାନ୍ତି ତଥା ଯୁଦ୍ଧର ଅଗ୍ନିଗର୍ଭରେ ଶାନ୍ତିପ୍ରିୟ, ଜୀବନ-ବାଦୀ ମାନବଶିଶୁଟି ଯନ୍ତ୍ରଣାରେ ଛଟପଟ ହେଉଛି । ଠିକ୍ ଏହି ସମୟରେ ପ୍ରତି-ଶୋଧର ବିରାଟ ବୋଝ ବୋହି 'ବା' ପ୍ୟାରିସ ଉପକୂଳରେ ଅବତରଣ କଲେ । ଭିଏତନାମର କିମ୍‌ଲିଏନ ଗାଁ, ସାଇଗନ ବନ୍ଦରରେ ଠିଆ ହୋଇଥିବା ଲ ହାଭେରେ ଜାହାଜ, ଲଣ୍ଡନ କାର୍ଲଟନ ହୋଟେଲ, ହାଇଡ଼ ପାର୍କ ସବୁ ପଛରେ ପଡ଼ି ରହିଲା, ସ୍ମୃତି ଆସିଥିବା ପଦଚିହ୍ନ ପରି ।

ଜାହାଜର ଗରମ ଚୁଲି ପାଖରେ ବସି, କାର୍ଲଟନ ହୋଟେଲର ରନ୍ଧାଘରେ ଥାଇ ପ୍ୟାରିସକୁ ଯେପରି କଳ୍ପନା କରିଥିଲେ, ସେ ପ୍ୟାରିସ ଆଜି ତାଙ୍କ ଆଗରେ ନାହିଁ । ସମ୍ପୂର୍ଣ୍ଣ ଅଭିନବ ରୂପରେ ଠିଆ ହୋଇଛି ତାର ପ୍ରତିବିମ୍ବ । ନିଜ ଆଖିକୁ ବିଶ୍ୱାସ କରିପାରୁ ନାହାନ୍ତି ସେ । ପ୍ରାଚ୍ୟ ଆଉ ପାଶ୍ଚାତ୍ୟ ମଧ୍ୟରେ କେତେ ମୌଳିକ ଅସାମଞ୍ଜସ୍ୟ ସତେ !! ମାଇ ଷ୍ଟିଲ ସହିତ ମାର୍ସାଇଲର ସେ କଫି ହାଉସକୁ ଯାଇଥିବା କଥା ମନେ ପଡ଼ିଲା । ପ୍ରକୃତରେ ଫରାସୀମାନେ ନିଜ ଦେଶରେ କେତେ ଭଲ !! କେବଳ ଉପନିବେଶମାନଙ୍କରେ ତାଙ୍କର କରାମତି ଖୁବ୍ ବେଶି !!

ପ୍ୟାରିସର ସହର, ବଜାର ବୁଲି ଦେଖିବାକୁ ବେଶି ଡେରି ଲାଗିଲା ନାହିଁ । ଲଣ୍ଡନରେ ସିନା ଗୋଟିଏ କାର୍ଲଟନ ହୋଟେଲରେ ସେ ସୀମାବଦ୍ଧ ଥିଲେ, ଏଠି କିନ୍ତୁ ସେ ଅବସ୍ଥା ବଦଳି ଯାଇଛି । କାର୍ଲଟନ ହୋଟେଲରେ ସେସେସ୍ୱା ଭିଏତନାମୀ ବନ୍ଧୁ ଜଣଙ୍କ ପରିବର୍ତ୍ତେ ସେ ଆଜି ଅଗଣିତ ଅନାମୀ ସହୋଦରଙ୍କର ସାଥୀ ହୋଇ ପାରିଛନ୍ତି । ସହର, ବଜାର, ରାସ୍ତା, ଘାଟ, ଷ୍ଟେସନ, ବନ୍ଦର ଯେଉଁଠି ଦେଖିବ ଭିଏତନାମୀ ବନ୍ଧୁ, ଅନାମୀ ଶ୍ରମିକ । ପାଶ୍ଚାତ୍ୟ ବିଶ୍ୱର ପ୍ରାଣକେନ୍ଦ୍ର ପ୍ୟାରିସ ମହାନଗରୀରେ ପ୍ରାଚ୍ୟ ପ୍ରବାସୀମାନଙ୍କର କେତେ ହଟ୍ଟଗୋଳ !! ସାହେବୀ ଅଫିସର ନ ହେଲେ କୁଲି ମଜଦୁର ତ !! ଗୁଣୀ ବୁଦ୍ଧିଜୀବୀ ନ ହେଲେ କଳକାରଖାନାରେ କାମ କରୁଥିବା ଶ୍ରମିକ ଭାଇ ତ !! ଫରାସୀ ଶ୍ରମିକଙ୍କ ସହିତ ହାତରେ ହାତ ମିଳାଇ, କାନ୍ଧରେ କାନ୍ଧ ରଖି ବୁଲୁଛନ୍ତି—ଖେତ, ଖମାର, କଳ-କାରଖାନା, ଖଣିଖାଦାନକୁ, ରିକ୍ସା ଷ୍ଟାଣ୍ଡକୁ, ବନ୍ଦର ଅଞ୍ଚଳକୁ । ଖବରକାଗଜ

ଛାପାଖାନାକୁ । ଆନନ୍ଦାତିଶଯ୍ୟରେ ହୃଦୟ ତାଙ୍କର ପୂରି ଉଠିଲା । ପ୍ୟାରିସ ପ୍ରତି ମନ ଭିତରେ ଜମାଟବନ୍ଧା ସକଳ ଘୃଣା ନିମିଷକ ପାଇଁ ମିଳାଇ ଗଲା । ଯେଉଁ ପ୍ୟାରିସକୁ ସେ କେବଳ ପୋଲିସ ଆଉ ବେପାରୀର ଦେଶ ବୋଲି ଆଜି ପର୍ଯ୍ୟନ୍ତ ଭାବି ଆସିଛନ୍ତି, ସେହି ପ୍ୟାରିସ ଆଜି ତାଙ୍କୁ ସ୍ୱାଗତ ଜଣାଉଛି । ସେଠାରେ ଥିବା ତାର ଅଗଣିତ ଆନାମୀ ଭାଇବନ୍ଧୁ ତାଙ୍କୁ ଆହ୍ୱାନ ଜଣାଉଛନ୍ତି ନିଜ ସହିତ ସାମିଲ କରିନେବା ପାଇଁ । ଶ୍ରମିକଶ୍ରେଣୀର ଦଳଭୁକ୍ତ କରିବା ପାଇଁ ।

ଫରାସୀ ଓ ଆନାମୀ ଶ୍ରମିକ ମଧ୍ୟରେ କେତେ ମେଳ ! ଉପନିବେଶର ଶୋଷିତ, ନିଷ୍ପେଷିତ, ଦଳିତ ଜନସାଧାରଣଙ୍କ ସହିତ ଫରାସୀ ଶ୍ରମିକମାନଙ୍କର କି ଅଭୂତପୂର୍ବ ସାମଞ୍ଜସ୍ୟ । ପରସ୍ପର ପ୍ରତି କି ନିବିଡ଼ ଆକର୍ଷଣ । ଯେଉଁ ଶ୍ରମିକମାନେ ଦିନେ ବିଦେଶୀ ଉପନିବେଶବାଦୀମାନଙ୍କର ଅତ୍ୟାଚାରରେ ଜର୍ଜରିତ ହୋଇ, ଦେଶଛାଡ଼ି ପଳାଇ ଆସିବାକୁ ବାଧ୍ୟ ହୋଇଥିଲେ, ସେମାନଙ୍କୁ ଆଜି ଫରାସୀ ଶ୍ରମିକ ଭାଇମାନେ ନିଜ ଦ୍ୱାରରେ ଆଶ୍ରୟ ଦେଇଛନ୍ତି । ଦୃଢ଼ ଆଲିଙ୍ଗନରେ ବାନ୍ଧିରଖିଛନ୍ତି । ଦୁନିଆର ସକଳ ମେହନତୀ ଜାତି ପ୍ରତି ଶ୍ରମିକ ଭାଇର ଏହି ଦରଦ, କୌଣସି ଜାତି, ଦେଶ, ଉପଦେଶର ବନ୍ଧବାଡ଼ ମାନନାହିଁ । ସାମ୍ରାଜ୍ୟବାଦୀ ଯୁଦ୍ଧଖୋରମାନଙ୍କର ନାଲି ପାଞ୍ଚଣ ଆଗରେ ସେମାନେ ମୁଣ୍ଡ ନୁଆଁଇ ନାହାନ୍ତି । ଶୋଷକଶ୍ରେଣୀର ଶିରଚ୍ଛେଦ ନୀତି ଆଗରେ ସେମାନେ ଢଳପଡ଼ି ନାହାନ୍ତି । ଫରାସୀ ଓ ଭିଏତନାମୀ···ଶ୍ରମିକଶ୍ରେଣୀ ସ୍ୱାର୍ଥର ଐକ୍ୟତାନରେ ସେମାନେ ବିମୁଗ୍ଧ, ବିଭୋର ।

କାର୍ଲଟନ ହୋଟେଲ ପରି 'ବା' ଆଜି ନିଃସଙ୍ଗ ନୁହେଁ । ଶହ ଶହ ଆନାମୀ ଶ୍ରମିକ ବନ୍ଧୁଙ୍କ ମେଳରେ ସେ ଆଜି ଗମ୍ଭୀର ଆନନ୍ଦ ମଧ୍ୟରେ ଦିନ କାଟୁଛି । ଆଖି ଆଗରେ ନାଚୁଛି ଭିଏତନାମ, ଫ୍ରାନ୍ସ ସମୁଦାୟ ୟୁରୋପ । ଶ୍ରମିକଭାଇର ଚିରନ୍ତନ ଦୁଃଖ, ଦାରିଦ୍ର୍ୟ, ଅନାଟନ, ଶୋଷଣ ଅହରହ ଧକ୍କା ଦେଉଛି ତାଙ୍କୁ । ପ୍ରବାସୀ ଆନାମୀ ଭାଇର ମୋହସ୍ନିଗ୍ଧ ପାରିବାରିକ ଜୀବନର ଆକର୍ଷଣ ତା ଆଖିରୁ ଲୁହ ଝାଡ଼ି ଦେଉଛି ।

ଫ୍ରାନ୍ସରେ କିଛିଦିନ ବୁଲିଲା ପରେ ତାଙ୍କୁ ଏକ ନୂତନ ପଥ ଦିଶିଲା । ଘନତମିସ୍ରାରେ କ୍ଷଣିକ ବିଦ୍ୟୁତ୍ ଆଲୋକ ପରି । ଫରାସୀ ଶ୍ରମିକ ଭାଇମାନଙ୍କର ଅକୁଣ୍ଠ ଆତିଥ୍ୟ ପାଇଲା ପରେ ତାଙ୍କର ବିଶ୍ୱାସ ସମୁଦାୟ ଶ୍ରମିକଶ୍ରେଣୀ ଉପରେ ଦୃଢ଼ ହୋଇଯାଇଥିଲା । ସେ ଭାବିଲେ ଫ୍ରାନ୍ସ ଓ ପ୍ରବାସୀ ଭିଏତନାମର ଶ୍ରମିକଶ୍ରେଣୀକୁ ଯଦି ଏକଜୁଟ କରାଯାଇ ପାରନ୍ତା, ତେବେ ସାମ୍ରାଜ୍ୟବାଦୀ ଏବଂ ଶୋଷଣକାରୀମାନଙ୍କ ବିରୁଦ୍ଧରେ ଏକ ଅଭିନବ ଅଥଚ ଦୃଢ଼ ପଦକ୍ଷେପ ନେବା ସମ୍ଭବ ହୁଅନ୍ତା ।

କାରଣ ସେ ଦେଖିଲେ ସମୁଦାୟ ୟୁରୋପରେ ଶ୍ରମିକମାନଙ୍କର ଅବସ୍ଥା ଅଳ୍ପ ବହୁତେ ସମାନ । ଅନ୍ୟ ପକ୍ଷରେ ଉପନିବେଶ ଶାସନାଧୀନରେ ଥିବା ରାଷ୍ଟ୍ରମାନଙ୍କରେ ଯେଉଁ ଦାରିଦ୍ର୍ୟ, ଦୁଃଖ, ଦୁର୍ଦ୍ଦଶା, ଅଭାବ ପୂରି ରହିଛି, ତାହା ସମପରିମାଣରେ ୟୁରୋପୀୟ ଶ୍ରମିକବସ୍ତିରେ ମଧ୍ୟ ରହିଛି । ସଂକ୍ଷେପରେ କହିବାକୁ ଗଲେ, ଉପନିବେଶର ଶ୍ରମିକ ଓ ପୃଥିବୀର ଅନ୍ୟ ପ୍ରାନ୍ତରେ ଥିବା ଶ୍ରମିକମାନଙ୍କର ସମସ୍ୟା, ଦୁଃଖ, ଦାରିଦ୍ର୍ୟ ଏକାପରି । ଉଭୟ ଶୋଷିତ ସଂପ୍ରଦାୟର । ଉଭୟ ଅନ୍ୟର ଶାସନାଧୀନ । ଏହି ଚେତନାକୁ ଯଦି ୟୁରୋପୀୟ ଶ୍ରମିକମାନଙ୍କ ମଧ୍ୟରେ ଜାଗ୍ରତ କରାଯାଇ ପାରନ୍ତା, ତେବେ ସେମାନଙ୍କର ସାହାଯ୍ୟ ସମର୍ଥନ ନେଇ ପ୍ରବାସରେ ମଧ୍ୟ ଭିଏତନାମ ଶ୍ରମିକଶ୍ରେଣୀର ସ୍ୱାର୍ଥ ବଜାୟ ରଖାଯାଇ ପାରନ୍ତା । ପ୍ରଥମରୁ ଏହି ଜାତୀୟତାବାଦୀ ଉଦ୍ଦେଶ୍ୟ ହିଁ ତାକୁ ପାଗଳ କରି ଦେଇଥିଲା ।

ତେଣୁ ସେ ୟୁରୋପର ବିଭିନ୍ନ ସମସ୍ୟା ଓ ଘଟଣାବଳୀ ଉପରେ ଅଧ୍ୟୟନ କଲେ । ଦିନକୁ ଦିନ ତାଙ୍କ ଚିନ୍ତାରାଜ୍ୟ ଆହୁରି ପରିବ୍ୟାପ୍ତ ହେବାକୁ ଲାଗିଲା ଉପନିବେଶମାନଙ୍କରେ ରହୁଥିବା ନିର୍ଯ୍ୟାତିତ, ଶୋଷିତ ଜନତା ପାଇଁ ପ୍ରାଣ କାନ୍ଦି ଉଠିଲା । କିନ୍ତୁ ସେଦିନର ସେହି ନିଃସହାୟ ଅବସ୍ଥାରେ ତାଙ୍କପରି ଜଣେ ସମ୍ବଳହୀନ, ଅର୍ବାଚୀନ ବ୍ୟକ୍ତି କ'ଣ କରିପାରନ୍ତା ? ଏକୁଟିଆ ଠିଆ ହେବା ପାଇଁ ଯାର ସାମର୍ଥ୍ୟ ନାହିଁ, ସେ ଅନ୍ୟକୁ ଭରସା ଦେଇ ଉଠାଇବ କିପରି ? ତେଣୁ ସାଙ୍ଗରେ ବନ୍ଧୁ ଲୋଡ଼ା । ମିତ୍ର ଆବଶ୍ୟକ । ସେ ମିତ୍ର କିଏ ?

ଯୁଦ୍ଧୋତ୍ତର ୟୁରୋପରେ ଶିଳ୍ପର ବୃଦ୍ଧି ଦିନକୁ ଦିନ ବଢ଼ି ଚାଲିଛି । ବିଶ୍ୱଯୁଦ୍ଧ ପ୍ରମାଣ କରିଦେଇ ଯାଇଛି ଆଧୁନିକ ଯନ୍ତ୍ରପାତି, ସମରସଜ୍ଜା ଉନ୍ନତ ଧରଣର ଯାନ୍ତ୍ରିକ ବିଦ୍ୟା ବିନା କୌଣସି ଯୁଦ୍ଧରେ ବିଜୟଲାଭ କରିବାର ସମ୍ଭାବନା ଅତ୍ୟନ୍ତ କ୍ଷୀଣ । ତେଣୁ ୟୁରୋପରେ ବିଭିନ୍ନ ଦେଶମାନଙ୍କରେ ଲଘୁ ତଥା ଗୁରୁ ଶିଳ୍ପ ପ୍ରତି ପ୍ରବଳ ଗୁରୁତ୍ୱ ଆରୋପ କରାଯାଇଛି । ସାମରିକ ଦିଗରୁ ମଧ୍ୟ ବଳ କଷାକଷି ଆରମ୍ଭ ହୋଇଗଲାଣି । ସବୁ ସ୍ଥାନରେ ପରସ୍ପର ସହିତ ପ୍ରତିଦ୍ୱନ୍ଦ୍ୱିତା-ମୂଳକ ଅଭିଯାନ ଆରମ୍ଭ ହୋଇଯାଇଛି । କିନ୍ତୁ ଏସବୁ କାରିଗରୀ ପ୍ରଯୁକ୍ତିବିଦ୍ୟା ପଛରେ ଯାହାର ସର୍ବଶ୍ରେଷ୍ଠ ଦାନ ନିହିତ, ସେହି ଶ୍ରମିକଶ୍ରେଣୀ ସବୁଠି ଅବହେଳିତ । ଉତ୍ପାଦନରେ, ନିର୍ମାଣରେ, ପୁଞ୍ଜିର ପିରାମିଡ଼ ଗଢ଼ି ତୋଳିବାରେ ତାର ସମସ୍ତ ଲହୁ ଲୁହ ହୋଇ ନିଗିଡ଼ି ଯାଇଥିଲେ ମଧ୍ୟ ସେ ସେଥିରେ ଅଣୁମାତ୍ର ଅଂଶୀଦାର ନୁହେଁ । ସେ କେବଳ ସର୍ବନିମ୍ନ ମୂଲ୍ୟରେ ତାର ସାଧ୍ୟ ମୁତାବକ ଶ୍ରମ ବିକ୍ରୀ କରି ଚାଲିଛି । ତାରି ହାତର ବାହାଦୁରୀରେ ବିରାଟ ଅଟ୍ଟାଳିକା ମୁଣ୍ଡ ଟେକି ହସୁଛି, ଅଥଚ ସେ ଅନତିଦୂରରେ କ୍ଷତ ବିକ୍ଷତ ଝୁମ୍ପୁଡ଼ିଟିରେ ଆଶ୍ରୟ ନେଇଛି । ତାରି

ଶ୍ରମରୁ ଉତ୍ପାଦିତ ପଣ୍ୟ ଦୂର ବିଦେଶକୁ ଚାଲାଣ ହେଉଛି ; କିନ୍ତୁ ସେ ସବୁଦିନେ ଅର୍ଦ୍ଧଭୁକ୍ତ ଅବସ୍ଥାରେ ଜୀବନ କଟାଉଛି । ଠିକ୍ ଭିଏତନାମର କିମଲିଏନ୍ ଗାଁରେ ଥିବା ସର୍ବସ୍ୱାନ୍ତ କୃଷକ ପରିବାର ପରି । ନେ-ଆନ ପ୍ରଦେଶର ଦୀନ ମଜଦୂର ପରି । ଚାକିରୀରୁ ବହିଷ୍କୃତ ଗେଷ୍ଟିନର ବାରବୁଲା ବୁଦ୍ଧିଜୀବୀ ପରି ।

ତାଙ୍କୁ ଅପୂର୍ବ ସୁଯୋଗ ମିଳିଗଲା । ପ୍ୟାରିସ ଯାତ୍ରା ତାଙ୍କର ସଫଳ ହୋଇଛି ଭାବି ନିଜକୁ ଭାଗ୍ୟବାନ୍ ମଣିଲେ । ପ୍ୟାରିସରେ କାମ କରୁଥିବା ଶ୍ରମିକମାନଙ୍କ ସହିତ ସେ ନିବିଡ଼ ସମ୍ପର୍କ ସ୍ଥାପନ କଲେ । ଶ୍ରମିକମାନଙ୍କ ସହିତ ନୂତନ ଅନୁଭୂତି, ନୂତନ କାର୍ଯ୍ୟପ୍ରେରଣାରେ ସେ ଉଦ୍‌ବେଳିତ ହୋଇ ଉଠିଲେ । ଜନ୍ମଭୂମିଠାରୁ ଯେ ସେ ଏତେ ଦୂରରେ ରହିଛନ୍ତି ଏହି ବିଷଣ୍ଣତା ତାଙ୍କଠାରୁ ସବୁଦିନ ପାଇଁ ଉଭେଇ ଗଲା । ଜାତିପ୍ରେମ, ଜାତୀୟତା, ମାନବବାଦୀ ସ୍ନେହ କରୁଣାର ସ୍ରୋତରେ ସେ ନିଜକୁ ବୁଡ଼ାଇ ଦେଲେ । ନିତ୍ୟବିଦ୍ରୋହୀ ପ୍ରାଣ ତାଙ୍କର କ୍ଷଣିକ ଆଶ୍ୱାସନା ପାଇଲା । ସମାଜବାଦକୁ ଆଦର୍ଶ ନେଇଥିବା ତାଙ୍କର ଜାତିପ୍ରେମ କ୍ରମଶଃ ବାସ୍ତବ-ମୁଖୀ ହେବାକୁ ବାଧ୍ୟ ହେଲା । ସେ ପ୍ରକୃତ ପରିସ୍ଥିତି ଏବଂ ତାର ସଫଳତା ବିଷୟରେ ସମ୍ଭବ୍ୟ ଉଦଗ୍ରୀବ ବିଶେଷ ମନ ଦେଲେ । ସେତେବେଳେ କ୍ୱାଙ୍ଗ ଫିକ୍ ଜାତୀୟବାଦୀ ଆନ୍ଦୋଳନର ସୂତ୍ରପାତ ହୋଇଥାଏ ।

ଶିଳ୍ପସମୃଦ୍ଧ ଫ୍ରାନ୍ସର ହୃତ୍ପିଣ୍ଡ ପ୍ୟାରିସରେ କେତେ ଦିନ କେତେ ରାତି କଟିଛି । କେତେ ରାତିରେ ତା'କୁ ଉଜାଗର ରହିବାକୁ ପଡ଼ିଛି । ଅସନ୍ତୁଷ୍ଟ ପ୍ରାଣ ତାର କ୍ରୋଧରେ ଚିତ୍କାର ଛାଡ଼ିଛି । କିନ୍ତୁ ଫ୍ରାନ୍ସର ଶ୍ରମିକଶ୍ରେଣୀ ତା'କୁ ନିଜ ସ୍ନେହ, ମମତାର ପରଦା ତଳେ ଘୋଡ଼େଇ ରଖିଛି । ଆଜି ତା' ସବୁଦିନ ପାଇଁ ନିଜକୁ ହରାଇ ଦେଇଛି ତାଙ୍କରି ବନ୍ଧୁତ୍ୱ ତଳେ । ଉପନିବେଶୀ ଶୋଷଣରେ ଉତ୍ପୀଡ଼ିତ କ୍ରୋଧୀ ତା' ସରଳ, ଶାନ୍ତ, କୋମଳ ଶିଶୁରେ ପରିଣତ ହୋଇଯାଇଛି । ତାର ଉତ୍କଟ ଜାତୀୟବାଦୀ ଦର୍ଶନ ସର୍ବାଧୁନିକ ଦେଶପ୍ରେମୀ ବିପ୍ଳବୀ ତତ୍ତ୍ୱରେ ଆତ୍ମପ୍ରକାଶ ହୋଇଛି । ଯେଉଁ ଭିଏତନାମରୁ ସେ ନିଜର ଜାତି-ପ୍ରେମ ପାଇଁ ବାସନ୍ଦ ହୋଇ ପଡ଼ିଥିଲେ, ଆଜି ସେଇଥି ପାଇଁ ସେ ଫ୍ରାନ୍ସର ଶ୍ରମଜୀବୀ ଜନତା ପାଖରେ ଅତ୍ୟନ୍ତ ଆପଣାର । ଫ୍ରାନ୍ସର ଶ୍ରମିକବସ୍ତିରେ ସେ ଆଜି ଜଣେ ଦେଶୀସ୍ଥ ନାଗରିକ ଭଳି, ସମ୍ମାନିତ ଅତିଥି ପରି ।

ଏକ ଅନୁକୂଳ ପରିବେଶ ଥାଇ 'ତା'ର ଜୀବନ ଯେ ସହଜ ସରଳ ରାସ୍ତାରେ ଚାଲିଛି ତା ନୁହେଁ, ପ୍ୟାରିସରେ ଦୀର୍ଘ ପାଞ୍ଚ ବର୍ଷ କାଳ ସେ ରହିଛନ୍ତି । କିନ୍ତୁ ସବୁଦିନେ ସେହି ଦୁଃଖ, ସାଂସାରିକ ଜଞ୍ଜାଳର ଚିନ୍ତା ଓ ଦାରିଦ୍ର୍ୟର କଷଣ । କିନ୍ତୁ ସେ ଆଜି ଏକା ନୁହନ୍ତି, ଦୁନିଆର ଶ୍ରମଜୀବୀ ଜନତାର ସାମୂହିକ ନିର୍ଯ୍ୟାତନାରେ

ସେ ଗ୍ରାମୀଦାର । ତେଣୁ ଦାରିଦ୍ର୍ୟର ଚରମ କଷାଘାତ ତାଙ୍କୁ ଦୂର ବିଦେଶରେ, ଅଚିହ୍ନା ଜାଗାରେ ଟଳାଇ ପାରିଲା ନାହିଁ । ଏକ ଲକ୍ଷ୍ୟ ପଥରେ ସେ ବଡ଼ ଦୃଢ଼ନିଷ୍ଠ ଥିଲେ । ସ୍କୁଲପାଠରୁ ତାଙ୍କ ପାଇଁ କାଳସ୍ରୋତ ମାଡ଼ି ଆସିଲା । ସେତେବେଳେ ଶ୍ରମିକମାନଙ୍କ ସହିତ ଯେଉଁ ବୁଦ୍ଧିଜୀବୀମାନଙ୍କର ସମ୍ପର୍କ ରହୁଥିଲା, ସରକାରୀ ପୋଲିସର କଡ଼ା ନଜରରୁ ସେ କେବେ ବାଦ୍ ପଡ଼ୁ ନ ଥିଲା । ଅନେକବାର ପୋଲିସ ସହିତ ମରଣାନ୍ତକ ସଙ୍ଘର୍ଷର ସମ୍ମୁଖୀନ ହୋଇଛନ୍ତି । କିନ୍ତୁ ତାଙ୍କର ମାନସିକ ଦୃଢ଼ତା, ଲକ୍ଷ୍ୟସାଧନ ପଥରେ ଏକନିଷ୍ଠତା ,ତାଙ୍କୁ ସବୁ ସ୍ଥାନରେ ବିଜୟୀ କରି ଫେରାଇ ଆଣିଛି । ଏହାପରେ 'ବା' ନିଜ ନାମ ବଦଳାଇବାକୁ ଇଚ୍ଛାକଲେ, ପୋଲିସ ଆଖିରୁ ନିଜର ଆତ୍ମରକ୍ଷା ପାଇଁ । 'ବା' ବଦଳରେ ସେ 'ନ୍‌ଗୁଏନ୍ ଆଇ କୋକ୍' ନାମରେ ପରିଚିତ ହେଲେ । ଆଇକୋକ୍‌ର ଅର୍ଥ ଦେଶ-ପ୍ରେମୀ । ଗୁଏନ୍ ନିଜ ନାମ ସହିତ ଦେଶପ୍ରେମକୁ ଜଡ଼ାଇ ରଖିବାକୁ ଗର୍ବ ଅନୁଭବ କରୁଥିଲେ । ତାହାହିଁ ହେଲା । ପ୍ରବାସୀ ତଥା ଫରାସୀ ଶ୍ରମିକ ଅଞ୍ଚଳରେ ସେ 'ପ୍ରିୟ ନ୍‌ଗୁଏନ୍ ଆଇ କୋକ୍' ହୋଇ ରହିଲେ । ଏହି ନାମ ତାଙ୍କର ଅନେକ କାଳ ପର୍ଯ୍ୟନ୍ତ ବଞ୍ଚି ରହିଲା । କାହିଁ ପ୍ରାଚ୍ୟର ସାଇଗନ ଉପକୂଳରୁ ଆରମ୍ଭ କରି ଫରାସୀ ସମୁଦ୍ର ତଟ ଯାଏ, ପୋଲିସରୁ ଆରମ୍ଭ କରି ସାଧାରଣ କୁଲି ମଜଦୂର ଯାଏ । ସବୁଠି ନ୍‌ଗୁଏନ୍ ଆଇ କୋକ୍‌ର ନାମ । ଏହି ନାମରେ ସେ ନିଜର ବିପ୍ଳବ-ସିଦ୍ଧ ରାଜନୈତିକ ଜୀବନର ଯାତ୍ରା ଆରମ୍ଭ କଲେ । ଅସୀମ ଧୈର୍ଯ୍ୟ ଓ ପ୍ରତୀକ୍ଷାର ସହିତ, ଦାରୁଣ ଦୁଃଖ ଓ ଦାରିଦ୍ର୍ୟ ମଧ୍ୟରେ ।

ପ୍ୟାରିସରେ ରହିବା କାର୍ଯ୍ୟ ତାଙ୍କର ଠିକ୍ ହୋଇଗଲା । ସେ ଓ ତାଙ୍କର ବନ୍ଧୁ ଫାନ୍ ଗ୍ରନ ଟ୍ରୁଙ୍କ ମାର୍ସାଭେଣ୍ଟଠାରେ ଏକ ଜରାଜୀର୍ଣ୍ଣ କୋଠରୀ ବାଛିନେଲେ । ଭିତରଟା ଖୁବ୍ ସନ୍ତସନ୍ତିଆ । କିନ୍ତୁ ଶ୍ରମିକମାନଙ୍କୁ ତା'ଠାରୁ ଭଲ ବାସସ୍ଥାନ ସେତେବେଳେ ମିଳୁ ନ ଥିଲା ବା ସେମାନଙ୍କର ଭଲ ଘରେ ରହିବା ପାଇଁ ଯଥେଷ୍ଟ ସମ୍ବଳ ନ ଥିଲା । ତାପରେ ସେମାନେ ୬,ରୁ କେପ୍ ଗୋବେଲିନସକୁ ସ୍ଥାନ ପରିବର୍ତ୍ତନ କରିନେଲେ । ତାର ମାତ୍ର କେତେଦିନ ପରେ ଦୁଇବନ୍ଧୁ ୯, ଇମ୍ପାସେ କମ୍ପୋଏଣ୍ଟକୁ ଗ୍ଲାଲଗଲେ । ସେଠାରେ ସେ ଦୁଇଜଣଙ୍କ ବ୍ୟତୀତ ଅନ୍ୟାନ୍ୟ ସହକର୍ମୀମାନେ ମଧ୍ୟ ରହିଲେ । ବାରମ୍ବାର ସ୍ଥାନ ପରିବର୍ତ୍ତନ କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା—ପ୍ରଥମାବସ୍ଥାରୁ ପୋଲିସ ନଜରରେ ନ ପଡ଼ିବା । ଏତେଜଣ ବନ୍ଧୁଙ୍କ ସହିତ ରହି ଜୀବିକା ନିର୍ବାହ କରିବା ବଡ଼ ଜଟିଳ । ମୁଖ୍ୟତଃ ମେସ୍‌ର ଦାୟିତ୍ୱ ତାଙ୍କ ଉପରେ ଥାଏ । କାରଣ ସେ ସମସ୍ତ ସହକର୍ମୀ ଦେଶଭକ୍ତମାନଙ୍କର ନେତା । ଅନ୍ୟପକ୍ଷରେ ସେମାନଙ୍କୁ ସଙ୍ଗଠିତ କରିବାର ମୂଳ ଲକ୍ଷ୍ୟ ହେଉଛି

ତାଙ୍କର । ତେଣୁ ତୁଳନାତ୍ମକ ଭାବେ ଜଣେ ନେତା, ପରିଚାଳକ, ଅଗ୍ରଣୀ ସଙ୍ଗଠକ, ମୂଳଦୁଆ ପକାଇବାର ଲୋକ ପାଇଁ ଦାୟିତ୍ୱ ବେଶି ଏବଂ ଗୁରୁତ୍ୱପୂର୍ଣ୍ଣ ।

ନୁଏନ୍ ଆଇ କୋକ୍ ହଟି ଯିବାର ବ୍ୟକ୍ତି ନୁହନ୍ତି । ସ୍ୱାଧୀନ ରହି ଜୀବିକା ନିର୍ବାହର ପନ୍ଥା ଖୋଜିଲେ । ମନକୁ ଛୁଇଁଲା ଫଟୋ ବନାଇବା କାର୍ଯ୍ୟ । ବନ୍ଧୁମାନେ ସମ୍ମତି ଜଣାଇଲେ । ଆବଶ୍ୟକୀୟ ଯନ୍ତ୍ରପାତି ଓ ଜିନିଷପତ୍ର ଧରି ଭ୍ରାମ୍ୟମାଣ ଫଟୋ ବନାଳୀଭାବେ କାର୍ଯ୍ୟ ଆରମ୍ଭ କଲେ । ବେଶ୍ ଭଲ ଚାଲିଲା । ତାପରେ ନିର୍ଦ୍ଦିଷ୍ଟ ସ୍ଥାନ ନେଇ ସେ ବସି ରହିଲେ ଦୋକାନରେ ସାକ୍ଷାତ୍ ବ୍ୟବସାୟୀ ପରି । ଅପେକ୍ଷାକୃତ ଶସ୍ତା ଦରରେ ହେଉଥିବାରୁ ବହୁତ ଗରାଖ ଜୁଟିଲେ । ଲାଭ କମାଇବା ଉଦ୍ଦେଶ୍ୟ ନ ଥିଲା, କେବଳ ଗୁଜୁରାଣ ମେଣ୍ଟାଇବା । ଶ୍ରମିକଶ୍ରେଣୀ ତରଫରୁ ବାହାରୁଥିବା ଲା ଭାଇ-ଓଭ୍ରିୟେର ପତ୍ରିକାରେ ଥରେ ଗୋଟିଏ ବିଜ୍ଞାପନ ବାହାରିଲା । "ଆପଣ ଯଦି ଆପଣଙ୍କର ପରିବାରର ଗୋଟିଏ ଆଜୀବନ ସ୍ମୃତି ଚିହ୍ନ ରଖିବାକୁ ଚାହାନ୍ତି, ତେବେ ଆପଣଙ୍କର ଫଟୋଗୁଡ଼ିକ ନୁଏନ୍-ଆଇ. କେ ଙ୍କୁ ଦେଇ ପରୀକ୍ଷା କରାଇ ନିଅନ୍ତୁ । ସୁନ୍ଦର ଫ୍ରେମ ସହିତ ଅପୂର୍ବ ପ୍ରତିଛବି । ଦାମ୍ ମାତ୍ର ପଇଁତ୍ରିଶ ଫ୍ରାଙ୍କ୍ ।"

ଏହି ଫଟୋ ବନାଇ କାର୍ଯ୍ୟରେ ନୁଏନ୍ ଶିଖିଥିବା ଚୀନା ଲିପି ବହୁତ ସାହାଯ୍ୟ କରିଥିଲା । କିନ୍ତୁ ସେ ବ୍ୟବସାୟରେ ବିଶେଷ ସଫଳତା ଲାଭ କରି ପାରିଲେ ନାହିଁ । ଅନେକ ଦିନ ତାଙ୍କୁ ବେକାର ରହିବାକୁ ପଡ଼ୁଥିଲା ।

ତେବେ ଏହି ବେକାରି ଜୀବନ ତାଙ୍କ ପାଇଁ ଅପୂର୍ବ ସୁଯୋଗ ଆଣିଦେଲା । ଅବସର ମିଳିଲା ରାଜନୀତି କରିବା ପାଇଁ । ବନ୍ଧୁମାନଙ୍କୁ ଭେଟି ଆଳାପ ଆଲୋଚନା କରିବା ପାଇଁ । ଯେଉଁମାନେ ରାଜନୀତିରେ ଟିକେ ଆଗ୍ରହ ପ୍ରକାଶ କରୁଥିଲେ, ସେମାନଙ୍କୁ ବାରମ୍ବାର ଭେଟି ଭେଟି ସେ ସଙ୍ଘବଦ୍ଧ କାର୍ଯ୍ୟକ୍ରମ ପ୍ରତି ଆହୁରି ଟାଣି ଆଣିଲେ । ଲେଖାପଢ଼ା ପାଇଁ ଆଗ ଅପେକ୍ଷା ଅଧିକ ସମୟ ମିଳିଲା । ବାସ୍ତବ-କ୍ଷେତ୍ରରେ ସମାଜବାଦକୁ ସଫଳ ରୂପ ଦେବା ପାଇଁ ପଥ ପରିଷ୍କାର ହୋଇଗଲା । ସେତେବେଳେ ତାଙ୍କ ଚାରିକଡ଼ରେ ଅନେକ ଆନାମୀ ବନ୍ଧୁ, ନିଜ ଦେଶର ସମୃଦ୍ଧ ଶାପନ୍ନ ଛାତ୍ରମାନେ । ସେମାନଙ୍କୁ ଦେଖି ହୋ-ଙ୍କର ଆଶାତରୀ କୂଳରେ ଲାଗିଲା । ଅଧିକ ଦୃଢ଼ତାରେ ସେ ଆଗେଇ ଆସିଲେ । ସାଙ୍ଗରେ ଥିଲେ ଫାନ ଚୁ ଟ୍ରିନ୍, ଫାନଭାନ୍ ଟ୍ରୁଙ୍ଗ ଏବଂ ନୁଏନ ଥିଟ୍ରୁଏନ । ଏହି ସମସ୍ତଙ୍କୁ ମିଳାଇ ଏକ ଶ୍ରେଷ୍ଠ ଦେଶପ୍ରେମୀ ସଙ୍ଗଠନ କରିବାର ସ୍ୱପ୍ନ ସେ ଦେଖୁଥିଲେ । ତେଣୁ ପ୍ରଥମ ଆବଶ୍ୟକତା ଥିଲା ଗୋଟିଏ ସ୍ଥାନ, ଯେଉଁଠି ସମସ୍ତେ କିଛି ସମୟ ପାଇଁ ଏକତ୍ରିତ ହୋଇ ପାରିବେ । ଆଦର୍ଶଗତ ଓ ତାତ୍ତ୍ୱିକ ସିଦ୍ଧାନ୍ତରେ ଉପନୀତ

ହୋଇ ପାରବେ । ହ୍ୱାଇ-ଡ-କେମପାସେରେ ଥିବା ଗ୍ରେଟ ବନ୍ଧ ଦୋକାନ ହିଁ ତାଙ୍କର କେନ୍ଦ୍ରସ୍ଥଳ ହେଲା । ଏହି ଦୋକାନର ମାଲିକ ଥିଲେ ହାସଫେଲଡ଼ ନାମକ ଜଣେ ଜର୍ମାନ ରେଲୱପଥ, ଯାହାଙ୍କର ଲଣ୍ଡନ୍ ଟ୍ରଟସ୍କିଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା । ସେଠାକୁ ଆସୁଥିବା ସମୟରେ ଗୁଏନ୍ ବିଶିଷ୍ଟ ଜାତୀୟତାବାଦୀ, ଦେଶପ୍ରେମୀ, ଶ୍ରମିକ ନେତାମାନଙ୍କର ସମ୍ପର୍କରେ ଆସିଲେ । ସେମାନଙ୍କ ମଧ୍ୟରୁ ମୋନାଟେ, ବୋଗ୍ରେଡଗ୍ୱାନ, ମାର୍ସେଲେ କାଶି, ପାଲ ଭାଇଲାଣ୍ଟ କୋଟେଊରଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରେ ଆଦର୍ଶଗତ ବିଭିନ୍ନତା ଥିଲେ ମଧ୍ୟ ସେମାନେ ଗୁଏନଙ୍କୁ ଜାତୀୟତାବାଦୀ ଆନ୍ଦୋଳନ ପରେ ବୈପ୍ଳବିକ ମୂଲ୍ୟବୋଧର ହିପ ଦେଇବା ସମ୍ବନ୍ଧରେ ଉତ୍ସାହିତ କରିଥିଲେ । ଭାଇଲାଣ୍ଟ କୋଟେଊର ପ୍ୟାରିସରୁ ପ୍ରକାଶିତ ପ୍ରସିଦ୍ଧ 'ଲ-ହ୍ୟୁମାନଟେ'ରେ ଲେଖିବା ପାଇଁ ପ୍ରବର୍ତ୍ତାଇଲେ ଏବଂ ଗୁଏନ୍ "ଏକ ନିର୍ବାସିତ ଜୀବନର ସ୍ମୃତି" ଶୀର୍ଷକ କାହାଣୀ କରିଅରେ ତାଙ୍କର ସମସ୍ତ ସମସ୍ୟା ପ୍ରତିପାଦିତ କରିଥିଲେ । ତାହାଛଡ଼ା ତାଙ୍କର "ବାଉଁଶଡ଼ାନବ" ନାମରେ ଆଉ ଗୋଟିଏ ଲଘୁ ନାଟକ ପ୍ରକାଶ ପାଇଥିଲା । ଏହି ଲେଖା ପ୍ରକାଶିତ ହେବା ପରେ ପରେ ସେ କାଲମାର୍କସଙ୍କ ନାତି ଜନ୍ ଲଙ୍ଗେଙ୍କଠାରୁ ନିମନ୍ତ୍ରଣ ପାଇଲେ 'ଲେ-ପପୁଲର'ରେ ଲେଖିବା ପାଇଁ । ଏହି ସମୟରେ ସେ ମୁକ୍ତ-ସମାଜବାଦୀ ଆନ୍ଦୋଳନରେ ପ୍ରଥମ ଭିଏତନାମୀ ହିସାବରେ ଖ୍ୟାତି ଓ ସମ୍ମାନ ଅର୍ଜନ କଲେ । ଫଳରେ ପ୍ୟାରିସର ବିଭିନ୍ନ ଅଞ୍ଚଳରେ ଥିବା ଭିଏତନାମୀମାନେ ତାଙ୍କ ଆଡ଼କୁ ଆକୃଷ୍ଟ ହେବାକୁ ଲାଗିଲେ । ସେ ବର୍ତ୍ତମାନ ଦୂରବିଦେଶରେ ପ୍ରବାସୀ ଆନାମୀମାନଙ୍କର ଏକମାତ୍ର ଜଗୁଆଳୀ, ମୁରବୀ ବା ନେତା । ତାଙ୍କର ଏହି ମିଳାମିଶା, ସାଙ୍ଗଠନିକ କାର୍ଯ୍ୟକ୍ରମକୁ ଶ୍ରମିକବିରୋଧୀ ରାଜନୈତିକ ଦଳ ବା ସମ୍ବାଦପତ୍ରମାନେ ସହିପାରୁ ନ ଥିଲେ । ପ୍ରାରମ୍ଭିକ ଦିନମାନଙ୍କରେ ତାଙ୍କର ସାଙ୍ଗଠନିକ କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ୧୯୫୩ ମସିହାରେ 'ରହସ୍ୟମୟ ହୋ-ଚି-ମିନ' ଶୀର୍ଷକ ଏକ ଲେଖା ପ୍ରକାଶ ପାଇଲା, କମ୍ୟୁନିଷ୍ଟ ବିରୋଧୀ ଏକ ବୁଲେଟିନ୍‌ରେ । ଏହାର ଲେଖକ ଥିଲେ ଜ୍ୟାକସ୍ ଷ୍ଟେରନଲ୍ । ତାଙ୍କ ଭାଷାରେ—

"କଙ୍କାଳସାର, ପିଶାଚ ପରି କ୍ଷୀଣ ଶରୀରରେ ସବୁବେଳେ କିଛି ନା କିଛି ବହିଧରି ବସିଥାନ୍ତି··· । ସେ ସବୁ ପ୍ରକାର ପୁସ୍ତକ ପଢ଼ିବାରେ ଅଭ୍ୟସ୍ତ । ଜୋଲା, ଫ୍ରାନସ୍, ସେକ୍‌ସପିୟର, ଡିକେନସ, ହ୍ୟୁଗୋ, ରୋମାରୋଲଙ୍କଠାରୁ ଆରମ୍ଭ କରି ମାର୍କସ୍‌ବାଦୀ ଅର୍ଥନୀତି, ଲେନିନବାଦୀ ସାହିତ୍ୟ ପର୍ଯ୍ୟନ୍ତ । ତାଙ୍କର ସବୁଠୁ ବଡ଼ ସଉକ ଥିଲା ଜର୍ମାନ ଜାତୀୟତାବାଦୀମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବା । ଏହି ସୂତ୍ରରେ ସେ ସ୍ୱିଜରଲାଣ୍ଡରୁ ଲେନିନ ଓ ଜିନୋଭିଏଭଙ୍କ ସହିତ କାର୍ଯ୍ୟ ଦାର

ଫେରିଥିବା ଜୁଲିସ ଗ୍ରେଭଙ୍କ ସହିତ ତାଙ୍କର ସାକ୍ଷାତ ଘଟିଲା । ବହୁତ ଦିନ ଧରି ବିପ୍ଳବୀମାନଙ୍କ ସହିତ କାମ କରିଥିବାରୁ ସେ ତାଙ୍କ ପ୍ରତି ଗଭୀର ଆକୃଷ୍ଟ ହୋଇ ପଡ଼ିଥିଲେ ଏବଂ ପ୍ୟାରିସରେ ସେହି ମତବାଦୀ ବନ୍ଧୁ ଖୋଜି ବୁଲୁଥିଲେ । ସୌଭାଗ୍ୟ-ବଶତଃ ଗ୍ରୁଏନ-ଆଇକୋଭ ତାଙ୍କର ସମସ୍ତ ଉତ୍ସାହ, ପ୍ରେରଣାକୁ ଉଦ୍ବୋଳିତ କରି ଆଗରେ ଠିଆ ହେଲେ । ଗ୍ରୁଏନଙ୍କ ଜରିଆରେ ସେ ଆବଶ୍ୟକୀୟ ସମ୍ବାଦ, ଗୋପନୀୟ ତଥ୍ୟ ସଂଗ୍ରହ କରି ପାରୁଥିଲେ । ସମସ୍ତଙ୍କ ଏହି ତରୁଣ ଉତ୍ସାହୀ ଭିଏତନାମୀ ବିପ୍ଳବୀଙ୍କର ଜାତୀୟତାବାଦୀ ବିଦ୍ରୋହକୁ ଉଚିତ ମାର୍ଗରେ ପରିଚାଳିତ କରିବା ପାଇଁ ସେ ନିଜର ସମସ୍ତ ସମୟ ବିନିଯୋଗ କଲେ । ସେତେବେଳେ ଟ୍ରବିଲେଭିଲ୍ ଜିଲ୍ଲାରୁ 'ଲ-ଭିଏଭରିଏର୍' ପତ୍ରିକା ପ୍ରକାଶିତ ହେଉଥାଏ । ସେହିଠାରେ ଉକ୍ତ ପତ୍ରିକାକୁ କେନ୍ଦ୍ର କରି ଏକ ଶକ୍ତିଶାଳୀ ବିପ୍ଳବୀ ପରିମଣ୍ଡଳ ଗଢ଼ି ଉଠିଥାଏ । ଗ୍ରୁଏନ ପ୍ରତିଦିନ ସେହି ଅଫିସରେ ପହଞ୍ଚୁଥିଲେ । ଘଟଣାକ୍ରମେ ସେହି ସ୍ଥାନର ବିପ୍ଳବୀ ଜଳବାୟୁ ତାଙ୍କୁ ନିଜ କୋଳକୁ ଟାଣି ନେଲା । ସେ ମଧ୍ୟ ସେହି ଅଶାନ୍ତ ବାତ୍ୟାହିଲ୍ଲୋଳରେ ନିଜକୁ ମିଶାଇ ଦେଲେ । ନିଜ ଦେଶକୁ ସେହି ମାଟିର ବିଦ୍ରୋହୀ ବୀଜଟିକୁ ବୋହିନେବା ପାଇଁ ସତତ ମନ ବଳାଇଲେ । ଗଣଅଭ୍ୟୁ-ତ୍ଥାନର ଦୂର ଦିଗ୍‌ବଳୟ ଅଡ଼େ ପାଦ ଆପେ ଆପେ ମନ୍ଥର ହେଲା ।

ସେତେବେଳକୁ ଫଟୋ ବନ୍ଧାଇ କାମରୁ ସେ ପୂରା ବିଦାୟ ନେଇ ନ ଥାନ୍ତି । ଦୁଇଓଳି ପେଟପୂରା ଖାଇବାକୁ ତାଙ୍କ ନିକଟରେ ସମ୍ବଳ ନାହିଁ । କିନ୍ତୁ ରାଜନୈତିକ କାର୍ଯ୍ୟକଳାପ ସମ୍ବନ୍ଧରେ ତାଙ୍କର ଧାରଣା ସ୍ପଷ୍ଟ ହୋଇଗଲା । ଭବିଷ୍ୟତ ପାଇଁ ତାଙ୍କ ମନରେ ନୂତନ ଆଶାର ସଞ୍ଚାର ହେଲା । ତେଣୁ ଦୁଃଖ, ଦାରିଦ୍ର୍ୟରେ ଅନୁଶୋଚନା ପାଇଁ ସମୟ ମିଳିଲା ନାହିଁ । ପ୍ୟାରିସରେ ବହୁତ ବନ୍ଧୁ ଜୁଟିଲେ । ଧୀରେ ଧୀରେ ତାଙ୍କ ଘରକଡ଼ରେ ଅଗଣିତ ସହଯୋଗୀ, ସହକର୍ମୀଙ୍କର ମେଳା । ସେମାନଙ୍କ ମଧ୍ୟରୁ କିଏ ଜାପାନୀ ତ କିଏ ଚୀନା । କିଏ ଶ୍ୟାମ ଦେଶରୁ ଆସିଛନ୍ତି କିଏ ଆସିଛି ବର୍ମାରୁ । ଘରପଟରେ ନିଜ ପ୍ରାନ୍ତରୁ ଏତେଗୁଡ଼ିଏ ବନ୍ଧୁ ଦେଖି ସେ ଟିକେ ଆଶାବାଦୀ ହୋଇପଡ଼ିବା ସ୍ୱାଭାବିକ । ସୌଭାଗ୍ୟବଶତଃ ସମଗ୍ରେ ପ୍ରାୟ ପ୍ୟାରିସ ସହରରେ ରହୁଥିଲେ । ଦିନକର ଘଟଣା । ସାଲେ ଡେସ୍ ହର୍ଟିକଲଚରସଠାରେ ଗୋଟିଏ ସାଧାରଣ ସଭାର ଆୟୋଜନ ହୋଇଥିଲା । ସେ ସଭାର ବକ୍ତା ଥିଲେ ଅଧ୍ୟାପକ ଫେଲିସିଏନ୍ ଚ୍ଛଲେସ୍ୱେ । ଭଦ୍ରବ୍ୟକ୍ତି ଜଣକ ନିକଟ ଅତୀତରେ ଦୂରପ୍ରାଚ୍ୟ ଭ୍ରମଣରୁ ଫେରିଥାନ୍ତି । ଅନ୍ୟପଟରେ ଇଣ୍ଡୋଚୀନ ସ୍ୱାଧୀନତା ଆନ୍ଦୋଳନର ସେ ଜଣେ ସମର୍ଥବାଦୀ । ଭାଷଣ ପ୍ରସଙ୍ଗରେ ସେ ଉପସ୍ଥିତ ଜାତୀୟତାବାଦୀ ଭିଏତନାମୀ ବନ୍ଧୁମାନଙ୍କୁ ଲକ୍ଷ୍ୟକରି କହିଲେ ଯେ, ଯେ ଯେତେ

ଦୂରରେ ଥାଉ ନା କାହିଁକି, ସ୍ୱଦେଶର ସମସ୍ୟା, ଦୁଃଖ, ଅଭାବ, ଅନାଟନକୁ ଯେ ନିଜ ହୃଦୟରେ ଅନୁଭବ କରି ପାରୁଛି, ସେ ସେହି ସ୍ଥାନରୁ ନିଜ ଜାତିର ଉତ୍ଥାନ ପାଇଁ ଯଥାସମ୍ଭବ ଉଦ୍ୟମ ଆରମ୍ଭ କରିବା ଉଚିତ୍ । ଦ୍ୱାରବନ୍ଧକୁ ଆଉଜି କରି ଠିଆ ହୋଇଥିବା ଯୁବକ ଜଣକ ଏହି ବାକ୍ୟରେ ଚମକି ଉଠିଲେ । ସାରା ଦେହରେ ବିଦ୍ୟୁତ୍ ସଞ୍ଚାରଣର ଅପୂର୍ବ ସ୍ପନ୍ଦନ । ନିଜକୁ ସ୍ଥିର ରଖିପାରିଲେ ନାହିଁ ସେ । ହାତରେ ଧରିଥିବା ଛାପା ପ୍ରସ୍ତରପର୍ଚ୍ଚାଗୁଡ଼ିକୁ ଉପସ୍ଥିତ ଶ୍ରୋତାମାନଙ୍କ ମଧ୍ୟରେ ବାଣ୍ଟି ଚାଲିଲେ । କି ଉତ୍କଣ୍ଠାର ସ୍ୱପ୍ନ !! ଫରାସୀ ରାଜଧାନୀ ପ୍ୟାରିସ ସହରରେ କ୍ଷଣକ ପାଇଁ ଚାଞ୍ଚଲ୍ୟ ଖେଳିଗଲା । ସମଗ୍ର ପୋଲିସବାହିନୀ ତତ୍ପର ହୋଇ ଉଠିଲା ଏହି ଘଟଣାରେ । ଉପନିବେଶବାଦ ବିରୁଦ୍ଧରେ ଏହି ପ୍ରକାର ପ୍ରତ୍ୟକ୍ଷ ଆକ୍ରମଣ ପୂର୍ବରୁ କେବେ ହୋଇ ନ ଥିଲା । କିଏ ଏହି ବ୍ୟକ୍ତି ? ସବୁରି ମୁହଁରେ ସେହି ଗୋଟିଏ ପ୍ରଶ୍ନ । ପୋଲିସ ବିଭାଗ ଦାୟିତ୍ୱରେ ଥିବା ପଦସ୍ଥ ଅଫିସର ଏମ୍. ଲୁଇ ଆର୍ନକ୍ସଙ୍କୁ ଏହି ତଥ୍ୟ ଅନୁସନ୍ଧାନ ପାଇଁ ନିଯୁକ୍ତ କରାଗଲା । ଖୁବ୍ ବିଚକ୍ଷଣ ଅଫିସର ସେ । ନୁଏନ୍ ଆଇ କୋକ୍‌ଙ୍କୁ ବାହାର କରିବା ତାଙ୍କୁ କେତେ ସମୟ ବା ଲାଗନ୍ତା ! ଜଣେ ଗୁପ୍ତଚରଙ୍କଦ୍ୱାରା ନୁଏନ୍ ଧରାପଡ଼ିଲେ । କିନ୍ତୁ ଆର୍ନକ୍ସ ତାଙ୍କୁ ଖୁବ୍ ଆଦର କରୁଥିଲେ । କାରଣ ନିଜ ଦେଶ ପାଇଁ ସୁଦୂର ପ୍ରବାସରୁ ଏହି ଯୁବକର ଅକୃତ୍ରିମ ପ୍ରେମ ଦେଖି ସେ ମୁଗ୍‌ଧ ହୋଇପଡ଼ିଥିଲେ ।

ଦିନ ପରେ ଦିନ ଗଡ଼ିଚାଲିବା ସଙ୍ଗେ ସଙ୍ଗେ ନୁଏନ-ଆଇ-କୋକ୍‌ଙ୍କର ଖ୍ୟାତି ବଢ଼ି ଚାଲିଲା । ନିର୍ଦ୍ଦିଷ୍ଟ ରାଜନୈତିକ ପଥରେ ଚାଲିବା ପାଇଁ ସେ ଆବଶ୍ୟକୀୟ ଶିକ୍ଷା ଅର୍ଜନ କରିସାରିଥାନ୍ତି । ହୋଟେଲ, କଫି-ହାଉସ, ପାର୍କ, ପ୍ରେକ୍ଷାଳୟ କିମ୍ବା କଲକାରଖାନାମାନଙ୍କରେ ତାଙ୍କର ଆଉ ଆଡ୍ଡା ଜମୁନାହିଁ । ପୂର୍ବାପେକ୍ଷା ଅପେକ୍ଷାକୃତ ଗମ୍ଭୀର ଓ ମୌନ ହୋଇଯାଇଛନ୍ତି ସେ । ଆଜିଠାରୁ ଫରାସୀ ଉପନିବେଶବାଦୀ ଶୋଷଣ ବିରୁଦ୍ଧରେ ଉତ୍ତ୍ୟକ୍ତ ପରିବେଶ ସୃଷ୍ଟିକରିବାର ସେ ପକ୍ଷପାତୀ ନୁହନ୍ତି । କାରଣ ଚାରିପଟରେ ସଶସ୍ତ୍ର ପୋଲିସ ଜଗୁଆଳି । ସରକାରୀ କଡ଼ା ପହରା । ଚତୁରତାର ସହିତ ଚଳି ନ ପାରିଲେ ପ୍ରତି ପଦକ୍ଷେପରେ ଧରା-ପଡ଼ିବାର ଯଥେଷ୍ଟ ସମ୍ଭାବନା ରହିଛି । ନୁଏନ୍ ଦୀର୍ଘ ଭବିଷ୍ୟତକୁ ଚାହିଁ ଅତି ସନ୍ତର୍ପଣରେ ନିଜ କାର୍ଯ୍ୟ ଆରମ୍ଭ କଲେ ।

ଭର୍ସାଇଲ ଶାନ୍ତି ସମ୍ମିଳନୀ ଆଗତ ପ୍ରାୟ । ଶାନ୍ତି, ସାମ୍ୟ ଓ ଗଣତନ୍ତ୍ର ଦାବୀ କରି ପ୍ରେସିଡେଣ୍ଟ ଉଇଲସନ୍ ସାରା ପୃଥିବୀରେ ଚହଲ ସୃଷ୍ଟି କରିଛନ୍ତି । ତାଙ୍କର ଚଉଦ ଦଫା ସମ୍ବଳିତ କାର୍ଯ୍ୟକ୍ରମ ସରକାରୀ ତଥା ବେସରକାରୀ, ସମସ୍ତଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ଫଳରେ ପରାଧୀନ ଜାତି, ଯେଉଁମାନେ କି

କୌଣସି ଅନୁକୂଳ ନ ଦେଖି ନୈରାଶ୍ୟ ଅନ୍ଧକାର ମଧ୍ୟରେ ବୁଡ଼ି ଯାଇଥିଲେ, ସେମାନେ କମରରେ ବଳାନ୍ତି ବାନ୍ଧୁଥିଲେ । ଶାନ୍ତି ସମ୍ମିଳନୀରେ ସରକାରୀ ପ୍ରତିନିଧି ଦଳମାନଙ୍କ ବ୍ୟତୀତ ଅନେକ ବେସରକାରୀ ପ୍ରତିନିଧି ମଧ୍ୟ ଯୋଗ ଦେଇ-ଥିଲେ । ସେମାନେ ନିଜ ନିଜ ଦେଶର ସ୍ୱାଧୀନତା ଦାବୀ କରିବାକୁ ଆସିଥିଲେ । ହୋ ଏହି ଦେଶପ୍ରେମୀ ବେସରକାରୀ ସଂସ୍ଥାମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କଲେ। ସେମାନଙ୍କର ସହାୟତାରେ ନିଜ ଦେଶର କେତେଜଣ ଜାତୀୟବାଦୀ ବନ୍ଧୁମାନଙ୍କୁ ନେଇ ଭିଏତନାମ ସ୍ୱାଧୀନତା ଦାବୀକୁ ଭିତ୍ତିକରି ଏକ ଆଠଦଫା ସମ୍ବଳିତ ସ୍ମାରକଲିପି ପ୍ରସ୍ତୁତ କଲେ । ଏହି ସ୍ମାରକଲିପି ପ୍ରସ୍ତୁତ କରିବାରେ ଗୁଏନଙ୍କୁ ତାଙ୍କର ଆଇନଜୀବୀ ବନ୍ଧୁ ଫାନ୍ ଭାନ୍ ଟ୍ରୁଙ୍ଗ ଏବଂ ଫାନ୍-ଚୁଉ-ଟ୍ରିନ୍ ସାହାଯ୍ୟ କରିଥିଲେ । ପ୍ରଥମେ ଏହି ପ୍ରସ୍ତାବ ଆନାମୀ ଭାଷାରେ ଲେଖା ହୋଇ ଥିଲା; କିନ୍ତୁ ପରେ ତାହାର ତର୍ଜମା କରିଥିଲେ ଫାନ୍-ଭାନ୍-ଟ୍ରୁଙ୍ଗ । ସ୍ମାରକଲିପିଟି ଭର୍ସାଇଲଠାରେ ଉଇଲସନ୍, ଲୟେଡ଼୍ ଜର୍ଜ, କ୍ଲାମାନ୍ସୋ ପ୍ରଭୃତିଙ୍କ ପାଖକୁ ପଠାଯାଇଥିଲା । ତା ବ୍ୟତୀତ ଇଣ୍ଡୋଚୀନରେ ଥିବା ସମସ୍ତ ଜାତୀୟବାଦୀ ସଙ୍ଗଠନ, ଦେଶପ୍ରେମୀ ସ୍ୱାଧୀନତାକାମୀ ବ୍ୟକ୍ତିସମୂହ ଏବଂ ପ୍ୟାରିସରେ ଅବସ୍ଥାପିତ ଶ୍ରମିକ ସଙ୍ଘ, ପ୍ରବାସୀ କର୍ମଚାରୀ ସଙ୍ଗଠନମାନଙ୍କୁ ବଣ୍ଟାଯାଇଥିଲା । ଏହି ଆଠଦଫା ସମ୍ବଳିତ ସ୍ମାରକଲିପିରେ ଭିଏତନାମର ସ୍ୱାଧୀନତା, ସ୍ୱାୟତ୍ତଶାସନ, ଭିଏତନାମୀ ଓ ଫରାସୀମାନଙ୍କ ମଧ୍ୟରେ ସମାନ ଅଧିକାର, ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତି, ରାଜନୈତିକ ଦଳ ଗଠନ କରିବାର ଅଧିକାର, ବାଧ୍ୟତାମୂଳକ ଶ୍ରମର ବିଲୋପ, ଲବଣ କରରୁ ମୁକ୍ତି, ବାଧ୍ୟତାମୂଳକ ଅଫିମ ଓ ମଦ୍ୟପାନ ଆଦି, ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଭର୍ସାଇଲ ସମ୍ମିଳନୀରେ ଗୁଏନଙ୍କର ଏହି ଦାବୀ ଯେ କୌଣସି ବିଶେଷ ଫଳଲାଭ କରିଥିଲା ତା ନୁହେଁ ; କିନ୍ତୁ ଉପନିବେଶୀ ଶାସନ ଓ ଶୋଷଣଯନ୍ତ୍ର ବିରୁଦ୍ଧରେ ସ୍ୱୟଂ ଭିଏତନାମୀ ଜନତା ପକ୍ଷରୁ ପ୍ରଥମ ଥର ପାଇଁ ଏ ପ୍ରକାର ପ୍ରତିବାଦୀ ସ୍ୱର ସେଠାରେ ସମବେତ ଜନତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ନିଶ୍ଚୟ । ଯେଉଁମାନେ ଗୁପ୍ତରେ ସ୍ୱାଧୀନତା ପାଇଁ ଆଶାୟୀ ଥିଲେ, ସେମାନେ ପ୍ରକାଶ୍ୟରେ ତା' ପାଇଁ ପାଗଳ ହୋଇ ଉଠିଲେ । ଉଇଲସନ୍‌କୃତ ଭର୍ସାଇଲ ଶାନ୍ତି ସମାବେଶ ଭିଏତନାମୀ ଜାତିର ମୁକ୍ତି ପାଇଁ ନୂତନ ଦ୍ୱାର ଉନ୍ମୁକ୍ତ କରିଦେଲା ।

ଆଠଦଫା ସମ୍ବଳିତ ଦାବୀକୁ ପ୍ରଧାନ ଆୟୁଧ କରି ଗୁଏନ ଭିଏତନାମୀ ସ୍ୱାଧୀନତା ଆନ୍ଦୋଳନ ପାଇଁ ପ୍ରଚୁର କାର୍ଯ୍ୟ ଆରମ୍ଭ କରିଦେଲେ । ବାସ୍ତବ କ୍ଷେତ୍ରରେ

ଦେଖାଗଲା କେବଳ ଅନାମୀ ଜାତିର, ପଡ଼ୋଶୀ ଦେଶରୁ ଆସି ମୂଳ ଲଗୁଥିବା ଆରବୀୟ, ଆର୍ମେନୀୟ, ସିଂହଳୀ, ବର୍ମୀୟ ଆଦି ପ୍ରବାସୀ ବନ୍ଧୁମାନେ ଏଥିରେ ଅନୁପ୍ରାଣିତ ହୋଇ ସଙ୍ଗଠନର ସଭ୍ୟ ହେବାକୁ ଆଗ୍ରହ ପ୍ରକାଶ କଲେ । କିନ୍ତୁ ଏସବୁର ଉଦ୍ଦେଶ୍ୟ ଥିଲେ ଭିଏତନାମୀ ଶ୍ରମିକଗଣ । ବିଭିନ୍ନ କଲକାରଖାନାରେ କାମସାର ଅବସର ସମୟରେ ସେମାନେ ସଙ୍ଗଠନର ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରୁଥିଲେ । ନିଜ ବୟସପାରୁଣରେ ଏତେଗୁଡ଼ିଏ ଉତ୍ସାହୀ ସାଥୀ ଓ ଦେଶପ୍ରେମୀମାନଙ୍କୁ ଦେଖି ନୁଏନ ଦ୍ୱିଗୁଣ ଉତ୍ସାହରେ ନିଜ କାମରେ ଲାଗିପଡ଼ିଲେ । ପ୍ୟାରିସ ସହର ମଧ୍ୟରେ ଆବଦ୍ଧ ନ ରହି ସେ ଫ୍ରାନ୍ସର ବିଭିନ୍ନ ସ୍ଥାନ ଅରେ ବୁଲି ଆସିବାକୁ ମନ ବଳାଇଲେ । ସେତେବେଳକୁ ସଙ୍ଗଠନ ମାଧ୍ୟମରେ ନିଜପରି ଆହୁରି ଅନେକ ଉତ୍ସର୍ଗୀକୃତ ସହଯୋଗୀଙ୍କୁ ସେ ସାଥୀରେ ପାଇସାରିଥାନ୍ତି । ଅଭାବ ଅନାଟନର ସୀମା ନାହିଁ କହିଲେ ଚଳେ । ତଥାପି ୧୯୨୦, ୧୯୨୧ ମସିହା ମଧ୍ୟରେ ଯେ କୌଣସି ବ୍ୟକ୍ତି ଭିଏତନାମ ବା ଇଣ୍ଡୋଚୀନରୁ ଆସୁଥିଲା, ସେ ନୁଏନ ସହିତ ସାକ୍ଷାତ ନ କରି ଫେରୁ ନ ଥିଲା । ନୁଏନଙ୍କର ବାସସ୍ଥାନ ଥିଲା ସେମାନଙ୍କର ଆଶ୍ରୟସ୍ଥଳୀ । ଭୋର ପାଞ୍ଚଠାରୁ ଆରମ୍ଭ କରି ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ତାଙ୍କର ଦ୍ୱାର ଅନ୍ୟମାନଙ୍କ ପାଇଁ ଉନ୍ମୁକ୍ତ ରହୁଥିଲା । ଯେ ଯେଉଁଠି କାମ ସାରି ଫେରୁଥିଲେ ସେହି ସ୍ଥାନକୁ । ଆଳାପ ଆଲୋଚନା, କର୍ମ ଯୋଜନାରେ ସାରା ଦିନ ବିତି ଯାଉଥିଲା । ବିଶେଷ ଦିନମାନଙ୍କୁ ଛାଡ଼ିଦେଲେ ସାଧାରଣ ଦିନମାନଙ୍କରେ ନୁଏନ୍ ଅଇ କୋକ୍ ବିଳମ୍ବ ରାତ୍ରି ପର୍ଯ୍ୟନ୍ତ ନିଜ ଲେଖାଲେଖି, ପଢ଼ାପଢ଼ିରେ ବ୍ୟସ୍ତ ଥାନ୍ତି । ବନ୍ଧୁମାନେ ବିଶ୍ରାମ ନେଇ ସାରିଲା ପରେ ସମସ୍ତ ଥିଲେ ସେ ମାତ୍ର କେତୋଟି ଘଣ୍ଟା ପାଇଁ ବିଛଣା ଆଦର କରନ୍ତି । ତାଙ୍କର ବ୍ୟବହାର, ଚରିତ୍ର, ଚାଲିଚଳନ ଏପରି ଆକର୍ଷଣୀୟ, ମନଲୋଭା, ହୃଦୟଗ୍ରାହୀ ଥିଲା, ଯେ କେହି ସେଠାକୁ ଆସୁଥିଲେ, ସେ କିଛି ସମୟ ପାଇଁ ନ ଅଟକି ଫେରିପାରୁ ନ ଥିଲେ । ବ୍ୟକ୍ତିଗତ ଚାରିତ୍ରିକ ପ୍ରଭାବ ଫଳରେ ସେ ଅନେକ ବନ୍ଧୁଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥିଲେ । ନିଜ ଜୀବଦଶାରେ ସେ କୋଟି କୋଟି ଜନଗଣଙ୍କ ହୃଦୟରେ ଦେବତାତୁଲ୍ୟ ପୂଜା ପାଇଥିଲେ ।

ଯେତେବେଳେ ସମସ୍ତରେ ଯେତେବେଳେ ସାରା ବିଶ୍ୱରେ ଉପନିବେଶୀ ରାଜତ୍ୱର ସ୍ୱର୍ଣ୍ଣ ସିଂହାସନ ତଳେ ମୁକ୍ତିକାମୀ ଜନତାର କରୁଣ ଆବେଦନ ଗୁମୁରି ଗୁମୁରି ମରିଯାଉଛି, ଯେତେବେଳେ ସାମ୍ରାଜ୍ୟବାଦୀ ଶୋଷଣର ପାଞ୍ଝା ତଳରେ ନିସ୍ପେଷିତ ଜନତା ସନ୍ତ୍ରସ୍ତ । ଯେତେବେଳେ ସାଂଗଠନିକ ନେତୃତ୍ୱ ମାଧ୍ୟମରେ ମୁକ୍ତି ଦାବୀ କରିବାର ଆଶା କଳ୍ପନା ପ୍ରାପ୍ତ, ସେତିକିବେଳେ ହିଁ ନୁଏନ୍ ଆଇ-କୋକ୍

ନିଜର ସାହସ, ସଚ୍ଚୋଟତା, ନିଷ୍କପଟତା, ହାର୍ଦ୍ଦିକତା, ସ୍ନେହ, ସୌହାର୍ଦ୍ଦ୍ୟ ପ୍ରଭୃତି ମାନବିକ ମୂଲ୍ୟବୋଧର ବନ୍ଧନସୂତ୍ରରେ ଅଗଣିତ ଦେଶପ୍ରେମୀଙ୍କୁ ଗୋଟିଏ ରଙ୍ଗମଞ୍ଚ ତଳେ ଏକତ୍ରିତ କରିପାରିଥିଲେ । ଗୋଟିଏ ଧ୍ୱଜା ତଳେ ସମବେତ କରିପାରିଥିଲେ । ସେହି ଧ୍ୱଜା, ସେହି ମନ୍ତ୍ର ହେଉଛି ଶୋଷଣର କବଳରୁ ମୁକ୍ତି, ଶାନ୍ତି ଓ ସ୍ୱାଧୀନତାର ଦାବୀକୁ ସାବ୍ୟସ୍ତ କରିବା ।

ଙ୍ଗୁଏନ୍ ଆଇ କୋକ୍‌ର ମୃତ୍ୟୁର ଅନେକ ଦିନ ପରେ ଆଜି ଯେତେବେଳେ ବିଶ୍ୱସାମ୍ୟବାଦୀ ଆନ୍ଦୋଳନର କର୍ମଧାରା ବିଷୟରେ ଆଲୋଚନା କରାଯାଏ, ସେତେବେଳେ ସେ ସ୍ୱତଃ କଲମ ମୁନରେ ଲେଖି ହୋଇଯାଏ । ଅସରନ୍ତି ତା'ର କାହାଣୀ । ଆଜି ଯେଉଁମାନେ ଦୁନିଆରେ ଶ୍ରେଣୀହୀନ, ଶୋଷଣବିହୀନ, କମ୍ୟୁନିଷ୍ଟ ରାଷ୍ଟ୍ରଗଠନ ପାଇଁ ଆଗେଇ ଚାଲିଛନ୍ତି, ତାର ଆଦର୍ଶ ସେମାନଙ୍କର ପଥକୁ ଗତିମାନ କରୁ, ଗୁଣବନ୍ତ କରୁ । ତାର ବ୍ୟକ୍ତିଗତ ଜୀବନର ସମସ୍ତ ବିଭବ ଆଜିର କମ୍ରେଡ଼-ମାନଙ୍କର ବ୍ୟକ୍ତିଗତ ଜୀବନକୁ ବିଭବମଣ୍ଡିତ କରୁ । ଏହି ବିଷୟ ଲେଖିଲାବେଳେ ଙ୍ଗୁଏନ୍-ଆଇ-କୋକ୍ ବା ହୋ-ଚି-ମିନ୍ ସମ୍ପର୍କରେ ସେତେବେଳେ ଜଣେ କମ୍ରେଡ଼୍ ଯାହା ଲେଖିଥିଲେ, ତାହା ଦିଆଯାଇ ପାରେ ।



## ୭

## ଜଣେ ସହୃଦୟୀ ଦେଶଭକ୍ତର ମୁହଁରେ

ଚଳିତ ଶତାବ୍ଦୀର ପ୍ରାରମ୍ଭରେ ଅତ୍ୟାଚରିତ ଭିଏତନାମୀଙ୍କ ମଧ୍ୟରୁ ଯେଉଁ କେତେଜଣ ଉଦୀୟମାନ ଦେଶପ୍ରେମୀ ଛାତ୍ର ବା କର୍ମସ୍ପୃହା ଭାବରେ ଆସି ବିଦେଶରେ ନିଜର ଜୀବିକା ନିର୍ବାହ କରିବା ସଙ୍ଗେ ସଙ୍ଗେ ଭିଏତନାମର ମୁକ୍ତି ପାଇଁ ମସୁଧା ଚଳାଇ ଥିଲେ ସେମାନଙ୍କ ମଧ୍ୟରୁ 'ବୁଇଲମ' ଅନ୍ୟତମ । ୧୯୨୧ ମସିହାରେ ପ୍ୟାରିସର ରୁଡ଼୍ ସମରାଡ଼ ଛାତ୍ରାବାସରେ ରହୁଥିବା ସମୟରେ ବିପ୍ଳବୀ ହୋ-ଚି-ମିନଙ୍କ ସହିତ ତାଙ୍କର ଦେଖା । ସେତେବେଳେ ସେ ନ୍ୟୁଏନ-ଆଇ-କୋକ୍ ନାମରେ ପରିଚିତ । ବିଭିନ୍ନ ହଷ୍ଟେଲକୁ ଯାଇ ପ୍ରତିଶ୍ରୁତିବାନ୍ ଛାତ୍ରମାନଙ୍କୁ ସେ କିପରି ଦେଶପ୍ରେମ ଆଡ଼କୁ ପଠାଇ ପାରୁଥିଲେ, ନିମ୍ନୋକ୍ତ ଟିପପଣୀ ତାର ଏକ ଜ୍ୱଳନ୍ତ ଉଦାହରଣ । ସେହିଦିନଠାରୁ ବୁଇଲମ ତାଙ୍କ ସହିତ ସହଯୋଦ୍ଧା, ସହକର୍ମୀ ପରି କାମ କରି ଆସିଛନ୍ତି । ବୁଇଲାମ୍ ଲେଖିଛନ୍ତି :

ହାଇଫଙ୍ଗ ପ୍ରଦେଶରେ ଭାମଗାଁର ଅଧିକାଂଶ ବାସିନ୍ଦା ପ୍ରାୟ ସାରଙ୍ଗ । ବର୍ଷ ବର୍ଷ ଧରି ଫରାସୀ ବଣିକମାନଙ୍କ ଜାହାଜରେ କୁଲିଗିରି କରି, ନିର୍ଯ୍ୟାତିତ, ନିଷ୍ପେଷିତ ଜୀବନ କଟାଇ ଥିବାରୁ ସେମାନେ ସ୍ୱଭାବତଃ ଫ୍ରାନସ ବିରୋଧୀ । ସେହି ଗ୍ରାମରେ ମୋର ଜନ୍ମ ହୋଇଥିଲା ଏବଂ ମୋ'ର ବାପା ଜଣେ ନାବିକ । ବାହାର ଦୁନିଆକୁ ବୁଲିଦେଖିବା ପାଇଁ ପିଲାଦିନରୁ କିଛି କମ୍ ସଉକ ନ ଥିଲା ମୋର ! ଯେତେବେଳେ ବୟସ ମାତ୍ର ୧୫ ବର୍ଷ ସେତେବେଳେ ଗୋଟିଏ ବିଦେଶୀ ଜାହାଜରେ ନିଯୁକ୍ତି ପାଇ ମୁଁ ଫ୍ରାନସ ଚାଲିଗଲି । ବିଶାଳ ସମୁଦ୍ରର ନୀଳଜଳରାଶି ଉପରେ ଯେତେବେଳେ ସେହି ବାଣିଜ୍ୟପୋତ ନିଜର ଗନ୍ତବ୍ୟସ୍ଥଳୀ ଅଭିମୁଖେ ଯାତ୍ରା ଆରମ୍ଭ କଲା, ସେତେବେଳେ ମୋର ଗର୍ବ କହିଲେ ନ ସରେ ।

"ବିଦାୟ ମୋ ପ୍ରିୟ ଜନ୍ମଭୂମି । ଏଠାରେ କେବଳ ଦାରିଦ୍ର୍ୟ ଓ ଯାତନା ହିଁ ରହିଛି । ମୁଁ ସବୁଦିନ ପାଇଁ ତୁମକୁ ଛାଡ଼ି ଯାଉଛି । ଆଉ କେବେ ହୁଏତ ଜୀବନରେ ଦେଖାହୋଇ ନ ପାରେ ।" ଆପଣା ଅନ୍ତରରେ ଏହି ବ୍ୟଥାପ୍ଲୁତ ଭାଷାକୁ ଅନୁସରଣ କରୁଥିଲି । ମୁଁ

ମାର୍ସେଲସ ବନ୍ଦରରେ ଜାହାଜ ପହଞ୍ଚିଲା । ଜାହାଜରୁ ଓହ୍ଲାଇଲା ପରେ ମୁଁ ଅନୁଭବ କଲି ଯେପରି ମୋ ଦେହର ସର୍ବାଙ୍ଗ ଶରୀରରେ ବିପ୍ଳବର ଏକ ଉଦ୍‌ଗୀରଣମୁଖୀ ଲାଭା ସ୍ରୋତ । ୧୯୧୯ର ଶେଷ ଭାଗ । ରୁଷ୍ ବିପ୍ଳବକୁ ବଧାଇ ଜଣାଇବା ପାଇଁ ଏକ ଫରାସୀ ନୌବହରର କୃଷ୍ଣସାଗର ଉପକୂଳରେ ଦଣ୍ଡାୟମାନ । ସେଦିନର ଘଟଣା ଆଜି ମଧ୍ୟ ଜନମାନସରେ ଜୀବନ୍ତ । ବିପ୍ଳବର ବେଗମୟ ସ୍ରୋତରେ ଏ ମାଟି ଧୋଇହୋଇ ଯାଇଛି । ଫରାସୀ ନାବିକମାନଙ୍କ କାହାଣୀ ଶୁଣି ସେ ଅଭିଭୂତ ହୋଇ ପଡ଼ିଥିଲେ । ଲାଲ ଝଣ୍ଡା ହଲାଇ ସେମାନେ ଶ୍ରମିକ ଆନ୍ଦୋଳନକୁ ଅଭିନନ୍ଦନ ଜଣାଇ ଥିଲେ । ନୌସେନାରେ କାମକରୁଥିବା କର୍ମଚାରୀ ଏପରିକି ତାଙ୍କର ସେନାପତିଙ୍କୁ ଜାହାଜ ମଧ୍ୟରେ ବନ୍ଦୀ କରି ଦେଶକୁ ପଠାଇ ଦେଇଥିଲେ ।

କୋଲେନ ବନ୍ଦରରେ ଜାହାଜ ଅଟକିଲା । ତତ୍‌କାଳୀନ ଫରାସୀ ପ୍ରଧାନ-ମନ୍ତ୍ରୀ କ୍ଲିମାନସୁ ଉକ୍ତ ନୌବାହିନୀଙ୍କୁ କାର୍ଯ୍ୟରୁ ଅନ୍ତର କରି ଦେଲେ । ଫଳରେ ସେମାନେ ମାଲବାହୀ ଜାହାଜରେ କାମ କଲେ । କୃଷ୍ଣସାଗରର ବିଦ୍ରୋହୀଭାବେ ସେମାନେ ଅଧିକ ସମ୍ମାନ ଓ ଶ୍ରଦ୍ଧାର ପାତ୍ର ହେବାକୁ ଲାଗିଲେ । ମହୁମାଛି ଫୁଲର ରେଣୁକୁ ବୋହିନେଲା ପରି 'କୃଷ୍ଣସାଗର ବିଦ୍ରୋହ'ର ଗାଥାକୁ ମାଲବାହୀ ଜାହାଜର ନାବିକ କର୍ମଚାରୀମାନେ ଦୂରଦୂରାନ୍ତକୁ ବୋହିନେଇ ଚଳେ ।

ଏହି ବିଦ୍ରୋହର କାହାଣୀ ଶୁଣିବା ପରେ ମୋ ମନରେ ନୂତନ ବେଦନା ଜାଗ୍ରତ ହୋଇଛି । ଫ୍ରାନ୍‌ସକୁ ଯିବା ବାଟରେ ମୁଁ ଦେଖିଛି ସବୁ ଦେଶରେ କିଛି ନା କିଛି ଅଛି । କିନ୍ତୁ ଆନାମୀମାନେ ସର୍ବହରା । ସେମାନଙ୍କର କିଛି ନାହିଁ । ଜାପାନର ମଧ୍ୟ ନିଜର ଜାହାଜ ଅଛି । ଦୁଃଖ ଓ କ୍ରୋଧରେ ହୃଦୟ ଥରି ଉଠିଲା । ଆଜି ଆବିଷ୍କାର ହୋଇଛି—ପୃଥିବୀରେ ସମାଜବାଦୀ ବିପ୍ଳବ ଜୀବିତ—ଲେନିନ୍ ଏବଂ ଶ୍ରମିକଶ୍ରେଣୀ ଜୀବନ୍ତ । କିଏ ଏହି ଶ୍ରମିକଶ୍ରେଣୀ ? ମୁଁ ନିଶ୍ଚୟ ସେମାନଙ୍କ ମଧ୍ୟରୁ ଜଣେ । ସୋଭିଏତ ସ୍ୱପ୍ନ ସହିତ ମୁଁ ନିଜକୁ ନିଜେ ବାନ୍ଧି ଦେଉଥିଲି ।

ଆଉ ଏକ ଘଟଣା ମୋ ମନରେ ଗଭୀର ରେଖାପାତ କରିଛି । ୧୯୨୦ର ଅବିସ୍ମରଣୀୟ ମୁହୂର୍ତ୍ତଗୁଡ଼ାକରେ ଅନେକ ଘଟଣା ଘଟିଛି । ସେହି ବର୍ଷ ଜୁନରେ ଭର୍ସାଲସଠାରେ ସାମ୍ରାଜ୍ୟବାଦୀମାନଙ୍କର ସମ୍ମିଳନୀ ସ୍ଥିର ହୋଇଛି । ପୃଥିବୀର ଉପନିବେଶବାଦୀ ଶକ୍ତିମାନେ ନିଜ ନିଜ ଉପନିବେଶରେ ଥିବା ହାଟ, ବଜାର-ମାନଙ୍କୁ ଅଲଗା ଅଲଗା କରିଦେବା ପାଇଁ ବଦ୍ଧପରିକର । କିନ୍ତୁ ହଠାତ୍ ଏକ ବିରାଟ ସମସ୍ୟାର ସମ୍ମୁଖୀନ ସେମାନେ । ନୁଏନ୍-ଆଇ-କୋକ୍ ନାମକ ଜନୈକ ଆନାମୀ,

ଭିଏତନାମୀ ଜନତାର ସ୍ୱାଧୀନତା, ଆତ୍ମପ୍ରତ୍ୟୟ ଓ ଆତ୍ମସ୍ୱୀକୃତ ଦାବୀ କରୁଛି। ଫରାସୀମାନଙ୍କ ଉପରେ ସତେ ଯେପରି ବୋମା ବିସ୍ଫୋରଣ ହେଲା; କିନ୍ତୁ ସେମାନେ ଜାଣିଲେ ବିଦ୍ରୋହର ଅକାଳ ତୋଫାନ ସ୍ୱାଧୀନତାର ପ୍ରଥମ ବାର୍ତ୍ତା ସୁଦ୍ଧାଇ ଦେଇ ଗଲା।

ଏହି ଚୈତାଳୀ ବାତ୍ୟା ସେଦିନର ଅଦିନ କୁହୁଡ଼ି ସବୁକୁ ଉଡ଼ାଇ ନେଇ-ଥିଲା। ପ୍ରତି ଭିଏତନାମୀ, ପ୍ରତି ଆନାମୀର ହୃଦୟ-ବଗିଚାରେ ଗୁଞ୍ଜିଦେଇ ଥିଲା ଅଗଣିତ ଜୀବନମୁଖୀ ଭ୍ରୂଣ। ସମସ୍ତେ ସେଦିନ ଆନନ୍ଦରେ ବିହ୍ୱଳ ହୋଇ ଉଠି-ଥିଲେ। ପରସ୍ପରକୁ ହୃଦୟରେ ଜଡ଼ାଇ ଧରିଥିଲେ। ଯେଉଁମାନେ ଘରଦ୍ୱାର, ଗାଁଗଣ୍ଡା, ବଣଭୂଇଁ ଛାଡ଼ି ପେଟ ପିଠି ନିମନ୍ତେ ସହର ଆସିଥିଲେ, ସେ ସମସ୍ତେ ପୁଣି ଫେରିବେ ପ୍ରିୟତମ ପିତୃଭୂମିକୁ। ତା ପାଇଁ ଶେଷ ନିଃଶ୍ୱାସ ଦେଇ ସଂଗ୍ରାମ କରିବେ। ସମସ୍ତଙ୍କର ଆଖି ଆଜି ତା ଉପରେ। ଅସୀମ ଦମ୍ଭ ନେଇ ବିଦେଶୀ ବେପାରୀଙ୍କ ଦାଣ୍ଡଦ୍ୱାରେ ଠିଆ ହୋଇଛି ସେ, ନିଜ ଦେଶର, ନିଜ ବାପ ଭାଇଙ୍କର ମୁକ୍ତି ଦାବୀ କରି। ଫ୍ରାନସର ହୃତ୍‌ପିଣ୍ଡ ଉପରେ ପାଦ ଦେଇ ସେ ମହାଶକ୍ତିମାନଙ୍କ ସହିତ ଲଢ଼ାଇ କରୁଛି। ଶାନ୍ତିକାମୀ ବିଶ୍ୱବାସୀଙ୍କର ଭରସାଭରା ଚକ୍ଷୁ ଆଜି ତା ଉପରେ ନିବଦ୍ଧ। ତା' ପରଠାରୁ ଯେ କୌଣସି ଭିଏତନାମୀ ଯେତେବେଳେ ପରସ୍ପର ସହିତ ଆଲୋଚନା କରନ୍ତି, ପ୍ରସଙ୍ଗର ପ୍ରଥମ ବିଷୟବସ୍ତୁ ହୁଏ ସେହି ବ୍ୟକ୍ତି—'ନ୍ଗୁଏନ୍-ଆଇ-କୋକ୍' ଏବଂ ଭିଏତନାମର ସ୍ୱାଧୀନତା ଓ ସ୍ୱାୟତ୍ତଶାସନ। 'ନ୍ଗୁଏନ୍-ଆଇ-କୋକ୍'—ଏହି ନାମର କି ନାହିଁ ନ ଥିବା ଆକର୍ଷଣ !! ଯେତେବେଳେ ସେମାନେ ଏହି ନାମ ଉଚ୍ଚାରଣ କରନ୍ତି, ସେତେବେଳେ ମନେ ହୋଇଛି ସତେ ଯେପରି କିଛି ନା କିଛି ମହତ୍ତ୍ୱର କାର୍ଯ୍ୟରେ ହାତ ଦେଇଛନ୍ତି ଏବଂ ଭବିଷ୍ୟତ ପାଇଁ ଅନେକ କିଛି କରି ପାରିବାର ଶକ୍ତି ଯେପରି ଭିତରେ ଭରପୂର !!

ଆଟଲାଣ୍ଟିକ ଜାହାଜ କମ୍ପାନୀରେ କାମ କରିବା ପାଇଁ ମୁଁ ମାର୍ଶେଲିସ-ଠାରୁ ଲେ-ହାଭେର ଯାତ୍ରା କଲି। ଉକ୍ତ କମ୍ପାନୀର ଜାହାଜଗୁଡ଼ିକ ଉତ୍ତର-ଫ୍ରାନସ, କାରିବିଆନ ଦ୍ୱୀପପୁଞ୍ଜ, ମାକ୍ସିକୋ, ପାନାମା, ଇକ୍ୱାଏଡ଼ର, ପେରୁ ଏବଂ ସମସ୍ତ ସମୟରେ ସାନଫ୍ରାନସିସ୍କୋ ଓ କାନାଡ଼ା ମଧ୍ୟରେ ଯାତାୟତ କରୁଥିଲା। ୪।୫ ମାସର ପ୍ରତ୍ୟେକ ରହଣୀ ପରେ ମୁଁ ଆସି ମୋର ପୁରୁଣା ସହଯୋଗୀ-ମାନଙ୍କ ସହିତ ସାକ୍ଷାତ କରୁଥିଲି। ସେତେବେଳେ ସେମାନଙ୍କର ସଂଖ୍ୟା ମାତ୍ର କେତେ ଡଜନ ମଧ୍ୟରେ ସୀମାବଦ୍ଧ ଥିଲା। କିନ୍ତୁ ପ୍ରସଙ୍ଗର ସେହି ନାୟକ ନ୍ଗୁଏନ୍-ଆଇ-କୋକ୍ ଏବଂ ଭିଏତନାମର ସ୍ୱାଧୀନତା ହିଁ ସବୁବେଳେ ଆଗରେ ଛିଡ଼ା ହୋଇଯାଉଥିଲା।

ହୁଏନ୍-ଆଇ-କୋକ୍‌ର କାହାଣୀ ସେମାନଙ୍କ ହୃଦୟବୃତ୍ତିରେ ନିଆଁ ଧରାଇ ଦେଇ ଯାଇଥିଲା । ତାର ଜ୍ୱଳମାନ ଦୀପଶିଖା ଆଜି ପାର୍ଶ୍ୱସ୍ଥ ଅନ୍ଧକାରକୁ ଦୂରେଇ ଦେବାପାଇଁ ଉଦ୍‌ଗ୍ରୀବ । ଗୋଟିଏ ଘଟଣା ମନେ ପଡ଼େ—ଥରେ ମୁଁ ପେରୁରେ ଜଣେ ଚୀନା ବନ୍ଧୁଙ୍କୁ ଭେଟିଥିଲି, ସେ କି ପୂର୍ବରୁ ବହୁତ ବର୍ଷ ଧରି ଭିଏତନାମରେ ରହିଥିଲେ ଏବଂ ଭିଏତନାମୀ ଭାଷାରେ ଅନର୍ଗଳ କହି-ପାରୁଥିଲେ । ସେ ଯେତେବେଳେ ଜାଣିଲେ ଯେ ମୁଁ ଜଣେ ଭିଏତନାମୀ, ତା ପରଠାରୁ ସେ କେବେହେଲେ ମୋ କଥାକୁ ଛଡ଼ା ଦେଇ ନାହାନ୍ତି ଏବଂ ସବୁବେଳେ ଭିଏତନାମରେ ଘଟିଥିବା ନିତିଦିନିଆ ଘଟଣା, ଭିଏତନାମୀ ଜନତାର ଦୁଃଖ ଯନ୍ତ୍ରଣା କଥା ପଚାରୁଛନ୍ତି । ମୋ ଦେଶ ପାଇଁ ଏହି ବିଗଳିତ ପ୍ରେମ ହିଁ ମୋତେ ସେ ଅଡ଼କୁ ଅଧିକରୁ ଅଧିକ ଟାଣି ନେଇଥିଲା ।

୧୯୨୧ରେ ଫରାସୀ ସରକାର ମାର୍ସେଲ୍‌ସଠାରେ ଉପନିବେଶୀ ପଣ୍ୟ-ଦ୍ରବ୍ୟମାନଙ୍କର ଏକ ବିରାଟ ପ୍ରଦର୍ଶନୀ ଆୟୋଜନ କଲେ । ଏହା'ର ମୁଖ୍ୟ ଉଦ୍ଦେଶ୍ୟ ଥିଲା—ଉପନିବେଶମାନଙ୍କରେ ଶୋଷଣକୁ ବଳବତ୍ତର ରଖିବା ପାଇଁ ଆଲବର୍ଟ ସାରାଉଟ୍ ଯେଉଁ ନୀତି ପ୍ରଣୟନ କରିଥିଲେ, ତା ପ୍ରତି ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି-ମାନଙ୍କୁ ଆକୃଷ୍ଟ କରିବା ଫଳରେ ବିଦେଶୀ ବେପାରୀ ଓ ପୁଞ୍ଜିପତିଗୋଷ୍ଠୀ ଉପନିବେଶମାନଙ୍କରେ ଘରୋଇ ବ୍ୟବସାୟ ପ୍ରତିଷ୍ଠା କରିବା ନିମନ୍ତେ ଅଧିକା ପୁଞ୍ଜି ଖଟାଇ ପାରିବେ । ଏହି ପ୍ରଦର୍ଶନୀରେ ଏକ ଲଜ୍ଜାଜନକ ପରିସ୍ଥିତି ଉପୁଜିଥିଲା । ଭିଏତନାମ ଉପନିବେଶର ପ୍ରତିନିଧିତ୍ୱ କରୁଥିଲା, ରିକ୍ସାକଡ଼ରେ ଲଙ୍ଗଳା ହୋଇ ଝାଡ଼ା ବସିଥିବା ଗୋଟିଏ ରୁଗ୍‌ଣ ବାଳକ ଏବଂ ଆଉ ଗୋଟିଏ ରିକ୍‌ସା । କିନ୍ତୁ ଦୁର୍ଭାଗ୍ୟର ବିଷୟ, ପ୍ରଦର୍ଶନୀ ପରିଚାଳନା ଦାୟିତ୍ୱରେ ଥିବା ଫରାସୀମାନେ ଏହି ରିକ୍‌ସା ଚଳାଇବା ପାଇଁ କୌଣସି ଗୋଟିଏ ହେଲେ ଭିଏତନାମୀଙ୍କୁ ଭଡ଼ାରେ ମଧ୍ୟ ପାଇଲେ ନାହିଁ । ଏହି ଘଟଣା ଯୋଗୁଁ ଆମେ ରାଗରେ ଜଳି ଯାଇଥିଲୁ । ଅନେକ-ଥର ସିନେମା ହଲ୍‌ରେ ନିଆଁ ଲଗାଇ ଦେବାକୁ ଚେଷ୍ଟା କରିଛୁ । କିନ୍ତୁ ଠିକ ସେହି ସମୟରେ ଆମ ହାତରେ ଅନେକ ପତ୍ର ପତ୍ରିକା ପଡ଼ିଛି । ଉପନିବେଶୀ ପ୍ରଦର୍ଶନୀ, ବର୍ଣ୍ଣବୈଷମ୍ୟ ନୀତି ଏବଂ ଫରାସୀ ଉପନିବେଶବାଦର ଶୋଷଣମୁଖୀ ଶାସନର ତୀବ୍ର ସମାଲୋଚନା କରି ଲେଖାଯାଇଥିବା ଉପାଦେୟ ନିବନ୍ଧମାନ ଆମ ଆଖି ଆଗକୁ ଆସିଛି । ହୁଏନ-ଆଇ-କୋକଙ୍କଦ୍ୱାରା ଲିଖିତ ଏହି ଲେଖାମାନ ଆମ ହୃଦୟରେ ଅତି ପ୍ରିୟତମ ସ୍ଥାନ ଅର୍ଜନ କରିଛି ।

୧୯୨୨ରେ ମୁଁ ଲାଟିନ ଆମେରିକାରୁ ଫେରିବାର ଠିକ୍ ପରେ ପରେ ଶ୍ରମିକ ସଙ୍ଗଠନ ଦାୟିତ୍ୱରେ ଥିବା ଜଣେ ଫରାସୀ ବନ୍ଧୁ ଲେ ପାରିଆର କେତେ-

ୟୁଙ୍ଗ୍‌ର ସଙ୍କଳନ ମୋ ହାତକୁ ବଢ଼ାଇ ଦେଇଥିଲେ । ସେସବୁ ୟୁଏନଙ୍କଦ୍ୱାରା ପ୍ରକାଶିତ । ମୋ ହୃଦୟ ଭିତରେ ଲିଭି ଯାଇଥିବା ଅଗ୍ନିକୁଣ୍ଡ ସତେ ଯେପରି ପୁନର୍ବାର ଜଳିଉଠିଛି । ସମସ୍ତ ପ୍ରକାର ଆବେଗ ଓ ଉତ୍କଣ୍ଠାରେ ମୁଁ ତାକୁ ପଢ଼ିଗଲି । ନିଜେ ପଢ଼ିସାରିବା ପରେ ମୁଁ ମୋ ଦେଶର ଆଉ କେତେଜଣଙ୍କୁ ପଢ଼ିବାକୁ ଦେଇଛି ଏବଂ ଏକାଠି ବସି ପରସ୍ପର ମଧ୍ୟରେ ଏ ବିଷୟରେ ଆଲୋଚନା ମଧ୍ୟ କରିଛୁ । ଆମ ସମସ୍ତଙ୍କ ଆଖିକୋଣରେ ଜମାଟବନ୍ଧା ଲୁହ । ଏତେ କ୍ଷୁଦ୍ର ସୀମିତ ଲେଖାର ଏପରି ମନଜୟୀ ଶକ୍ତି ଅଛି ! ଯେ କି କୋଟି କୋଟି ଦଳିତ, ପୀଡ଼ିତ, ଦରିଦ୍ର କୃଷ୍ଣଙ୍କର ହାତରେ ନିଜ ଦେଶକୁ ସମର୍ପି ଦେଇ ଆସିଥିବା ଭାଗ୍ୟହୀନ ସର୍ବସ୍ୱାନ୍ତ ମଣିଷର ହୃଦୟରେ, ଆତ୍ମାରେ ଆଶାର ଜୁଆର ଛୁଟାଇ ପାରେ !!

ଏହି ଲେଖା କାମ କରିବା ପାଇଁ ଅଧିକ ପ୍ରେରଣା ଯୋଗାଇଲା । କିନ୍ତୁ ପଥ କାହିଁ ? ପାଥେୟ କାହିଁ ? ମନରେ ଆସିଲା ୟୁଏନ-ଆଇ-କୋଙ୍କ ସାକ୍ଷାତରେ ହିଁ ସବୁର ସମାଧାନ ହୋଇପାରେ । ତାଙ୍କୁ ଦେଖା କରିବା ପାଇଁ ମୋ ଭିତରେ ଅନେକ ଦିନର ପୁଞ୍ଜିଭୂତ ଆକାଂକ୍ଷା । କିନ୍ତୁ ତାଙ୍କର ଠିକଣା ସଠିକ୍ ଭାବେ ଜଣା ନ ଥିଲା । ଭୟ ହେଉଥିଲା, ତାଙ୍କୁ ଖୋଜିବାକୁ ଯାଇ ମୁଁ ହୁଏତ ବିଶାଳ ପ୍ୟାରିସ ସହରର ଗଳିକନ୍ଦିରେ କେଉଁଠି ଲୀନ ହୋଇଯିବି । କିନ୍ତୁ ବନ୍ଧୁମାନେ ମୋତେ ହିଁ ଠିକ୍ କଲେ ତାଙ୍କ ସହିତ ସାକ୍ଷାତ କରିବା ପାଇଁ । ହାତରେ ଲେ ପାରିଆର କେତେ ଖଣ୍ଡ ଧରି ମୁଁ ଆଗ୍ରହର ସହିତ ୟୁଏନର ଅନ୍ୱେଷଣରେ ବାହାରି ପଡ଼ିଲି । ସେତେବେଳେ ମନେ ହେଉଥିଲା ସତେ ଯେପରି ଆମର ଏହି ଉତ୍କଣ୍ଠା ୟୁଏନ୍-ଆଇ-କୋକ୍‌ଙ୍କ ପାଖରେ ପହଞ୍ଚିଛି ଏବଂ ତାଙ୍କୁ ଥରେ ପାଇଲା ପରେ ଆମର କୌଣସି ଭୟ ଏହି ପ୍ୟାରିସ ସହରରେ ରହିବ ନାହିଁ ।

ଦିନ ଗୋଟାଏ ବେଳେ ମୋର ଟ୍ରେନ ପ୍ୟାରିସଠାରେ ପହଞ୍ଚିଲା । ପୀତବର୍ଣ୍ଣ ଯେ କୌଣସି ଲୋକ ମୋ ଆଖି ଆଗରେ ପଡ଼ୁଥିଲା, ମୁଁ ତାକୁ ଲେ-ପୋରିଆ ଦେଖାଉଥିଲି ଏବଂ ବାଟ ପଚାରୁଥିଲି । କାରଣ ମୋର ଧାରଣା ଥିଲା, ପ୍ରତ୍ୟେକ ପୀତବର୍ଣ୍ଣର ବ୍ୟକ୍ତି ହିଁ ଉପନିବେଶରୁ ଆସିଛନ୍ତି ଏବଂ ପ୍ୟାରିସର ପ୍ରତ୍ୟେକଟି ନାଗରିକ ଲେ-ପେରିଆ ସମ୍ବନ୍ଧରେ ଅବହିତ । ପ୍ରକୃତରେ ଅନେକ ମୋତେ ବାଟ ଦେଖାଇ ଦେଇଛନ୍ତି । ଶେଷକୁ ଷଷ୍ଠ ଜିଲ୍ଲାରେ ଥିବା ମାର୍କେଟ-ଡେମ୍-ପାଟ୍ରିଅକ୍ ଗଳିରେ ମୁଁ ପହଞ୍ଚିଲି । ଲେ-ପେରିଆର ଅଫିସ ସମ୍ମୁଖସ୍ଥ ଏକ ଗ୍ରେଟ ବଜାରକୁ ମୁହଁ କରି ଠିଆ ହୋଇଛି । ଅଫିସର ସାମନାରେ ଛୋଟ ଚଟିବାକ୍ସରେ ଲେ-ପେରିଆ ନାମ ଲେଖା ହୋଇଛି । ଅଫିସ, ତଳ ମହଲାରେ ଥିବା ଦୁଇଟି ଛୋଟ କୋଠରୀରେ ଚାଲୁଥିଲା । ଦୁଇଜଣ ଉତ୍ତର-ଆଫ୍ରିକୀୟ ଲୋକ ଲଫାପା ଖୋଲି ଲେଖାଲେଖିରେ ଖୁବ୍ ବ୍ୟସ୍ତ ଥିଲେ ।

ସେମାନେ ମୋତେ ସାଦର ଅଭ୍ୟର୍ଥନା ଜଣାଇଲେ । ଅପେକ୍ଷା କରିବା ପାଇଁ ଅନୁରୋଧ ଜଣାଇ ପୁନର୍ବାର କାର୍ଯ୍ୟରେ ବ୍ୟସ୍ତ ରହିଲେ । ସେମାନଙ୍କ କଥୋପକଥନ ମୋ କାନରେ ବାଜୁଥାଏ । ଅନେକବାର ସେମାନେ ନିଜ ଭିତରେ କଥାବାର୍ତ୍ତା ହେଉଛନ୍ତି—ୟୁଏନ କ'ଣ ଏହା ପଢ଼ି ପାରିଛନ୍ତି ? ୟୁଏନ ଏ ଲେଖା ଦେଖି ପାରିଛନ୍ତି ? ଇତ୍ୟାଦି···ଇତ୍ୟାଦି··· । ଜଣା ପଡ଼ି ଯାଉଥିଲା ସେମାନଙ୍କ ହୃଦୟରେ ୟୁଏନ ପାଇଁ ଗଭୀର ଶ୍ରଦ୍ଧା ଓ ସମ୍ମାନ । ବସିବା ମଧ୍ୟରେ ଅଫିସର ଘର କାନ୍ଥ ମଧ୍ୟରେ ଆଖି ବୁଲାଇ ଆଣିଲି । ଗୋଟିଏ ବଡ଼ ଟେବୁଲ । ଇଂରାଜୀ, ଫରାସୀ, ଜର୍ମାନୀ ଭାଷାରେ ଗଦାଗଦା ଖବର କାଗଜ, କେତେଗୁଡ଼ିଏ ଚେୟାର ଏବଂ କାନ୍ଥରେ ଝୁଲୁଥିବା ଏକ ବଡ଼ ମାନଚିତ୍ର । ମୁଁ କୌତୂହଳରେ ଉଠି ଚାଲିଗଲି ମାନଚିତ୍ର ନିକଟକୁ । ଇଣ୍ଡୋଚୀନ ଲେଖାଥିବା ଜାଗାରେ ଅନେକ ଗ୍ରେଟ ବଡ଼ ପେନସିଲର ରଙ୍ଗିନ ଦାଗ । ଇଚ୍ଛା କଲେ ଜଣେ ଠିଆ ହୋଇ ଅତି ସହଜରେ ସେ ସ୍ଥାନ ଦେଖିପାରିବ ।

କିଛି ସମୟ ପାଇଁ ମୋ ପାଦ ଅଟକି ଗଲା ସେଠାରେ । ପ୍ୟାରିସଠାରୁ ଭିଏତନାମ କେତେ ଦୂର !! କିପରି ମୋ ଦେଶର ଲୋକମାନେ ବଞ୍ଚିଛନ୍ତି ?

ବହୁତ ସମୟ ଧରି ମୁଁ ଅପେକ୍ଷା କରିଛି ।

ଠିକ୍ ପାଞ୍ଚଟା ବେଳକୁ ଉତ୍ତର-ଆମେରିକୀୟମାନେ ମୋତେ ଜଣାଇଲେ ଯେ ୟୁଏନ ସେଦିନ ଆଉ ଅଫିସ ଆସିବେ ନାହିଁ । ଠିକଣା ନେଇ ସେ ରହୁଥିବା ଗବେଲିନ୍‌ସ ଗଳିକୁ ମୁଁ ଗଲି । ତ୍ରୟୋଦଶ ଜିଲ୍ଲା ଅଫିସରୁ ପ୍ରାପ୍ତ ଏକ କିଲୋମିଟର ରାସ୍ତା । ଗବେଲିନ୍‌ସ ଗଳିର ଛ ନମ୍ବର ଘର ଖୋଜି ବାହାର କଲି । ତିନି ମହଲା । ହୃଦୟ ମୋର ଅଜଣା ଆଶଙ୍କାରେ ଥରଉଠୁଥାଏ । ୟୁଏନ-ଆଇ-କୋକ୍ କିପରି ଲୋକ ? ମୋର ଆଗମନ ତାଙ୍କ ମନରେ କି ଧାରଣା ସୃଷ୍ଟି କରିବ ? ଭିତର କୋଠରୀରୁ ଭାରି ପାଦଶବ୍ଦର ଆବାଜ । ଦୁଆର ଖୋଲିଲି । ପ୍ରାପ୍ତ ତିରିଶ ବର୍ଷ ବୟସ୍କ ଦୀର୍ଘକାୟ ଜଣେ ବ୍ୟକ୍ତି ମୋ ସମ୍ମୁଖରେ ଠିଆ ହୋଇଛନ୍ତି । ମୁଖରେ ତାଙ୍କର ବଲେଲ ହସ ।

"କାହାକୁ ଖୋଜୁଛ ତୁମେ ଯୁବକ (ସେତେବେଳେ ମୋର ବୟସ ପ୍ରାପ୍ତ ୨୦ ବର୍ଷ ତଳକୁ) ?"

"ୟୁଏନ ଆଇ କୋକଙ୍କୁ ।"

"ଭିତରକୁ ଆସନ୍ତୁ ।"

ମୋ କଳ୍ପନାର ୟୁଏନ ଆଇ କୋକ୍ ଆଗରେ ଠିଆ ହୋଇଛନ୍ତି । ଦ୍ୱାର-ବନ୍ଧରେ ହାତ ଦେଇ ହସି ହସି ମୋତେ ସ୍ୱାଗତ ଜଣାଉଛନ୍ତି । ଆଜି ବି ମନେ

ପଡ଼େ, ସେତେବେଳେ କିଛି ସମୟ ପାଇଁ ମୁଁ ସ୍ତମ୍ଭୀଭୂତ ହୋଇ ଠିଆହୋଇ ଯାଇଥିଲି । ଗୁଏନର କ୍ଷୀଣ ଶରୀର ଉପରେ ମୋର ଆଖି ନିର୍ବିବାଦରେ ବୁଲି ଆସୁଥିଲା । ଏ ସେହି ଲୋକ ! ଯେ ମୋ ପାଇଁ ପ୍ରଥମେ ଦ୍ୱାର ଖୋଲିଥିଲା ! ଏହି ବ୍ୟକ୍ତି ସେହି ଏବଂ ଏକ । ସେହିପରି ଦୀର୍ଘ, ରୁଗ୍ଣ ଏବଂ କ୍ଷୀଣ । ଦେହରେ କେତେ ଦିନର ପୁରୁଣା କଲାକୋର୍ଟ । ତାଙ୍କ ଉପରେ ବଡ଼ ବଡ଼ ଆଖିଯୋଡ଼ାକ ନିତ୍ୟ ଜୀବନ୍ତ ଓ ଜାଜ୍ୱଲ୍ୟମାନ । ତାଙ୍କ ପଛେ ପଛେ ମୁଁ କୋଠରି ଭିତରକୁ ପ୍ରବେଶ କଲି । ସବୁ ଯେପରି ମୋର ଆପଣାର ମନେ ହେଉଥିଲା । ଗୋଟିଏ ଛୋଟ କୋଠରିରେ ସାଧାସିଧା କେତେକ ଆସବାବପତ୍ର । ଗୋଟିଏ କୋଣରେ ଟେବୁଲ ଉପରେ ବହୁବିଧ ପତ୍ରପତ୍ରିକା ଜମା ହୋଇଛି । ନିକଟରେ ଗୋଟିଏ ଲୁହାଖଟ ଓ ଅଲମାରି । ବାସ୍, ସେତିକି ଆଉ କିଛି ନାହିଁ । କିନ୍ତୁ କୋଠରିଟି ବେଶ୍ ପରିଷ୍କାର ପରିଚ୍ଛନ୍ନ ଏବଂ ଆଲୋକରେ ପରିପୂର୍ଣ୍ଣ ।

ଗୁଏନ ମୋର ଘରଦ୍ୱାର, ବାପ ମା’, ସବୁକଥା ପଚାରିଲେ—ତାଙ୍କ ସାକ୍ଷାତ କରିବାର ଉଦ୍ଦେଶ୍ୟ,—ମୋର ଜାହାଜ ଯାତ୍ରା—ପ୍ୟାରିସରେ ରହଣୀକାଳ—ମୋର ଜୀବିକା ଇତ୍ୟାଦି ଇତ୍ୟାଦି । ସେତେବେଳେ ମୁଁ ଜାଣିଲି ଯେ ସେ ଦିନେ ଜାହାଜରେ କାମ କରୁଥିଲେ । ଏପରି କି ସେ ସାରଙ୍ଗମାନଙ୍କ ଭାଷା କହୁଥିଲେ । ସେ ବହୁତ ଜାଗା ଯାଇଛନ୍ତି । ମୋ ଦେଖିବାର ସମସ୍ତ ସ୍ଥାନ ସେ ଆଗରୁ ବୁଲି ଦେଖି ସାରିଛନ୍ତି । ସେହି ଦେଶରେ ଥିବା ଜନସାଧାରଣଙ୍କ ବିଷୟରେ ଜାଣିବା ପାଇଁ କେତେ ଆଗ୍ରହ ତାଙ୍କର !! ତାପରେ ଆମ ଆଲୋଚନା ନିଜ ଦେଶକୁ ଫେରି ଆସିଲା । ସେ ଯେତେବେଳେ ଜାଣିଲେ ଯେ ମୁଁ ସାଇଗନରୁ ଆସିଛି, ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ନଗ୍ରୋଡ଼ବନ୍ଧା ସେ । ସାଇଗନ ବିଷୟରେ ବହୁତ ପ୍ରଶ୍ନ । ତାର ବେନଥାନ୍ ବଜାର, ତାର ବନ୍ଦର, ହାଟ, ଘୋଡ଼ା ଦୌଡ଼ ପଡ଼ିଆ, ତାର ସବୁଜ-ଶ୍ୟାମଳ ନାରିକେଳବନ,...ଏପରି କେତେ କ’ଣ ?? ଭାବନାଗ୍ରସ୍ତ ତାଙ୍କ ହୃଦୟ-କନ୍ଦରରେ ସାଇଗନ ପାଇଁ କେତେ ବ୍ୟଥା ! ଛୋଟଠାରୁ ଆରମ୍ଭ କରି ବଡ଼ ଘଟଣାଟି ଯାଏ ସାଇଗନ ବିଷୟରେ ଜାଣିବା ପାଇଁ କେତେ ଆବେଗ ତାଙ୍କ ମନରେ ! କେତେ ଆମୋଦଦାୟକ ସେ ଆଲୋଚନା ! ସମୟ ଗଡ଼ିଯାଉଛି । ରାତି ନ’ଟା ବାଜିଲାଣି । ମୁଁ ଉଠିଲି ବିଦାୟ ନେବା ଲାଗି । ଆସନ୍ତାକାଲି ରବିବାର ସକାଳବେଳା ଆସିବାକୁ କହି ସେ ମୋତେ ଶୁଭରାତ୍ରି ଜଣାଇଲେ ।

କୋଠରିରେ ପ୍ରବେଶ କରୁ କରୁ ମୁଁ ବନ୍ଧୁଣା ଧରିଲି. ଚିନ୍ତାଗ୍ରସ୍ତ ମନ ଓ ହୃଦୟ ଦେଇ । ଗୁଏନ୍ କେତେ ପରିଚିତ ସତେ ! କେତେ ସରଳ ଅମାୟିକ

ତାର ବ୍ୟବହାର !! ଆଗଠାରୁ ମୋର ଶ୍ରଦ୍ଧା ଦ୍ୱିଗୁଣ ବଢ଼ିଗଲା ତାଙ୍କ ପାଇଁ । ମୋର ସମଗ୍ର ବିଶ୍ୱାସ ତାଙ୍କଠାରେ ଠୁଳ ହୋଇଗଲା । କାରଣ ମୋ ଜୀବନରେ ପୂର୍ବରୁ ଏପରି ବ୍ୟକ୍ତିଙ୍କୁ କେବେ ଭେଟି ନ ଥିଲି । ତାଙ୍କ ଭିତରେ ମୁଁ ଲକ୍ଷ୍ୟ କରୁଥିଲି ଭୟହୀନ ଶାନ୍ତି ଏବଂ ଉଦ୍ଦାମ ହୃଦୟର ସଙ୍ଗୀତ । ସେ ଏକ ଅଭୂତପୂର୍ବ ଆକର୍ଷଣର ବସ୍ତୁ । ତାଙ୍କ ସଂସ୍ପର୍ଶରେ ଯେ ଥରେ ଆସୁଥିଲା, ସେ ମନ୍ତ୍ରମୁଗ୍ଧ ପରି ପାଖରେ ଅଟକି ଯାଉଥିଲା ।

ପରଦିନ ସକାଳେ ଠିକ୍ ଆଠଟାବେଳେ ମୁଁ ଆସି ପହଞ୍ଚିଲି । ପୂର୍ବବତ୍ ସେହି ପୁରୁଣା କଳାକୋଟ । ମୋଟା ପୋଷାକ ଖଣ୍ଡି କରେ ସେ ମୋତେ ଅପେକ୍ଷା କରି ବସିଛନ୍ତି । କଥାବାର୍ତ୍ତା ଛଳରେ ଦୁଇଜଣ ବାହାରିଲୁ ଫ୍ରାନସ ରାଜଧାନୀ ପ୍ୟାରିସର ଏ ଗଳିରୁ ସେ ଗଳିଯାଏ । ତାଙ୍କ ପାଦରେ ବହୁତ ଦିନର ପୁରୁଣା ଓ ଛିଡ଼ା ଯୋତା । ଗୋଟିଏ ଘଣ୍ଟା ବୁଲିଲାପରେ ସେ ମୋତେ ଗୋଟିଏ କଳା ପ୍ରଦର୍ଶନୀକୁ ନେଇଗଲେ । ଚିତ୍ରକଳା ବିଷୟରେ ମୋର କିଛି ବି ଜ୍ଞାନ ନ ଥିଲା ସେତେବେଳେ । ବୟସ ବହୁତ କମ୍ । କିନ୍ତୁ ତାଙ୍କର ସାନ୍ନିଧ୍ୟ ମୋ ପାଇଁ ଥିଲା ଖୁବ୍ ଉପଭୋଗ୍ୟ । ଖୁବ୍ ଉନ୍ନତ ଧରଣର ଶତାଧିକ ଚିତ୍ରକଳା ସେଠାରେ ରଖା-ଯାଇଥିଲା । ଜନସମାଗମ ତତୋଧିକ । ଲୁଏନ ସେଠି ସମସ୍ତଙ୍କ ମଧ୍ୟରେ ପରିଚିତ । ଅନେକ ଲୋକ ଆସୁଥାନ୍ତି ତାଙ୍କ ସହିତ କରମର୍ଦ୍ଦନ ପାଇଁ ଏବଂ ଆଉ କେତେକ ଟିକେ ଆଳାପ ଜମାଇ ଦେବା ପାଇଁ । ତାଙ୍କର ମନ କିନ୍ତୁ କାନ୍ଥରେ ଟଙ୍ଗା ଯାଇଥିବା ଚିତ୍ରପଟ ଉପରେ । ଫରାସୀ ବନ୍ଧୁମାନଙ୍କ ସହିତ ଆଳାପ ଆଲୋଚନା ଓ ମନ୍ତବ୍ୟ ଦେବାରେ ବ୍ୟସ୍ତ । ତାଙ୍କ ମନ୍ତବ୍ୟରୁ ମୁଁ କେବଳ ବୁଝୁଥାଏ ଫରାସୀ ସଂସ୍କୃତି ଓ ଚିତ୍ରକଳା ଉପରେ ତାଙ୍କର ଦକ୍ଷତା କିଛି କମ୍ ନୁହେଁ । ମୁଁ ମନେ ରଖିଛି — ଲୁଏନ କିପରି ଗ୍ରାଇଲଣ୍ଡ କୋଟିଅରଙ୍କଦ୍ୱାରା ଅଙ୍କିତ ଚିତ୍ରକୁ ବାରମ୍ବାର ଚାହୁଁଥାନ୍ତି । କିଛିବର୍ଷ ପରେ ମୁଁ ଯେତେବେଳେ ପୁଞ୍ଜିବାଦୀ ଡାକ୍ତରଙ୍କର କଳା-ନିକେତନରେ କାମ କରୁଥିଲି, ସେତେବେଳେ ସେ 'ଲା-ହ୍ୟୁମାନିଟେ' ଏବଂ 'ଭିଏତ୍ନାମ ସୋଲ' ସେଠାରେ ଗ୍ରୁଯା ଯାଉଥିଲା । ଗ୍ରାଇଲଣ୍ଡ କୋଟିଅରଙ୍କ ସହିତ ସାକ୍ଷାତ୍ କରିବାର ଅନେକ ସୁଯୋଗ ମୁଁ ପାଇଛି । ସେ ଏକ ପ୍ରତିଭାବାନ ବ୍ୟକ୍ତି ଥିଲେ ଏବଂ ଯାହାଙ୍କର ଜ୍ଞାନୋଦୀପ୍ତ ହୃଦୟ ଉପନିବେଶରେ ଥିବା ଜନ-ସାଧାରଣଙ୍କ ପାଇଁ ସବୁବେଳେ କାନ୍ଦୁଥିଲା । ସେଦିନ ପ୍ରଦର୍ଶନୀରେ ରାତି ଏଗାରଟା ପର୍ଯ୍ୟନ୍ତ ଆମେ ବୁଲିଲୁ । ଠିକ୍ ତାର ପଡ଼ିଶାରେ ଗୋଟିଏ ପାନ୍ଥନିବାସ ଥିଲା । କିଛି ସମୟ ସେଠାରେ ବିଶ୍ରାମ କଲୁ । ଫେରନ୍ତା ପଥରେ ଲୁଏନ ନିକଟସ୍ଥ ଏକ ଚୀନା ଭୋଜନାଳୟ ମଧ୍ୟକୁ ମୋତେ ନେଇଗଲେ । ଅନେକ ସମୟ ଧରି

ଖାଇ ନ ଥିବାରୁ ପ୍ଲେନରେ ମୋ ପେଟ ଜଳୁଥିଲା । ମାଛ, ଗୋରୁମାଂସର ତରକାରୀ ଏବଂ ସୟାବିନ୍ ଭଜା ଖାଇ ସେଦିନ ଫେରିଲି । ବହୁତ ଦିନ ପରେ ଜନ୍ମଭୂମି ମନେ ପଡ଼ିଲା । ସେହି ପୁରୁଣା ଖାଦ୍ୟ, ସେହି ପୁରୁଣା କ୍ଷୁଧା !!!

କୋଠରୀକୁ ଫେରି ସୁଏନ ତଳେ ଖଣ୍ଡେ ମଶିଣା ପକାଇ ଦେଲେ । କେତେଖଣ୍ଡି ବହି ତକିଆର କାମ ଦେଲା । ଦୁଇଜଣ ଶୋଇଗଲୁ କର୍ମକ୍ଲାନ୍ତ ଦିବସର ବିଶ୍ରାମ ନିମନ୍ତେ । କିନ୍ତୁ ଶୋଇ ପାରିଲି ନାହିଁ । ସୁଏନ୍‌ର ମମତା ବିଗଳିତ ସ୍ୱର କାନରେ ବାଜୁଛି । ତା'ର ଜୀବନର କାହାଣୀ ଗଭୀର ତନ୍ଦ୍ରାରୁ··· ହାତଧରି ଟାଣି ଆଣୁଛି । ସେ ଜଣେ ଚିତ୍ରକର । ସକାଳୁ ଚ ଞ ଦୋକାନରେ ଖଣ୍ଡିଏ ଲେଖାଏଁ ଚିତ୍ର ବିକ୍ରୀ କରି ସେ କୌଣସି ମତେ ଭୁକନିବାରଣ ମେଣ୍ଟାଏ । ଆମ ଜୀବନଠାରୁ କେତେ ଦୁର୍ବିସହ ତାର ଜୀବନ ! ଆମେ ତ ମାସିକ ଦରମା ପାଉଛୁ ! ସେଥିରୁ ମଧ୍ୟ ଲେ-ପେରିଆ ଓ ଅନ୍ୟାନ୍ୟ ବହିପତ୍ର କିଣିବା ଏବଂ ଚିତ୍ରପାଇଁ ରଙ୍ଗ ତୂଳୀ କିଣିବା ନିମନ୍ତେ କିଛି ସଞ୍ଚୟ କରେ । ଅପରାହ୍ଣରେ ସେ ଲେ-ପେରିଆ ଅଫିସରେ କାମ କରେ । ନିବନ୍ଧ ଲେଖାରେ ଓ ସଂଶୋଧନ କରିବାରେ ଅନେକ ସମୟ ବିତି-ଯାଏ ସେଠି । 'ଲ-ହ୍ୟୁମାନିତେ' ଏବଂ 'ସୋଇ ଓଭରସ୍ୱେର' ପାଇଁ ନିୟମିତ ଲେଖା ପଠାନ୍ତି । ଲେ-ପେରିଆ ଅଫିସରେ କାମ କରୁଥିବା ସମସ୍ତ କର୍ମଚାରୀ ବୈପ୍ଳବିକ ସଙ୍ଗଠନ ସହିତ ଜଡ଼ିତ ଥିଲେ । ଅବସର ସମୟରେ ସେମାନେ ସମସ୍ତେ ଲେ-ପେରିଆ ଅଫିସକୁ ଆସୁଥିଲେ । ସେଥିପାଇଁ ମୁଁ ସେଦିନ ଦ୍ୱାରଦେଶରେ କୌଣସି ଜନୁଆରୀ କିମ୍ବା ଟାଇପିଷ୍ଟଙ୍କୁ ଭେଟି ନ ଥିଲି । ପ୍ରତିଦିନ ସନ୍ଧ୍ୟାରେ ସୁଏନ କ୍ଲବ ଯାଆନ୍ତି ଦର୍ଶନ, ରାଜନୀତି, ସଂସ୍କୃତି, ସାମାଜିକ ଜୀବନ, ଅର୍ଥନୈତିକ ବ୍ୟବସ୍ଥା ଉପରେ ବକ୍ତୃତା ଆଲୋଚନା କରିବା ପାଇଁ । ନଚେତ୍ ଜାତୀୟ ପାଠାଗାରରେ ସନ୍ଧ୍ୟା ସମୟଟିକୁ କଟାଇ ଦିଅନ୍ତି । ତାହା ଛଡ଼ା ଫରାସୀ କମ୍ୟୁନିଷ୍ଟପାର୍ଟି ଦ୍ୱାରା ଆୟୋଜିତ ପଥପ୍ରାନ୍ତର ସଭାମାନଙ୍କରେ ବକ୍ତୃତା ଦେବାର ବ୍ୟବସ୍ଥା ମଧ୍ୟ ଦିନେ ଦିନେ ଥାଏ ।

ସପ୍ତାହ ତମାମ ବହୁତ କାର୍ଯ୍ୟବ୍ୟସ୍ତ ରହୁଥିଲେ ମଧ୍ୟ ରବିବାର ଦିନ ସେ ଚିତ୍ରକଳା ପ୍ରଦର୍ଶନୀ କିମ୍ବା ବାହାରେ ବୁଲି ବାହାରନ୍ତି । ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ପ୍ୟାରିସ ଭ୍ରମଣରେ ଯାଇଥିଲି, ସେତେବେଳେ ମୋତେ ପୁଣି ଥରେ ପ୍ରଦର୍ଶନୀ ବୁଲାଇ ନେଇଥିଲେ ଏବଂ ସଂଗ୍ରହାଳୟ ଦେଖାଇ ଆଣିଥିଲେ । ପ୍ୟାରିସକୁ ସେ ନିବିଡ଼ ଭାବରେ ଜାଣିଥିଲେ ଏବଂ ସହରତଳି ଅଞ୍ଚଳରେ ରହୁଥିବା ଶ୍ରମିକ-ବସ୍ତି ଓ ଶିଳ୍ପାଞ୍ଚଳ ସହିତ ତାଙ୍କର ଅତୁଟ ସମ୍ପର୍କ ରହିଥିଲା । ଏହି ଶ୍ରମିକବସ୍ତି ଏବଂ

ଚିଲ୍ଭାଞ୍ଚଳ ମଧ୍ୟରେ ପାରସ୍ପରିକ ସହଯୋଗ ଏତେ ବେଶି ଥିଲା ଯେ ଫରାସୀ ଶାସକ-ଗୋଷ୍ଠୀ ଏହାର ନାମ ରଖିଥିଲେ "ରକ୍ତ ପରିଧି" । କାରଣ ଏହା ମୁଖ୍ୟତଃ ଫରାସୀ କମ୍ୟୁନିଷ୍ଟପାର୍ଟିର ପ୍ରଭାବାଧୀନ ଥିଲା । ଘୁଏନ-ଆଇ-କୋକ୍ ଏହି ଶ୍ରମିକବାହିନୀର ଜଣେ ମୁଖ୍ୟ ସଂଗଠକ ଥିଲେ ।

ସେଦିନ ଅପରାହ୍ଣରେ ବି ବନ୍ଧୁ ବଲମ୍‌ରେ ମୁଁ ତାଙ୍କଠାରୁ ବିଦାୟ ନେଲି । ଅନେକ କଥାବାର୍ତ୍ତା ମଧ୍ୟରୁ ମୁଁ ଗୋଟିଏ କଥା ମନେରଖିଛି । "ସବୁବେଳେ ଶୃଙ୍ଖଳାବଦ୍ଧ ମଣିଷର ଦାୟିତ୍ୱକୁ ନିଜ ମନଭିତରେ ବାନ୍ଧିରଖିବ । ପରସ୍ପରକୁ ଭଲ ପାଇବା ଏବଂ ପରସ୍ପର ମଧ୍ୟରେ ଏକତା ପ୍ରତିଷ୍ଠିତ କରିବା ଆମର ମହାନ୍ କର୍ତ୍ତବ୍ୟ । ଫରାସୀ ଶ୍ରମିକ ଓ ଜନତା ଏବଂ ଉପନିବେଶୀ ଜନସାଧାରଣଙ୍କ ସହିତ ନିଜକୁ ସାମିଲ କରିବା ଆମର ଉଚିତ । କାରଣ ଆମେ ସମସ୍ତେ ଦରିଦ୍ର । ସମଭାବରେ ଶୋଷିତ ଏବଂ ନିର୍ଯ୍ୟାତିତ ।"

ଲେ-ହ୍ୟାଭେରକୁ ଫେରିସିବା ପରେ ମୋ ବନ୍ଧୁମାନେ ମୋତେ ଦେଖିବାକୁ ଆସିଲେ । ମୁଁ ସବୁକଥା ସେମାନଙ୍କୁ ଶୁଣାଇଲି । ଅଦ୍ଭୁତ ଏକ ପ୍ରେରଣାରେ ମନ ତାଙ୍କର ପୂରି ଉଠିଲା । ତାହାପରେ ଘୁଏନ୍‌ର ଆଦେଶରେ ଆମ ନିଜ ଦେଶ ଏବଂ ନିଜ ଦେଶର ଲୋକମାନେ ବାସକରୁଥିବା ଉପନିବେଶ New Caledoria ଏବଂ Recevion Island ପରି ଭିଏତନାମୀ ଦୁଃସ୍ଥ ବସତିମାନଙ୍କରେ ସମ୍ବାଦପତ୍ର ପହଞ୍ଚାଇ ଦେଲୁ । ଲେ-ପେରିଆକୁ ଆହୁରି ପ୍ରସାରିତ କରିବା ପାଇଁ ସ୍ୱତନ୍ତ୍ର ଏକ ପାଣ୍ଠିର ବ୍ୟବସ୍ଥା କଲୁ । ଶତାଧିକ ସଂଖ୍ୟାରେ 'ଲେ-ପେରିଆ', 'ଲ-ହ୍ୟୁମାନିଟେ' ଏବଂ 'ଦାଲସେଭିକ' ଦେଶକୁ ଓ ଉପନିବେଶମାନଙ୍କୁ ଚାଲାଣ କରାଗଲା । ଅରେ ମାଟିନିକ୍ ଅଭିମୁଖେ ଯାଉଥିବା ଜାହାଜ ଭିତରେ ମୁଁ ତିନିଜଣ ସାଥୀଙ୍କୁ ଲୁଚାଇ ଭର୍ତ୍ତିକରି ପଠାଇ ଦେଇଥିଲି । ପୋଲିସ ଆଖିରେ ଧୂଳି ଦେଇ ସେମାନେ ଆମ ପାର୍ଟିର ସମସ୍ତ ସମ୍ବାଦପତ୍ର ଓ ଗୋପନ ତଥ୍ୟ ଦେଶରେ ପହଞ୍ଚାଇ ଦେଇ ଆସିଲେ । ସମ୍ବାଦପତ୍ର ଏବଂ ମଣିଷ ସ୍ମଗ୍ଲ କାରବାର କରିବା ଆମ ପକ୍ଷରେ ଖୁବ୍ ସହଜ ଥିଲା । କାରଣ ଆମେ ସମୁଦ୍ରରେ ଜୀବନ କଟାଇ ଆସିଛୁ । ଘୁଏନ୍ ଆମର ନେତା ।

୧୯୨୩ରେ ମୋ ଜାହାଜ ପୁଣି ଥରେ ଲେ-ହ୍ୟାଭେରର କୂଳରେ ଆଶ୍ରୟ ଗ୍ରହଣ କଲା । ଘୁଏନ୍‌କୁ ଦେଖିବା ପାଇଁ ମୁଁ ଦୌଡ଼ିଗଲି । ୧୯୧୯ରୁ ଚାଲିଥିବା ଶ୍ରମିକ ଆନ୍ଦୋଳନ ବିରାଟ ଆକାର ଧାରଣ କରିଛି । ଦଶ ହଜାରରୁ ଅଧିକ ଶ୍ରମିକ ମାସ ମାସ ଧରି ଧର୍ମଘଟ ଚଳାଇ ରଖିଛନ୍ତି । ପୋଲିସର ରକ୍ତାକ୍ତ ସଂଘର୍ଷ ଫଳରେ ଲେ-ହ୍ୟାଭେରର ଧୂଳିମାଟି ଶୋଣିତ ସାଗର ପାଲଟି ଯାଇଛି । ଆମ ଦେଶରେ

ଫରାସୀ ସାମ୍ରାଜ୍ୟବାଦୀମାନେ ଲୋକଙ୍କୁ ଶୋଷି ଶୋଷି ସର୍ବସ୍ୱାନ୍ତ କରି ଦେଇଛନ୍ତି । ଭିଏତନାମର ଅର୍ଥନୀତି ଶୋଷଣର ଶ୍ମଶାନରେ ଦଗ୍ଧ । ଭିଏତନାମ ବକ୍ଷରେ ଦୁର୍ଭିକ୍ଷର କରାଳ ଗ୍ରାସ । ଦାରିଦ୍ର୍ୟର କବଳିତ କ୍ଷୁଧିତ ଜୀବନ ଦକ୍ଷିଣ ଭିଏତନାମ ଏବଂ ନ୍ୟୁକାଲେଡୋନିଆର ରବର କାରଖାନାରେ ନିଜକୁ କ୍ରୀତଦାସ ପରି ବନ୍ଦୀ କରିଛି ।

ଠିକ୍ ସେହି ସମୟରେ ଫରାସୀ ବାଣିଜ୍ୟପୋତ ଧନ, ସମ୍ପଦ, ଚାଉଳ, ଖାଦ୍ୟଶସ୍ୟ ବୋଝେଇ କରି ଫ୍ରାନ୍ସ ପଠାଇ ଦେଉଛି । ଭାଗ୍ୟର ଅଟ୍ଟହାସ୍ୟ । ଭିଏତନାମର ସମ୍ପଦରେ ଫରାସୀ ରାଜକୋଷ ପୂର୍ଣ୍ଣ । ଫରାସୀ ପୋଲିସର ଗୁଳି ବେୟନେଟରେ ନେ’ଙ୍କର ଗର୍ଭରେ ରକ୍ତର ବନ୍ୟା । କ୍ରୋଧ, ନୈରାଶ୍ୟ, ବିଫଳତାରେ ଭବିଷ୍ୟତ ଅନ୍ଧକାରମୟ । ଫରାସୀ ବଣିକଙ୍କ ଦସ୍ୟୁବୃତ୍ତି ଯୋଗୁଁ ଭିଏତନାମର ସଂଗ୍ରାମୀ ସାଥୀମାନେ କ୍ଷୁଧା, ପିପାସାର ଜ୍ୱାଳାରେ ମୃତ, ଆହତ, ଅକର୍ମଣ୍ୟ । ମନଭିତରେ ସ୍ଥିର କରିନେଲି ଏସବୁ କଥା ଲୁଏନ୍‌ଙ୍କୁ ଜଣାଇବି ।

ପୁଣି ସେହି ଗୋବେଲିନସ ଗଳିର ଦ୍ୱାରଦେଶରେ ଠିଆ ହେଲି ଆଶା ଓ ଭରସାକୁ ପାଥେୟ କରି । କିନ୍ତୁ ଲୁଏନ୍ ନାହାନ୍ତି । ବାହାରି ଯାଇଛନ୍ତି । ସାଙ୍ଗେ ସାଙ୍ଗେ ସମ୍ବାଦପତ୍ର ଅଫିସକୁ ଧାଇଁଗଲି । ଜଣେ ଆଫ୍ରିକୀୟଙ୍କ ସହିତ ସେ ଆଲୋଚନାରେ ମଗ୍ନ । ମୋତେ ଦେଖିଲା କ୍ଷଣି ସ୍ମିତ ହସି ଉକ୍ତ ଆଫ୍ରିକୀୟ ବନ୍ଧୁଙ୍କ ସହ ମୋର ପରିଚୟ କରାଇ ଦେଲେ । ପ୍ରଥମ ସମ୍ଭାଷଣରେ ମୁଁ ଲେ-ପେରିଆ ବିଷୟ ତାଙ୍କୁ ଜଣାଇଲି । ମୁହଁରେ ତାଙ୍କର ଆନନ୍ଦର ଅପୂର୍ବ ଛଟା ! ତା’ ପରେ ସେ ମୋତେ ତାଙ୍କ ଘରକୁ ଡାକି ନେଇ ଗଲେ । ମୋର ସ୍ୱାସ୍ଥ୍ୟ, ସହବନ୍ଧୁ ଜାହାଜ କର୍ମଚାରୀଙ୍କ ବିଷୟ, ନିଜ ଦେଶର ଅବସ୍ଥା ଏବଂ ଭିନ୍ନ ଭିନ୍ନ ଉପନିବେଶରେ ରହୁଥିବା ଲୋକମାନଙ୍କର ଜୀବନ ଉପରେ ଅନେକ ଆଲୋଚନା ହେଲା । ମୁଁ କିନ୍ତୁ ଅଧିକ ଉଦ୍‌ବିଗ୍ନ ଥିଲି ଆମ ଦେଶର କଥା ଶୁଣାଇବା ପାଇଁ । ବଡ଼ ଗଭୀର ଆବେଗ, ମମତା ନେଇ ସେ ମୋ ମୁହଁକୁ ଚାହିଁ ରହିଲେ । ଲକ୍ଷ୍ୟ କରିଛି କଥା ଶେଷ ହେଲା ବେଳକୁ ଲୁଏନ୍ ଯେପରି ବାକ୍‌ଶକ୍ତିବିହୀନ ହୋଇ ଅଚଳ ହୋଇ ପଡ଼ିଛନ୍ତି । ଯେତେବେଳେ ସାମ୍ରାଜ୍ୟବାଦୀମାନଙ୍କର ଦସ୍ୟୁବୃତ୍ତି ସମ୍ବନ୍ଧରେ ମୁଁ ଅବତାରଣା କଲି, ସେତେବେଳେ ସେ ପ୍ରକୃତିସ୍ଥ ହେଲେ ।

ପ୍ରଥମ ଥର ପାଇଁ ମୁଁ ଜାଣିବାକୁ ପାଇଲି ଯେ ପାଖ କୋଠରିରେ ଆମ ଦେଶର ଜଣେ ଓକିଲ ଫାନଭାନ୍ ଟ୍ରୁଙ୍ଗ୍ ରହୁଛନ୍ତି । ମୋତେ ଲାଗିଲା ଲୁଏନଙ୍କ କୋଠରି ସହିତ ତାଙ୍କ କୋଠରିଟି ମିଶି ଯାଇଛି । ଫାନ୍ ଜଣେ ଦେଶପ୍ରେମୀ ବୁଦ୍ଧିଜୀବୀ ଥିଲେ ସତ; କିନ୍ତୁ ତାଙ୍କର ବେଶି ଆଗ୍ରହ ଥିଲା ପୁସ୍ତକ, ପତ୍ରପତ୍ରିକା ଆଦି

ଅଧ୍ୟୟନ ମାଧ୍ୟମରେ କମ୍ୟୁନିଜମ୍ ଉପରେ ଦକ୍ଷତା ହାସଲ କରିବା । ଙ୍ଗୁଏନ୍ ସ୍ୱୟଂ, ଶ୍ରମିକମାନଙ୍କ ମଧ୍ୟରେ ନିଜକୁ ହଜାଇ ଦେଇ ସେମାନଙ୍କ ପାଇଁ ସଂଗ୍ରାମ କରିବା ମୁହୂର୍ତ୍ତମାନଙ୍କରେ ହିଁ ତତ୍ତ୍ୱ ଆହରଣ କରୁଥିଲେ । ପରେ ମୁଁ ଷନ୍‌ଙ୍କୁ ଦେଖା କରିଛି । ତାଙ୍କ ମୁହଁରୁ ଙ୍ଗୁଏନ୍‌ଙ୍କର ପ୍ରଶଂସା ଶୁଣିଛି । ସେ ମୋତେ କହିଲେ, "ଆଲବର୍ଟ ସାରହଟ୍‌ଙ୍କ ପରି ଜଣେ ଉଗ୍ର ଉପନିବେଶବାଦୀ, ଯେ କି ପୂର୍ବରୁ ଇଣ୍ଡୋଚୀନର ଗଭର୍ଣ୍ଣର ଜେନେରାଲ ଥିଲେ ଏବଂ ବର୍ତ୍ତମାନ ଫରାସୀ ଅଧିକୃତ ଉପନିବେଶମାନଙ୍କର ଶାସନାଧ୍ୟକ୍ଷ ଅଛନ୍ତି, ଥରେ ଙ୍ଗୁଏନ୍‌ଙ୍କୁ ତାଙ୍କ ଅଫିସକୁ ଡକାଇ ଥିଲେ । ଙ୍ଗୁଏନ୍‌ଙ୍କ ଆଡ଼କୁ ଲକ୍ଷ୍ୟ କରି ଦାନ୍ତ କଡ଼ମଡ଼ କରି ଆଙ୍ଗୁଠି ସାହାଯ୍ୟରେ ଏପରି ଇଙ୍ଗିତ ଦେଲେ ଯେ ଯେଉଁମାନେ ତାଙ୍କୁ ବିରୋଧ କରିବେ— "ସେମାନଙ୍କୁ ସେ ଅନାୟାସରେ ମାରି ଉଡ଼ାଇ ଦେଇ ପାରିବେ ।"

"ବିରୋଧୀ ଶକ୍ତିକୁ ଧୂଳିସାତ୍ କରିଦେବା ପାଇଁ ଫ୍ରାନ୍‌ସର ଯଥେଷ୍ଟ ଶକ୍ତି ରହିଛି ।"

ଏସବୁ ଧମକ ସତ୍ତ୍ୱେ ଙ୍ଗୁଏନ୍ ତାଙ୍କ ପଥରେ ଅବିଚଳ ରହିଛନ୍ତି । ଯେତେ-ବେଳେ ଶାସନକର୍ତ୍ତା ତାଙ୍କୁ କିଣିନେବା ପାଇଁ ଚାହିଁଲେ, ସେ ଦମ୍ଭର ସହିତ ମୁହଁ ଉପରେ ଜବାବ୍ ଦେଲେ, "ମୋ ପାଇଁ ସ୍ୱତନ୍ତ୍ର ସୁବିଧାର କୌଣସି ଆବଶ୍ୟକତା ନାହିଁ । କାମ କରି ମୁଁ ବେଶ୍ ଚଳିଯାଇ ପାରିବି । ମୋ ଜାତିର ସ୍ୱାଧୀନତା ବ୍ୟତୀତ ମୁଁ ଅନ୍ୟ କିଛି ଦାବୀ କରୁ ନାହିଁ ।" ସର୍ବଶକ୍ତିମାନ ଆଲବର୍ଟ ସାରଉଟ୍‌ର ଲଜ୍ଜା-ବନତ ମୁଖ ସେଦିନ ଆମର, ଆମ ଉପନିବେଶୀ ସହୋଦର ସାଥୀମାନଙ୍କର, ବିଶେଷ କରି ଫ୍ରାନ୍‌ସ ଓ ଫ୍ରାନ୍‌ସ କମ୍ୟୁନିଷ୍ଟ ପାର୍ଟିର ପ୍ରିୟତମ ନେତାଙ୍କ ଆଗରେ ଝାଉଁଳି ପଡ଼ିଥିଲା ।

ସମୁଦ୍ରରେ ମୋର ଅନେକ ସମୟ କଟିଛି । ପ୍ୟାରିସ ଯିବା ପାଇଁ ମୋତେ ଆଉ ସୁବିଧା ସୁଯୋଗ ମିଳିଲା ନାହିଁ । କିନ୍ତୁ ବାରମ୍ବାର ମୁଁ ତାଙ୍କୁ ଚିଠିଦ୍ୱାରା ସବୁ କଥା ଜଣାଇ ଦେଉଥିଲି । ଥରେ ଗୋଟିଏ ଚିଠିଦ୍ୱାରା ମୁଁ ତାଙ୍କୁ ପଚାରିଥିଲି, "ମୁଁ ତ ବହୁତ ବହି ପଢ଼ିଛି, ଯେଉଁଥିରେ କି ମାର୍କସ୍‌ଙ୍କ ନାମ ଉଲ୍ଲେଖ କରି-ଯାଇଛି । କିନ୍ତୁ ମୁଁ ଜାଣିନି ସେ କିଏ ? ଦୟାକରି ମୋତେ ତାଙ୍କ ବିଷୟରେ କିଛି କୁହନ୍ତୁ ।" ସଙ୍ଗେ ସଙ୍ଗେ ମୁଁ ଉତ୍ତର ପାଇଲି । ଯେଉଁଥିରେ କି କେବଳ ସେ ମାର୍କସ୍‌ଙ୍କ କଥା ନ ଲେଖି ମାର୍କସ୍‌ବାଦ ଓ ମାର୍କସ୍‌ବାଦୀ ପୁସ୍ତକ ଅଧିକରୁ ଅଧିକ ଅଧ୍ୟୟନ କରିବା ପାଇଁ ଉପଦେଶ ଦେଇଥିଲେ । ପରେ ମୁଁ ସେସବୁ ପଢ଼ିଛି । ଯେତେବେଳେ କୌଣସି ଜଟିଳ ସମସ୍ୟାର ସମ୍ମୁଖୀନ ହୋଇଛି, ସେତେବେଳେ ଅଭିଧାନ ଖୋଲାଇଛି କିମ୍ବା ଙ୍ଗୁଏନ୍‌ଙ୍କଠାରୁ ତାର ସରଳ ସମାଧାନର ଆଶା କରିଛି ।

୧୯୬୩ ଜୁନ୍ ମାସରେ ଫରାସୀ କମ୍ୟୁନିଷ୍ଟ ପାର୍ଟି, ଜାତୀୟ ବିଧାନସଭାକୁ ପ୍ରତିନିଧି ପଠାଇବା ପାଇଁ ଗୁଏନ୍ ଏବଂ ତାଙ୍କର ଆଉ ଦୁଇଜଣ ବନ୍ଧୁ ମାର୍ସେଲ କାଠଣ୍ୟା ଏବଂ ଗାଇଲାଣ୍ଡ ଭୋଟିଅର୍‌ଙ୍କୁ ପ୍ରାର୍ଥୀ ମନୋନୀତ କଲା । ଏହି ପ୍ରାର୍ଥୀ-ମାନଙ୍କର ତାଲିକା ସମ୍ବାଦପତ୍ର ଓ ସାରା ଜଗତରେ ଥିବା ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । କମ୍ୟୁନିଷ୍ଟ ପାର୍ଟି ପ୍ରାର୍ଥୀମାନଙ୍କର ଏହି ପ୍ରକାଶ୍ୟ ଅଭିଯାନ ଦେଖି ଆମ୍ଭମାନେ ଆନନ୍ଦରେ କୋଳାକୋଳି ହୋଇଯାଉଥିଲୁ । ସମ୍ବାଦପତ୍ରକୁ ଚାହିଁ ଚାହିଁ ଅନେକ ସମୟ ବିତାଇ ଦେଉଥିଲୁ । ଗୁଏନ୍-ଆଇ କୋକ୍ ନାମ ଉଚ୍ଚାରଣ କରିବା ମାତ୍ରେ ମନେ ହେଉଥିଲା ଆମେ ଶ୍ରମିକ ଜନତାର, ଆମ ଭିଏତନାମ ଜାତିର ହୃଦୟକନ୍ଦରକୁ ପ୍ରବେଶ କରିପାରିବୁ । ପାର୍ଲାମେଣ୍ଟକୁ ଗୁଏନ୍‌ଙ୍କୁ ପଠାଇବା-ଦ୍ୱାରା ଫରାସୀ କମ୍ୟୁନିଷ୍ଟ ପାର୍ଟି ଦାବୀ ସାବ୍ୟସ୍ତ କଲା ଯେ ପୁଞ୍ଜିବାଦ ପରି. ସବୁଠାରୁ ଶ୍ରମିକଶ୍ରେଣୀର ସାଧାରଣ ଶତ୍ରୁକୁ ସାମନା କରିବା ପାଇଁ ଫରାସୀ ଶ୍ରମିକଶ୍ରେଣୀ ଉପନିବେଶୀ ଶ୍ରମିକଶ୍ରେଣୀ ସହିତ ମିଳିତ ମୁକ୍ତି ଘୋଷଣା କରିବ । ପୁଞ୍ଜିବାଦୀ ଜାତୀୟ ବିଧାନସଭାରେ ଆସନ ଅଳଂକୃତ କରିବାର ଉଦ୍ଦେଶ୍ୟ ଅଉ କିଛି ନ ଥିଲା ; କିନ୍ତୁ ସେମାନଙ୍କର ପୁଞ୍ଜିତନ୍ତ୍ରୀ ଗାରିମାକୁ ଭାଙ୍ଗି ଦେବା ହିଁ ମୁଖ୍ୟ ଏବଂ ଅନ୍ତର୍ନିହିତ ଲକ୍ଷ୍ୟ ଥିଲା । ପ୍ରଥମ ଥର ପାଇଁ ଫରାସୀ କମ୍ୟୁନିଷ୍ଟ ପାର୍ଟି ନିଜ ଗୋଡ଼ରେ ପାର୍ଲାମେଣ୍ଟ ପାଇଁ ନିର୍ବାଚନ ଲଢ଼ିଲା ଏବଂ ସମୁଦାୟ ପଚିଶ ଲକ୍ଷ ଭୋଟରଙ୍କ ମଧ୍ୟରୁ ବାରଲକ୍ଷ ଭୋଟରଙ୍କ ସମର୍ଥନ ଲାଭ କରି ପାରିଥିଲା । ପ୍ରକୃତ ପକ୍ଷରେ ଗୁଏନ୍ ଫରାସୀ ଜାତୀୟ ବିଧାନସଭାକୁ ନିର୍ବାଚିତ ହୋଇ ପାରିଲେ ନାହିଁ; କାରଣ ସେ ଫ୍ରାନ୍‌ସର ସିଦ୍ଧବନ୍ଧ ନାଗରିକ ନୁହନ୍ତି ।

୧୯୨୪ର ଶେଷଭାଗ । ମୁଁ ଶେଷ ଥର ପାଇଁ ଗୁଏନ୍‌ଙ୍କୁ ଭେଟିଲି । ୧୯୨୫ରେ ମୁଁ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଫରାସୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲି । ଗୁଏନ୍‌ଙ୍କୁ ଭେଟିବା ପାଇଁ ମୁଁ ପ୍ୟାରିସରେ ଥିବା ତାଙ୍କ ଅଫିସକୁ ଗଲି । ସେଠାରେ ସେ ନ ଥିଲେ । ତେଣୁ ଠିକଣା ନେଇ କମ୍ପୋଏଣ୍ଟ ଇମ୍ପାସେରେ ରହୁଥିବା ନ' ନମ୍ବର କୋଠରୀକୁ ଗଲି । ଘର ମାଲିକ ମୁଣ୍ଡ ହଲାଇ କହିଦେଲା ଯେ, ସେ ଘରଠାରୁ ବହୁତ ଦୂରରେ । ପରିଶେଷରେ ଜାଣିଲି । ଅନେକ ଦିନରୁ ଗୁଏନ୍ ଫ୍ରାନ୍‌ସ ଛାଡ଼ି ଚାଲି ଯାଇଛନ୍ତି । ପ୍ୟାରିସରେ ମୋର ଅନେକ ବନ୍ଧୁ ଥିଲେ । କିନ୍ତୁ ଗୁଏନ୍‌ଙ୍କ ବିନା ଫ୍ରାନ୍‌ସର ବିଶାଳ ରାଜଧାନୀ ଶୁଷ୍କ ମରୁଭୂମି ପରି ମନେ ହେଲା । ଅନେକ ସମୟ ମୁଁ ସେହି ଗୋବେଲିନ୍‌ସ ଗଳିକୁ ଯାଉଥିଲି, ତାଙ୍କ ସହିତ ଦେଖା କରିବା ପାଇଁ । କିନ୍ତୁ ଗୁଏନ୍‌ଙ୍କର ଶୂନ୍ୟ କୋଠରୀକୁ ଚାହିଁଦେଲେ ମୋ ଆଖିରେ ଲୁହ ଜମି ଯାଉଥିଲା । ଏତେ ବଡ଼ ସହରରେ ମୁଁ କେଡ଼େ ନିଃସଙ୍ଗ !

ଅତୀତ ଦିନର ସେହି ସୁଖମୟ ମୁହୂର୍ତ୍ତଗୁଡ଼ିକୁ ମୋର ମନ ଚାଲିଯାଏ। ତାଙ୍କ ସହିତ ମୋର ପ୍ରଥମ ଦେଖା—ତାଙ୍କର ମଧୁର ସ୍ୱର– ବଳିଷ୍ଠ, ଉନ୍ମୁକ୍ତ ହସ—ତାଙ୍କର ଉନ୍ନତ ଶ୍ମଶ୍ରୁ ଏବଂ ସର୍ବୋପରି ଉଜ୍ଜ୍ୱଳ ଆଖି ଦୁଇଟା। ସମୁଦ୍ରରେ ଜୀବନ କଟାଇଥିବା ବ୍ୟକ୍ତି ପକ୍ଷରେ ଏପରି ଦୁଃଖଦାୟକ ବିଦାୟ ନିହାତି ମାମୁଲି। କିନ୍ତୁ ସେ ଯନ୍ତ୍ରଣାକାତର ଦିନଗୁଡ଼ାକୁ ମୁଁ ମୋଟେ ଭୁଲି ପାରୁ ନ ଥିଲି।

ବହୁଦିନ ପରେ ଜାଣିଲି, ୧୯୨୩ର ଶେଷ ଭାଗରେ ଙ୍ଗୁଏନ ସୋଭିଏତ୍ ୟୁନିଅନ ଯାତ୍ରା କରିଛନ୍ତି। ଫରାସୀ କମ୍ୟୁନିଷ୍ଟ ପାର୍ଟିର ଜଣେ ବିଶିଷ୍ଟ ସଦସ୍ୟ ଏବଂ ଉପନିବେଶମାନଙ୍କର ଜଣେ ମୁଖପାତ୍ର ହିସାବରେ ତୃତୀୟ ଆନ୍ତର୍ଜାତିକରେ ଉପନିବେଶମାନଙ୍କ ପାଇଁ ସ୍ୱାଧୀନତା ଦାବି କରିବା ନିମନ୍ତେ ସେ ଯାଉଥିଲେ। ସେହି ସମୟରେ ଲେନିନ୍ ରୋଗଶଯ୍ୟାରେ। ଙ୍ଗୁଏନ୍ ମସ୍କୋରେ ପାଦଦେବାର ଠିକ୍ ଦୁଇଦିନ ପୂର୍ବରୁ ଲେନିନ୍‌ଙ୍କର ମୃତ୍ୟୁ ହୋଇ ଯାଇଥାଏ। ୧୯୨୪ ଜୁଲାଇକୁ ଅଧିବେଶନ ସ୍ଥଗିତ ରହିଲା।

୧୯୨୯ର ମଧ୍ୟଭାଗ। ମସ୍କୋରୁ ଘରକୁ ଫେରିବା ବାଟରେ ଟ୍ରାନଫୁ ପ୍ୟାରିସ-ଠାରେ ଅଟକି ଗଲେ। ଭିଏତନାମୀ କମ୍ୟୁନିଷ୍ଟ ସଂସ୍ଥାମାନଙ୍କୁ ଏକଠି କରିବା ପାଇଁ ସମ୍ମିଳନୀଦ୍ୱାରା ପ୍ରସ୍ତୁତ ନିବେଦନ ପତ୍ର ଙ୍ଗୁଏନଙ୍କ ହାତରେ ଦେବା ପାଇଁ କମ୍ୟୁନିଷ୍ଟ ଆନ୍ତର୍ଜାତିକ ତାଙ୍କୁ ଦାୟିତ୍ୱ ଅର୍ପଣ କରିଥିଲା। ଦିନେ ସେ ମୋ ସହିତ ପ୍ୟାରି କମ୍ୟୁନ୍‌ର ସଂଗ୍ରାମୀ ଶହୀଦମାନଙ୍କର ସମାଧି ଦେଖିବାକୁ ବୁଲି ବାହାରିଲେ। ଫେରିବା ବାଟରେ ସେ ମୋତେ କହିଲେ ଯେ, ୱ୍ୟାଙ୍ଗ ପୋ ମିଲିଟାରି କଲେଜରେ ଥିବାବେଳେ ସେ ପ୍ରଥମ ଥର ପାଇଁ ଙ୍ଗୁଏନଙ୍କଠାରୁ ପ୍ୟାରି କମ୍ୟୁନ କଥା ଏବଂ ସେମାନଙ୍କର ଗଭୀର ଦେଶପ୍ରେମ ବିଷୟ ଶୁଣିଥିଲେ। ମୁଁ ନିଜକୁ ନିଜେ କହୁଥିଲି, "ଙ୍ଗୁଏନ ଯେଉଁଆଡ଼େ ଯାଏ, ସେଠାରେ କେବଳ ସଂଗ୍ରାମୀମାନଙ୍କୁ ହିଁ ତିଆରି କରେ। ମୁଁ ଯଦି ତାଙ୍କୁ ଭେଟି ନ ଥାନ୍ତି, ତେବେ ମୋର କି ଅବସ୍ଥା ହୋଇଥାନ୍ତା!।:

ସେଦିନ କଥା ମୁଁ ମନେ ପକାଉଛି, ଯେଉଁଦିନ ମୁଁ ଘର ଛାଡ଼ି ଚାଲି ଆସିଲି। ସେକାଳରୁ ଠିକ୍ କରି ନେଇଥିଲି, ଆଉ କେବେ ଫେରିବି ନାହିଁ। ଅତୀବ ଦୁଃଖ, ଲଜ୍ଜା, ଅଭାବ ଓ ଯନ୍ତ୍ରଣାରେ ମୋ ଦିନଗୁଡ଼ାକ କଟିଛି। ଆଶାଭରସା-ଶୂନ୍ୟ ହୋଇ ବିଚଳିତ ଅବସ୍ଥାରେ ରାସ୍ତାକଡ଼ରେ ଘୁରି ବୁଲିଛି। ଶେଷରେ ଭେଟିଲି ଏହି ଙ୍ଗୁଏନ-ଆଇ-କୋକ୍‌ଙ୍କୁ ଯେ ମୋତେ ଶୃଙ୍ଖଳାବଦ୍ଧ ଜୀବନର ମହାନ୍ ଦାୟିତ୍ୱ ଅର୍ପଣ କରିଛି, ଯେ ମୋତେ ଶ୍ରେଣୀ ସ୍ୱାଧୀନତାର ରାସ୍ତା ଧାରରେ ହାତଧରି ଚଳାଇ ନେଇଛି, ଜାତିର ସ୍ୱାଧୀନତା-ମନ୍ତ୍ରକୁ ମୋ ଭିତରେ ବୁଣି ଦେଇଯାଇଛି।

ଫରାସୀ କମ୍ୟୁନିଷ୍ଟ ପାର୍ଟି, ମୋର ବନ୍ଧୁ ଶ୍ରମିକ ଭାଇମାନଙ୍କର ଅକୁଣ୍ଠ ସାହାଯ୍ୟ ଭୁଲିବାର ନୁହେଁ । ସେମାନଙ୍କ ପାଇଁ ମୁଁ କମ୍ୟୁନିଷ୍ଟ ହୋଇପାରିଛି । ତା' ପରଠାରୁ ଦିନ ଦିନ ଧରି ମୁଁ ଭାବିଛି, ରାତି ରାତି ଧରି ସ୍ୱପ୍ନ ଦେଖିଛି, ଗାଁକୁ ଫେରିଯିବା ପାଇଁ । ଜନ୍ମଭୂମିର ଆକର୍ଷଣ, ସ୍ନେହ, ସହାଗ ମୋତେ ପୁଣି ଟାଣି ନେଇଛି ତା ଆଡ଼କୁ । କମ୍ୟୁନିଷ୍ଟର ଦାୟିତ୍ୱ ପୂରଣ କରିବା ପାଇଁ, ଦାସ-ଜୀବନର ବନ୍ଧନରୁ ଛଡ଼ାଇବା ପାଇଁ ମୁଁ ସଶସ୍ତ୍ର ଅଭିଯାନରେ ଦେଶକୁ ଫେରିବାକୁ ଠିକ୍ କଲି ।

ସେହି ବର୍ଷ ଶେଷରେ ମୋ ଜନ୍ମଭୂମିର ପବିତ୍ର ଧୂଳି ମୋ ମୁଣ୍ଡରେ ଲାଗିଲା ।



# ୭

## ପ୍ୟାରୀରେ ଥିବା ଦିନଗୁଡ଼ିକ

ପ୍ୟାରିସ ସହରର ଶ୍ରମିକ ଅଧ୍ୟୁଷିତ ଅଂଚଳ । ବିଭିନ୍ନ କଳକାରଖାନାରେ କାମ କରୁଥିବା ଦେଶୀ, ପ୍ରବାସୀ ଶ୍ରମଜୀବୀମାନଙ୍କୁ ନେଇ ଅର୍ଦ୍ଧମୃତ ହୋଟେଲଟି ଛିଡ଼ା ହୋଇଛି । ସମସ୍ତଙ୍କ ପାଇଁ ବାସସ୍ଥାନ କହିଲେ ଗୋଟିଏ ଗୋଟିଏ ବଖରା ଘର । ତଳ, ଉପର ହୋଇ ଏହିପରି ଅନେକ କୋଠରୀ । ପରିବାର, ପିଲାପିଲାଙ୍କୁ ନେଇ ଶ୍ରମିକ-ସଂସାର ବିତିଉଠେ ସେହି ଜୀର୍ଣ୍ଣ କୋଠରୀଟିରେ । ତାହାରି ମଧ୍ୟରୁ ଗୋଟିକୁ ବାଛି ନେଇଛନ୍ତି ଗୁଏନ । ନିହାତି ଶସ୍ତା ଏବଂ ମାମୁଲି । କୋଠରୀ ଆକାରରେ ଏତେ ଛୋଟ ଯେ ଗୋଟିଏ ଖଟ ଓ ଆଉ ହଲେ ଟେବୁଲ୍ ଚେୟାର ପଡ଼ିଗଲେ ପାଦ ରଖିବାକୁ ମଧ୍ୟ ଜାଗା ମିଳେ ନାହିଁ । ସେହି ଦୁଃଖ, ଦୈନ୍ୟ ମଧ୍ୟରେ ଗୁଏନଙ୍କର କର୍ମଜୀବନ ଆରମ୍ଭ ହୁଏ ଷ୍ରେର ଘରଟାରୁ । ଶୀତଦିନେ କେବେ କପରି ଟିକେ ବିଳମ୍ବ ହୋଇଯାଏ । ପୋଲିସର କଡ଼ା ନଜର ଥାଏ ଏତେ ବଡ଼ ହୋଟେଲର ସେହି କୋଠରୀଟି ଉପରେ । ଗୁଏନ ଜାଣନ୍ତି ; ହେଲେ କୌଣସି କଥାପ୍ରତି ତାଙ୍କର ଯେପରି ଖାତିର ନାହିଁ !! ଏହିପରି ଅଗଣିତ ଦିନ ତ ଆଗକୁ ଅପେକ୍ଷା କରିଛି !

କିରୋସିନି ତେଲର ଷ୍ଟୋଭଟା ଘର କୋଣରୁ ଜଳିଉଠେ । ଭାତ, ମାଂସ, ରୁଟି ବା ପରିବାସିଝା ସବୁ ମାତ୍ର ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ ସରିଯାଏ । ସେଥିରୁ ଅଧେ ଖାଇ ଆଉ ଅଧକୁ ରଖିଦିଅନ୍ତି ସଂଧ୍ୟା ପାଇଁ । କେଉଁଦିନ ବା ରୁଟି ଆଉ ଛେନା ଖାଇ ଚଳିଯାନ୍ତି । ରନ୍ଧା ହୋଇପାରେ ନାହିଁ । ପୋଷାକପତ୍ର ମଧ୍ୟରେ ପିନ୍ଧିଥିବା ବସ୍ତ୍ର ବ୍ୟତୀତ ଆଉ ଅଧିକା ନ ଥାଏ । ଘୋଡ଼େଇ ହେବା ପାଇଁ ଶୋଉଥିବା ମସିଣା ଖଣ୍ଡିକ । ଶୀତଦିନେ ଖଟତଳେ ଷ୍ଟୋଭ ରଖି ମସିଣାକୁ ଗରମ କରି ଦିଅନ୍ତି । ରାତିରେ ତାକୁଇ ଘୋଡ଼ାଇ ହୋଇ ପଡ଼ନ୍ତି । ପଢ଼ୁଥିବା ପତ୍ରପତ୍ରିକା, ଖବରକାଗଜ ମୁଣ୍ଡତଳେ ତକିଆର କାମ ଦିଏ ।

ପ୍ରତିଦିନେ ସକାଳେ ସେ ବାହାରି ଯାଆନ୍ତି ଅର୍ଥ ଉପାର୍ଜନରେ । ଫଟୋ-ବନ୍ଧାଇ, ବିବାଦିଆ ଲେଖା ଓ ବନ୍ଧୁମାନଙ୍କ ସହିତ ସାକ୍ଷାତ୍ କରିବାରେ । ସନ୍ଧ୍ୟା ସମୟଟା କଟେ ବିଭିନ୍ନ ସଭାସମିତି, ଲାଇବ୍ରେରୀ କିମ୍ବା କୌଣସି ଶ୍ରମିକ ସଙ୍ଗଠନର ଆଲୋଚନା ଚକ୍ରରେ । ଏହି ସଭାସମିତିରେ ସେ ଭେଟନ୍ତି ଲ୍ୟୁସ୍ୱେଂ, ବ୍ରୁମ୍,

ମାର୍ସେଲ୍ କାଚଣ୍ୟା, ଭାଇଲଣ୍ଟ କୁଟୁରୟେ, ସେମବାଟ୍ ଏବଂ ପ୍ରସିଦ୍ଧ ନାରୀନେତ୍ରୀ ଲେଖିକା କ୍ଲାରଜାଟକିନ୍‌ଙ୍କୁ ।

ଫରାସୀ କମ୍ୟୁନିଷ୍ଟ ପାର୍ଟିର ଏହି ତରୁଣ ତଥା ଉଦୀୟମାନ ନେତୃବୃନ୍ଦଙ୍କୁ ଦେଖି ନୁଏନ୍‌ର ପ୍ରାଣ ସ୍ୱତଃ ଚଞ୍ଚଳ ହୋଇଉଠେ । ନିଜ ମାଟିରେ ଠିଆ ହୋଇ ପ୍ରବାସୀ ଜୀବନର କରୁଣ କାହାଣୀ ଟିକିଏ ଶୁଣାଇବାକୁ ଇଚ୍ଛା ହୁଏ । ,ଦୁଃଖ ବେଦନା, ଆତ୍ମଲଜ୍ଜା, ପରାଧୀନତାର ଅପମାନରେ ହାତମୁଠା ଅଧିକ ଶକ୍ତ ହୋଇଉଠେ ।

୧୯୨୦ର ଶୀତ ରାତି । ଫରାସୀ ସରକାରଙ୍କର ନ୍ୟାୟାଳୟରେ ପ୍ରାଣଦଣ୍ଡ ଆଦେଶ ପାଇଥିବା ସମାଜବାଦୀ ଜଙ୍ଗୀନେତା ମିଃ ବାର୍ବୁଟ୍‌ଙ୍କ ଦ୍ୱାରରେ ମୃଦୁ କରାଘାତ । ବାର୍ବୁଟ୍ କବାଟ ଖୋଲି ଦେଖନ୍ତି ପ୍ରବାସୀ ନୁଏନ୍‌ର ଆଖିରେ ଅଶ୍ରୁର ଧାର ବାଢ଼ି ଝରି ବୋହିଯାଉଛି । ମୁହଁରେ କୌଣସି ଭାଷା ନାହିଁ । ବାର୍ବୁଟ୍‌ଙ୍କର ଶକ୍ତ ଶରୀର ଉପରେ ଢଳି ପଡ଼ିଛନ୍ତି ନୁଏନ୍ ଅତ୍ୟନ୍ତ ସରଳ, ଦରଦୀ ଶ୍ରେଷ୍ଠ ଶିଶୁଟି ପରି । ନୀରବ ଅନ୍ଧକାରରେ । ଏହି କାହାଣୀ କିନ୍ତୁ କାହାକୁ ଅଛପା ରହିଲା ନାହିଁ । ପରଦିନ ସକାଳେ ହୋ'ର ସେହି ଶ୍ରମିକବସ୍ତିରେ ଜମିଗଲେ ଅନେକ ପଶ୍ଚିମ ଭାରତୀୟ, ଆଫ୍ରିକୀୟ ବନ୍ଧୁ । ସେ ଆଜି ଆଉ ଏକା ନୁହେଁ । ଅନନ୍ତ ସାଗରରେ ଗୋଟିଏ ମାତ୍ର ବିନ୍ଦୁ ।

୧୯୨୧--୨୩ ମଧ୍ୟରେ ନୁଏନ୍‌ର ଜୀବନ ଏକ ନୂତନ ପର୍ଯ୍ୟାୟ ଭିତର-ଦେଇ ଗତି କରିଛି । ଏହି ଐତିହାସିକ ମୁହୂର୍ତ୍ତରେ ନୁଏନ୍ ନିଜ ରାଜନୈତିକ ଜୀବନକୁ ତତ୍ତ୍ୱସିଦ୍ଧ କରି ଗଢ଼ିବାକୁ ଚେଷ୍ଟା କରିଅଛନ୍ତି । ଟୁର୍ସଠାରେ ଅନୁଷ୍ଠିତ ସୋସାଲିଷ୍ଟ କଂଗ୍ରେସରେ ଯୋଗଦେଇ କାଚଣ୍ୟା ଏବଂ ଫ୍ରୋସାର୍ଡଙ୍କ ନେତୃତ୍ୱରେ ଗଠିତ କମ୍ୟୁନିଷ୍ଟ ସେଲ ସହିତ ପ୍ରତ୍ୟକ୍ଷ ଯୋଗାଯୋଗ ସ୍ଥାପନ କଲେ । ସେତିକିବେଳେ ତାଙ୍କର ପ୍ରସିଦ୍ଧ ପୁସ୍ତିକା 'ଫରାସୀ ଉପନିବେଶବାଦ ବିରୁଦ୍ଧରେ ଅଭିଯୋଗ' ପ୍ରକାଶ ପାଇଲା । ସେହି ପୁସ୍ତକର ଭାଷା, ଭାବ, ଅଭିବ୍ୟକ୍ତି, ଶୋଷଣବାଦୀ ଫରାସୀ ସରକାର ବିରୁଦ୍ଧରେ ଏତେ ତୀବ୍ର, କଠୋର ଏବଂ ଆକ୍ଷେପମୂଳକ ଥିଲା ଯେ ଫରାସୀ ସରକାର ନୁଏନ୍‌ଙ୍କୁ ପ୍ୟାରିସ ସହରରୁ ତଡ଼ିଦେବା ପାଇଁ ସମସ୍ତ ଉଦ୍ୟମ ଆରମ୍ଭ କରିଦେଲେ । ନାନା ଆଡ଼ୁ ଧମକର ଭୟ ଦେଖାଇଲେ । କିନ୍ତୁ ନୁଏନ୍ ସେଥିରେ ଦବିଗଲେ ନାହିଁ । ନିଜର କଲମକୁ ଅଧିକ ଶାଣିତ, ବଳଶାଳୀ ଏବଂ ଲୋକପ୍ରିୟ କରାଇବା ପାଇଁ ସେ ଏକ ନିର୍ଦ୍ଦିଷ୍ଟ ଅନୁଷ୍ଠାନ ବା ଗଣସଙ୍ଗଠନର ସାହାଯ୍ୟ ଲୋଡ଼ିଲେ । ଫଳରେ ତାଙ୍କରି ନିଷ୍ଠା ବଳରେ Intercolonial Union ଗଢ଼ିଉଠିଲା, ଯାହା ଭିତରୁ ଜନ୍ମ ନେଲା ତତ୍କାଳୀନ ସାମ୍ୟବାଦୀ

ଆନ୍ଦୋଳନର ମୁଖପତ୍ର 'ଲେ-ପାରିଆ' । ପ୍ରଥମେ ଆଉ ଜଣେ ବନ୍ଧୁଙ୍କ ସହାୟତାରେ ନ୍ଗୁଏନ୍ ଏହି ପତ୍ରିକା ପ୍ରକାଶ କରିଥିଲେ, ଯାହାର ପରିଚାଳନା, ସମ୍ପାଦନା, ଏବଂ ପରିପ୍ରସାର ଦାୟିତ୍ୱର ଅଗ୍ରଭାଗରେ ଥିଲେ ସେ ନିଜେ । 'ଲେ-ପାରିଆ' ଏବଂ 'ଇଣ୍ଟର-କଲୋନିଆଲ ୟୁନିଅନ' ଏ ଦୁଇଟି ପରସ୍ପରର ପରିପୂରକଭାବେ ହିଁ କାମ କରୁଥିଲେ; କାରଣ ତତ୍ତ୍ୱ ବ୍ୟତିରେକେ ଗଣ ସଙ୍ଗଠନକୁ କଳ୍ପନା କରିବା ଯେପରି ବୃଥା, ଗଣ ସଙ୍ଗଠନ ବ୍ୟତିରେକ ତତ୍ତ୍ୱକୁ କାର୍ଯ୍ୟକାରୀ କରିବା ମଧ୍ୟ ତତୋଽଧିକ ବାତୁଳତା । ୧୯୨୨ ଏପ୍ରିଲ ମାସରେ ଲେ-ପାରିଆ ପ୍ୟାରିସର ଜନପଥରେ ପ୍ରଥମ ପଦପାତ କଲା । ଯେଉଁମାନେ ଏହା ସହିତ ତାର ଜନ୍ମ ମୁହୂର୍ତ୍ତରୁ ଜଡ଼ିତ ଥିଲେ, ସେ ସମସ୍ତେ ଥିଲେ ବିଶିଷ୍ଟ ଶିକ୍ଷାବିତ୍, ଡାକ୍ତର, ଓକିଲ, ବ୍ୟବସାୟୀ, ଛାତ୍ର ବା ଶ୍ରମିକ ନେତା ।

ଏହି ପତ୍ରିକାକୁ ନ୍ଗୁଏନ୍ ନିଜ ସନ୍ତାନ ପରି ଭଲ ପାଉଥିଲେ । କାରଣ ଜୀବନ ଯୌବନର ଆଦ୍ୟ ମୁହୂର୍ତ୍ତରେ ସେ ଯାହା ସବୁ ସ୍ୱପ୍ନ ଦେଖିଥିଲେ ସେସବୁକୁ ବାସ୍ତବ ରୂପରେ ଟେକି ଧରିଥିଲା ଏହି ଲେ-ପାରିଆ । ମାର୍କସର…'ଦୁନିଆର ମେହେନତି ଜନତା ଏକ ହୁଅ' ଥିଲା ତାର ପ୍ରଥମ ପୃଷ୍ଠାର ବୈଶିଷ୍ଟ୍ୟ । ପ୍ରଥମେ ଯେଉଁ କେତୋଟି ସଂଖ୍ୟା ପ୍ରକାଶ ପାଇଲା, ସେସବୁଥିରେ "ଫରାସୀ ଉପନିବେଶ-ବାଦ ବିରୁଦ୍ଧରେ ଅଭିଯୋଗ" ପୁସ୍ତକରୁ ଉଦ୍ଧାର କରାଯାଇ ଜନସାଧାରଣଙ୍କ ନିକଟରେ ପହଞ୍ଚାଯାଉଥିଲା । ବହିଟି ମାତ୍ର ଶହେ ପୃଷ୍ଠାର ଥିଲା, କିନ୍ତୁ ତାର ନାମ ଆରବୀୟ, ଚୀନା, ଫରାସୀ, ଭିଏତନାମୀ ଆଦି ବିଭିନ୍ନ ଜନପ୍ରିୟ ଭାଷାରେ ବହି ଉପରେ ରଖାଯାଇଥିଲା । ଫଳରେ ପ୍ୟାରିସରେ ଥିବା ସମସ୍ତ ପ୍ରବାସୀ ଶ୍ରମଜୀବୀ ବନ୍ଧୁମାନଙ୍କୁ ଏହି ପୁସ୍ତକ ଏବଂ 'ଲେ-ପାରିଆ' ଗଭୀରଭାବେ ଆକୃଷ୍ଟ କରି ପାରି-ଥିଲା । ଫରାସୀ ଶୋଷଣର ନଗ୍ନରୂପ ଦେଖି ସେମାନେ ଭୀତସନ୍ତ୍ରସ୍ତ ହୋଇ ଉଠିଲେ । ଯେଉଁମାନେ ଏକଦା ସନ୍ଦେହ, ନିର୍ବୋଧତା, ଅଜ୍ଞତାର ଅନ୍ଧକୂପରେ ପଡ଼ି ଛଟପଟ ହେଉଥିଲେ, ସେସବୁ ଲେ-ପାରିଆର ସ୍ପର୍ଶରେ ଜାଗ୍ରତ ହୋଇଉଠିଲେ । ଲେ-ପାରିଆର ସମୁଜ୍ଜ୍ୱଳ ପୃଷ୍ଠାରେ ନ୍ଗୁଏନର ମୁହଁ ଆହୁରି ଜୀବନ୍ତ ହୋଇଉଠିଲା । ଦରିଆ ସେପାରି ଶୋଷଣର ବଟବୃକ୍ଷ ତଳେ ନ୍ଗୁଏନ୍‌ର ଦରଦୀ ଆତ୍ମା ତାର ଅଗଣିତ ଶୋଷିତ ଭାଇ ପାଇଁ ଯେପରି ଚିତ୍କାର ଛାଡ଼ୁଥିଲା !!

ଦିନକୁ ଦିନ ଲେ-ପାରିଆ ଫରାସୀ ରାଜଧାନୀର ପ୍ରତି ବହିଦୋକାନ, ପତ୍ରପତ୍ରିକା ଷ୍ଟଲମାନଙ୍କରେ ଦେଖିବାକୁ ମିଳିଲା । ଘରବାହୁଡ଼ା ଶ୍ରମିକ ଭାଇ ଶୀତସାୟାହ୍ନର ଅବସର ମୁହୂର୍ତ୍ତରେ ବହିଦୋକାନର କୋଣକୁ ଆଉଜି ଲେ-ପାରିଆ ଉପରେ ଆଖି ବୁଲାଇ ଆଣେ । ଦାମ୍ ମାତ୍ର ୨୫ ସେଣ୍ଟିମସ । ଅଧିକାଂଶ

ଖଣ୍ଡିଏ ଲେଖା କିଣି ଘରକୁ ଫେରନ୍ତି, ଅନ୍ୟ ବନ୍ଧୁଙ୍କୁ ଦେଖାଇବା ଉଦ୍ଦେଶ୍ୟରେ । ଲେ-ପେରିଆର ପ୍ରସାର ବୃଦ୍ଧି ସହିତ ଗୁଏନ୍ ନାମର ପ୍ରଭାବ ଦ୍ୱିଗୁଣିତ ହୋଇଉଠିଲା । ସେ ଆଜି ସକଳ ଶ୍ରମଜୀବୀ ପ୍ରବାସୀ ମଣିଷର ଏକମାତ୍ର ପ୍ରତିନିଧି । ହୋ-ଙ୍କ ବ୍ୟତୀତ ଯେଉଁମାନଙ୍କର କୃତିକୁ ସମ୍ମୁଖ କରି ଲେ-ପାରିଆ ଆତ୍ମପ୍ରକାଶ କରୁଥିଲା, ସେମାନେ ହେଲେ ମାର୍ସାଲ କାଂଶ୍ୟା, ସିରିଆର ନେତା ରସିଦ ରାଜା ଆଲଜେରିଆର ବିପ୍ଳବୀ ନେତାମାନେ । ତା ବ୍ୟତୀତ ପଡ଼ୋଶୀ ରାଷ୍ଟ୍ରର ପଦ୍ଦଳିତ ବିପ୍ଳବୀ ନେତୃବୃନ୍ଦଙ୍କର ସ୍ୱଲିଖିତ ବିବନ୍ଧ, ସମାଲୋଚନାମୂଳକ ପ୍ରବନ୍ଧମାନ ମଧ୍ୟ ପ୍ରକାଶ ପାଉଥିଲା ।

ଏହିପରି 'ଲେ-ପେରିଆ' ଦୁନିଆପୃଷ୍ଠରେ ଅଠତିରିଶ ଥର ପାଇଁ ଆତ୍ମ-ପ୍ରକାଶ କରିଛି । ସେ ଦିନର ମେହେନତି ମଣିଷର ଆଖି ଆଗରେ ଅଠତିରିଶ ଥର ପାଇଁ ଆଶା ଭରସାର ଝଲକ ଦେଖାଇ ଲୁଚିଯାଇଛି । ହେଲେ ତାର ସେହି କ୍ଷୁଦ୍ର ଜୀବନକାଳକୁ କେହି କେବେ ମନରୁ ତଡ଼ିଦେଇ ପାରିବ ନାହିଁ । ୧୯୨୨ ଏପ୍ରିଲ ମାସରୁ ୧୯୨୬ ଏପ୍ରିଲ ମାସ । ଏହା ମଧ୍ୟରେ ଲେ-ପେରିଆ ନିଜ ଜୀବନର ସମସ୍ତ ପରମାୟୁକୁ ବ୍ୟୟ କରିଛି ଦୁନିଆର ଶ୍ରମଜୀବୀ ମଣିଷର ସର୍ବାଙ୍ଗୀନ କଲ୍ୟାଣ ସାଧନ ନିମନ୍ତେ । ତାର ପ୍ରତି ଅବୟବରେ ଧନତନ୍ତ୍ରୀ ସମାଜର ସକଳ ଯାତନା, ନିପୀଡ଼ନ, ଲାଞ୍ଛନାକୁ ହସି ହସି ବହନ କରିଛି । ଅମାବାସ୍ୟାର ଚନ୍ଦ୍ର ପରି ପାକ୍ଷିକ ମୁହୂର୍ତ୍ତରେ ନିଜକୁ ହଜାଇ ଦେଇଛି ନିର୍ବାସନର ଅନ୍ଧାରୀ ଚକ୍ରର ମଧ୍ୟରେ । କେତେ ବାର, କେତେ ଥର ପୋଲିସ ହାତରେ ଘୋଡ଼ା ହୋଇଆସିଛି ଫରାସୀ ଶାସନପେଣ୍ଠକୁ ! କ୍ଷୁଦ୍ର କାଗଜ ଖଣ୍ଡିକ ହେଲେ ମଧ୍ୟ କେତେ ତାର ଶକ୍ତି ! କେତେ ତାର ଟାଣ !! ଦୁର୍ଦ୍ଧର୍ଷ ଫରାସୀ ପୋଲିସ ଆଖିରେ ଧୂଳି ଦେଇ ସୁଦୂର ବର୍ମା, ଆନାମ, ମାଡାଗାସ୍କାର, ଆଲଜେରିଆ, ଏବଂ ଭାରତବର୍ଷରେ ପହଞ୍ଚି ପାରିଛି । ରାଜତନ୍ତ୍ରର ଶାଣିତ ବର୍ଚ୍ଛାକୁ ସାମନା କରି କରି ସେ ଛୁଟି ଚାଲିଛି ଆଗକୁ ଆହୁରି ଆଗକୁ ।

'ଲେ-ପେରିଆ'ର ଶୁଭଜନ୍ମ ପରେ ହୋଙ୍କର କାର୍ଯ୍ୟପରିସର ଦିନକୁ ଦିନ ବଢ଼ିଚାଲିଛି । ଆଗପରି ସେ ଆଉ କେବଳ ଫଟୋବାଲା ନୁହନ୍ତି । ଫଟୋ ବନ୍ଧାଇ କାର୍ଯ୍ୟ ଛାଡ଼ି ସେ 'ଲେ-ପେରିଆ'କୁ ଜୀବନର ସର୍ବସ୍ୱ ବୋଲି ମାନି ନେଇ-ଛନ୍ତି । ଦିନର ଅଧିକାଂଶ ସମୟ ସେହିଠାରେ କଟେ । କାହାଠାରୁ କେଉଁ-ପ୍ରକାର ଲେଖା ଆସିବ, କେଉଁ ସଂଖ୍ୟାରେ କେଉଁ ବିଷୟରେ ଲେଖା ପ୍ରକାଶ ପାଇବ ସେଥିନେଇ ସେ ସର୍ବଦା ବ୍ୟସ୍ତ । ଜୀବନର ସର୍ବସ୍ୱ ଢାଳିଦେଇ ସେ ତାର ସେବା କରିବାରେ ଲାଗିଛନ୍ତି । ଏହି ଆତ୍ମଜକୁ ଖେଳାଇ ବଢ଼ାଇ

ବିଶ୍ୱ ରାଜନୀତିର ଦରବାରରେ ଶ୍ରେଷ୍ଠ ସ୍ଥାନ ଦେବାପାଇଁ ତାଙ୍କର କେତେ ଉଦ୍ୟମ ହେଉ !! ତାଙ୍କର ମଧୁର, ଯୁକ୍ତିସିକ୍ତ କଲମ୍‌ଟିରେ ସଦ୍ୟ ଗୋଲାପ କଳି ପରି ହସି ଉଠିଲା ଲେ-ପାରିଆ ! ଦୁଃଖ, ଦୈନ୍ୟ, ଶୋଷଣର ଉଦ୍ୟାନ ମଧ୍ୟରୁ କଣ୍ଟକିତ ଦରଫୁଟା କଳିଟିକୁ ତୋଳି ନେବା ପାଇଁ ଅନେକ ହାତ ଟାଣି ହୋଇ ଆସିଲା । ଲୁଏନ୍ କାହାକୁ ବାଧାଦେବେ !! ହଠାତ୍ ଦେଖାଗଲା ସମସ୍ତଙ୍କ ହାତରେ ଲେ-ପେରିଆ' ଅପୂର୍ବ ରଙ୍ଗଛଟା ନେଇ ଜଳିଉଠିଛି, ଫୁଲର ବିଘୂର୍ଣ୍ଣିତ ମହକ ନେଇ, ଗୋଲାପର ଲୁକ୍‌କାୟିତ ସୌରଭ ନେଇ ।

ଲୁଏନ୍‌ର ରଚନା କୌଶଳ ଥିଲା ସଂପୂର୍ଣ୍ଣରୂପେ ସ୍ୱତନ୍ତ୍ର ଧରଣର । ସେ ସମସ୍ତ ପ୍ରକାର ଲେଖା ଲେଖି ପାରୁଥିଲେ । ପ୍ରାଣୀବିଜ୍ଞାନଠାରୁ ଆରମ୍ଭ କରି ସାହିତ୍ୟ ଚର୍ଚ୍ଚା ମଧ୍ୟ ଲେ-ପେରିଆ ମାଧ୍ୟମରେ ହେଉଥିଲା ଆଉ ଲୁଏନ୍ ଥିଲେ ଏହାର ପ୍ରାଣଦାତା । ତାଙ୍କ ରଚନାର ବୈଶିଷ୍ଟ୍ୟ ଥିଲା ଏହି ଯେ ତାହା ଅପେକ୍ଷାକୃତ ସଂକ୍ଷିପ୍ତ ଏବଂ ସୁଖପାଠ୍ୟ । ଅନ୍ୟ ତତ୍ତ୍ୱବିଦମାନଙ୍କ ପରି ରାଜନୈତିକ କ୍ଲିଷ୍ଟତା ମଧ୍ୟରେ ପାଠକର ମଥା ଛିନ୍ନ ହୋଇ ଯାଉ ନ ଥିଲା ।

ସ୍ୱଳ୍ପଶିକ୍ଷିତ ଶ୍ରମିକଠାରୁ ଆରମ୍ଭ କରି ଉଚ୍ଚକୋଟୀର ବୈଜ୍ଞାନିକମାନେ ତାଙ୍କ ଲେଖାର ନିୟମିତ ପାଠକ ଥିଲେ । ସ୍ଥାନୀୟ ପାଠକମାନଙ୍କୁ ନିଜ ମତାଦର୍ଶ ପ୍ରତି ଅନୁପ୍ରାଣିତ କରିବା ବା ସେମାନଙ୍କୁ ଏକ ରାଜନୈତିକ ସଂଗଠନ ମଧ୍ୟଦେଇ ଐକ୍ୟବଦ୍ଧ କରିବାର ଉଦ୍ଦେଶ୍ୟ ନେଇ ଲୁଏନ୍ 'ଲେ-ପାରିଆ' ପାଇଁ ଯାହା କରୁଥିଲେ, ତାହାଠାରୁ ବେଶି ଉତ୍ସାହ, ପ୍ରେରଣା, ଆଶା ଓ ଅଭୀପ୍ସା ନେଇ ସେ ତାଙ୍କର ସମସ୍ତ ସାମର୍ଥ୍ୟକୁ ଏଥିରେ ନିୟୋଜିତ କରିଥିଲେ, ଫ୍ରାନ୍ସ ବାହାରେ ଉପନିବେଶୀ ଶାସନ ଅଧୀନରେ ରହୁଥିବା ପରାଧୀନ ଶୋଷିତ ଭାଇମାନଙ୍କୁ ସ୍ୱଜାତି, ସ୍ୱାଭିମାନର ମନ୍ତ୍ର ଶୁଣାଇ ଜାଗ୍ରତ କରାଇବା ନିମନ୍ତେ । ଦେଶପ୍ରେମର ସୁପ୍ତ ସଂଜୀବନୀକୁ ପୁନର୍ବାର ଜୀବନ୍ତ କରି ସେ ଦେଶର ମାଟିରେ ସ୍ରୋତସ୍ୱିନୀ କରାଇବା ପାଇଁ । ତେଣୁ ସେ ତାର ବାହ୍ୟପ୍ରସାର ପାଇଁ ଅତ୍ୟନ୍ତ ଯତ୍ନବାନ ଥିଲେ । ସମୁଦ୍ରରେ କାମକରୁଥିବା ବେଳେ ବନ୍ଦର ଅଞ୍ଚଳର ଅନେକ କର୍ମଚାରୀ, ନାବିକଙ୍କ ସହିତ ତାଙ୍କର ପ୍ରଗାଢ଼ ବନ୍ଧୁତ୍ୱ ଥିଲା । ଲୁଏନଙ୍କ ପ୍ରତି ସେମାନଙ୍କର ଆଦର୍ଶଗତ ସମର୍ଥନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କଳକାରଖାନାରେ କାମ କରୁଥିବା, ଖେତଖମାରରେ ମୂଲ ଲାଗୁଥିବା ମଜଦୁରମାନଙ୍କୁ ଲୁଏନ ପ୍ରାଣଦେଇ ଭଲ ପାଉଥିଲା । ସେମାନେ ତାର ଏହି ମହାନ କର୍ମପୀଠରେ ଆସି ଯୋଗ ଦେଲେ । ଜାହାଜ ଭିତରେ ଲୁପ୍ତରେ

ହେଉ !! ତାଙ୍କର ମଧୁର, ଯୁକ୍ତିସିକ୍ତ କଲମ୍‌ଟିରେ ସଦ୍ୟ ଗୋଲାପ କଳି ପରି

ପଡ଼ୁଥିଲା । ସେହିପରି ବାହାରୁ ଜାହାଜ କର୍ମଚାରୀମାନଙ୍କ ଜରିଆରେ ଅଳ୍ପ ବହୁତ ହୋଇ ଅର୍ଥ ସାହାଯ୍ୟ ଆସୁଥିଲା । ପରେ ନୁଏନର ନିଜ ହସ୍ତାକ୍ଷରରେ ଏକ କ୍ଷୁଦ୍ର ଆବେଦନ ଶେଷ ପୃଷ୍ଠାରେ ଦେଖାଗଲା :

'ସାଥିଗଣ,

ଆଜି 'ଲେ-ପାରିଆ' ବିନା ମୂଲ୍ୟରେ ଦିଆଯାଉଛି । କିନ୍ତୁ ପତ୍ରିକାଟିର ବ୍ୟୟ ବହନ କରିବା ପାଇଁ ଯଦି କିଛି ସାହାଯ୍ୟ କରି ପାରନ୍ତେ, ତେବେ ଖୁବ୍ ଭଲ ହୁଅନ୍ତା । ଗୋଟିଏ ସେଣ୍ଟ ବା ଗୋଟିଏ ଫ୍ରାଙ୍କ ଯାହା ଆପଣ ଦେବେ, ତାହା ଅନେକ ସାହାଯ୍ୟ ଦେବ ।'

ବିଦ୍ୟୁତ୍ ବେଗରେ ଏହି ଆବେଦନର ଅନ୍ତର୍ନିହିତ ସତ୍ତା ଠିକକ ଖେଳିଗଲା ପ୍ରତି ପ୍ରାଣରେ । ବିଶେଷ କରି ଦରିଦ୍ର ଓ ମଧ୍ୟବିତ୍ତ ଫରାସୀମାନେ ଏଥିପାଇଁ ଉଦାରହସ୍ତ ପ୍ରସାରଣ କରିଦେଲେ । ନୁଏନ ପତ୍ରିକାଟିର ବ୍ୟୟ ବହନ ପାଇଁ ଏକ ସହଜ ଓ ସୁବିଧା ଉପାୟ ପାଇଗଲେ । ସମସ୍ତ ସମୟରେ ସେଥିରୁ କିଛି ବଳି-ପଡ଼ୁଥିଲା ଅନ୍ୟ କାମ ପାଇଁ ।

ନୁଏନର ଅନେକ ଦିନର ସ୍ୱପ୍ନ ଆଜି ସଫଳ ହେବାକୁ ଯାଉଛି । ତାର ଆତ୍ମଜ 'ଲେ-ପାରିଆ' ବିଶାଳ କାୟା ମେଲି ବିଦେଶୀ ମାଟିରେ ଉପନିବେଶୀ ଶାସନ ଯନ୍ତ୍ର ବିରୁଦ୍ଧରେ ଚିତ୍କାର ଛାଡ଼ୁଛି । ଏହାଠାରୁ ବଳି ଗୌରବର ବିଷୟ କ'ଣ ହୋଇ ପାରେ ଆଉ !! ନୁଏନର ଭାଷା, ତୀବ୍ର ସମାଲୋଚନା, କଟୁ ବ୍ୟଙ୍ଗୋକ୍ତି ଆଉ ସୀମା ସରହଦ ମଧ୍ୟରେ ସୀମିତ ହୋଇ ରହିବାକୁ ଚାହେଁ ନାହିଁ । ଘୃଣାର ବାଲିବନ୍ଧ ଉଛୁଳି ପଡ଼ୁଛି, ଆକ୍ରୋଶର ସାଗର ବେଳାରେ । ୧୯୨୧ ମସିହା ଅଗଷ୍ଟ ମାସ । ଉପନିବେଶ ଶାସନ ଦାୟିତ୍ୱରେ ଥିବା ମନ୍ତ୍ରୀ ଆଲବର୍ଟ ସାରାଟ୍‌ଙ୍କ ପାଖକୁ ଲେଖିଥିବା ନୁଏନଙ୍କର "ଖୋଲା ଚିଠି" ପ୍ରକାଶ ପାଇଲା ଲେ-ପାରିଆର ପ୍ରଥମ ପୃଷ୍ଠାରେ ।

"ଯେଉଁ ସମୟରେ ପାର୍ଲାମେଣ୍ଟ ବ୍ୟୟ ସଙ୍କୋଚର କଥା ଚିନ୍ତା କରୁଛି, ଯେଉଁ ସମୟରେ କୃଷି ଓ ଶିଳ୍ପକ୍ଷେତ୍ରରେ ଲୋକସଂଖ୍ୟାର ଏତେ ଅଭାବ, ଯେଉଁ ସମୟରେ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ପୁନର୍ବସତି ପାଇଁ ସମସ୍ତ ଉତ୍ପାଦନଶୀଳ କର୍ମଶକ୍ତିକୁ ନିୟୋଜିତ କରିବାର ବେଳ ଆସି ପହଞ୍ଚିଛି, ଠିକ୍ ସେତିକି ବେଳେ ଆପଣଙ୍କଠାରୁ କୌଣସି ଅନୁଗ୍ରହ ଗ୍ରହଣ କରିବା ଆମମାନଙ୍କ ପକ୍ଷରେ ଦେଶପ୍ରେମ ବିରୋଧୀ କାର୍ଯ୍ୟ ହେବ । ଆମେ ପ୍ରତିଦିନ କ'ଣ କରୁ ବା ନ କରୁ ସେ ବିଷୟରେ ଜାଣିବା ପାଇଁ ଆପଣ ଯଦି ଏତେ ଉଦ୍‌ବିଗ୍ନ, ତେବେ ଆମେ ପ୍ରତିଦିନ ସକାଳେ

ସେ ବକ୍ତବ୍ୟରେ ଏକ ସଂକ୍ଷିପ୍ତ ସାର ସଂଗ୍ରହ ଲେ-ପାରିଆରେ ପ୍ରକାଶ କରିବୁ । ମାନ୍ୟବର ମନ୍ତ୍ରୀ ମହୋଦୟ ଟିକେ କଷ୍ଟ କରି ତାଙ୍କୁ ପଢ଼ି ପାରିବେ ଆମର ସମସ୍ତ ଗଠନମୂଳକ ବକ୍ତବ୍ୟ ତାଙ୍କ ଅବଗତ ରହି ପାରିବେ। ତା’ ଛଡ଼ା ଆମର ଦୈନନ୍ଦିନ କାର୍ଯ୍ୟ-କ୍ରମ ଅତ୍ୟନ୍ତ ସହଜ ଏବଂ କୃତ୍ରିମ କୌଣସି ପରିବର୍ତ୍ତନ ଥାଏ । ସକାଳ ଆଠଟାଠାରୁ ଏଗାରଟା ପର୍ଯ୍ୟନ୍ତ କାରଖାନାରେ କଟିଯାଏ । ଦ୍ୱିପ୍ରହରରେ ବାମପନ୍ଥୀ ସମ୍ବାଦପତ୍ର କାର୍ଯ୍ୟାଳୟ ବା କୌଣସି ଲାଇବ୍ରେରୀ, ସନ୍ଧ୍ୟାରେ ଘରେ କିମ୍ବା କୌଣସି ଶିକ୍ଷାଳୟ ଆଲୋଚନା ଚକ୍ର, ରବିବାର ଏବଂ ଅନ୍ୟାନ୍ୟ ଛୁଟିଦିନ ମିଉଜିଅମ୍ ବା ଯେ କୌଣସି ଦର୍ଶନୀୟ ସ୍ଥାନ ଦେଖା । ଏହିସବୁ ନେଇ ଆମର ଜୀବନ । ଆଶା କରେ ମାନ୍ୟବର ମହୋଦୟ ଏହି ବ୍ୟବସ୍ଥାରେ ନିଶ୍ଚୟ ସନ୍ତୁଷ୍ଟ ହେବେ ।”

ମନ୍ତ୍ରୀ ମହୋଦୟଙ୍କ ପାଇଁ ଏହି ସୁନ୍ଦର ସଙ୍କଳିତ କୈଫିୟତ ଯେତେ ଦରକାରୀ ନ ଥିଲା, ତାଠାରୁ ବେଶୀ ମର୍ମସ୍ପର୍ଶୀ, ଦରଦଯୁକ୍ତ ଥିଲା କଳକାରଖାନାରେ କାମ କରୁଥିବା ଶ୍ରମିକସମାଜ ପାଇଁ । ସେ ସମସ୍ତେ ‘ଲେ-ପାରିଆ’ ଏହି ଗ୍ରନ୍ଥ ଉପରେ ଆଖି ବୁଲାଇ ଆଣିଛନ୍ତି । ପ୍ରତ୍ୟେକଙ୍କ ମୁହଁରେ ଆଲୋକଦୀପ୍ତ ଉତ୍ତର ‘ଶ୍ରମିକଜୀବନର ଦୈନନ୍ଦିନୀକୁ ହିଁ ଉଦ୍ଧାର କରିଯାଇଛୁ ଲେ-ପାରିଆ ବକ୍ଷରେ । ଯେଉଁ ଶ୍ରମିକର ଜୀବନ ସମ୍ବାଦପତ୍ର ମାଲିକମାନଙ୍କର ଯୋତାତଳର ଧୂଳି ହୋଇ ରହିଥିଲା, ସେ ଆଜି ପ୍ୟାରିସ ସହରର ପ୍ରତିଷ୍ଠିତ ଏକ ସମ୍ବାଦପତ୍ରର ଅଙ୍ଗ ସ୍ତମ୍ଭରେ ଲିପିବଦ୍ଧ । ସାହସ, ଦମ୍ଭର ପ୍ରଥମ ସମ୍ଭାଷଣ ପାଇ ଶ୍ରମିକଶ୍ରେଣୀ ମାଡ଼ି ଚାଲିଲେ ପ୍ୟାରିସର ରାଜପଥରେ ।”

ପୋଲିସର ନାଲି ଆଖିର ସାମନାରେ ପ୍ୟାରିସରେ ଥିବା ଭିଏତନାମୀ ଛାତ୍ର ଲେ-ପାରିଆ ଦେଖି ଭୟ ପାଇ ଯାଉଥିଲେ । ଗୁଏନର ନାମ ଶୁଣିବା ମାତ୍ରେ ଛାତିରେ ତାଙ୍କର ଦମକାଏ କାଳୁଆ ପବନ ବାଜି ଯାଉଥିଲା । ସେମାନେ ଯେ ଗୁଏନଙ୍କୁ ଭଲ ପାଉ ନ ଥିଲେ ବା ଲେ-ପେରିଆକୁ ସମର୍ଥନ କରୁ ନ ଥିଲେ ତାହା ନୁହେଁ, କିନ୍ତୁ ପୋଲିସର କଡ଼ା ନଜରରେ ଥାଇ ଶିକ୍ଷା ପାଇବା କ୍ଷେତ୍ରରେ କୌଣସି ବାଧାବିଘ୍ନକୁ ସହଜରେ ସ୍ୱାଗତ କରି ପାରୁ ନ ଥିଲେ । କାରଣ ସେମାନେ ବିଦେଶୀ ପୁଣି ଶୋଷିତ ପ୍ରବାସୀ ଶ୍ରମଜୀବୀ ଗୋଷ୍ଠୀ । କିନ୍ତୁ ସେମାନଙ୍କର ଏହି ଭୟ ବେଶୀଦିନ ରହିଲା ନାହିଁ । ଭିଏତନାମ ପାଇଁ ସ୍ୱାଧୀନତା ଦାବୀ ଘୋଷଣା କରି ଯେଉଁଦିନ ‘ଲିଗ୍ ଅଫ କଲୋନିଆଲ କଂଟ୍ରିଜ୍’ ବା ‘ଉପନିବେଶୀ ଦେଶସଂଘ’ ଗଢ଼ା ହେଲା ସେହିଦିନଠାରୁ ସେମାନେ ସେ ଭୟ ପରିତ୍ୟାଗ କରି ଆଗେଇ ଆସିଛନ୍ତି । ‘ଲେ-ପେରିଆ’କୁ ନିଜଠାରୁ ବଳି ଆପଣାର କରି ଶିଖିଛନ୍ତି । ଘଟଣାକ୍ରମେ

‘ଲେ-ପେରିଆଁ’ର ସମ୍ପାଦକ, ପରିଚାଳକ ନୂଏନ ସେମାନଙ୍କର ଆତୁର ନିବେଦନ ହୋଇପଡ଼ିଛନ୍ତି । ଗୋଟିଏ ଛୋଟ ଘଟଣାରୁ ଏହା ଅତ୍ୟନ୍ତ ସ୍ପଷ୍ଟ ହୋଇଯାଏ । ସେତେବେଳେ ଉପନିବେଶବାସୀମାନଙ୍କ ଯେଉଁ କେତେକ ଦେଶଦ୍ରୋହୀ ଭିଏତନାମୀ ସାହାଯ୍ୟ ସମର୍ଥନ ଜଣାଉଥିଲେ ସେମାନଙ୍କ ମଧ୍ୟରୁ ଜଣଙ୍କର ପୁଅ ଦିନେ ‘ଲେ-ପାରିଆଁ’ ଅଫିସରେ ଆସି ପହଞ୍ଚିଲା । ଟେବୁଲ ଉପରେ ପାଞ୍ଚ ଫ୍ରାଙ୍କ୍ ରଖି-ଦେଇ କହିଲା “ଲେ-ପାରିଆ ପାଇଁ ।” ବାକ୍ୟର ଶେଷ ଅଂଶ ସରୁ ନ ସରୁଣୁ ସେ ଝଡ଼ ବେଗରେ ଅଫିସ ଭିତରୁ ଚାଲିଯାଇଥିଲା । ଏହାପର ଅନେକ ଦିନ ମୁଣ୍ଡରୁ ଉପନିବେଶୀ ସଂସର୍ଗଜାତ ଭୂତ ଦୋଷ ଛଡ଼ାଇ ଲେ-ପାରିଆ ଅଫିସକୁ ପାପସ୍ଖଳନ ପାଇଁ ଆସୁଥିଲେ । ‘ଲେ-ପାରିଆ’ ଦିନକୁ ଦିନ ସେମାନଙ୍କ ହାତରେ ଚନ୍ଦ୍ରକଳା ପରି ବଢ଼ି ଚାଲିଥିଲା । ଉପନିବେଶ ଅନ୍ଧାରମୂଳକରେ ଏହି ପତ୍ରିକା ଆଲୋକର ସନ୍ଧାନ ଦେଇଥିଲା ସେତେବେଳେ ।

ଏହି ଅଧ୍ୟାୟର ଆରମ୍ଭରେ କୁହାଯାଇଛି ‘ଲେ-ପାରିଆଁ’ ଝୁଡ଼୍ ଭିମ୍ ସମସ୍ୟା-ପାଇଁ ଦେଖାଦେଇଥିଲେ ମଧ୍ୟ ପାହାନ୍ତି ଗଗନର ଶୁକତାରା ପରି ସେ ଥିଲା ଝୁଡ଼୍ ଉଜ୍ଜ୍ୱଳ ଏବଂ ଜ୍ୟୋତିପ୍ରକାଶିକା । ତତ୍କାଳୀନ ଫ୍ରାନସର ରାଜନୀତି, ସାମାଜିକ ବ୍ୟବସ୍ଥା କ୍ଷେତ୍ରରେ ସେ ଥିଲା ଯୋଗ୍ୟ ନିୟାମକପରି । ତାର ମଧ୍ୟଦେଇ କେତେ ଉତ୍ଥାନ ପତନର ଧାରା ପ୍ରବାହିତ ହୋଇଛି । ତାର ବକ୍ଷଦେଶରେ ପାଦରଖି ଫରାସୀ କମ୍ୟୁନିଷ୍ଟପାର୍ଟି ସବୁହରା ମଣିଷର ସ୍ୱାର୍ଥ କାୟମ ରଖିବା ପାଇଁ ଲଢ଼ାଇ କରିବା ଶିଖିଛି । ତାର କାନରେ ସମସ୍ତ ସ୍ୱର ସ୍ଥାପନ କରି ଲକ୍ଷ ଲକ୍ଷ ବନ୍ଦିମୁକ୍ତି ଉଦ୍ବେଳିତ ହୋଇଛି ଶ୍ରେଣୀହୀନ ସମାଜ ପ୍ରତିଷ୍ଠାର ଦାବୀ କରି । ୧୯୨୪ର ମଧ୍ୟ-ଭାଗରେ ତାର ଅକାଳ ମୃତ୍ୟୁ । ଏପ୍ରିଲ ମାସର ବର୍ଷଣମୁଖର ଉଚ୍ଛ୍ୱାସ କଳରବ ମଧ୍ୟରେ ସେ ଉଭେଇ ଗଲା ସବୁଦିନ ପାଇଁ, କିନ୍ତୁ ଅସରନ୍ତି ମନତଟରେ ରଖିଗଲା ମର୍ମାନ୍ତିକ ବେଦନାର ଘୁରୁଘୁର । ପ୍ୟାରିସର ନିତ୍ୟପଥଯାତ୍ରୀ ସବୁହରା ମେହେନତି ଜନତାର ଐକାନ୍ତିକ ଅଭିଳାଷକୁ ବାସ୍ତବ ରୂପରେ ଦେଖିବା ପାଇଁ ସେ ହଜିଗଲା ଅନନ୍ତ ନଭରେ କିନ୍ତୁ ଛାଡ଼ିଦେଇଗଲା ବିପ୍ଳବ ସେତୁ ବନ୍ଧରେ ଲୁଣ୍ଠିତ ମସୀପରି ଅସରନ୍ତି ବାଲିକଣା ।

୧୯୨୪ର ସାଧାରଣ ନିର୍ବାଚନ । ରଙ୍ଗ ବେରଙ୍ଗର ପତାକାର ଶୋଭା-ଯାତ୍ରାରେ ମୁଖର ହୋଇଉଠିଛି ପ୍ୟାରିସର ଜନପଥ । ଯୁଦ୍ଧୋତ୍ତର ଫ୍ରାନ୍ସରେ ପ୍ରଥମ ନିର୍ବାଚନ ମେଣ୍ଟ, ସାଲିସହୀନ ପ୍ରତିଦ୍ୱନ୍ଦ୍ୱିତାର ତୀବ୍ର ଆହ୍ୱାନ । କମ୍ୟୁନିଷ୍ଟ-ପାର୍ଟି ମୁଖ୍ୟ ବିରୋଧୀ ଦଳ ରୂପେ ନିର୍ବାଚନର ମଇଦାନରେ ଅବତୀର୍ଣ୍ଣ । ଶୋଷିତ,

ସଙ୍ଗ୍ରହୀ, ନିପୀଡ଼ିତ ଶ୍ରମଜୀବୀ ମଣିଷର ଦାବୀକୁ ଅମୋଘ ଅସ୍ତ୍ର କରି କମ୍ୟୁନିଷ୍ଟପାର୍ଟିର ଲଳନ୍ତିକା ଆହ୍ୱାନ ଦେଇଛି ତା ସପକ୍ଷରେ ସମର୍ଥନ ଜଣାଇବା ପାଇଁ । ଏହି ଅମ୍ମାର ରକ୍ତସ୍ୱାକ୍ଷର ବହନ କରି 'ଲେ-ପେରିଆ' ପ୍ରତି ଶ୍ରମିକ, ବାମପନ୍ଥୀ, ମୁକ୍ତିକାମୀ ଫରାସୀ ଅଧିବାସୀର ଦ୍ୱାରସ୍ଥ ହୋଇଛି । ନୀରବ ଅନ୍ଧାର ମଧ୍ୟରେ ସେ ଘୂରି-ବୁଲିଛି ସହର ତଳି ଶ୍ରମିକ ବସ୍ତିରେ । ଜୟ, ପରାଜୟର ଅନନୁମେୟ ଆଶଙ୍କା ମଧ୍ୟରେ ସେ କେବେ ଭାଙ୍ଗିପଡ଼ି ନାହିଁ । ସାମୟିକ ଆଘାତ ପରେ ନୂତନ ବଳ ସଞ୍ଚାର କରି ସେ ପୁଣି ଉଠିପଡ଼ିଛି ।

ଏହି ତାର ଇତିହାସର ଶେଷ ଅକ୍ଷର ନୁହେଁ, ତା ପୂର୍ବରୁ ସେ ବହୁବାର ପରୀକ୍ଷାର ସମ୍ମୁଖୀନ ହୋଇଛି । ମହାନ୍ ଅକ୍ଟୋବର ବିପ୍ଳବର ଜୟଗାନରେ ଉଚ୍ଛ୍ୱସିତ ଥିବାବେଳେ ତାର ଅଫିସଦ୍ୱାରରେ ଜବରଦସ୍ତି ତାଲି ଝୁଲାଇ ଦିଆ-ଯାଇଛି । "କୃଷକ ଆନ୍ତର୍ଜାତିକ" ମହାସମ୍ମେଳନ ପାଇଁ ସେ ଯେବେ ଆଗକୁ ବାହାରି ଆସିଛି—ତା ମୁହଁ ଜୋରକରି ବନ୍ଦକରି ଦିଆଯାଇଛି । କିନ୍ତୁ ୧୯୨୩ର ନଭେମ୍ବର ମାସ ପ୍ରାକ୍‌କାଳରେ ବିଶ୍ୱର ଦଳିତ କୃଷକ, ଆନ୍ତର୍ଜାତିକ ସଙ୍ଗୀତ ସୁର ମିଳାଇ ଗାଇଉଠିଛନ୍ତି ଏକ ସଙ୍ଗରେ । 'ଲେ-ପେରିଆ' ସେ ସମସ୍ତଙ୍କୁ ଚହଲାଇ ଦେଇଛି ଏ ଦୁନିଆ ସହିତ । ଏପରି କୌଣସି ସଂଖ୍ୟା ବାଦ୍ ଯାଇ ନାହିଁ, ଯେଉଁଥିରେ କି ଅକ୍ଟୋବର ସମାଜବାଦୀ ବିପ୍ଳବର କଥା ପ୍ରକାଶିତ ନ ହୋଇଛି । ସୋଭିଏତ୍ ରାଷ୍ଟ୍ରସଙ୍ଘର ଅଫୁରନ୍ତ ସାହାଯ୍ୟ, ସାମ୍ୟବାଦୀ ଆନ୍ଦୋଳନ ପ୍ରତି ତାର ଐକାନ୍ତିକ ନିଷ୍ଠା, ସମାଜବାଦୀ ରାଷ୍ଟ୍ରଗଠନ ପାଇଁ ପ୍ରାଣପାତ ଉଦ୍ୟମ ତଥା ଉପନିବେଶ ଜାତିସମୂହର ସ୍ୱାଧୀନତା ପାଇଁ ତୀବ୍ରତର ସଂଗ୍ରାମକୁ 'ଲେ-ପେରିଆ' କୌଣସି ଥର ବାଦ୍ ଦେଇନାହିଁ । ସଂକ୍ଷେପରେ କୁହାଯାଇ ପାରେ, ଲେ-ପେରିଆ ତତ୍‌କାଳୀନ ଫରାସୀ ଉପନିବେଶବାଦ ବିରୁଦ୍ଧରେ ଏକ ବୈପ୍ଳବିକ ତାତ୍ତ୍ୱିକ ମାଧ୍ୟମ ଥିଲା । ତାରି ସାହାଯ୍ୟରେ ନ୍ୟୁଏନ ଭିଏତନାମୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ସମୀକ୍ଷା ସ୍ତମ୍ଭର ଆୟୋଜନ କରିଥିଲେ, ଯାହା 'Soul of Vietnam' ବା 'ଭିଏତନାମର' ଆତ୍ମା ନାମରେ ଆଖ୍ୟାୟିତ । ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଥିଲେ ପୂର୍ବପରିଚିତ ବୁଇଲମ । କିନ୍ତୁ ସେମାନଙ୍କର ଉଦ୍ୟମ ଦୀର୍ଘଦିନ ଫଳବତୀ ରହିପାରିଲା ନାହିଁ ।

ସମ୍ପାଦକତାକୁ ଯେ ନ୍ୟୁଏନ ରାଜନୈତିକ ସଡ଼କ ଭାବେ ଆଶ୍ରୟ କରିଥିଲେ ତା' ନୁହେଁ । ଏହା ଥିଲା ତାଙ୍କ ପାଇଁ ଉପଯୁକ୍ତ ଏବଂ ନିର୍ଭୁଲ ପଥ । ହଗହଗ ହୋଇ

ପ୍ରସ୍ତୁତିର ପଥରେ ନ ଚାଲି ବ୍ୟାପକ ଗଣଆନ୍ଦୋଳନକୁ ସଂଗଠିତ କରିବା ଦିଗରେ ସେ ଏହାକୁ ଭବିଷ୍ୟତ ପାଇଁ ଅବ୍ୟର୍ଥ ମହୌଷଧ ବୋଲି ଧରି ନେଇଥିଲେ । ବାସ୍ତବକ୍ଷେତ୍ରରେ ସାମୂହିକତା ହିଁ ତାଙ୍କୁ ଅଧିକ ଶକ୍ତିଶାଳୀ, ପ୍ରଗତିଶୀଳ କରି ଗଢ଼ି ତୋଳିପାରିଛି । 'ଲେ-ପେରିଆ'କୁ ବାଦ ଦେଲେ ଆଉ ଯେତେ ଯେତେ ପତ୍ରପତ୍ରିକା, ସମ୍ବାଦପତ୍ର ସହିତ ସେ ଜଡ଼ିତ ଥିଲେ, ସେସବୁ ମଧ୍ୟରୁ 'ଲ-ହ୍ୟୁମାନିତେ' (L' Humanite)ର ନାମ ଉଲ୍ଲେଖଯୋଗ୍ୟ । 'ଲେ-ପେରିଆ' ଜନ୍ମର ବହୁପୂର୍ବରୁ ନୁଏନ୍ 'ଲ-ହ୍ୟୁମାନିତେ' ସହିତ ପରିଚିତ ଥିଲେ । 'ଲ-ହ୍ୟୁମାନିତେ'ରେ ପ୍ରକାଶିତ ତାଙ୍କର ଟ୍ୟୁର୍ସ କଂଗ୍ରେସରେ ଯୋଗଦାନ ସମ୍ବନ୍ଧୀୟ ବିବରଣୀ ହିଁ ନୁଏନ୍‌ଙ୍କୁ ରାଜନୈତିକ ମହଲରେ ପ୍ରଥମେ ଚିହ୍ନା କରାଇଥିଲା । ଏହା ପୂର୍ବରୁ ନୁଏନ୍ ସାଧାରଣ ପ୍ରବାସୀ ଭିଏତନାମୀ ବିଦ୍ରୋହୀ ଶ୍ରମିକମାନଙ୍କ ମଧ୍ୟରୁ ଜଣେ । ୧୯୨୦ ମସିହା ଡିସେମ୍ବର ୨୮ ତାରିଖରେ 'ଲ-ହ୍ୟୁମାନିତେ'ରେ ଟ୍ୟୁର୍ସ କଂଗ୍ରେସ ପ୍ରସ୍ତାବ ସହିତ ବଡ଼ ବଡ଼ ଫଟୋମାନ ପ୍ରକାଶ ପାଇଲା । ସେହିସବୁ ଫଟୋ ପରବର୍ତ୍ତୀ ସମୟରେ ଅନେକ ଶ୍ରେଷ୍ଠ ବଡ଼ ପତ୍ରପତ୍ରିକା ଏବଂ ଦୁଇ ତିନି ଖଣ୍ଡ ପୁସ୍ତକରେ ମଧ୍ୟ ପ୍ରକାଶ ପାଇଛି । ତାଙ୍କ ପାର୍ଶ୍ୱକୁ ଲାଗି ପଲ ଭାଇଲାଣ୍ଟ କୁଟେରିର୍, ପଲ ବୋନକାର ଏବଂ ଲିଓଁ ବ୍ଲୁମ ଓ କ୍ଲାରା ଜାଟକିନଙ୍କ ପରି ପ୍ରସିଦ୍ଧ ସାମ୍ୟବାଦୀ ନେତାମାନଙ୍କର ଫଟୋ ସେଥିରେ ବାହାରିଥିଲା । ଡିସେମ୍ବର ୨୬ ତାରିଖରେ ଟ୍ୟୁର୍ସ ଅଧିବେଶନରେ ଦେଇଥିବା ଭାଷଣସମ୍ବଳିତ ଭିଏତନାମୀ ଦାବୀପତ୍ରକୁ ସମ୍ପୂର୍ଣ୍ଣ ଉଦ୍ଧାର କରାଯାଇଥିଲା ସେଥିରେ । ପ୍ରାଚ୍ୟ ଭୂଖଣ୍ଡରୁ ଆସିଥିବା ଏହି ଅନାମଧେୟ ଜଙ୍ଗୀ ତରୁଣ ଜଣଙ୍କୁ ଜାଣିବା ପାଇଁ ବାହାରଦୁନିଆ ଆଗ୍ରହୀ ହୋଇ ଉଠିଲା । କିଏ ଏହି ବ୍ୟକ୍ତି ? ଯେ ଉପନିବେଶ ଜାତିର ସ୍ୱାଧୀନତା ଦାବୀକରି ଏପରି ଅଗ୍ନିବର୍ଷୀ ସ୍ୱର ଉତ୍ତୋଳନ କରିପାରେ ! ବିଶିଷ୍ଟ ନେତୃବୃନ୍ଦମାନଙ୍କ ସମ୍ମିଳନୀରେ ନିମନ୍ତ୍ରିତ ହୋଇ ଯୋଗଦେବା ନୁଏନ୍‌ଙ୍କ ପକ୍ଷରେ ଏହି ପ୍ରଥମ । ଇଣ୍ଡୋଚୀନର ନାମମାତ୍ର ପ୍ରତିନିଧି ସେ । ଟ୍ୟୁର୍ସ ଅଧିବେଶନର ସଜ୍ଜିତ ସଭାମଣ୍ଡପ ଘେରିକଡ଼ରେ ଆମନ୍ତ୍ରିତ ଅତିଥିବୃନ୍ଦ । ଦେଶଭିତରୁ ଓ ବାହାରୁ ଅନେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ସମାବେଶ ସେଠାରେ । ସଭା ମଞ୍ଚରେ ଇଣ୍ଡୋଚୀନର ପ୍ରତିନିଧିଙ୍କୁ ଆହ୍ୱାନ କଲେ ସଭାପତି । ତାଙ୍କ ସ୍ଥାନରୁ ଉଠିଲେ ଶୁଭ୍ର ମ୍ଳାନ, କ୍ଷୀଣ ଅଥଚ ଦୀର୍ଘକାୟ ଏକ ପୀତବର୍ଣ୍ଣର ଲୋକ । ଦେହରେ ଅଛି ମୋଟା କଳା କନାର ପ୍ୟାଣ୍ଟ୍, ସାର୍ଟ । ଶରୀର ସହିତ ସ୍ୱରସାମ୍ୟ ରକ୍ଷାକରି ନ ପାରି ଝୁଲି ପଡ଼ୁଛି ବାହାରକୁ । ମନେହୁଏ ଏହି ସ୍ୱତନ୍ତ୍ର ମହୋତ୍ସବ ପାଇଁ କୌଣସି ଏକ ପୋଷାକ ଦୋକାନରୁ ଭଡ଼ାରେ ଅଣାଯାଇଛି । ମୁହଁରେ ଭୟଭ୍ରାନ୍ତିର ଲେଶମାତ୍ର ଚିହ୍ନବର୍ଣ୍ଣ ନାହିଁ । ସ୍ୱଭାବତଃ ଗମ୍ଭୀର ଏବଂ ସ୍ଥିର । ତାଙ୍କ ପୂର୍ବରୁ ଅନେକ ପ୍ରତିନିଧି କହି ସାରିଛନ୍ତି । ସେ ଆରମ୍ଭ କଲେ—

—"କମ୍ରେଡଗଣ, ମୋର ଖୁବ୍ ଇଚ୍ଛା ଥିଲା, ବିଶ୍ୱବିପ୍ଲବର ପ୍ରକ୍ରିୟାରେ ଆପଣମାନଙ୍କ ସହିତ ସହଯୋଗ କରିବା ପାଇଁ । କିନ୍ତୁ ଅତ୍ୟନ୍ତ ଦୁଃଖ ଓ ପଶ୍ଚାତାପର ସହିତ ଜଣାଉଛି ଯେ, ଆମ ଦେଶରେ ଯେଉଁ ଅସହନୀୟ ଅପରାଧର ତାଣ୍ଡବଲୀଳା ଚାଲିଛି, ଜଣେ ସମାଜତନ୍ତ୍ରୀ ହିସାବରେ ତା' ବିରୁଦ୍ଧରେ କିଛି କହିବା ପାଇଁ ମୁଁ ଏଠାକୁ ଆସିଛି । (କେବଳ ଭିଏତନାମୀ ପ୍ରତିନିଧି କାହିଁକି ସମବେତ ପ୍ରତିନିଧିମାନଙ୍କ ହୃଦୟରେ··· ଅଗ୍ନିକଣର ସଂଯୋଗ, ଯେଉଁମାନେ ଏହି ଜ୍ୱାଳାମୟୀ ଅନ୍ତରର ନିଭୃତ କକ୍ଷକୁ ଦେଖି ପାରୁଥିଲେ, ସେ ସମସ୍ତେ ଆନନ୍ଦରସହି ଚିତ୍କାର କରି ଉଠିଲେ) ।

"ଆପଣମାନେ ଜାଣନ୍ତି, ପଚିଶବର୍ଷ ତଳେ ଫରାସୀ ପୁଞ୍ଜିବାଦ ଭିଏତନାମରେ ପ୍ରବେଶ କରିଥିଲା । ପୁଞ୍ଜିବାଦ ନାମରେ ସେମାନେ ଆମକୁ ବାୟୋନେଟ ଦେଖାଇ ଜୟ କଲେ । ସେହିଦିନଠାରୁ ଅତି ଲଜ୍ଜାଜନକଭାବେ ନିର୍ଯ୍ୟାତନ ଓ ଶୋଷଣ କରିବା ଛଡ଼ା ସେମାନେ ଅତି ବିଭତ୍ସଭାବେ ଆମକୁ ହତ୍ୟା କରିଛନ୍ତି, ବିଷ ଖୁଆଇଛନ୍ତି (ବିଷଖୁଆଇବା କଥାଟା ଉପରେ ମୁଁ ଏଥିପାଇଁ ଗୁରୁତ୍ୱ ଦେବାକୁ ଚାହିଁଛି—ଅଫିମ, ମଦ, ହିରୋଇନ, ଆଦି ବିଷ ଆମକୁ ଖୁଆଇଛନ୍ତି) ପୁଞ୍ଜିବାଦୀ ଦସ୍ୟୁମାନେ ଇଣ୍ଡୋଚୀନରେ ଯେଉଁସବୁ ପାଶବିକ ଅତ୍ୟାଚାର ଚଳାଇଛନ୍ତି, ଅଳ୍ପ କେତେକ ମିନଟ ମଧ୍ୟରେ ତାର ପୂର୍ଣ୍ଣ ବିବରଣୀ ଦେବା ଅସମ୍ଭବ । ସ୍କୁଲଠାରୁ ସେଠାରେ ବନ୍ଦୀଶାଳାରେ ସଂଖ୍ୟା ବହୁତ ବେଶୀ ଏବଂ ତାର ଦ୍ୱାର ସବୁ ଧ୍ୟମୟରେ ଖୋଲା । ସବୁ ସମୟରେ ସେଠାରେ ଅସଂଖ୍ୟ ଜନଗହଳି । କୌଣସି ଦେଶୀୟ ଅଧିବାସୀ ଯଦି ସେଠାରେ ସମାଜତାନ୍ତ୍ରିକ ମତବାଦ ପୋଷଣ କରେ ତେବେ ତାକୁ ସଙ୍ଗେ ସଙ୍ଗେ ଜେଲ ମଧ୍ୟରେ ଭର୍ତ୍ତିକରି ଦିଆଯାଏ, ଏବଂ ଅନେକ ସମୟରେ ତାକୁ ବିନା ବିଚାରରେ ହତ୍ୟା କରାଯାଏ । ଇଣ୍ଡୋଚୀନରେ ଏହାର ନାମ ହିଁ ତଥାକଥିତ ନ୍ୟାୟବିଚାର । ସେଠାରେ ମଣିଷର ବିଚାର ହୁଏ ଦୁଇଟି ମାନଦଣ୍ଡରୁ, ଇଉରୋପୀୟ ବା ଯେଉଁମାନେ ଇଉରୋପୀୟ ହୋଇ ଯାଇଛନ୍ତି ସେମାନଙ୍କୁ ସମସ୍ତ ସୁବିଧା ସୁଯୋଗ ମିଳେ, ଆନାମୀମାନେ ସେଥିରୁ ବଞ୍ଚିତ ।

"ସମ୍ବାଦପତ୍ରର ସ୍ୱାଧୀନତା ବା ମତାମତ ବ୍ୟକ୍ତ କରିବାର ସ୍ୱାଧୀନତା କହିଲେ କିଛିନାହିଁ । ସଭା କରିବାର ବା ସଂଗଠନ ଗଢ଼ିବାର ଅଧିକାର ନାହିଁ । ଆମ୍ଭେମାନେ ଦେଶ ତ୍ୟାଗ କରିପାରୁନା କିମ୍ବା ବିଦେଶ ଭ୍ରମଣରେ ଯାଇ ପାରୁନା । ଅଜ୍ଞତାର ନିବିଡ଼ ଅନ୍ଧକାର ମଧ୍ୟରେ ଆମର ଜୀବନ, କାରଣ ଆମପାଇଁ ଶିକ୍ଷାର ସ୍ୱାଧୀନତା ନାହିଁ । ଇଣ୍ଡୋଚୀନରେ ଆମକୁ ଅଫିମ ନିଶା ଧରାଇ କାବୁ କରାଯାଏ,

ମଦ ଖୁଆଇ ମାତାଲ କରି ଦେବାକୁ ଚେଷ୍ଟା ଆଏ ସବୁ ସମୟରେ । ଏହିପରି କେତେ ସହସ୍ର ଆନାମୀ ବନ୍ଦି ପଡ଼ିଛନ୍ତି । ଆହୁରି କେତେ ମରଣମୁଖରେ ନିର୍ଯ୍ୟାତିତ ହୋଇଛନ୍ତି ଅନ୍ୟର ସ୍ୱାର୍ଥ ପାଇଁ ଯେଉଁଠି କି ତାଙ୍କ ନିଜର ନୁହେଁ ।

"କମ୍ରେଡ଼, ଦୁଇକୋଟି ଆନାମୀ ସହିତ ପ୍ରତିଦିନ ଏହିପରି ବ୍ୟବହାର ହିଁ କରାଯାଏ । ସଂଖ୍ୟା ଦୃଷ୍ଟିରୁ ଦେଖିଲେ ସେମାନେ ଫରାସୀ ଲୋକସଂଖ୍ୟାର ଅର୍ଦ୍ଧାଧିକ । ତଥାପି କ'ଣ ଏହି ଆନାମୀମାନେ ଫ୍ରାନସର ଶୁଭଦୃଷ୍ଟିରେ ଅଛନ୍ତି !! ନିଜ ପ୍ରତି କର୍ତ୍ତବ୍ୟପାଳନ ପାଇଁ ସୋସାଲିଷ୍ଟ ପାର୍ଟି ଦେଶୀୟ ଜନସାଧାରଣଙ୍କ ପକ୍ଷରୁ ବହୁତ କାର୍ଯ୍ୟକ୍ରମ ଗ୍ରହଣ କରିବା ଉଚିତ୍ ।"

"କମ୍ରେଡ଼, ପାର୍ଟିକୁ ସମସ୍ତ ଉପନିବେଶମାନଙ୍କରେ ସମାଜତାନ୍ତ୍ରିକ ବିଚାର-ଧାରାର ପ୍ରଚାର ଚଳାଇବାକୁ ପଡ଼ିବ । ଉପନିବେଶ ସମସ୍ୟା ସମାଧାନ ଦିଗରେ ସୋସାଲିଷ୍ଟ ପାର୍ଟିର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଦେଖି ତୃତୀୟ ଆନ୍ତର୍ଜାତିକରେ ଯୋଗଦାନ କରିବା ସମ୍ବନ୍ଧରେ ସିଦ୍ଧାନ୍ତକୁ ଆମେ ବିଚାର କରିବା ଉଚିତ୍ । ଆମେ ଖୁସି ଆନନ୍ଦିତ ହେଲୁ ଯେ ଉତ୍ତର-ଆଫ୍ରିକା ପାଇଁ ଗୋଟିଏ ସ୍ଥାୟୀ ପରିଷଦ ଗଠନ କରାହୋଇଛି । ଆମେ ଖୁସି ହେବୁ, ଆସନ୍ତାକାଲି ପାର୍ଟି ଯଦି କୌଣସି ସମାଜବାଦୀ କମ୍ରେଡ଼ଙ୍କୁ ଇଣ୍ଡୋଚୀନ୍ ପଠାଇ ଯେଉଁଠାରେ କି କି ସମସ୍ୟା ରହିଛି; ତାହାର ଏକ ସରଜମିନ ତଦନ୍ତ କରି ପାରନ୍ତେ ଏବଂ ତାର ଏକ ସ୍ଥାୟୀ ସମାଧାନ ନିମନ୍ତେ କିଛି ବ୍ୟବସ୍ଥା ଗ୍ରହଣ କରି ପାରନ୍ତେ । ଆପଣମାନଙ୍କୁ ନିବେଦନ, ଏଥିରେ ଉତ୍ତେଜିତ ହେବେ ନାହିଁ । ସମଗ୍ର ମାନବଜାତିର ନାମରେ, ଦକ୍ଷିଣପନ୍ଥୀ, ବାମପନ୍ଥୀ ଏ ସମସ୍ତ ସମାଜତନ୍ତ୍ରୀଙ୍କ ନାମରେ ମୁଁ ଆପଣମାନଙ୍କୁ ବିନମ୍ର ନିବେଦନ କରୁଛି, କମ୍ରେଡ଼ଗଣ, ଆମମାନଙ୍କୁ ଆପଣମାନେ ସ୍ୱୀକାର କରନ୍ତୁ ।"

ସମ୍ମିଳନୀର ସଭାପତି ନିଜ ଆସନରୁ ସ୍ୱତଃପ୍ରବୃତ୍ତ ହୋଇ ଉଠିପଡ଼ିଲେ କରମର୍ଦ୍ଦନ କରିବା ପାଇଁ । ବିସ୍ମୟ ବିସ୍ଫାରିତ ନେତ୍ରରେ ଚାହିଁ ରହିଛନ୍ତି ଉପସ୍ଥିତ ଭଦ୍ରମଣ୍ଡଳୀ । ଉତ୍ଫୁଲ୍ଲ ହର୍ଷଧ୍ୱନି ମଧ୍ୟରେ ପ୍ରାଚ୍ୟଭୂଖଣ୍ଡର ପ୍ରତିନିଧିଗଣ ଟେକି ନେଇଗଲେ ଙ୍ଗୁଏନ୍‌ଙ୍କୁ ସମସ୍ୱରରେ ବଧାଇ ଜଣାଇବା ପାଇଁ । ଅପେକ୍ଷମାନ ଅଗଣିତ ଅନ୍ଧକାର ପଥରେ ସେ ଦୁର୍ଜ୍ଜେୟ ପ୍ରହରୀ । ଏହି ଆଶା ଭରସା ସମସ୍ତଙ୍କୁ ସାହସିକ କରିପାରିଛି ଆଜି । ବୁର୍ଜୁୟା ପୁଞ୍ଜିବାଦୀ ବିଷବୃକ୍ଷର ମୂଳୋତ୍ପାଟନ ପାଇଁ ଶତ ଶତ ବଜ୍ରମୁଷ୍ଟି ଆଗେଇ ଆସିଛି ଏକାଧାରରେ । ଇଣ୍ଡୋଚୀନର ମାଟିରୁ ଅବାଞ୍ଛିତ ନାରକୀୟ ହତ୍ୟାକାଣ୍ଡର ପରିସମାପ୍ତି ପାଇଁ ଭିତ୍ତି ସ୍ଥାପନ ହେବାକୁ ଯାଉଛି ।

ସମସ୍ତେ ଚହିଁଲେ ସେଦିନ ନୁଏନ୍‌ଙ୍କୁ । ସହରତଳି ଶ୍ରମିକବସ୍ତିର କ୍ଷୁଦ୍ର କୋଠରୀଟିରେ ମୁଣ୍ଡ ଗୁଞ୍ଜିଥିବା ଫଟୋଗ୍ରାଭାଲି ନୁଏନ୍ ଆଜି ସାମ୍ୟବାଦୀ ବିପ୍ଳବର ଶୋଭାଯାତ୍ରାରେ ଝଣ୍ଡାଧାରୀ ଅଗ୍ରୁଆ ସେନାନୀ । ଇଣ୍ଡୋଚୀନର ପ୍ରାଚୀ-ଗଗନରେ ନବାରୁଣର ଲୋହିତ ଛଟା । ଦୂର ଦିଗ୍‌ବଳୟରେ ଅପ୍ରମିତ ଅନ୍ଧକାର ଖସି-ଯାଉଛି ତଳକୁ ଆହୁରି ତଳକୁ । ଭାରତ ମହାସାଗରୀୟ ଉପକୂଳରୁ ଭାସିଆସୁଛି ମୁକ୍ତ ଲହରୀର ଉଦ୍ଦାମ ସ୍ୱର ।

ସେତିକିବେଳେ ଲୁମାନିତେର ପୃଷ୍ଠାରେ ନୁଏନ୍‌ଙ୍କ ସମ୍ବନ୍ଧରେ ମାର୍ସେଲ କାଂଶ୍ୟାଙ୍କ ଲିଖିତ ଏକ ଲେଖା ପ୍ରକାଶ ପାଇଲା । ସେ ଲେଖିଥିଲେ, "ଫ୍ରାନ୍‌ସରେ ରହୁଥିବା ଇଣ୍ଡୋଚୀନର ପ୍ରତିନିଧି ଜଣଙ୍କୁ ଟୁର୍ସ କଂଗ୍ରେସରେ ଯୋଗ ଦେଇଥିବା ତତ୍କାଳୀନ ସଦସ୍ୟମାନଙ୍କ ମଧ୍ୟରୁ କେହି କେବେ ଭୁଲି ଯାଇ ନ ଥିବେ । ଫରାସୀ ସାମ୍ରାଜ୍ୟବାଦର ନଗ୍ନ, ଲଜ୍ଜାହୀନ, ବର୍ବର ଶୋଷଣ ବିରୁଦ୍ଧରେ ବିଷୋଦଗାର କରି ଦୁଇକୋଟି ଦଳିତ, ପୀଡ଼ିତ, ମୃତାହତ ବିପଦଗ୍ରସ୍ତ ଦେଶୀୟ ଜନସାଧାରଣଙ୍କୁ ଉଦ୍ଧାର କରିବା ନିମନ୍ତେ ସେ ସମାଜତନ୍ତ୍ରୀ ବନ୍ଧୁମାନଙ୍କୁ ଆହ୍ୱାନ ଜଣାଇଥିଲେ । ସୁଦୂର ପ୍ରାଚ୍ୟରୁ ଆସିଥିବା ଏହି ପ୍ରତିନିଧି ଜଣକ କିଏ ? ସେ ଆଉ କେହି ନୁହନ୍ତି, "ନୁଏନ୍ ।"



# ୮

## 'ଲେନିନବାଦ ଆଡ଼କୁ ଯେଉଁ ପଥ ମୋତେ ଟାଣି ନେଇଛି'

ଚତୁର୍ଥ ଆନ୍ତର୍ଜାତିକ କଂଗ୍ରେସର ଅଧିବେଶନ ସମାପ୍ତ ପ୍ରାୟ । ଆଉ ମାତ୍ର ଗୋଟିଏ ଦିନ ବାକି । ଜୟ ପରାଜୟର ଆଶଙ୍କାରେ ଦୋଦୁଲ୍ୟମାନ ସମବେତ ସଦସ୍ୟଗଣ । ନିର୍ବାଚନର ଘଡ଼ିସନ୍ଧି ମୁହୂର୍ତ୍ତରେ ନିଜକୁ ପ୍ରସ୍ତୁତ କରିନେଲେ ସେମାନେ । ଲିଓଂବ୍ଲୁମ୍, ମାର୍ସେଲ କାଂଶ୍ୟା, ରୋଜା ଲକ୍ସମବର୍ଗ, କ୍ଲାରା ଜାଟକିନ, ଆଣ୍ଡ୍ରଲରଙ୍କ ପରି ବିଶିଷ୍ଟ ସଭ୍ୟମାନେ ସମ୍ମିଳନୀ ମଣ୍ଡପରେ ଆସୀନ । ପ୍ରଶ୍ନ ଉଠିଛି, ତୃତୀୟ ଆନ୍ତର୍ଜାତିକରେ ଯୋଗ ଦେବାକୁ ହେବ ନା ଦ୍ୱିତୀୟ ଆନ୍ତର୍ଜାତିକର ପକ୍ଷ ସମର୍ଥନ କରିବାକୁ ପଡ଼ିବ ? ହୋ ସମ୍ମିଳନୀର ପ୍ରତ୍ୟେକ ଆଲୋଚନାରେ ଉପସ୍ଥିତ ରହି ସମସ୍ତ ଘଟଣାକୁ ତନ୍ନ ତନ୍ନ କରି ବୁଝି ଦେଖିଛନ୍ତି । ତୃତୀୟ ଆନ୍ତର୍ଜାତିକ ତାଙ୍କ ମନରେ ଗଭୀର ରେଖାପାତ କରିଛି, କାରଣ ଉପନିବେଶ ଜାତିସମୂହର ସ୍ୱାଧୀନତା, ମୁକ୍ତି, ସାର୍ବଭୌମତ୍ୱ ଦାବୀ କରି ତୃତୀୟ ଆନ୍ତର୍ଜାତିକ ହିଁ ସେମାନଙ୍କର ପକ୍ଷ ସମର୍ଥନ କରିଛି । ଆବଶ୍ୟକ ପଡ଼ିଲେ ବିଶ୍ୱର ନିପୀଡ଼ିତ ଜନତାର ସ୍ୱାର୍ଥ ହାସଲ ପାଇଁ ସେ ଶେଷ ସଂଗ୍ରାମର ସମ୍ମୁଖୀନ ହେବା ନିମନ୍ତେ ପ୍ରତିଶ୍ରୁତିବଦ୍ଧ । ନୁଏନ୍‌ଙ୍କୁ ଆକୃଷ୍ଟ କଲାପରି ଏହି ବିଶ୍ୱାସ ହିଁ ଯଥେଷ୍ଟ ଥିଲା । ତେଣୁ ସେ ଆନ୍ତର୍ଜାତିକକୁ ନେଇ ନେତୃବୃନ୍ଦଙ୍କ ମଧ୍ୟରେ ଚାଲିଥିବା ତୁମୁଳ ବାଦାନୁବାଦ ମଧ୍ୟରେ ଆଉ ପ୍ରବେଶ କଲେ ନାହିଁ ।

ଚତୁର୍ଥ କଂଗ୍ରେସର ଐତିହାସିକ ସମ୍ମେଳନ ସାମ୍ୟବାଦୀ ପ୍ରବକ୍ତାଙ୍କ ମଧ୍ୟରେ ଏକ ବିରାଟ ପ୍ରାଚୀର ଠିଆ କରାଇଦେଲା । ଗୋଟିଏ ପଟରେ ବ୍ଲୁମ୍, ରୋଜା ଲକ୍ସମବର୍ଗ, ଆଣ୍ଡ୍ରଲର, ଜନ୍ ଲଙ୍ଗେ, (କାର୍ଲମାର୍କ୍ସଙ୍କ ନାତି) ପରି ଫଉର ଏବଂ ଅନ୍ୟ ପଟରେ ରହିଲେ ମାର୍ସେଲ କାଂଶ୍ୟା, ଫ୍ରୋସାର୍ଡ଼, ଲେନିନ୍ ଓ ଷ୍ଟାଲିନ୍ । ପରବର୍ତ୍ତୀ ନେତୃତ୍ୱ ପଛରେ ସାଧାରଣ ଜନତାର ସମର୍ଥନ ଓ ଆଶୀର୍ବାଦ । ଏହାହିଁ ଥିଲା ସେମାନଙ୍କର ବୈଶିଷ୍ଟ୍ୟ । ସମାଜବାଦୀ ଶିବିରର ଏହି ଦ୍ୱନ୍ଦ୍ୱମାନ-ଗୋଷ୍ଠୀ ମଧ୍ୟରେ ମୌଳିକ ମତାଦର୍ଶ ନେଇ ଯେଉଁ ବିଭେଦ ଦେଖାଗଲା, ତାହା ଯେ କେବଳ ନେତୃତ୍ୱ ମଧ୍ୟରେ ସୀମାବଦ୍ଧ ରହିଲା ତାହା ନୁହେଁ, ଖୁବ୍ ଅଳ୍ପ ସମୟ ମଧ୍ୟରେ ବିଜୁଳି ବେଗରେ ଏହାର ଛଟା ଚାରିଆଡ଼େ ବିଚ୍ଛୁରିତ ହୋଇପଡ଼ିଲା । ରୋଜା ଲକ୍‌ସମ୍‌ବର୍ଗ, ବ୍ଲୁମଙ୍କ ପରି ପୁରାତନ ନେତାମାନେ ପ୍ରତିକ୍ରିୟାଶୀଳ

ସଂଶୋଧନବାଦର ଶିକାର ହୋଇ ପଡ଼ିଲେ । ବ୍ଲୁମଙ୍କ ନେତୃତ୍ୱରେ ସେମାନେ 'ସୋସାଲିଷ୍ଟପାର୍ଟି' ଗଠନ କଲେ ଏବଂ 'ଲ-ପପୁଲ୍ୟେର' ସେମାନଙ୍କର ମୁଖପତ୍ର ହୋଇ ରହିଲା । ମାର୍ସେଲ କାଂଶ୍ୟାଙ୍କ ନେତୃତ୍ୱରେ ସଂଖ୍ୟାଗରିଷ୍ଠ ସଭ୍ୟଙ୍କୁ ନେଇ ଗଢ଼ାହେଲା 'ଫରାସୀ କମ୍ୟୁନିଷ୍ଟପାର୍ଟି' । 'ଲହ୍ୟୁମାନିତେ' ହେଲା ଏହାର ସରକାରୀ ମୁଖପତ୍ର । ହୋ 'କମ୍ୟୁନିଷ୍ଟପାର୍ଟି'ରେ ଯୋଗଦେଲେ । ସେତେବେଳେ ସମୟ ହେଉଛି ୧୯୨୦ ମସିହା, ଆଉ ନ୍ଗୁଏନଙ୍କର ବୟସ ତିରିଶ ।

ନ୍ଗୁଏନ୍ ଯେ କାହିଁକି କମ୍ୟୁନିଷ୍ଟ ହେଲେ, ତାଙ୍କର ଅନ୍ୟାନ୍ୟ ସୋସିଆଲିଷ୍ଟ ବନ୍ଧୁମାନଙ୍କ ସହିତ ଆଦର୍ଶଗତ ବିଭିନ୍ନତା କାହିଁକି ଦେଖାଗଲା ସେ ବିଷୟରେ ନିଜେ ସେ ଲେଖିଯାଇଛନ୍ତି, ଯାହାକି ବହୁତ ପରେ ୧୯୬୦ ମସିହା ଜୁଲାଇ ମାସରେ ଭିଏତନାମରୁ ପ୍ରକାଶିତ 'ଲ ଏକ ଡୁ ଭିଏତନାମ' ପତ୍ରିକାରେ ପ୍ରକାଶ ପାଇଥିଲା । ସେତେବେଳେ ସେହି ଆତ୍ମକଥାର ଶିରୋନାମା ଥିଲା "ଲେନିନବାଦ ଅଡ଼ିକୁ ଯେଉଁ ପଥ ମୋତେ ଟାଣି ନେଇଛି ।"

ପ୍ରଥମ ମହାଯୁଦ୍ଧର ପରେ ପରେ ମୁଁ ପ୍ୟାରିସରେ ଗୋଟିଏ 'ଚୀନା ପ୍ରାଚୀନ ଶିଳ୍ପ' କମ୍ପାନୀରେ କାରିଗରୀ କାମ କରି ଜୀବିକା ନିର୍ବାହ କରୁଥିଲି । ଅନେକ ସମୟରେ ଫରାସୀ ଉପନିବେଶବାଦ ବିରୁଦ୍ଧରେ ପ୍ରଚାରପତ୍ର ଛାପାଇ ବାଣ୍ଟେ । ସେତେବେଳେ ଅତ୍ୟନ୍ତ ଭାବମୁଗ୍ଧ ହୋଇ ମୁଁ ମହାନ୍ ଅକ୍ଟୋବର ବିପ୍ଳବକୁ ସମର୍ଥନ ଜଣାଉଥିଲି । ଏହା ପଛରେ କି ଐତିହାସିକ ଗୁରୁତ୍ୱ ନିହିତ ଥିଲା, ତାହା ମୁଁ ସମ୍ପୂର୍ଣ୍ଣରୂପେ ବୁଝି ନ ଥିଲି । ମୁଁ ଲେନିନଙ୍କୁ ଅତ୍ୟନ୍ତ ଭଲ ପାଉଥିଲି ଏବଂ ସମ୍ମାନ କରୁଥିଲି । କାରଣ ମୋ ଆଖିରେ ସେ ଥିଲେ ଜଣେ ମହାନ୍ ଦେଶପ୍ରେମୀ ଯେ କି ତାଙ୍କ ଦେଶବାସୀଙ୍କୁ ପରାଧୀନତା କବଳରୁ ମୁକ୍ତ କରିଥିଲେ । ସେପର୍ଯ୍ୟନ୍ତ ମୁଁ ତାଙ୍କର କୌଣସି ବହି ପଢ଼ି ନ ଥିଲି ।

ସେତେବେଳେ ମୁଁ ଫରାସୀ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲି । ଏଇଥିପାଇଁ ଯେ, ପାର୍ଟି କମ୍ରେଡ଼ମାନେ ମୋ ପ୍ରତି ସାଦର ସହାନୁଭୂତି ଦେଖାଇ-ଥିଲେ; ତତୋଽଧିକ ନିଷ୍ଠା ଥିଲା ସେମାନଙ୍କର ଏ ଦୁନିଆର ନିପୀଡ଼ିତ ମଣିଷର ସଂଗ୍ରାମ ପାଇଁ । କିନ୍ତୁ ପାର୍ଟି କ'ଣ, ଶ୍ରମିକ ସଙ୍ଗଠନ କ'ଣ ? ଏପରି କି ସମାଜବାଦ, ସାମ୍ୟବାଦ କି ଜିନିଷ ସେ ବିଷୟରେ କୌଣସି ଧାରଣା ହିଁ ମୋର ନ ଥିଲା ।

"ଠିକ୍ ସେହି ସମୟରେ 'ସୋସାଲିଷ୍ଟ ପାର୍ଟି' ଦ୍ୱିତୀୟ ଆନ୍ତର୍ଜାତିକରେ ରହିବ ନା ଲେନିନ୍‌ଙ୍କ ତୃତୀୟ ଆନ୍ତର୍ଜାତିକରେ ମିଶିବ କି ତା ବଦଳରେ ଆଉ ଗୋଟିଏ ଅଡ଼େଇ ଆନ୍ତର୍ଜାତିକ ଗଠନ କରିବ, ସେ ବିଷୟ ନେଇ ସ୍ଥାନୀୟ ପାର୍ଟି ଶାଖା ସହିତ ତୁମୁଳ ଆଲୋଚନା ଚାଲିଥାଏ । ସପ୍ତାହରେ ଦୁଇ ଦିନ କି ତିନି ଦିନ,

ମୁଁ ନିୟମିତ ତାର ସମସ୍ତ ବୈଠକରେ ଯୋଗ ଦେଇଛୁ । ସଭାରେ ଯେଉଁସବୁ ସମସ୍ୟା ବା ମୁକ୍ତ ଉପସ୍ଥାପନ କରାଯାଏ, ସେସବୁକୁ ମୁଁ ଖୁବ୍ ମନଯୋଗ ସହକାରେ ଶୁଣେ । ପ୍ରଥମେ ପ୍ରଥମେ ସେଥିରୁ ସବୁ ମୁଁ ଧରି ପାରୁ ନ ଥିଲି । ମନେ ମନେ ଭାବୁଥିଲି କାହିଁକି ସେମାନେ ଏତେ ଉତ୍ତେଜନା ସୃଷ୍ଟି କରୁଛନ୍ତି ? ଅଢ଼ାଇ ହେଉ ବା ଦ୍ୱିତୀୟ ହେଉ ବା ତୃତୀୟ ହେଉ ବିପ୍ଳବ ତ ଯାହା ମାଧ୍ୟମରେ ହେଲେ ବି କରିବାକୁ ପଡ଼ିବ, ତେବେ ଏତେ ବାଦାନୁବାଦ କାହିଁକି ? ପ୍ରଥମ ଆନ୍ତର୍ଜାତିକ ତ ଆଗରୁ ରହିଛି । ତାର ବା' କ'ଣ ହେଲା ଏହି ସମୟରେ ?

ସବୁବେଳେ ମୁଁ ସେହି ପ୍ରଶ୍ନର ଉତ୍ତର ଶୁଣିବାକୁ ଚାହୁଁଥିଲି, ଯାହାକି ଏଠାରେ କୌଣସି ସଭାରେ ଆଲୋଚିତ ହୋଇନାହିଁ, ତାହାହେଲା—କେଉଁ ଆନ୍ତର୍ଜାତିକ ଦଳିତ ଜନତାର ସଂଗ୍ରାମ ପଛରେ ଠିଆ ହୋଇଛି ?

ମୋ ମତରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏହି ପ୍ରଶ୍ନଟାକୁ ଦିନେ ମୁଁ ସଭାରେ ଉଠାଇଲି । ଖୁବ୍ କମ୍ ସଂଖ୍ୟକ କମ୍ରେଡ଼ ତାର ଉତ୍ତର ଦେଇଥିଲେ—'ତୃତୀୟ ଆନ୍ତର୍ଜାତିକ, ଦ୍ୱିତୀୟ ନୁହେଁ ।' ଜଣେ କମ୍ରେଡ଼ 'ଲ ହ୍ୟୁମାନତେ'ରେ ପ୍ରକାଶିତ ଲେନିନଙ୍କର 'ଜାତୀୟତା ଏବଂ ଉପନିବେଶୀ ଜନସାଧାରଣଙ୍କର ସମସ୍ୟାବଳୀ' ଉପରେ ନିବନ୍ଧ ପଢ଼ିବାକୁ କହିଲେ ।

ଏହି ନିବନ୍ଧମାନଙ୍କରେ ଯେଉଁସବୁ ରାଜନୈତିକ ଭାଷା ବ୍ୟବହାର କରାଯାଇଥିଲା, ମୋ ପକ୍ଷରେ ତାହା ବୁଝିବା ବଡ଼ କଠିଣ । ତେବେ ବହୁବାର ପଢ଼ିବା ପରେ ମୁଁ ସାରକଥା ବୁଝିବା ପାଇଁ ସମର୍ଥ ହେଲି । ଲେନିନଙ୍କର ସେହି ନିବନ୍ଧ-ଗୁଡ଼ିକ ମୋର ଶୁଷ୍କପ୍ରାଣରେ ମେଘମଲ୍ଲାର ବୃଷ୍ଟି କରିଛି, ମୋର ସିକତାସିକ୍ତ ହୃଦୟବେଳାରେ ଭାବପ୍ରବଣତାର ଅଫୁରନ୍ତ ଜୁଆର ଛୁଟାଇଛି, ପ୍ରେରଣା, ଉତ୍ସାହ, ବିଶ୍ୱାସରେ ମୋର ଶୂନ୍ୟପ୍ରାଣକୁ ଭରପୁରାନ୍ତ କରିଦେଇଛି । ସର୍ବୋପରି ସମସ୍ତ ସମସ୍ୟାକୁ ବୁଝି ପାରିବା ଭଳି ମୋର ମାନସିକତାବୋଧକୁ ଉନ୍ନତ କରି ଗଢ଼ି ତୋଳିଛି । ଆନନ୍ଦର କୂଳ ଲଙ୍ଘି ଜୁଆର ଶେଷରେ ମୋ ଆଖିର ଲୁହରେ ମିଳାଇ ଯାଇଛି । କୋଠରୀର ନିଭୃତକୋଣରେ ଠିଆ ହୋଇ କାନ୍ଦିବାବେଳେ ମୋର ମନେ-ହେଉଥିଲା ସତେ ଯେପରି ଜନସମୁଦ୍ରର ଅନନ୍ତବେଳାଭୂମି ଉପରେ ପାଦରଖି ଚିତ୍କାର କରୁଛି, ହେ ମୋର ପ୍ରିୟତମ ଦଳିତ, ଭାଗ୍ୟହୀନ, ଶହୀଦଗଣ, ଠିକ୍ ଏହି ଜିନିଷ ହିଁ ଆମର ଦରକାର ଥିଲା, ଏହାହିଁ ଆମର ମୁକ୍ତିର ପଥ !

ସେହି ମୁହୂର୍ତ୍ତିଠାରୁ ମୁଁ ମୋର ସକଳ ବିଶ୍ୱାସ, ଆସ୍ଥା ଲେନିନ୍ ଓ ତାଙ୍କର 'ତୃତୀୟ ଆନ୍ତର୍ଜାତିକ' ଉପରେ ଅଜାଡ଼ି ଦେଉଛି ।

ତା' ଆଗରୁ ପାର୍ଟି ଶାଖାର ଆଲୋଚନାରେ ମୁଁ କେବଳ ଶୁଣୁଥିଲି । ସେତେବେଳେ ମନେ ହେଉଥିଲା, ସମସ୍ତେ ହିଁ ଠିକ୍ କଥା କହୁଛନ୍ତି । କାହା କଥା ଠିକ୍, କାହା କଥା ଭୁଲ, ସେ କଥା ବିଚାର କରି କାହାକୁ ଗ୍ରହଣ କରିବାକୁ ହେବ ବା ଆଉ କାହାକୁ ପରିତ୍ୟାଗ କରିବାକୁ ପଡ଼ିବ, ତାହା ମୁଁ ବୁଝି ପାରୁ ନ ଥିଲି । କିନ୍ତୁ ଲେନିନ୍‌ଙ୍କର ଲେଖା ପଢ଼ି ସାରିବା ପରେ ମୁଁ ନିଜେ ଆଲୋଚନାରେ ଭାଗ ନେଲି । ଉତ୍ତେଜନାମୂଳକ ତର୍କ ବିତର୍କରେ ଯୋଗଦେଲି । ନିଜ ବକ୍ତବ୍ୟକୁ ଉତ୍ତମରୂପେ ପ୍ରକାଶ କରିବା ନିମନ୍ତେ ମୁଁ ଭଲ ଭାବରେ ଫରାସୀ ଭାଷା ନ ଜାଣି-ଥିଲେ ମଧ୍ୟ, ଯେ କେହି ଲେନିନ୍ ଏବଂ ତୃତୀୟ ଆନ୍ତର୍ଜାତିକ ବିରୁଦ୍ଧରେ ଅଭିଯୋଗ କରୁଥିଲେ ସେ ସମସ୍ତଙ୍କ ସହିତ ମୁଁ ଭୟଙ୍କର ତର୍କ ଆରମ୍ଭ କରି ଦେଉଥିଲି । ମୋ' ପାଖରେ ଏକମାତ୍ର ଯୁକ୍ତି ଥିଲା—'କମ୍ରେଡ୍, ଆପଣମାନେ ଯଦି ଉପନିବେଶ-ବାଦକୁ ନିନ୍ଦା ନ କରିବେ, ଆପଣମାନେ ଯଦି ଦଳିତ ପୀଡ଼ିତ ଜନତା ପକ୍ଷରେ ସମର୍ଥନ ନ ଜଣାଇବେ, ତେବେ କି ପ୍ରକାର ବିପ୍ଳବ ଆପଣମାନେ ସୃଷ୍ଟିକରି ପାରିବେ ?'

ପାର୍ଟିର କେବଳ ସ୍ଥାନୀୟ ଶାଖାମାନଙ୍କର ଆଲୋଚନା ମଧ୍ୟରେ ସନ୍ତୁଷ୍ଟ ନ ରହି ମୁଁ ମୋର ଯୁକ୍ତିକୁ ବଳବତ୍ତର କରାଇବା ପାଇଁ ଅନ୍ୟ ଶାଖାମାନଙ୍କୁ ଗଲି । ଗୋଟିଏ କଥା ଏଠାରେ କହିବାକୁ ଚାହୁଁଛି ଯେ ମାର୍ସାଲ କାଂଶ୍ୟା, ଭାଇଲାଣ୍ଟ କୁଟିରିୟେଙ୍କ ପରି ସାଥୀମାନେ ମୋ ଜ୍ଞାନର ପରିଧିକୁ ପରିବ୍ୟାପ୍ତ କରିବା ଦିଗରେ ଅନେକ ସାହାଯ୍ୟ କରିଛନ୍ତି । ଶେଷ ମୁହୂର୍ତ୍ତରେ ମୁଁ ଏହି କମ୍ରେଡ୍‌ମାନଙ୍କ ସହିତ ଟୁର୍ସ କଂଗ୍ରେସ୍‌ରେ ତୃତୀୟ ଆନ୍ତର୍ଜାତିକ ସପକ୍ଷରେ ଭୋଟ୍ ଦେଇଥିଲି । ମୋର ଆଜି ବି ମନେ ପଡ଼େ—

ପ୍ରଥମେ କମ୍ୟୁନିଜିମ୍ ନୁହେଁ, ଗଭୀର ଦେଶପ୍ରେମ ହିଁ ଆମକୁ ଲେନିନ୍ ଓ ତୃତୀୟ ଆନ୍ତର୍ଜାତିକ ପ୍ରତି ଆସ୍ଥାବାନ କରି ଗଢ଼ିତୋଳିଛି । ଧୀରେ ଧୀରେ ସଂଗ୍ରାମର ମଧ୍ୟଦେଇ, ରାଜନୈତିକ କାର୍ଯ୍ୟକଳାପ ଅନୁସରଣ କରି, ମାର୍କସ୍‌ବାଦ ଲେନିନ୍‌ବାଦ ଅଧ୍ୟୟନ କରି, ଆମେ ଦେଖିଛୁ ଏକମାତ୍ର ସମାଜବାଦ ଏବଂ ସାମ୍ୟ-ବାଦ ହିଁ ସାରବିଶ୍ୱରେ ନିପୀଡ଼ିତ ଜାତି, ଶ୍ରମଜୀବୀ ମଣିଷକୁ ଦାସତ୍ୱର ଶୃଙ୍ଖଳରୁ ମୁକ୍ତ କରି ପାରିବ ।

"ଭିଏତନାମ ଏବଂ ଚୀନରେ 'ଯାଦୁ ଝୁଲିମୁଣି' ସମ୍ପର୍କରେ ଏକ କିମ୍ବଦନ୍ତୀର ପ୍ରଚଳନ ଅଛି । କୌଣସି ବିପଦ ଆପଦରେ ପଡ଼ିଲେ, ଏହି ମୁଣି ଖୋଲିଦେଲେ ଉଦ୍ଧାର ପାଇବାର ବାଟ ଆପେ ଆପେ ଦିଶିଯାଏ । ଲେନିନବାଦ ଏହିପରି ଏକ ଅଲୌକିକ 'ଯାଦୁଥଳି' ନୁହେଁ । ଭିଏତନାମର ବିପ୍ଳବୀ ଏବଂ ସାଧାରଣ ମଣିଷ

ପାଇଁ ଲେନିନ୍‌ବାଦ କେବଳ ଏକ ଅଲୌକିକ 'ଯାଦୁଅଲୀ' ନୁହେଁ ବା ଦିଗ-ନିର୍ଣ୍ଣୟକାରୀ କମ୍ପାସ ଯନ୍ତ୍ର ନୁହେଁ, ଏହା ଏକ ଜ୍ୟୋତିର୍ମୟ ସୂର୍ଯ୍ୟ ଯେ କି ଆମର ଅନ୍ତିମ ବିଜୟର ପଥ ସୋସାଲିଜିମ୍ ଓ କମ୍ୟୁନିଜିମ୍‌ର ରାସ୍ତାକୁ ନିତ୍ୟ ଆଲୋକିତ କରେ ।"

ହୋ'ଙ୍କର ଏହି ଅଭିବ୍ୟକ୍ତି ପରବର୍ତ୍ତୀ ସମୟରେ ଏସିଆ ମହାଦେଶରୁ ଆସିଥିବା ଅନେକ ଯୁବବିପ୍ଳବୀଙ୍କୁ ଲେନିନ୍‌ବାଦ ଅଡ଼କୁ ଆକୃଷ୍ଟ କରିପାରିଥିଲା । ସ୍ୱତଃପ୍ରବୃତ୍ତ ହୋଇ ସେମାନେ ଫରାସୀ କମ୍ୟୁନିଷ୍ଟପାର୍ଟିରେ ଯୋଗ ଦେଲେ । ୧୯୨୦ ମସିହାରେ ପ୍ୟାରିସରେ ଥିବା କମ୍ୟୁନିଷ୍ଟପାର୍ଟିର ନ' ନମ୍ବର ସେଲରେ ହୋ ଯୋଗ ଦେଲେ । ସେତେବେଳେ ଏହି ଶାଖାଟି ପାର୍ଟିର 'ବୁଦ୍ଧିଜୀବୀ ସେଲ୍' ନାମରେ ପରିଚିତ ଥିଲା । କାରଣ ଜର୍ଜ ପିଓ୍ୱୋଣଙ୍କ ପରି ସ୍ୱନାମଧନ୍ୟ ସାଂବାଦିକ ଏବଂ ତତ୍କାଳୀନ ମାର୍କସୀୟ ତତ୍ତ୍ୱବିଦ୍ ବୋରିସ ସୁଭାରିନ୍ ଏହି ସେଲର ସଦସ୍ୟ ଥିଲେ । ସେମାନଙ୍କ ସହିତ ୧୯୨୧ ମହିହା ଡିସେମ୍ବର ମାସରେ ମାର୍ସାଇଲଠାରେ ଅନୁଷ୍ଠିତ ପାର୍ଟି କଂଗ୍ରେସରେ ଯୋଗ ଦେଲେ ।

କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହେବାପରେ ହୋ'ଙ୍କର କାର୍ଯ୍ୟପରିସର ବଢ଼ିଗଲା । ସାମ୍ବାଦିକତା ବ୍ୟତୀତ ଅନ୍ୟ ଯେଉଁ କାମ ସେ ହାତକୁ ନେଇଥିଲେ ତା' ମଧ୍ୟରୁ ମୁଖ୍ୟ କାମ ଥିଲା— ଅବସର ସମୟରେ ପ୍ୟାରିସ ସହରର ଶ୍ରମିକ ସଙ୍ଗଠନମାନଙ୍କରେ ବୁଲି ଫରାସୀ ଉପନିବେଶବାଦ ବିରୁଦ୍ଧରେ ଉତ୍କଟ ପ୍ରଚାର ଚଳାଇବା ଏବଂ ତା ବିରୁଦ୍ଧରେ ସଂଗ୍ରାମ ଜାରିରଖିବା ନିମନ୍ତେ କମ୍ୟୁନିଷ୍ଟ ପାର୍ଟିକୁ ସମର୍ଥନ ଜଣାଇବା । ଏ ଦୁଇଟି ବିଷୟ ସମାନ୍ତରାଳ ଭାବେ ଚାଲି ନ ପାରିଲେ ବିଶ୍ୱର ଶ୍ରମଜୀବୀ ଜନତାର ଦୁର୍ଦ୍ଦଶା ସୁଧୁରି ପାରିବ ନାହିଁ । ଏହି ମତରେ ସେ ଅଟଳ ଥିଲେ । ସେ ନିୟମିତ ପାର୍ଟି ସ୍କୁଲରେ ଯୋଗ ଦେଉଥିଲେ । ତାଙ୍କ ରହିବା ଘରଠାରୁ ପାର୍ଟି ସ୍କୁଲ ଚାଲିଥିବା ନଗରପାଳିକା ହଲ୍ ବହୁତ ଦୂର ଥିଲେ ମଧ୍ୟ ସେ ପାଦରେ ଚାଲି ଚାଲି ସେଠାରେ ପହଞ୍ଚୁଥିଲେ । ପାର୍ଟି ସ୍କୁଲର ପୁରାତନ ସଭ୍ୟ ଏବଂ ପରିଚାଳକମାନେ ତାଙ୍କୁ ଯେତେ ବେଶୀ ଆକୃଷ୍ଟ କରିପାରି ନ ଥିଲେ, ତାଠାରୁ ବେଶୀ ଉତ୍ସାହିତ କରିଥିଲେ ସେଲ୍‌ର ଯୁବବନ୍ଧୁମାନେ । ହୋ ସେମାନଙ୍କ ମଧ୍ୟରେ ପାଇଲେ ଅଭିନବ ପ୍ରେରଣାର ଉତ୍ସ । ସାମ୍ୟବାଦୀ ଆନ୍ଦୋଳନ ପଥରେ ସେମାନଙ୍କର ଉତ୍ସର୍ଗୀକୃତ ଜୀବନ ଦେଖି ସେ ବିସ୍ମିତ ହୋଇ ପଡ଼ିଲେ । କମ୍ୟୁନିଷ୍ଟ ପାର୍ଟି ତାଙ୍କର ସକଳ ମନପ୍ରାଣକୁ ଅଧିକାର କରିନେଲା । ପ୍ରଥମେ ସେ କୌଣସି ଆଲୋଚନାଚକ୍ରରେ କିଛି କହିବୋଲି ପାରୁ ନ ଥିଲେ । ଉପନିବେଶୀ ଶୋଷଣର ନଗ୍ନ, ବୀଭତ୍ସ କାର୍ଯ୍ୟକଳାପ ଦେଖି ଭିତରେ ଭିତରେ ଜଳିଯାଉଥିଲେ ମଧ୍ୟ

ଅତ୍ୟଧିକ ଲଜ୍ଜାବଶତଃ ତାଙ୍କର ମୁହଁ ଖୋଲୁ ନ ଥିଲା । କିନ୍ତୁ ପାର୍ଟିର ଯୁବକର୍ମୀମାନେ ତାଙ୍କୁ ସାଧାରଣ ସଭାମାନଙ୍କରେ କିପରି ବକ୍ତୃତା ଦେବାକୁ ହୁଏ, ଆଲୋଚନାରେ ଭାଗ ନେବାକୁ ହୁଏ, ଶିଖାଇ ଦେଇଥିଲେ । ସେହିଦିନଠାରୁ ସାଧାରଣ ସଭା ଓ ଆଲୋଚନାଚକ୍ରମାନଙ୍କରେ ହୋ ନିୟମିତ ଅଂଶ ଗ୍ରହଣ କରି ଆସିଛନ୍ତି ।

କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଭାବରେ ସେ ପୋଲିସର କଡ଼ା ନଜରରେ ପଡ଼ିଲେ । ସୋସାଲିଷ୍ଟ କର୍ମୀ ତରୁଣ ହିସାବରେ ତାଙ୍କ ଦେହ ପୋଲିସର ଭୟ ଯେତେ ନ ଥିଲା, ତା'ଠାରୁ ଅଧିକ ଭୀତତ୍ରସ୍ତ ହୋଇପଡ଼ିଲେ ଶାସକ, ଯେତେବେଳେ ଦେଖିଲେ ହୋ-ର ଚେର ଦିନକୁ ଦିନ ପ୍ୟାରିର ଶ୍ୟାମଳ-ବନ-ଭୂମି ଉପରେ ମାଡ଼ି ମାଡ଼ି ଚାଲିଛି । ଶ୍ରମିକଶ୍ରେଣୀ ଉପରେ ଉପନିବେଶବାଦୀମାନଙ୍କର ଅତ୍ୟାଚାରକୁ ସେ ସବସମ୍ମୁଖରେ ସମାଲୋଚନା କରୁଥିଲେ । ବିଶେଷ କରି ତାଙ୍କ ପରିଚାଳନାରେ ପ୍ରକାଶିତ ମୁଖପତ୍ର 'ଲେ-ପେରିଆ' ଶ୍ରମିକଶ୍ରେଣୀର ସ୍ୱାର୍ଥ ପାଇଁ କାର୍ଯ୍ୟ କରୁଥିଲା । ସଂକ୍ଷେପରେ କହିବାକୁ ଗଲେ ହୋ-ଙ୍କର ଆବିର୍ଭାବ ଫଳରେ ପ୍ରବାସୀ ଶ୍ରମିକଶ୍ରେଣୀ ନିଜର ବ୍ୟକ୍ତିଗତ ଅଭିଯୋଗ ବ୍ୟକ୍ତ କରିବା ପାଇଁ ଏକ ରାଜନୈତିକ ସୂତ୍ର ପାଇଲେ । ତା ପୂର୍ବରୁ ପ୍ୟାରିରେ ଉପନିବେଶୀ ଦେଶମାନଙ୍କରୁ ଆସିଥିବା ଶ୍ରମଜୀବୀ ଭାଇମାନଙ୍କର ସମସ୍ୟାବଳୀ ସମ୍ପର୍କରେ ଅନ୍ୟମାନେ ବିଶେଷ ସଚେତ ନ ଥିଲେ । ହୋ-ଙ୍କର ଏହି ବିଶେଷତ୍ୱ ଶ୍ରମିକଶ୍ରେଣୀ ମଧ୍ୟରେ ନୂତନ ଆଶା ସଞ୍ଚାର କଲା । ନିବିଡ଼ ଅନ୍ଧକାର ମଧ୍ୟରେ ପ୍ୟାରିର ସହରତଳି ଅଞ୍ଚଳରେ ଥିବା ହିଁଏ ଛୋଟିଆ ଘର କମ୍ରେଡ୍‌ମାନଙ୍କର ଗୁପ୍ତ ବୈଠକ ଶେଷ ଶିଖା ଜଳି ଉଠିଲା । ସବୁଦିନେ ସେଠାରେ ଗୁପ୍ତଅଧିଆ ବୈଠକ । ଶ୍ରମିକମାନଙ୍କ ମଧ୍ୟରେ ସଭାପତି ହୋ । ସେ ଥିଲେ ତାଙ୍କର ନେତା ।

ପୋଲିସ ବହୁତ ଜାଲ ଛନ୍ଦିଲା ତାଙ୍କୁ ଗିରଫ କରିବା ପାଇଁ । ହେଲେ, ବନ୍ଧୁମାନଙ୍କର ସାହାଯ୍ୟ ଓ ବିପୁଳ ଜନସମର୍ଥନ ଯୋଗୁଁ ସେ ଖସି ଯାଉଥିଲେ । ହୋ ନିଜେ ସିନା ପୋଲିସର ହାତକୁ ଯାଇ ପାରିଲେ ନାହିଁ, ଦେଖିଲେ ତାଙ୍କ ଆଖି ଆଗରେ ତାଙ୍କର ଅନେକ ପ୍ରବାସୀ ଦେଶପ୍ରେମୀ ସାଥୀ ବିନା ଦୋଷରେ କାଠଗଡ଼ାରେ ଠିଆ ହୋଇଛନ୍ତି । ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ନିଜ ତୁଳନାରେ କେତେ ସାମାନ୍ୟ ! ଦୁଃଖ, ବେଦନା, ଅନୁଧିକ୍କାରରେ ମୁଖ ତାଙ୍କର ତଳକୁ ହୋଇଗଲା । ରାତି ରାତି ସେ ଶୋଇ ପାରୁ ନାହାନ୍ତି । ଇଣ୍ଡୋଚୀନରୁ ସମ୍ବାଦ ପରେ ସମ୍ବାଦ ଆସି ପହଞ୍ଚୁଛି, ଅଗଣିତ ଦେଶଭକ୍ତ ଶହୀଦ ହେବା ପାଇଁ ମନସ୍ଥ କରିନେଇଛନ୍ତି । ଶହ ଶହ ବିଦ୍ରୋହୀ ଚାଷୀଙ୍କୁ ଫରାସୀ ସାମରିକବାହିନୀ ନିର୍ମମ

ହତ୍ୟା କରୁଛନ୍ତି । କିଏ ସେମାନେ ? ଘରଠାରୁ ଦୂରରେ ରହି ମନ-ଦର୍ପଣରେ ଦେଖିନେଲେ ସେମାନଙ୍କୁ ନିଜ ଗାଁର, ନିଜ ଦେଶର ବାପା, ମା, ଭାଇ, ଭଉଣୀ ଆତ୍ମୀୟସ୍ୱଜନ ଏହିପରି କିଏ କେତେ ଥାଇ ପାରନ୍ତି !!

ଇଣ୍ଡୋଚୀନ ଫେରିଯିବା ସାଙ୍ଗେ ସାଙ୍ଗେ ସମ୍ଭବ ନୁହେଁ, ତଥାପି ମନ ପକ୍ଷୀରାଜ ପରି ଉଡ଼ିଚାଲିଛି ସେହିଆଡ଼େ । ଦେଶକୁ ଫେରିଗଲେ କୌଣସି କାର୍ଯ୍ୟ ସମ୍ଭବ ନୁହେଁ, ଏ ବିଶ୍ୱାସ ତାଙ୍କର ଦୃଢ଼ ହେବାକୁ ଲାଗୁଛି । ଦୂର ବିଦେଶରେ ଚିନ୍ତା ବି ଅଚିନ୍ତା ପରି ମନେ ହେଉଛି । ବଳ, ସାମର୍ଥ୍ୟ ଥିଲେ ମଧ୍ୟ ଉପଯୋଗର ଅଭାବରୁ ମରିମରିକା ଯାଉଛି । ଶୁଖିଲା ଲତାପତ୍ର ପରି ଆନାମୀ ବନ୍ଧୁମାନେ ପ୍ୟାରିସର କଳକାରଖାନାରେ ଝଡ଼ି ପଡ଼ୁଛନ୍ତି । ପ୍ୟାରିସ ଛାଡ଼ିବାକୁ ପଡ଼ିବ । ସ୍ୱଦେଶରେ ବିପ୍ଳବୀ ତତ୍ତ୍ୱ ପ୍ରଚାର କରିବା କାର୍ଯ୍ୟରେ ନୂତନ ସଙ୍ଗଠନ ତିଆରି କରିବାକୁ ହେବ । ମାର୍କସବାଦ ଲେନିନ୍‌ବାଦର ମୂଳ ଆଦର୍ଶରେ ଇଣ୍ଡୋଚୀନ ମାଟିରେ କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ହିଁ ଏ କାର୍ଯ୍ୟର ମୁଖ୍ୟ ଲକ୍ଷ୍ୟ ହେବ ।

ପ୍ୟାରିସ ସହରର କମ୍ୟୁନିଷ୍ଟ ଶାଖାରେ ଯୋଗଦେଇ ହୋ ଅନେକ ରାଜନୈତିକ ଅଭିଜ୍ଞତା ହାସଲ କରି ସାରିଛନ୍ତି । ବର୍ତ୍ତମାନ ତାକୁ ପ୍ରୟୋଗ କରିବାର ବେଳ ଆସିଛି । ପୁଣି ନିଜ ଦେଶରେ ! ଫରାସୀ କମ୍ୟୁନିଷ୍ଟପାର୍ଟିରେ ସଭ୍ୟ ହେବା ତାଙ୍କର ଆଜି ଚତୁର୍ଥ ବର୍ଷରେ ପଦାର୍ପଣ କରିଛି । ଫ୍ରାନ୍‌ସରେ ଜୀବନ ବିତାଇବାର ଏ ହେଉଛି ଷଷ୍ଠବର୍ଷ । ଏହି ଦୀର୍ଘ ସମୟର ବ୍ୟବଧାନ ମଧ୍ୟରେ ସେ ଦେଖିଛନ୍ତି, ସମରବାଦୀ ଆଗ୍ନେୟଗିରିର ମହାପ୍ରସ୍ରବଣ ! ସାଇବେରିଆର ଘନରୁପାରଖଣ୍ଡରୁ ଶୁଣିଛନ୍ତି ବଲସେଭିକ୍ ବିପ୍ଳବର ବିଜୟବାଣୀ । ମାର୍କସବାଦୀ ଲେନିନ୍‌ବାଦୀର ଦୀକ୍ଷାରେ ରାଜନୈତିକ ଜୀବନ ତାଙ୍କର ହୋଇଛି ବୁଦ୍ଧିମନ୍ତ । ଦେଶପ୍ରେମୀ, ଜାତୀୟତାବାଦୀ ଗୁଏନ୍ ବଦଳରେ ସେ ହୋଇଛନ୍ତି ଆନ୍ତର୍ଜାତିକତାବାଦୀ ସଚେତନ ବିପ୍ଳବୀ ହୋ ।

୧୯୨୩ର ଶେଷଭାଗ । ଶାନ୍ତ ରାତ୍ରିର ଘନଗାଲିଚା ଉପରେ ପ୍ୟାରିସ କ୍ଷଣକ ପାଇଁ ଶୋଇଯାଇଛି । ଧନୀମାନଙ୍କ ସହରତଳିରୁ ରହି ରହି ଡାକ ଛାଡ଼ୁଛି ଶ୍ରମିକ-ବସ୍ତିର ସେହି ଅପାଶୋରା ମୁହୂର୍ତ୍ତଗୁଡ଼ାକ । ଅନାମ୍ନ ଆକାଶରେ ଅଗଣିତ ତାରାର ସମାବେଶ । ପ୍ରଶାନ୍ତମହାସାଗର ନିଃଶବ୍ଦ ବକ୍ଷରେ ବିଶ୍ରାନ୍ତ ହୋଇପଡ଼ିଛନ୍ତି ସେମାନେ । ସଜଫୁଟା ରଜନୀଗନ୍ଧା ପରି । ପ୍ୟାରିସର ରାସ୍ତାଘାଟ, ମଠ, ବାଡ଼ି ସବୁଠି ଅଭୂତପୂର୍ବ ନିସ୍ତବ୍ଧତା । ଦୂରସ୍ଥ ପାହାଡ଼ରୁ ଭାସିଆସୁଛି କ୍ଷୀଣ ବତାସର ଅସ୍ପଷ୍ଟ ସ୍ୱର । ହୋ ନିଜକୁ ପ୍ରକୃତସ୍ଥ କରିପାରୁ ନାହାନ୍ତି । ଏହି ଘନତମିସ୍ରାରେ ମିଳାଇ ଯିବା ପାଇଁ ତାଙ୍କର ଇଚ୍ଛା । 'ଲି-ହ୍ୟୁମାନିତେ', ଲେ-ପେରିଆ, ସହରର ସୀମାନ୍ତର

ମେଦ୍ରେ ଲ୍ରେଃ ହୋଟେଲ । ପଛରୁ କାଧ କାଧ ଡାକୁଛନ୍ତି ତାଙ୍କୁ । ଅଶ୍ରୁଜଳ ନୟନତାରରୁ ଉଦ୍ଧାନ୍ତ ସ୍ରୋତସ୍ୱିନୀ ପାଦତଳେ ଗ୍ରଥିହୋଇ ଫେରିଯାଉଛି । ପଛକୁ ସେ ମୁହଁ ଫେରାଇବେ ନାହିଁ । ଜୟର ପଥ ସବୁବେଳେ ଦୁର୍ଗମ ଓ ବେଦନା-ଦାୟକ ।

ପଛରେ ପଡ଼ିରହିଲା ନଟ୍ରଡ଼ାମ ପ୍ୟାରିସ । ସ୍ୱଚ୍ଛ ଶେଷର ମଉଳା କଢ଼ିଟି ପରି । ପଛ ରହିଲେ ହୋ'ଙ୍କର ଅତି ପ୍ରିୟତମ ବନ୍ଧୁମାନେ ଆଲଜେରିଆ, ପଶ୍ଚିମ ଭାରତ, ମାଡ଼ାଗାସ୍କର, ସେନେଗାଲରୁ ଆସିଥିବା ପ୍ରବାସୀ ସାଥୀଗଣ । ସେମାନଙ୍କୁ ହୋ ଜଣାଇ କହି ଯାଇ ନ ଥିଲେ । ଛାଡ଼ି ଯାଇଥିବା ଟେବୁଲ ଉପରେ ଥିଲା ତାଙ୍କ ହସ୍ତଲିଖିତ ଚିଠିଟିଏ । ସମସ୍ତଙ୍କ ପାଇଁ ତାହା ଉଦ୍ଦିଷ୍ଟ ଥିଲା । ଫ୍ରାନ୍ସ ପରିତ୍ୟାଗ କରିବାର ସକଳ ବୃତ୍ତାନ୍ତ ସେଥିରେ ରହିଥିଲା ।

'ପ୍ରିୟ ସାଥୀଗଣ,

"ଆମେ ବହୁଦିନ ଧରି ମିଳିମିଶି କାମ କରିଛେ । ଯଦିଓ ଆମେ ଭିନ୍ନ ଦେଶର, ଭିନ୍ନ ଜାତିର, ନାନା ଧର୍ମର ଲୋକ; କିନ୍ତୁ ଗୋଟିଏ ପରିବାରର ଭାଇ ପରି ପରସ୍ପର ସହିତ ଆମେ ବନ୍ଧା । ଆମେ ସମସ୍ତେ ସେହି ଗୋଟିଏ ଦୁର୍ଭାଗ୍ୟର ଅଂଶୀଦାର, ଉପନିବେଶବାଦର ଉତ୍ପୀଡ଼ନର ଶୀକାର । ଆମେ ସମସ୍ତେ ଗୋଟିଏ ଆଦର୍ଶ ପାଇଁ ଲଢ଼ାଇ କରୁଛୁ ଆମ ଜନସାଧାରଣଙ୍କର ମୁକ୍ତି ପାଇଁ, ପିତୃଭୂମିର ସ୍ୱାଧୀନତା ଫେରି ପାଇବା ପାଇଁ ଆମେ ସଂଗ୍ରାମ କରୁଛେ ।

"ଆମେ ଆମ ସଂଗ୍ରାମପଥରେ ଏକା ନୋହୁଁ, କାରଣ ଆମ ପଛରେ ଅଛି ଆମ ଦେଶ ଜନତାର ସମର୍ଥନ, ସଂଗ୍ରାମୀ ଗଣତନ୍ତ୍ରବାଦୀଙ୍କର ସମର୍ଥନ । ବାସ୍ତବ-କ୍ଷେତ୍ରରେ ଆମ ପଛରେ ରହିଛନ୍ତି ଫ୍ରାନ୍ସର ପ୍ରତିନିଧିଗଣ ।

"ଆମର ଯେଉଁ ସାଧାରଣ ଦାୟିତ୍ୱ ଥିଲା 'ଲେ ପେରିଆ' ଏବଂ 'ଲିଗ୍ ଅଫ୍ କଲୋନିଆଲ କଣ୍ଟ୍ରି଼ଜ୍' ବା ଉପନିବେଶୀଦେଶ ସଂଘଠାରୁ ଆମେ ସୁଫଳ ଲଭ କରିଛେ, ସେମାନଙ୍କ ଜରିଆରେ ଉପନିବେଶମାନଙ୍କରେ କି କି ଘଟଣା ଘଟି-ଯାଉଛି, ସେ ସମ୍ବନ୍ଧରେ ଫ୍ରାନ୍ସ ପ୍ରକୃତ କଥା ବୁଝି ପାରିଛି । ଫ୍ରାନ୍ସ ବର୍ତ୍ତମାନ ଜାଣେ ଫ୍ରାନ୍ସର ନାମ ଏବଂ ସମ୍ମାନର ଦୋହାଇ ଦେଇ ଉପନିବେଶବାଦୀ ଘାତୁକ-ମାନେ ସେଠାରେ କି ଅକଳ୍ପନୀୟ ଅପରାଧମାନ କରି ଯାଉଛନ୍ତି ! ଆମମାନଙ୍କର କାର୍ଯ୍ୟ ଫଳରେ ସାଧାରଣ ଜନତା ଜାଗ୍ରତ ହୋଇଛି । ତାହାର ମଧ୍ୟଦେଇ ଆମଦେଶର ଜନସାଧାରଣ ଆଜି ଏକଥା ବୁଝିଛନ୍ତି ଯେ, ଏହାଛଡ଼ା ଅଉ ଗୋଟିଏ ଫ୍ରାନ୍ସ ରହିଛି, ସେ ଫ୍ରାନ୍ସ ମୁକ୍ତ ଏବଂ ସ୍ୱାଧୀନ, ଭାତୃତ୍ୱପ୍ରେମ । କିନ୍ତୁ ଆମକୁ ତ ଆହୁରି ଅନେକ କାର୍ଯ୍ୟ କରିବାକୁ ପଡ଼ିବ ।

"ଆମେ କ'ଣ କରିବୁ ? ଏ ପ୍ରଶ୍ନର କୌଣସି ବନ୍ଧା ଜବାବ ନାହିଁ । କେଉଁ ଦେଶରେ କି ପ୍ରକାର ପରିସ୍ଥିତି ତା ଉପରେ ନିର୍ଭର କରେ ଏହି ପ୍ରଶ୍ନର ଉତ୍ତର । ମୋ ପକ୍ଷରେ ଜବାବଟା ସହଜ—ଦେଶକୁ ଫେରିଯିବ । ସାଧାରଣ ଜନତା ମଧ୍ୟରେ କାର୍ଯ୍ୟ କରିବ । ସେମାନଙ୍କୁ ଶିକ୍ଷିତ କରିବ, ସଂଗଠିତ କରିବ, ଐକ୍ୟବଦ୍ଧ କରିବ, କ'ଣ କରି ସ୍ୱାଧୀନତା ଓ ମୁକ୍ତି ପାଇଁ ସଂଗ୍ରାମ କରିବାକୁ ହେବ, ସେ ବିଷୟରେ ଶିକ୍ଷା ଦେବ ।

"ସମ୍ଭବ ହେଲେ, ଆପଣମାନଙ୍କ ମଧ୍ୟରୁ ଯଦି କାହାକୁ ଏହି ପଥ ଉଚିତ ମନେ ହୁଏ, ତେବେ ତାହାହିଁ କରିବେ । ଅନ୍ୟମାନେ ଆଜି ଯାହା କରୁଛନ୍ତି, ତାହା କରନ୍ତୁ । 'ଲିଗ୍ ଅଫ୍ କଲୋନିଆଲ କଣ୍ଟ୍ରିଜ୍'କୁ ମଜବୁତ କରିବେ ଏବଂ ଆମର ପ୍ରାଣୋପମା 'ଲେ-ପାରିଆ'କୁ ଆହୁରି ମହାନ୍ କରି ଗଢ଼ି ତୋଳିବେ ।

"ପ୍ରିୟ ସାଥୀ,

"ମୁଁ ଆପଣମାନଙ୍କଠାରୁ ବିଦାୟ ନେଉଛି । କିନ୍ତୁ ଦୂରକୁ ଗଲେ ମଧ୍ୟ ମୋର ହୃଦୟ ଆପଣଙ୍କ ସହିତ ରହିବ ।

"ଆପଣମାନଙ୍କଠାରୁ ଯଥାରୀତି ବିଦାୟ ନେଇପାରି ନ ଥିବାରୁ ମୋତେ କ୍ଷମା କରିବେ । ଜାଣନ୍ତି ତ ମୋ ଉପରେ ପୋଲିସର କଡ଼ା ନଜର ରହିଛି । ଏହି ଚିଠି ଆପଣମାନେ ଯେତେବେଳେ ପାଇବେ ତାର ଅଠାଇଶ ଘଣ୍ଟା ଆଗରୁ ଆପଣମାନଙ୍କର ନୁଏନ ଫ୍ରାନସ ଛାଡ଼ିସାରିଥିବ । ମୋର ସହକର୍ମୀ ହାତରେ ମୁଁ ଅଫିସର ଚାବି ଦେଇଥିବି । ଲିଗ୍ ଓ ପତ୍ରିକାର ସମସ୍ତ ହିସାବପତ୍ର, ଟଙ୍କା ପଇସା ମଧ୍ୟ ତା ହାତରେ । ଏ ବର୍ଷର ଶେଷ ପର୍ଯ୍ୟନ୍ତ ଅଫିସ ଘରର ଭଡ଼ା ଦିଆହୋଇ ସାରିଛି । ମୋର କା' ପାଖରେ କୌଣସି ଧାର, କରଜ ନାହିଁ । ଡାହୁଣ ପଟ କବାଟ ନିକଟରେ ଲାଇବ୍ରେରୀରେ ବହିପତ୍ର ଅଛି । ଯେଉଁମାନେ ଛୁଟିରେ ଯାଇଛନ୍ତି, ସେମାନଙ୍କ ଛଡ଼ା ଆଉ ସମସ୍ତଙ୍କର ବହି ମୁଁ ଫେରସ୍ତ ପାଇଛି । ଗୋଟିଏ କଥା, ଯିବା ପୂର୍ବରୁ ସବୁ କଥା ଠିକଣା କରିଯାଇଛି ।

"ମୁଁ ଯେ ଆପଣଙ୍କ ପାଖକୁ ଚିଠି ଲେଖିବି ତାର କୌଣସି ପ୍ରତିଶ୍ରୁତି ଦେଉ-ନାହିଁ । କାରଣ ଗୋପନରେ କାର୍ଯ୍ୟ କଲାବେଳେ ଚିଠିପତ୍ର ଲେଖିବା କଠିଣ । କିନ୍ତୁ ଚିଠି ଲେଖେ ବା ନ ଲେଖେ, ମୁଁ ସବୁଦିନେ ଆପଣମାନଙ୍କ ନିକଟରେ ଅନୁଗତ ରହିବି । ମୋ ପକ୍ଷରୁ ଫରାସୀ ବନ୍ଧୁମାନଙ୍କ ସହିତ କରମର୍ଦ୍ଦନ କରିଦେବେ । ଏହାପରେ ମୁଁ ଦୁଇ ଚାରି ପଦ କଥା ଲେଖୁଛି ମୋ ପୁରୁଣା ବିପ୍ଳବୀମାନଙ୍କ ପାଇଁ ।

"ତୁମେମାନେ ମୋତେ ଖୁବ୍ ଭଲପାଅ, ମୁଁ ବି ତୁମମାନଙ୍କୁ ଖୁବ୍ ସ୍ନେହ କରେ । ନାଇଁ ରେ ଶ୍ରେଷ୍ଠପିଲ ମାନେ ? ମୁଁ ଆମ ଭିଏତନାମର ଶ୍ରେଷ୍ଠ କିଶୋର ବନ୍ଧୁମାନଙ୍କୁ ତୁମ କଥା କହିବି । କହିବି ତୁମେମାନେ ବହୁତ ଭଲ । ତୁମମାନଙ୍କ ପକ୍ଷରୁ ମୁଁ ସେମାନଙ୍କ ସହିତ କରମର୍ଦ୍ଦନ କରିଦେବି । ହୁଏତ ଅନେକ ଦିନ ପର୍ଯ୍ୟନ୍ତ ନୁଏନ ଭ୍ରୁଗ୍ ସହିତ ତୁମର ଦେଖାହେବ ନାହିଁ । ତୁମେ ମୋର ପିଠିରେ, କୋ'ଳରେ ଆଉ ଡିଆଁ ଡେଇଁ କରି ପାରିବ ନାହିଁ । ମୁଁ ହୁଏତ ଆନେକ ଦିନ ପାଇଁ ମୋ ଆଖି ଆଗରେ ତୁମକୁ ପାଇବି ନାହିଁ । ତୁମ ସହିତ ମୋର ଆଉ ଯେତେବେଳେ ଦେଖା ହେବ, ସେତେବେଳକୁ ମୁଁ ବୁଢା ହୋଇ ଯାଇଥିବି । ତୁମେମାନେ ତୁମର ବାବା ମା'ଙ୍କ ପରି ବଡ଼ ହୋଇଯାଇଥିବ । ସେଇଟା ବଡ଼ କଥା ନୁହେଁ । ତୁମମାନଙ୍କର କଥା ମୋର ସବୁ ସମୟରେ ମନେ ପଡ଼ିବ । ତୁମେ-ମାନେ ସବୁଦିନେ ମୋ ପାଇଁ ଅଙ୍କ ପରି ଶ୍ରେଷ୍ଠ ଆଳସ ଆଉ ଶ୍ରେଷ୍ଠ ପିଲ୍ ହୋଇ ରହିବ । ସୁଖରେ ରହ । ମନଯୋଗ ଦେଇ ପଢାଶୁଣା କର । ବାବା ମା'ର କଥା ମାନି ଚଳିବ । ଶ୍ରେଷ୍ଠ କୁକୁର ମାରିଥିବାକୁ ମାରିବ ନାହିଁ । ତୁମେମାନେ ଯେତେବେଳେ ବଡ଼ ହୋଇଯିବ, ବାବା ମା'ଙ୍କ ପରି, ନୁଏନ ଭ୍ରୁଗ୍ ପରି ଏବଂ ଆଉ ଦେଶବାସୀଙ୍କ ପରି ନିଜ ଦେଶ ପାଇଁ ଲଢ଼ିବ ।

"ମୋର ଶ୍ରେଷ୍ଠପିଲମାନେ, ତୁମମାନଙ୍କୁ ସସ୍ନେହ ଚୁମ୍ବନ ଜଣାଉଛି । ମୋ ପାଇଁ ତୁମର ବାବା ମା'ଙ୍କୁ ଚୁମ୍ବନ ଦେଇଦେବ ।

ନୁଏନ ଭ୍ରୁଗ୍ ।"

ଶନିବାର ସଞ୍ଜର ସେହି ଗୋଲଟେବୁଲ ଘରକଡ଼ରେ ପୂର୍ବପରିଚିତ ପାର୍ଟି ସଦସ୍ୟଗଣ । ନୁଏନ୍‌ର ଚିଠିଟା ନିର୍ଜୀବ ଶରୀରରେ ପଡ଼ିରହିଲ ଟେବଲ ଉପରେ । ବହୁତ ପୂର୍ବରୁ ସେ ପ୍ୟାଗ କ୍ରୁଡ଼ିସାରିଛି । ତାର କହିବା ଅନୁଯାୟୀ ଅଫିସର ହିସାବପତ୍ର, ଆଉ ଯାହା ଦାୟିତ୍ୱ, ସବୁକୁ ସେ ଠିକଣାରୂପେ ସାରିଦେଇ ଯାଇଛି । ତାର କ୍ରୁଡ଼ିଯାଇଥିବା ପଦଚିହ୍ନରେ ସତେ ଯେପରି ଧୂଳିକଣା ବାଜିବାକୁ ଭୟ କରୁଛି । କେଡ଼େ ଜିଦ୍‌ଖୋର ଆଉ ସ୍ୱାଭିମାନୀ ସେ !! କେଡ଼େ ସ୍ନେହୀ, ଅନୁଗତ ସେ ! ସମସ୍ତଙ୍କ ହୃଦୟରେ ତା' ପାଇଁ ଗଭୀର ଆଲୋଡ଼ନ !! ଇଣ୍ଡୋଚୀନ କେତେ ଦୂରରେ !! କିପରି ସେ ସାତସିନ୍ଧୁ ଅତିକ୍ରମ କରି ଯିବ ? ପୋଲିସ୍‌ର ଜ୍ୱଳନ୍ତ ଆଖିଗୁଡ଼ାକ ତା' ଉପରେ ଲାଗିରହିଛି ! ଇଣ୍ଡୋଚୀନ ଅଭିମୁଖେ ଯାଉଥିବା ଜାହାଜରେ ସ୍ୱତନ୍ତ୍ର ଜଗୁଆଳୀ ଦିଆଯାଇଛି । ତା ପାଇଁ ଘରଆଡ଼େ ଅବରୁଦ୍ଧ ପ୍ରାଚୀର । ଅଦୂର ପାହାଡ଼ରୁ ବ୍ୟାଆବତାସ ଛୁଇଁଯାଉଛି ପ୍ରତ୍ୟେକ ମନକୁ ।



# ୮

## ମସ୍କୋ ପଥେ

୧୯୨୪ ମସିହା ଜାନୁଆରୀ ମାସ । ଅକ୍ଟୋବର ବିପ୍ଳବର ମହାନ୍ ପ୍ରଣେତା, ଶ୍ରମିକଶ୍ରେଣୀର ନେତା ଲେନିନ୍ ଆତତାୟୀର ଗୁଳିରେ ପ୍ରାଣତ୍ୟାଗ କରନ୍ତି । କେବଳ ସୋଭିଏତ ୟୁନିଅନ କାହିଁକି, ସାରା ଦୁନିଆର ମେହେନତି ଜନତାର ମଥାରେ ଅଦିନ ବଜ୍ରପାତ । ଶୋକାକୁଳ ଶ୍ରମିକଶ୍ରେଣୀ ଅଜଣା ଭବିଷ୍ୟତ ଆଶଙ୍କାରେ ଉତ୍କଣ୍ଠିତ । ମସ୍କୋରେ ବିଶ୍ୱର ଚାରିଆଡ଼ୁ ଆସିଥିବା ସାମ୍ୟବାଦୀ ନେତା, ପ୍ରବକ୍ତା, ତତ୍ତ୍ୱବିଦ୍‌ମାନଙ୍କର ମର୍ମାନ୍ତିକ ସମାବେଶ । ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷେ ପ୍ୟାରିସରୁ ଆସିଛନ୍ତି ମାର୍ସାଲ କାଂଶ୍ୟା ଏବଂ ସାଇଲାଣ୍ଡ କୁଟୁରିୟେ । ଠିକ୍ ସେହିକବେଳେ ପହଞ୍ଚିଛନ୍ତି ହୋ', ମନରେ ଲେନିନଙ୍କୁ ଦେଖିବାର ବିଗତ କେତେ ବର୍ଷର କ୍ଷୁଧା । ବିପ୍ଳବର ଜନ୍ମ-ପୀଠରେ ତାର ପ୍ରାଣଦାତାଙ୍କୁ ଆଖିପୁରାଇ ଚାହିଁ ନେବାରେ ହିଁ କେତେ ଉନ୍ମାଦନାର ଶାନ୍ତି !! ଆଗାମୀ ଦିନର ଆନନ୍ଦ ଉଲ୍ଲାସରେ ଭୁଲିଯାଉଛି ଅତୀତର ଯାତ୍ରାପଥର ସମସ୍ତ କ୍ଳାନ୍ତି । ପ୍ୟାରିସରୁ ଆସିବାବେଳେ ଜାପାନୀ ବନ୍ଧୁ କାଓ କୋମାଟସୁଙ୍କୁ କହିଥିବା କଥା କେଉଁପରି କାନରେ ଅନବରତ ବାଜିଯାଉଛି । ନୀରବ ମୂର୍ତ୍ତି ଦେଖି କେହି ଯେପରି ବାରମ୍ବାର ଚେତାଇ ଦେଇ ଯାଉଛି, "ଆସ, ମୋ ସହିତ ମସ୍କୋ ଯିବ । ବିପ୍ଳବର ଜନ୍ମପୀଠକୁ ଥରଟିଏ ପାଇଁ ହେଲେ ଆଖିପୁରାଇ ଦେଖିଆସିବ । ଏହିପରି ଏକ ମଞ୍ଜସତ୍ତା ସମାଜ ମଧ୍ୟରେ କି କଳା, କି ସଂସ୍କୃତି ଜନ୍ମ ନେବ ? ଆମେ-ମାନେ ହିଁ ବିପ୍ଳବର ବୀଜକୁ ବୋହିନେବା, ତା' ପରେ ତୁମେ ଦେଖିବ ଶ୍ରେଣୀହୀନ ସମାଜର ସ୍ୱାଧୀନ, ମୁକ୍ତବାୟୁରେ ତୁମେ ଅଭିନବ ସାହିତ୍ୟ, କଳାର ସୃଷ୍ଟି ପାଇଁ ସମର୍ଥ ହୋଇପାରିଛ ।"

ନୂତନ ଏକ ଦୁନିଆ ଗଢ଼ିବାର ଅଯୁତ ସ୍ୱପ୍ନକୁ ସାଥୀ କରି ହୋ ମସ୍କୋରେ ପାଦ ଦେଲେ । ସୌଭାଗ୍ୟବଶତଃ ମାର୍ସେଲ କାଂଶ୍ୟା ଓ ସାଇଲାଣ୍ଡ କୁଟୁରିୟେଙ୍କର ଉପସ୍ଥିତି ତାଙ୍କୁ ପ୍ରଥମେ ବହୁତ ସାହାଯ୍ୟ କଲା । ଦୂରଦୂରାନ୍ତରୁ ଆସିଥିବା ବିପ୍ଳବୀ ନେତାମାନଙ୍କ ସହିତ ସେମାନେ ହୋ'ଙ୍କୁ ପରିଚୟ କରାଇ ଦେଲେ । କିଛିଦିନ ରହିଲା ପରେ ସେମାନେ ପ୍ୟାରିସ ଫେରିଲେ; କିନ୍ତୁ ହୋ ସେଠାରେ ରହିଗଲେ । ସେତେବେଳକୁ ମସ୍କୋ ତାଙ୍କୁ ଆପଣାର କରି ସାରିଥିଲା । ୧୯୨୪, ଜାନୁଆରୀ ୨୭ ତାରିଖରେ ସୋଭିଏତ ୟୁନିଅନର ସରକାରୀ ମୁଖପତ୍ର "ପ୍ରଭଦା'ରେ ହୋ'ଙ୍କ ନାମରେ ଏକ

ଲେଖା ପ୍ରକାଶ ପାଇଲା । ସେଥିପାଇଁ ଜେ ସେ ମସ୍କୋରେ ଥିବା ଏସୀୟ ବିପ୍ଳବୀ-ମାନଙ୍କ ସହିତ ଘନିଷ୍ଠ ଯୋଗାଯୋଗ ନିମନ୍ତେ ସୁଯୋଗ ପାଇଲେ । ସେ ଲେଖା ଏହି ମର୍ମରେ ଥିଲା, "ଲେନିନ୍ ଆଜି ମୃତ, ଉପନିବେଶମାନଙ୍କରେ ବଦ୍ଧ ରହିଥିବା ସନ୍ତପ୍ତ, ଦୁଃଖଦଗ୍ଧ, ଦଳିତ ଜନତା ଆଜି ସମସ୍ୱରରେ ସେହି ଗୋଟିଏ ପ୍ରଶ୍ନ ପଚାରୁଛି, ଏହାପରେ ଆମେ କ'ଣ କରିବା ?" ହୋ-ଙ୍କର ବିରଳ ଆତ୍ମାର ପରିଚୟ ମିଳିଥିଲା ଏଥିରୁ । ତା'ପରେ ସେ ନିଜପକ୍ଷରୁ ଚେଷ୍ଟା କରି ମସ୍କୋରେ ଥିବା ନେତା-ମାନଙ୍କ ସହିତ ବିପ୍ଳବୀ ଆନ୍ଦୋଳନ, ସାଙ୍ଗଠନିକ ପଦ୍ଧତି ନେଇ ଆଲୋଚନା ଆରମ୍ଭ କରି ଦେଇଛନ୍ତି । ୧୯୨୪ ମସିହାର ସମୁଦାୟ ବର୍ଷଟା ସେ ମସ୍କୋରେ କଟାଇ ଦେଲେ । ସେଠାରେ ଅବସ୍ଥାପିତ 'ପ୍ରାଚ୍ୟ ମେହେନତୀ ଜନଗଣର ବିଶ୍ୱ-ବିଦ୍ୟାଳୟ'ରେ ନାମ ଲେଖାଇ ପାଠ ଆରମ୍ଭ କଲେ । ସେହି ସମୟରେ 'ପ୍ରଭଦା'ରେ ନିୟମିତ ଲେଖାଲେଖି କରିବା ତାଙ୍କର ଅନ୍ୟ ଏକ ମୁଖ୍ୟ ଦାୟିତ୍ୱ ଥିଲା । 'ପ୍ରଭଦା' ବ୍ୟତୀତ ସେ ନିଜେ 'ଚୀନ ଏବଂ ଚୀନା ଯୁବସମାଜ' ଓ 'କୃଷ୍ଣଜାତି' ନାମକ ଦୁଇଟି କ୍ଷୁଦ୍ର ପ୍ରବନ୍ଧ ପୁସ୍ତିକା ଲେଖିଥିଲେ । ତାଙ୍କର ଏହି ପ୍ରାବନ୍ଧିକ ସ୍ୱରୂପ ଓ କାର୍ଯ୍ୟ କରିବାର ସାମର୍ଥ୍ୟ ଯୋଗୁଁ ସେ କୋମିଣ୍ଟର୍ଣ୍ଣ ମହଲରେ ନିଜପାଇଁ ଏକ ସୁଦୃଢ଼ ଆସନ ସୃଷ୍ଟି କରି ପାରିଲେ । ତା ପୂର୍ବରୁ ମସ୍କୋରେ ଏସୀୟ ନେତାମାନଙ୍କ ମଧ୍ୟରୁ ମାନବେନ୍ଦ୍ର ନାଥ ରାୟଙ୍କ ନାମ ଖୁବ୍ ଜଣାଶୁଣା । ତାଙ୍କର ଅଭୂତପୂର୍ବ ବ୍ୟକ୍ତିତ୍ୱ ଓ ପ୍ରତିଭା ଯୋଗୁଁ ସେ ପୃଥିବୀର ବଡ଼ ବଡ଼ ବିପ୍ଳବୀମାନଙ୍କ ସହିତ ସମାସୀନ ହୋଇଥାଆନ୍ତି, ଯେଉଁଥିପାଇଁ ପ୍ରଥମେ ହୋ-ଙ୍କୁ ଦେଖି ଅନେକେ ପାଖକୁ ପକାଇଲେ ନାହିଁ । ରାୟଙ୍କ ପରି ସାହେବୀ ଚେହେରା, ଆଦବକାଇଦା ଓ ଚଳଣି ସହିତ ସେ ଆଦୌ ପରିଚିତ ନ ଥିଲେ । ମାତ୍ର କେତେ ଦିନର ଅବସ୍ଥାନ ପରେ ସେ ଏସିଆ ମହାଦେଶର ସର୍ବୋତ୍ତମ, ସର୍ବପ୍ରଥମ ବିପ୍ଳବୀ ତତ୍ତ୍ୱଦର୍ଶୀ, ମାର୍କ୍ସବାଦୀ ନେତାଭାବେ ସମ୍ମାନଲାଭ କଲେ । ଏହି ଗୌରବ ପଛରେ ଥିଲା ତାଙ୍କର ଲେନିନ୍‌ବାଦୀ ମତାଦର୍ଶ ପାଇଁ ଅଟଳ ବିଶ୍ୱାସ ଏବଂ ପ୍ରୟୋଗବାଦୀ ଜୀବନର ଗଭୀର ଅନୁରକ୍ତି ।

ପ୍ୟାରିସରୁ ଧୂଳେଇ କରି ଆଣିଥିବା ଖାକି ପ୍ୟାଣ୍ଟ, ସାର୍ଟ ଓ ଟ୍ୟୁପି କଂଗ୍ରେସରେ ପିନ୍ଧିଥିବା କଳାକୋଟ ଖଣ୍ଡିକ ଛଡ଼ା ଡ.ଙ୍କର ନିଜର ସମ୍ପତ୍ତି ଆଉ କିଛି ନାହିଁ । ପ୍ୟାରିସରୁ ମସ୍କୋ କେତେ ଦିନର ପଥଯାତ୍ରା କେତେ ମୋଡ଼, କେତେ ମୁହାଣି, କେତେ ଚିନ୍ତାର ପରିବର୍ତ୍ତନ ! ଏ ପାରିରୁ ସେ ପାରି, ଏ ଦୁନିଆରୁ ସେ ଦୁନିଆ, ପରିବର୍ତ୍ତିତ ରଙ୍ଗ ସଜ୍ଜାରେ ମସ୍କୋ ଆନନ୍ଦ ବିଭୋର । ନୂତନ ବର୍ଷରେ ନବ ସାହାନ୍ତରେ ସେ ବିଜୟ ଉଲ୍ଲାସରେ ମଗ୍ନ । ହେଲେ ହୋ ସବୁଦିନେ ସେଇପରି ।

ପାଦତଳର ଛିଡ଼ା ଯୋତାହଳକ ଫିଟି ଚାଲିଯିବାକୁ ଚାହୁଁଛି ମସ୍କୋର ମସୃଣ ରାଜପଥରେ । ସେଥିପ୍ରତି ତାଙ୍କର ଖାତିର ନାହିଁ । ଦେହକୁ ସଜାଡ଼ିବା ପାଇଁ ବେଳ କାହିଁ ତାଙ୍କର !

ସକାଳୁ ରାତିଯାଏ ପ୍ୟାରିସ ପରି ଅନେକ ବନ୍ଧୁଙ୍କ ସହିତ ସାକ୍ଷାତ କରିବାକୁ ପଡ଼େ । ସମସ୍ତ ସଙ୍କୋଚ କଟିଯାଇଛି ତାଙ୍କର । ଏସିଆ ମହାଦେଶର ମୁକ୍ତିଜାତିର ଭବିଷ୍ୟତ ପାଇଁ ସୁନେଲି ସ୍ୱପ୍ନ ଦେଖି ଦେଖି ସେ ଆତ୍ମହରା ହୋଇଯାଉଥାନ୍ତି । ପ୍ରଖ୍ୟାତ ମାର୍କସବାଦୀ ଦାର୍ଶନିକମାନଙ୍କ ସହିତ ତାତ୍ତ୍ୱିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବା-ପାଇଁ କେବେ ଭୟ କରନ୍ତି ନାହିଁ । ନିଜର ଅମାୟିକ ବ୍ୟବହାର, ସରଳତା, ନିରାଡ଼ମ୍ବରତା ଓ ଲକ୍ଷ୍ୟପ୍ରତି ଅବିଚଳ ଭାବରେ ସେ ସମସ୍ତଙ୍କ ହୃଦୟ ଜୟ କରି-ନେଇଛନ୍ତି । ଲେନିନଙ୍କ ସହିତ ସାକ୍ଷାତ କରିବାର ସୁଯୋଗ ତାଙ୍କୁ ମିଳିନାହିଁ ସତ, ତାଙ୍କ ବଦଳରେ ଯେଉଁମାନଙ୍କୁ ସେ ଭେଟିଲେ ସେମାନେ ହେଲେ ଲେନିନଙ୍କର ଅନ୍ତରଙ୍ଗ ସହକର୍ମୀ, ସହଯୋଗୀ ରାଡ଼େକ, ଜିନୋଭିଏଭଙ୍କ ପରି ପ୍ରସିଦ୍ଧ ନେତାମାନେ ; ସର୍ବୋପରି ଯୋସେଫ ଷ୍ଟାଲିନଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତକୁ ସେ କେବେ ଭୁଲି ପାରନ୍ତି ନାହିଁ । ପ୍ରଥମ ଦେଖାରେ ଷ୍ଟାଲିନ୍ ଉପନିବେଶୀ ସମସ୍ୟାବଳୀ ନେଇ ଯେପରି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଆରମ୍ଭ କରିଦେଲେ ଏବଂ ସେଦିଗରେ ଦ୍ରୁତ କାର୍ଯ୍ୟାନୁଷ୍ଠାନ ପାଇଁ ତାଙ୍କର ଯେଉଁ ଆନ୍ତରିକତା ଥିଲା ସେଥିରେ ହୋ' ଚକିତ ହୋଇପଡ଼ିଲେ । ଷ୍ଟାଲିନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ବୁଲ୍‌ଗେରିଆର ଦେଶଭକ୍ତ ସନ୍ତାନ ଜର୍ଜ ଡିମିଟ୍ରଭ, ଫିନଲାଣ୍ଡର କୁସିନେନ୍, ଜର୍ମାନୀର ଥାଲମ୍ୟାନଙ୍କ ପରି ମହାମନିଷୀମାନଙ୍କ ସମ୍ପର୍କରେ ଆସିଲେ । ସେ ସମସ୍ତେ ଉପନିବେଶୀ ଜାତିସମୂହର ଦୁଃଖ, ଦାରିଦ୍ର୍ୟ ସମ୍ବନ୍ଧରେ ବହୁ ପୂର୍ବରୁ ସଚେତନ ଥିଲେ ମଧ୍ୟ ସ୍ଥାନୀୟ ନେତୃତ୍ୱର ଅଭାବରେ କିଛି କରିପାରୁ ନ ଥିଲେ । ହୋ'ଙ୍କର ସହାୟତା ସେମାନଙ୍କର ଗତିପଥକୁ ଅଧିକ ଶାଣିତ କରିଦେଲା ଏବଂ ଏସିଆ ମହାଦେଶର ମୁକ୍ତି ପାଇଁ ବିପ୍ଳବର ନୂତନ ସୁଡ଼ଙ୍ଗ ଉନ୍ମୋଚିତ ହେଲା । ସେତେ-ବେଳେ ମାଓ-ସେ-ତୁଂଙ୍କ ନାମ ଦୁନିଆ ଆଗକୁ ଆସିନାହିଁ । ଚୀନର ଲି-ଲି ସାନ ଏବଂ ଭାରତବର୍ଷର ମାନବେନ୍ଦ୍ର ନାଥ ରାୟ ଏସିଆ ମହାଦେଶର ନେତୃତ୍ୱ ନେଇ-ଥାଆନ୍ତି । ମସ୍କୋ ସହରରେ ହୋ'ଙ୍କର ଆକସ୍ମିକ ଆବିର୍ଭାବ ମାନବେନ୍ଦ୍ର ରାୟଙ୍କୁ ଭଲ ଲାଗିଲା ନାହିଁ । ସାମ୍ପ୍ରତିକ ରାଜନୈତିକ କ୍ଷେତ୍ରରେ ସେ ନିଜ ବ୍ୟତୀତ ଅନ୍ୟ କାହାର ଗୁରୁତ୍ୱକୁ ସ୍ୱୀକାର କରୁ ନ ଥିଲେ । କିନ୍ତୁ ହୋ ଅନ୍ୟ ସମସ୍ତଙ୍କର ନୈତିକ, ବାଚନିକ ସମର୍ଥନ ପାଇ ନିଜକୁ ପ୍ରତିଷ୍ଠିତ କଲେ ।

'୧୯୨୪ ମସିହା ଜୁନ୍ ୧୭ ତାରିଖ ଏବଂ ଜୁଲାଇ ୮ ତାରିଖରେ ଅନୁଷ୍ଠିତ ପଞ୍ଚମ କମ୍ୟୁନିଷ୍ଟ ଆନ୍ତର୍ଜାତିକରେ ହୋ ଯୋଗ ଦେଲେ । ଆଲୋଚନାରେ

ଅଂଶ ଗ୍ରହଣ କରି ସେ ଯେଉଁ ଦୁଇଟି ବଳିଷ୍ଠ ମୁକ୍ତ ଉପସ୍ଥାପିତ କଲେ, ତାହା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଥିରେ ଥିଲା ଫରାସୀ କମ୍ୟୁନିଷ୍ଟ ପାର୍ଟି ଏବଂ ଇଣ୍ଡୋ-ଚୀନରେ ଉପନିବେଶ ଶାସନ ବିରୁଦ୍ଧରେ ଆନ୍ଦୋଳନକାରୀ ପାର୍ଟି ବା ସଂଗଠନ ପ୍ରତି ତୀବ୍ର ସମାଲୋଚନା । ହୋ'ଙ୍କର ମତରେ ଉପନିବେଶମାନଙ୍କରେ ବାସ କରୁଥିବା ସାଧାରଣ ଜନତାର ଶୋଷଣ, ନିର୍ଯାତନା ଦିନକୁ ଦିନ ବଢ଼ି ଚାଲିଥିଲେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ସେଥିପାଇଁ ଯଥୋଚିତ ଧ୍ୟାନ ଦେଇ ନାହିଁ । ଅପରପକ୍ଷରେ ବ୍ୟକ୍ତିଗତ ଦ୍ୱନ୍ଦ୍ୱ, କଳହ ମଧ୍ୟରେ ସୀମିତ ରହି ବିପ୍ଳବର ତାତଲା ସ୍ରୋତରୁ କିଆଁ ଖସି'ଗଲେ ନେଇଛନ୍ତି । ହୋ'ଙ୍କର ଏହି ସ୍ପଷ୍ଟ, ଅଗ୍ନିବର୍ଷୀ ଅଭିଯୋଗ ବିରୁଦ୍ଧରେ କାହାର ମୁଖ ଖୋଲିଲା ନାହିଁ । ତାଙ୍କର ସମୁଦାୟ 'ବକ୍ତବ୍ୟ ପଛରେ ଥିଲା ଲେନିନ ଓ ଷ୍ଟାଲିନ୍‌ବାଦୀ ମତାଦର୍ଶର ବଳିଷ୍ଠ ସମର୍ଥନ । ନିଜ ଦେଶର ଅଗଣିତ ଭାଇ ଭଉଣୀ-ମାନଙ୍କର ଦୁଃଖ, ଦୈନ୍ୟ ବିଷୟରେ କହୁଥିଲା ବେଳେ ସେ ଅଧୀର ହୋଇ ପଡ଼ୁଥିଲେ । ଆଖିକୋଣରେ ଜମାଟବନ୍ଧା ଲୁହରେ ହୃଦୟଟାରେ ଲୁକ୍‌କାୟିତ ଆବେଗ କାଷ୍ଠରୁଦ୍ଧ ହୋଇ ଉଠୁଥିଲା ।

ତାଙ୍କ ବକ୍ତୃତାର ଆଉ ଏକ ଉଲ୍ଲେଖଯୋଗ୍ୟ ସ୍ୱାତନ୍ତ୍ର୍ୟ ଥିଲା ଯେ, ହୋ'ଙ୍କ ପରି ଫରାସୀ କମ୍ୟୁନିଷ୍ଟ ପାର୍ଟିର ଜଣେ ସକ୍ରିୟ ସଭ୍ୟ, ଯେ କି ତା ଜୀବନର ଅର୍ଦ୍ଧାଧିକ ସମୟ ସହର, ସହରୀ ସଭ୍ୟତା, ଶିଳ୍ପସମୃଦ୍ଧ ପ୍ୟାରୀ ନଗରୀ, ସର୍ବୋପରି ସର୍ବହରା ଶ୍ରମିକଶ୍ରେଣୀ ମଧ୍ୟରେ କଟାଇଛୁ, ସେ ଗ୍ରାମ୍ୟ କୃଷିଜୀବୀମାନଙ୍କର ଦୈନନ୍ଦିନ ଜୀବନ, ଉପନିବେଶୀ ଦାସତ୍ୱ ଓ ଶୋଷଣ ବିଷୟରେ ଠିକଣାଖି ବିବରଣୀ କିପରି ଦେଇପାରୁଛୁ !! ଅନ୍ୟ ନେତାମାନଙ୍କଠାରୁ ଏହିପ୍ରକାର ବିଦ୍ୱତ୍ତା ସାଧାରଣତଃ ଆଶା କରିଯାଉ ନ ଥିଲା । କିନ୍ତୁ ହୋ'ଙ୍କର ନିମ୍ନପ୍ରଦତ୍ତ ଭାଷଣ ସେମାନଙ୍କର ଜଡ଼ତା ଭାଙ୍ଗି ଦେଇଥିଲା ।

"ଉପନିବେଶମାନଙ୍କରେ କୃଷକ ବିଦ୍ରୋହ ଆସନ୍ନ । କେତେଗୁଡ଼ିଏ ଉପନିବେଶରେ ଅଭ୍ୟୁତ୍ଥାନ ଆରମ୍ଭ ହୋଇଗଲାଣି । କିନ୍ତୁ ପ୍ରତିଥର ସେମାନଙ୍କୁ ରକ୍ତର ବନ୍ୟାରେ ଡ଼ୁବାଇ ଦିଆଯାଇଛୁ । ବର୍ତ୍ତମାନ ଯଦି ସେମାନେ ସେଥିରୁ ନିବୃତ୍ତ ରହନ୍ତି, ତାହା କେବଳ ସାଂଗଠନିକ ନେତୃତ୍ୱ ଓ ଦକ୍ଷତାର ଅଭାବଯୋଗୁଁ । 'କମ୍ୟୁନିଷ୍ଟ ଆନ୍ତର୍ଜାତିକ'ର ଦାୟିତ୍ୱ ହେଉଛି—ସେମାନଙ୍କୁ ଏକତ୍ରିତ କରାଇ ବିଦ୍ରୋହ ପଥରେ ଆଗୁସାର କରାଇବା ।"

୧୯୨୪ ମସିହାର ଶେଷଭାଗ । ମସ୍କୋରେ ରହିବାର ଗୋଟିଏ ବର୍ଷ ପୂରିବାକୁ ଯାଉଛି । ପଞ୍ଚମ କମ୍ୟୁନିଷ୍ଟ ଆନ୍ତର୍ଜାତିକ, କୃଷକ ମହାସଭା, ଉପନିବେଶୀ ଶ୍ରମିକଶ୍ରେଣୀର ନୂତନ ଇସ୍ତାହାର ପ୍ରସ୍ତୁତ, ଇଣ୍ଡୋଚୀନରେ ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟି

ଗଠନ ସମ୍ବନ୍ଧରେ ଆଲୋଚନା ଆଉ ମହାର୍ଘ ଘଟଣାବଳୀରେ ସମୃଦ୍ଧ ଐତିହାସିକ ୧୯୨୪ ବିଦାୟ ନେବାକୁ ଯାଉଛି ।

ଚୀନରେ ସେତେବେଳେ ବିପ୍ଳବର କୂଳଲଂଘି ଜୁଆର । କୋମିନଟାଙ୍ଗ-କମ୍ୟୁନିଷ୍ଟ ମୈତ୍ରୀ ମିନାର ପ୍ରତିଷ୍ଠିତ ହୋଇ ସାରିଛି । ଚୀନର ଗଳି, କନ୍ଦି ପୁରପଲ୍ଲୀ, ସହର ବଜାର, କ୍ଷେତ ଖମାରରେ ବିପ୍ଳବର ଅବାରିତ ସ୍ରୋତ । ଉପନିବେଶବାଦ ବିରୁଦ୍ଧରେ ଆରମ୍ଭ ହୋଇଛି ଗଣ ଅଭ୍ୟୁତ୍ଥାନ । ସାଙ୍ଘାଇ ପରି ବଡ଼ ସହରମାନଙ୍କରେ ଶ୍ରମିକମାନେ ଗଣ ବିଦ୍ରୋହ ଆରମ୍ଭ କରି ଦେଇଛନ୍ତି । ବ୍ରିଟିଶ ଓ ଜାପାନୀ ପୁଲିସମାନେ ରକ୍ତର ବନ୍ୟାରେ ଆନ୍ଦୋଳନର ସ୍ରୋତକୁ ଭସାଇ ନେବା ପାଇଁ ଚେଷ୍ଟା ଚଳାଇଛନ୍ତି । କିନ୍ତୁ ଇତିହାସ ତାହା କରାଇ ଦେଉ ନାହିଁ । ସେଇଟା ଥିଲା ସନୟାତସେନ ବିପ୍ଳବର ସ୍ୱର୍ଣ୍ଣଯୁଗ । ଚୀନ କମ୍ୟୁନିଷ୍ଟ-ପାର୍ଟିର ସହାୟତାରେ କ୍ୟାଣ୍ଟନଠାରେ ବିପ୍ଳବୀ ସରକାର ଗଠନ ହୋଇସାରିଛି । କୋୟାନତୁଙ୍ଗ ପ୍ରଦେଶର ହୋୟାମପୋୟାଠାରେ ସ୍ଥାପିତ ହୋଇଛି ବିପ୍ଳବୀ ସାମରିକ ଶିକ୍ଷାକେନ୍ଦ୍ର । ତାର ଶୀର୍ଷ ପରିଚାଳନା ଦାୟିତ୍ୱରେ ଅଛନ୍ତି କୋମିନଟାଙ୍ଗ ତରଫରୁ ଚିଆଙ୍ଗ-କାଇ-ସେକ୍ ଓ କମ୍ୟୁନିଷ୍ଟପାର୍ଟି ତରଫରୁ କମ୍ରେଡ଼ ଚୁଉ-ଏନ୍-ଲାଇ ।

କୌଣସି ବାମପନ୍ଥୀ ପତ୍ରପତ୍ରିକାରୁ ହୋ' ଏହି ସମ୍ବାଦ ସଂଗ୍ରହ କରିଛନ୍ତି । ସବୁଠାରୁ ଉତ୍ସାହିତ କରିଛି ତାଙ୍କୁ ଗୋଟିଏ କଥା ଯେ ଇଣ୍ଡୋଚୀନରେ ଫରାସୀ ଶାସନ କାୟମ ରହିବା ପରଠାରୁ କାଣ୍ଟନ ଭିଏତନାମୀ ଆତ୍ମଗୋପନକାରୀ ବିପ୍ଳବୀ-ମାନଙ୍କର ପ୍ରଧାନ ଘେଣ୍ଟି ହୋଇଛି । ଦ୍ୱିତୀୟତଃ, ଚୀନ୍ ଭିଏତନାମଠାରୁ କେତେ କମ୍ ଦୂରରେ । ସୀମାନ୍ତର କଡ଼େ କଡ଼େ ଆଖି ବୁଲାଇ ଦେଲେ, ଚୀନ ହିଁ ଆଗକୁ ରହିଯାଏ । କାହିଁ ମସ୍କୋ, କାହିଁ ଚୀନ୍ ! ଚୀନ ହିଁ ଆପଣାର ମନେ ହେଉଛି । ପଡ଼ୋଶୀ ପୁଣି ଶରଣଦାୟୀ । ଚୀନରେ ପହଞ୍ଚି ପାରିଲେ ଭିଏତନାମକୁ ଗୋଡ ବଢ଼ାଇ ଦେବା ଅପେକ୍ଷାକୃତ ସହଜ ହୋଇପଡ଼ିବ । କ୍ୟାଣ୍ଟନର ଆକାଶରୁ ଆନାମର ଚନ୍ଦ୍ର ଦେଖି ହେବ । ସାଙ୍ଘାଇର ବିଲ ବାଡ଼ିରେ ଭିଏତନାମର ଶସ୍ୟଶ୍ୟାମଳା ବନଭୂମିକୁ କଳ୍ପନା କରିହେବ । ଅଦୂର ପଡ଼ୋଶୀ ଚୀନର ବନ୍ଧନ ବଡ଼ ଶକ୍ତ ।

୧୯୨୪ ଡିସେମ୍ବର ଅନ୍ତଭାଗରେ ଚୀନ୍ ପକ୍ଷରୁ ବିପ୍ଳବୀ କୋମିନଟାଙ୍ଗ ସରକାରରେ ଥିବା ରୁଷୀୟ ଆନ୍ତର୍ଜାତୀୟର ପ୍ରତିନିଧି ବରୋଡ଼ିନଙ୍କର ସହାୟତାରେ ହୋ' କାଣ୍ଟନଠାରେ ପହଞ୍ଚିଲେ । ତାଙ୍କର ଚୀନଯାତ୍ରାକୁ ଅତି ଗୋପନରେ ରଖାଯାଇଥିଲା । ଚୀନରେ ସେ ବରୋଡ଼ିନଙ୍କର ଭାଷାକାର ରୂପେ ପରିଚିତ ହେଲେ । କିନ୍ତୁ ବାସ୍ତବକ୍ଷେତ୍ରରେ ସେ ଥିଲେ ବରୋଡିନଙ୍କର ରାଜନୈତିକ

ପରିମର୍ଦ୍ଦିତା । ପ୍ରଥମ ଦିନମାନଙ୍କରେ କ୍ୟାଣ୍ଟନଠାରେ ହୋ' ଅତି ସତର୍କତାର ସହିତ ଚଳୁଥିଲେ । କାରଣ ପୋଲିସର କଡ଼ା ନଜର ଥିଲା ତାଙ୍କ ଉପରେ । ତାଙ୍କର ବେଶଭୂଷାକୁ ସେ ଏପରି ପରିପାଟୀରେ ସଜାଇଥିଲେ ଯେ, ଦେଖିଲେ ମନେ ହେଉଥିଲା ସେ ଜଣେ ଚୀନା ପ୍ରାଚ୍ୟ ସଂସ୍କୃତିର ପଣ୍ଡିତ । ସଦାପ୍ରସନ୍ନ ତାଙ୍କର ବ୍ୟବହାର, ଚାଲିଚଳଣରେ ବନ୍ଧୁମାନେ ଆକୃଷ୍ଟ ହୋଇପଡ଼ିଲେ । ବିପଦରେ ସେ କାହାକୁ ସାହାଯ୍ୟ କରିବାକୁ ପଛଉ ନ ଥିଲେ । ବିଶେଷ କରି ଜଣେ ଆନାମୀ ବନ୍ଧୁ ପାଇଲେ ସେ ତାଙ୍କୁ କରିଛଡ଼ା କରୁ ନ ଥିଲେ । କିନ୍ତୁ ପ୍ରକାଶ୍ୟରେ ତାଙ୍କର ଏହି ସସ୍ନେହୀ ଅନୁରାଗକୁ ସେ ନିଜ ଭିତରେ ଚାପି ରଖୁଥିଲେ । ଏପରି କି ପ୍ରଚଣ୍ଡ ରୌଦ୍ର ମାସରେ ସେ ଚୀନାମାନଙ୍କ ପରି ଲମ୍ବା ପାଇଜାମା କୁର୍ତ୍ତା ପିନ୍ଧୁଥିଲେ । ଚୀନା କାଠଯୋତାରେ ଗୋଡ଼ ଚାପିହୋଇ ଫୁଲି ଯାଉଥିଲେ ମଧ୍ୟ ସବୁବେଳେ ସେ ତାକୁ ବ୍ୟବହାର କରୁଥିଲେ । ଟାଇ ପିନ୍ଧିବା ତାଙ୍କର ଅଭ୍ୟାସ ନ ଥିଲା ।

କ୍ୟାଣ୍ଟନରେ ରହିବାର ଛ' ମାସ ବିତିଯିବାକୁ ବସିଛି । ଭିଏତନାମ ଦିବା-ରାତ୍ରି କାନତଳେ ଗୁଞ୍ଜରଣ କରୁଛି । ଚୀନ ବିପ୍ଳବର ଜୁଆର ଯେତେ ବେଗବତୀ ହେଲେ ମଧ୍ୟ ହୋ'ଙ୍କ ଶୁଷ୍କ ହୃଦୟତଟରେ ତାର ଆର୍ଦ୍ରତା ଟିକେମାତ୍ର କାମ କରୁ ନାହିଁ । ଅପର ପକ୍ଷରେ ନିକଟରେ କ୍ୟାଣ୍ଟନଠାରେ ମୁଣ୍ଡ ଟେକିଥିବା ପ୍ରବାସୀ ଭିଏତନାମୀମାନଙ୍କର ଗୁପ୍ତ ଆନ୍ଦୋଳନର ବାର୍ତ୍ତା ଉଡ଼ାଇ ଉଡ଼ାଇ ଡାକିଛାଡ଼ୁଛି । ଭିଏତନାମର ଜାତୀୟତାବାଦୀ ଆତ୍ମଗୋପନକାରୀମାନେ ବହୁସଂଖ୍ୟାରେ କ୍ୟାଣ୍ଟନରେ ଆସି ଆଶ୍ରୟ ଗ୍ରହଣ କରିଛନ୍ତି । ସେମାନଙ୍କର ନାଟକୀୟ ଅଭିଯାନ ଚୀନ କମ୍ୟୁନିଷ୍ଟ-ପାର୍ଟିର ବିପ୍ଳବୀ ଚେତନାକୁ ଅଭିଭୂତ କରି ପକାଇଛି । କେତେଦିନ ତଳେ ଫାମ୍-ହାଙ୍ଗ-ଥାଇ ନାମକ ଜଣେ ଯୁବକ ଇଣ୍ଡୋଚୀନର ଗଭର୍ଣ୍ଣର ଜେନେରାଲ କ୍ୟାଣ୍ଟନ ଆସିଥିବା ବେଳେ ତାଙ୍କ ଗାଡ଼ିକୁ ଲକ୍ଷ୍ୟ କରି ବୋମା ଫିଙ୍ଗିଥାଏ । ତାର ଏହି ଅଭିଯାନ ବିଫଳ ହେଲା ସତ; କିନ୍ତୁ ସେତେବେଳର ଜାତିପ୍ରାଣ ଭିଏତନାମୀ ଯୁବକମାନଙ୍କ ଉପରେ ଗଭୀର ପ୍ରଭାବ ପକାଇ ଥିଲା । ଯେଉଁମାନେ ଲୁଚିଛପି ରହିଥିଲେ ସେମାନେ ସଂଗଠିତ ଭାବେ ଏକ ସନ୍ତ୍ରାସବାଦୀ ଗୁପ୍ତ ସଂଗଠନ ତିଆରି କଲେ, ଯାହାର ନାମ ରଖିଥିଲେ ‘‘ମିଳିତ ହୃଦୟ’’ । ହୋ' ସମସ୍ତ ବିବରଣୀ ସଂଗ୍ରହ କରି ସେମାନଙ୍କ ନିକଟକୁ ଗଲେ । ତାଙ୍କ ମତରେ ‘‘କୌଣସି ଗୋଟିଏ ଗଭର୍ଣ୍ଣର ଜେନେରାଲକୁ ହତ୍ୟାକରି ଉପନିବେଶୀ ରାଜତ୍ୱର ଅବସାନ ଘଟାଯାଇ ପାରେନା । ବିପ୍ଳବକୁ ଜୟଯୁକ୍ତ କରିବାକୁ ହେଲେ ଗୋଟିଏ ଶକ୍ତିଶାଳୀ ରାଜନୈତିକ ଦଳର ଆବଶ୍ୟକତା ରହିଛି ।’’ ଏହି ସିଦ୍ଧାନ୍ତକୁ ମୂଳଅସ୍ତ୍ର କରି ହୋ' ଇଣ୍ଡୋଚୀନ ପାଇଁ କମ୍ୟୁନିଷ୍ଟ ପାର୍ଟି ଗଠନ କରିବାର ଚିନ୍ତା କଲେ ।

ସେତେବେଳେ ଭିଏତନାମରୁ ନିର୍ବାସିତ ବିଦ୍ରୋହୀ ଫାନ୍-ବୋଉ-ଚଉ କ୍ୟାଣ୍ଟନଠାରେ ଆଶ୍ରୟ ନେଇଥାନ୍ତି । ତାଙ୍କୁ ନେଇ ତରୁଣ ବିଦ୍ରୋହୀମାନେ ବେଶ୍ ଏକ ବଡ଼ ସଙ୍ଗଠନ ଗଢ଼ି ତୋଳିଥିଲେ । କିନ୍ତୁ ସଙ୍ଗଠିତ, ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ବା ନିର୍ଦ୍ଦିଷ୍ଟ ରାଜନୈତିକ ଦର୍ଶନର ଅଭାବରୁ ସେମାନଙ୍କ ମଧ୍ୟରେ ନୈରାଶ୍ୟ ଖୁବ୍ ପ୍ରବଳ ବେଗରେ ଆସନ ଜମାଇବାକୁ ଆରମ୍ଭ କରି ଦେଇଥିଲା । ଫଳତଃ ସେମାନେ ଇଁା ଭିଁା କପଟ ହତ୍ୟାକାଣ୍ଡରେ ଜଡ଼ିତ ରହି ସନ୍ତୁଷ୍ଟ ହୋଇ ଯାଉଥିଲେ । ହୋ' ଏହି ଉଦୀୟମାନ ଯୁବବିପ୍ଳବୀମାନଙ୍କୁ ନେଇ ନୂତନ ରାସ୍ତା ନିର୍ମାଣ କରିବା ନିମନ୍ତେ ଆତ୍ମନ୍ୟସ୍ତ ଶପଥ ନେଲେ । ସାଥୀରେ ଥିଲେ ଆଉ ଦୁଇଜଣ ନିର୍ବାସିତ ଆନାମୀ, ହୋ'-ଟୁଙ୍ଗ-ମାଉ ଏବଂ ଲେ-ହଙ୍ଗ-ଫଙ୍ଗ୍ ।

ସାଧା କାଗଜରେ ପୁଣି ନୂତନ ଅକ୍ଷର ଲେଖା ହେଲା । ପ୍ୟାରିସର ନୁହେଁ କି କ୍ୟାଣ୍ଟନର ନୁହେଁ ସ୍ୱୟଂ ଭିଏତନାମର ଜନ୍ମ ଅଧ୍ୟାୟ । ହୋ' ଚତୁର ଥିଲେ ନିଶ୍ଚୟ । ଅସନ୍ତୁଷ୍ଟ ପ୍ରାଣ, ନିତ୍ୟ ବିଦ୍ରୋହ ମଧ୍ୟରେ ଜଳିଉଠୁଥିବା ଶୋଷିତ ହୃଦୟ, ଦୁଃଖ ଦୈନ୍ୟର ହା ହୁତାଶ ମଧ୍ୟରୁ ସାମୟିକ ରକ୍ଷା ପାଇଥିବା କିଶୋର ଜୀବନକୁ ନେଇ ନୂତନ ପଥରେ ପାଦଦେବା କ'ଣ ଏତେ ସହଜ ? ପୁଣି ମାର୍କସବାଦୀ ଲେନିନବାଦୀ ତତ୍ତ୍ୱପରି ଏକ ନିରାଟ ବାସ୍ତବ, ନିରଳସ, କର୍ମମୁଖର ରାଜନୈତିକ ଅସ୍ତ୍ରକୁ ଭରସା କରି !! କ୍ୟାଣ୍ଟନରେ ସମସ୍ତ ଯୁଡ଼ାକ କପଟ କଟେ !! ଶରତ ସକାଳର କୁହୁଡ଼ିକୁ କାଟି କାଟି ହୋ' ଯାଇ ପହଞ୍ଚନ୍ତି ବନ୍ଦୀମାନଙ୍କ ଘରେ । ଏ ଘରରୁ ସେ ଘର, ଏ ବସ୍ତିରୁ ସେ ବସ୍ତି ହୋଇ ସମସ୍ତ କଟିଯାଏ ତାଙ୍କର । ଦିନ ଯାଇ ରାତି ଆସେ । ସୂର୍ଯ୍ୟ ଯାଇ ଅନ୍ଧାର ଘୋଟିଆସେ ସାରା କ୍ୟାଣ୍ଟନବକ୍ଷରେ । ଆକାଶର ତାରାକୁ ସାକ୍ଷୀ ପରିବାର ହୋ' ପହଞ୍ଚନ୍ତି ସନ୍ତ୍ରାସବାଦୀ ଗୁପ୍ତ ସଙ୍ଗଠନରେ । ସେମାନଙ୍କର କାର୍ଯ୍ୟକଳାପକୁ ସମର୍ଥନ ନ ଜଣାଇଲେ ମଧ୍ୟ ଉପନିବେଶୀ ରାଜତ୍ୱ ବିରୁଦ୍ଧରେ ସେମାନଙ୍କର ଅଦମିତ ବିଦ୍ରୋହାନଳକୁ ସେ ସମ୍ମାନ ଦିଅନ୍ତି ନିଶ୍ଚୟ !! ସେଇ ସାମଞ୍ଜସ୍ୟ ହିଁ ତାଙ୍କୁ ଏହି ଅନ୍ଧାରି ରାତିରେ ଟାଣି ଆଣିଛି ଏତେ ବାଟ । ବହୁମୂଲ୍ୟବାନ ଯୁବଜୀବନକୁ ସନ୍ତ୍ରାସବାଦ କବଳରୁ ବଞ୍ଚାଇ ସେମାନଙ୍କୁ ଏକ ପ୍ରଗତିଶୀଳ ସଙ୍ଗଠିତ, ଅବାରିତ ଗଣଆନ୍ଦୋଳନରେ ସାମିଲ କରିବା ତାଙ୍କର ବର୍ତ୍ତମାନ ଏକମାତ୍ର ଉଦ୍ଦେଶ୍ୟ ।

୧୯୨୫ ମସିହା ଜୁନ୍ ମାସରେ କ୍ୟାଣ୍ଟନଠାରେ 'ଥାନ ନିଏନ' ନାମରେ ଏକ ଭିଏତନାମୀ ବିପ୍ଳବୀ ଯୁବ ସମିତି ଗଢ଼ାହେଲା । ଏହି ନାମରେ ସମିତି ତରଫରୁ ଏକ ମୁଖପତ୍ର ପ୍ରକାଶ ପାଇଲା, ଯେ କି କ୍ରମାଗତ ଦୁଇବର୍ଷ ଧରି କ୍ୟାଣ୍ଟନଠାରେ କାମ କରିଛି । ସେତେବେଳେ ଇଣ୍ଡୋଚୀନ ସମ୍ପୃକ୍ତ ପତ୍ରପତ୍ରିକା ମାଧ୍ୟମରେ

ଯୋଗସୂତ୍ର ସ୍ଥାପନ କରିବା ପାଇଁ କୌଣସି ବ୍ୟବସ୍ଥା ନ ଥିଲା କହିଲେ ଚଳେ । ତାହାର ଦୁନିଆରେ ଯାହାସବୁ ଘଟି ଯାଉଥିଲା, ଇଣ୍ଡୋଚୀନର ଅଧିବାସୀମାନେ ସେ ସମ୍ବନ୍ଧରେ ଅଜ୍ଞ ଥିଲେ । ଆନ-କ୍ୱେନ ତରଫରୁ ପ୍ରକାଶିତ ପୁସ୍ତିକା ଏବଂ ନିର୍ବାସିତ ବିପ୍ଲବୀମାନେ ସେହି ଅସୁବିଧା ଦୂର କରିବା ଦିଗରେ ପ୍ରଥମ ପଦକ୍ଷେପ ନେଲେ । ଆନ-କ୍ୱେନ୍ ଇଣ୍ଡୋଚୀନକୁ ଗୁପ୍ତରେ ପଠାଗଲା । ହୋ' ଏବଂ ତାଙ୍କର ଅନ୍ୟାନ୍ୟ ମାର୍କସ୍‌ବାଦୀ ବନ୍ଧୁମାନେ ଏଥିରେ ଲେଖାଲେଖି କରୁଥିଲେ ।

କ୍ୟାଣ୍ଟନ ଜୀବନ ହୋ'ଙ୍କର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସମୁଦାୟ ଜୀବନକାଳ ମଧ୍ୟରୁ ଏହିଠାରେ ସେ ଦୀର୍ଘ କୋଡ଼ିଏ ବର୍ଷ କଟାଇଛନ୍ତି । କ୍ୟାଣ୍ଟନ ମାଟିରୁ ଜନ୍ମ ନେଇଛି ଭିଏତନାମ କମ୍ୟୁନିଷ୍ଟ ପାର୍ଟି ଗଠନର ସ୍ୱପ୍ନ । ସେଥିପାଇଁ ତାଙ୍କର ଏହି ଆତ୍ମକଥାରୁ କେତେକ ଉଲ୍ଲେଖଯୋଗ୍ୟ ଘଟଣା ନିଆଯାଇ ପାରେ । ହୋ' ଏକ ମହାନ, ତତ୍ତ୍ୱଦର୍ଶୀ ଏଥିରେ ସନ୍ଦେହ ନାହିଁ । ସେହିପରି କଷ୍ଟ୍ର ପ୍ରୟୋଗବାଦୀ । ତତ୍ତ୍ୱକୁ କାର୍ଯ୍ୟକାରୀ କରିବା ଦିଗରେ ସେ ଅତ୍ୟନ୍ତ କଠୋର । ଏହି କ୍ଷେତ୍ରରେ କ୍ୟାଣ୍ଟନର ଭୂମିକା ଅତ୍ୟନ୍ତ ବଳଶାଳୀ ।

'ଯୁବସମିତି' ଏବଂ ତାର ପତ୍ରିକାକୁ ହୋ' ପ୍ରଥମେ ମାର୍କସ୍‌ବାଦୀ ଲେନିନ୍-ବାଦୀ ପରିଚୟଠାରୁ ଦୂରରେ ରଖିଲେ । ସେ ଦେଖିଲେ କମ୍ୟୁନିଷ୍ଟ ମତବାଦ ଏବେ ପୁଙ୍ଖା ପରିପ୍ରସାରର ଅପେକ୍ଷାରେ । ଇଣ୍ଡୋଚୀନରେ ଏହାର ନାମଗନ୍ଧ ନାହିଁ । ମାର୍କସ୍, ଲେନିନ ଓ କମ୍ୟୁନିଜମର ଶବ୍ଦାଳଙ୍କାର ମଧ୍ୟରୁ କିଛି ବୁଝିବା ସେମାନଙ୍କର ସାମର୍ଥ୍ୟର ବାହାରେ । ଏସବୁ ସତ୍ତ୍ୱେ ଭିଏତନାମ ଭୂମିରେ କମ୍ୟୁନିଜମର ଗଦକୁ ପହଞ୍ଚାଇବାକୁ ହେବ ।

ଅନ୍ଧକାର ଅଗ୍ନିଧାସରେ ଇଣ୍ଡୋଚୀନ ପୋଡ଼ି ଭସ୍ମ ହେବା ଉପରେ । ପରଂପରାର ଶକ୍ତ ରଜ୍ଜୁ ବାନ୍ଧି ରଖିଛି ଗ୍ରାମୀଣ ଚାଷୀକୁଳକୁ । ଫରାସୀ ପାଦ୍ରୀମାନଙ୍କର ଧର୍ମଗତ କୁପ୍ରଭାବ ସମଗ୍ର ସମାଜକୁ ଦ୍ୱିଧା ବିଭକ୍ତ କରିଛି । ଗୋଟିଏ ପଟରେ ଧନୀକ, ମାଲିକଶ୍ରେଣୀ ଅନ୍ୟ ପଟରେ ଦରିଦ୍ର କୃଷକ ପ୍ରଜାଗଣ । ଧର୍ମଭୟ ସାମାଜିକ କୁସଂସ୍କାର, ରାଜଭୟର ଅତ୍ୟାଚାରରେ ସମସ୍ତଙ୍କ ମୁହଁ ବନ୍ଦ । ସେତେବେଳେ ସେଠାରେ କମ୍ୟୁନିଜମ୍‌ର ପ୍ରଚାର ନିଘଞ୍ଚ ଅରଣ୍ୟରେ କୁଆ ଦେଖିଲା ପରି ହେବ । ତେଣୁ ରାଜନୈତିକ କୌଶଳ ଦୃଷ୍ଟିରୁ କମ୍ୟୁନିଜମ୍, ବସ୍ତୁବାଦ, ଦ୍ୱନ୍ଦ୍ୱମୂଳକ ବସ୍ତୁ-ବାଦର ନାମ ପରିହାର କରି ସେ ଜାତୀୟତା ଉପରେ ବିଶେଷ ଜୋର ଦେଲେ । ଇଣ୍ଡୋଚୀନ ସମାଜର ପ୍ରତ୍ୟେକ ଶ୍ରେଣୀ ମଧ୍ୟରେ ଲୁଚି ଛପି ରହିଥିବା ଜାତୀୟତାବାଦୀ, ଦେଶପ୍ରେମୀ ତରୁଣଙ୍କୁ ଆକୃଷ୍ଟ କଲାପରି ନିୟମିତ ଲେଖା ଚାଲିଲା । କେବଳ ସେତିକି ନୁହେଁ ଦେଶୀୟ ପୁଞ୍ଜିପତି, ଶ୍ରେଷ୍ଠ ବ୍ୟବସାୟୀ, ବୁଦ୍ଧିଜୀବୀଶ୍ରେଣୀକୁ

ଜାତୀୟତାବୋଧରେ ଅନୁପ୍ରାଣିତ କରାଇ ବିଦେଶୀ ଶାସନ ପ୍ରତି ସେମାନଙ୍କର କ୍ରୋଧକୁ ବଢ଼ାଇ ଦେଲେ । ଗଣତାନ୍ତ୍ରିକ ଉପାୟରେ ଫରାସୀ ସରକାରକୁ ଗାଦିଚ୍ୟୁତ କରି ସମାଜବାଦ ପ୍ରତିଷ୍ଠା ବାଟରେ ସେମାନଙ୍କର ଅଦମ୍ୟ ଆକାଂକ୍ଷାକୁ ପୂରଣ କରାଇ ଦେଲେ । ଅର୍ଥନୈତିକ, ସାମାଜିକ ଦାସତ୍ୱରୁ ମୁକ୍ତି ପାଇଲେ ସେ ସକଳ ପ୍ରତିବନ୍ଧ ଅସମ୍ଭବ, ଏକଥା ବୁଝିବାକୁ ଆଉ ବାକି ରହିଲା ନାହିଁ । ବୁର୍ଜୁଆ-ଗଣତାନ୍ତ୍ରିକ ଆନ୍ଦୋଳନର ଉଦ୍‌ଯୋଗ ପର୍ବରେ ସମାଜବାଦର ଭ୍ରୂଣ ସତେ ଯେପରି ଉଙ୍କି ମାରୁଥିଲା !!

ହୋ'ଙ୍କ ପରି ସଚ୍ଚୋଟ କମ୍ୟୁନିଷ୍ଟ, ଲେନିନ୍‌ବାଦ ପ୍ରତି ତାଙ୍କର ଆତ୍ମିକ ଚେତନାବୋଧ କେବେହେଲେ ଗୋପନ ରହି ପାରିଲା ନାହିଁ । ୧୯୨୬ ମସିହାରେ 'ବିପ୍ଳବର ପଥ' ଶିରୋନାମାରେ ଏକ ଲେଖା ପ୍ରକାଶ ପାଇଲା, ଯେଉଁଥିରେ କି ସେ ଅନ୍ୟମାନଙ୍କ ନିମନ୍ତେ ନିଜର ଜାତୀୟତାବାଦୀ ଚରିତ୍ରକୁ ଦୃଢ଼ କରିବାକୁ ଯାଇ ମାର୍କ୍‌ସ୍‌ବାଦୀ ଜୀବନଦର୍ଶନରେ ପଦାର୍ପଣ କରିଥିଲେ । ଆଉ ଅଧିକ କାଳ ସେ ନିଜକୁ ଦ୍ୱୈତ ଭୂମିକାରେ ଦେଖିବାକୁ ଚାହିଁଲେ ନାହିଁ ବୋଧହୁଏ । ତାଙ୍କର କଲମମୂନରୁ ବାହାରି ଆସିଲା—

"ନିର୍ଯ୍ୟାତିତ ହେଲେ ହିଁ, ମଣିଷ ବିଦ୍ରୋହୀ ହୁଏ । ଯେ ଯେତେ ବେଶି ନିର୍ଯ୍ୟାତିତ, ବିପ୍ଳବର ପଥରେ ସେ ସେତେ ବେଶି ଦୃଢ଼, ଅବିଚଳ । ସାମନ୍ତବାଦୀ ବ୍ୟବସ୍ଥା ଦିନେ ପୁଞ୍ଜିବାଦୀ ଶ୍ରେଣୀକୁ କବଳିତ କରିଥିଲା ; ସେଥିପାଇଁ ସେ ତାର ବିରୋଧରେ ଝଣ୍ଡା ଉତ୍ତୋଳନ କରିଛି । ଆଜି ସେହି ପୁଞ୍ଜିବାଦୀଶ୍ରେଣୀ ଶ୍ରମିକ ଓ କୃଷକଶ୍ରେଣୀକୁ ଶୋଷଣ କରୁଛି । ତେଣୁ ବିପ୍ଳବର ଦୁର୍ଦ୍ଦମନୀୟ ଶକ୍ତି ହୋଇ ରହିଛନ୍ତି ସେମାନେ ।"

ସମାଜରେ କୃଷକ ଓ ଶ୍ରମିକଶ୍ରେଣୀ ସବୁଠାରୁ ବଳ ବିପ୍ଳବକାରୀ ଶକ୍ତି । କାରଣ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ସମସ୍ତଙ୍କଠାରୁ ବେଶି ଏବଂ ସେମାନଙ୍କର ସଂଖ୍ୟା ସମାଜରେ ଅନ୍ୟମାନଙ୍କ ତୁଳନାରେ ବହୁତ ବେଶି । ବର୍ତ୍ତମାନ ଏହି ଶ୍ରେଣୀ ପାଇଁ ହରାଇବାର କିଛି ନାହିଁ; କିନ୍ତୁ ଜୟ କରିବା ପାଇଁ ଅଛି ସମ୍ମୁଖରେ ଏକ ବିରାଟ ପୃଥିବୀ । ସେଥିପାଇଁ ସେମାନେ ଏକ ମହାନ୍ ଶକ୍ତି । ବିପ୍ଳବ ହିଁ ସେମାନଙ୍କର ନୂତନ ଭିତ୍ତି । ଛାତ୍ର, ବ୍ୟବସାୟୀ, କ୍ଷୁଦ୍ର ମାଲିକ ଏ ସମସ୍ତ ଶ୍ରେଣୀ ପୁଞ୍ଜିପତିଙ୍କଦ୍ୱାରା କବଳିତ ସତ ; କିନ୍ତୁ ଶ୍ରମିକ ଓ କୃଷକଶ୍ରେଣୀଠାରୁ ବହୁତ କମ୍ । ସେମାନେ 'ବିପ୍ଳବର ସହଯାତ୍ରୀ ମାତ୍ର' ।

ଏହି ସମ୍ବନ୍ଧରେ ସେ ତିନୋଟି ମୌଳିକ ଚିନ୍ତାଧାରା ଉପସ୍ଥାପିତ କଲେ ।

(୧) ବିପ୍ଳବ ସମ୍ପାଦନ କରିବେ ବିଶାଳ ଶ୍ରମିକଶ୍ରେଣୀ ଓ କୃଷକ ଜନତା । ମୁଷ୍ଟିମେୟ ବ୍ୟକ୍ତିଙ୍କଦ୍ୱାରା ତାହା ସମ୍ଭବ ନୁହେଁ । ତେଣୁ ସାଧାରଣ ଜନତାକୁ ସେ ଢଙ୍ଗରେ ସଙ୍ଗଠିତ କରିବା ଅପରିହାର୍ଯ୍ୟ ।

(୨) ମାର୍କସ୍‌ବାଦୀ, ଲେନିନ୍‌ବାଦୀ ମାର୍ଗରେ ପାର୍ଟି ପରିଚାଳିତ ହେବା ଉଚିତ ।

(୩) ପ୍ରତ୍ୟେକ ଦେଶର ବୈପ୍ଳବିକ ଅଭ୍ୟୁଦୟ ବିଶ୍ୱ ସର୍ବହରା ଆନ୍ଦୋଳନର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେବା ଉଚିତ୍ । ଶ୍ରମିକଶ୍ରେଣୀ ଓ କୃଷକସମାଜକୁ ଏପରି ସଙ୍ଗଠିତ କରିବା ଦରକାର, ଯେପରିକି ସେମାନେ ତୃତୀୟ ଆନ୍ତର୍ଜାତିକରେ ସେମାନଙ୍କର ମୁଖ ଖୋଲି ପାରିବେ ।

ହୋ' ଦେଖିଲେ ସମୟ ବଢ଼ିବା ସଙ୍ଗେ ସଙ୍ଗେ ସେ ନିଜ ସହିତ ନେଇଛନ୍ତି କେତେ ଚିହ୍ନା, ଅଚିହ୍ନା ବିପ୍ଳବୀଙ୍କର ମୁହଁ । ସମସ୍ତେ ବୟସର ଉଦ୍ଦାମ ଯୌବନ ନେଇ ବିପ୍ଳବର ଅଗ୍ନିକୁଣ୍ଡକୁ ଡେଇଁ ପଡ଼ିଛନ୍ତି । ନିଜ ପାଇଁ ନୁହେଁ, ଭିଏତନାମ ପାଇଁ । ନିଜ ପରାଧୀନ ଜାତିର ମୁକ୍ତି ପାଇଁ । ସେ ସବୁ ତରୁଣ ଦେଶପ୍ରେମୀମାନଙ୍କୁ, ବିଶେଷ କରି ଗୁପ୍ତ, ଆତ୍ମଗୋପନକାରୀ ସଶସ୍ତ୍ର ଜଙ୍ଗୀମାନଙ୍କୁ ନୂତନ ବିଜ୍ଞାନଭିତ୍ତିକ ଶିକ୍ଷା ପ୍ରଦାନ କରି ଭିଏତନାମ ପଠାଇଦେବାକୁ ହେବ । ସେଠାରେ ସେମାନେ ବୈଜ୍ଞାନିକ ବସ୍ତୁବାଦୀ ଢାଞ୍ଚାରେ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ଗଢ଼ିତୋଳିବେ ।

ଏହି ଦୁରୂହ କାର୍ଯ୍ୟ ସମ୍ପାଦନ ପାଇଁ ସେ ପ୍ରଥମେ ବାଛିଲେ—ତାଙ୍କର ଅନ୍ତରଙ୍ଗ ଓ ବିଶ୍ୱସ୍ତ ବନ୍ଧୁମାନଙ୍କୁ । ସଂଖ୍ୟାରେ ସେମାନେ ଖୁବ୍ କମ୍ । ଏହି ଉଦ୍ଦେଶ୍ୟ ରଖି ସେ ନିଜର ଘନିଷ୍ଠ ଦୁଇ ସହକର୍ମୀ ହୋ-ଟୁଙ୍ଗ-ମାଉ ଏବଂ ଲୁଏନ୍‌ସନଙ୍କୁ ଚୀନା କମ୍ୟୁନିଷ୍ଟ ପାର୍ଟିର ସଭ୍ୟ କରାଇ ପରଖି ନେଲେ । ସେମାନଙ୍କ ସହାୟତାରେ ଇଣ୍ଡୋଚୀନ ପାଇଁ କମ୍ୟୁନିଷ୍ଟ ପାର୍ଟିର ସାହାଯ୍ୟ ଲୋଡ଼ିଲେ । ତାପରେ ତାଙ୍କର ଆଉ ଜଣେ ସାଥୀ ଲେ-ହଙ୍ଗ-ଫଙ୍ଗଙ୍କୁ ପଠାଇଲେ ମସ୍କୋ ସାମରିକ ଶିକ୍ଷା କେନ୍ଦ୍ରକୁ । ଲକ୍ଷ୍ୟ ହେଲା, ସେଠାରୁ ଶିକ୍ଷା ପାଇ ଆସିଲେ ନିର୍ବାସିତ ଭିଏତନାମୀ-ମାନଙ୍କୁ ସାମରିକ ଶିକ୍ଷା ଦେଇ ବିପ୍ଳବ ପରିଚାଳନା କରିବା । ସେଥିରେ ହୋ' ଚୁପ୍ ହୋଇ ବସିପାରିଲେ ନାହିଁ, ତାଙ୍କ ସଂସ୍ଥାର ଅନ୍ୟ ଉତ୍ସାହୀ ଉଦ୍ୟମୀ ଯୁବକ-ମାନଙ୍କ ମଧ୍ୟରୁ କେତେକଙ୍କୁ ଓ୍ୱାମ୍ପା ସାମରିକ ଶିକ୍ଷା କେନ୍ଦ୍ରକୁ ପଠାଇଲେ । ସେଠାରେ ବିଖ୍ୟାତ କମ୍ୟୁନିଷ୍ଟ ନେତା ବରୋଡିନ୍ ତାଙ୍କର ଦୁଇଜଣ ସହକର୍ମୀ ଚୁଏ-ଏନ୍-ଲାଇ

ଏବଂ ଗ୍ୱଙ୍ଗ-ଢାଇ-ସାକ୍ ନାମକ ଜଣେ ଚୈନ୍ୟ ସାହାଯ୍ୟରେ ସେହି କେନ୍ଦ୍ରକୁ ପରିଚାଳନା କରୁଥାନ୍ତି । ରୁଷୀୟ ସେନାବିଶେଷଜ୍ଞମାନେ ସେଠାରେ ଚୀନା ସୈନ୍ୟବାହିନୀଙ୍କୁ ଶିକ୍ଷା ପ୍ରଦାନ କରୁଥାନ୍ତି । ଏପରି କି ବିପ୍ଳବୀ ନେତା ଡ଼ କ୍ତର ବନ୍ଧୁମାନଙ୍କୁ କେତେଜଣ ସେନାଧ୍ୟକ୍ଷଙ୍କୁ ସେଠାରେ ଗୋପନ ଭାବରେ ରହି କ୍ଷେତ୍ର ପ୍ରସ୍ତୁତ କରିବା ନିମନ୍ତେ ଇଣ୍ଡୋଚୀନ ପଠାଇ ସାରିଥାନ୍ତି । ଫାମ-ଭାନ-ଡଙ୍ଗଙ୍କ ନାମ ସେମାନଙ୍କ ମଧ୍ୟରୁ ଉଲ୍ଲେଖଯୋଗ୍ୟ । ବର୍ତ୍ତମାନ ସେ ଭିଏତନାମ ଗଣପ୍ରଜାତନ୍ତ୍ରର ପ୍ରିୟତମ ପ୍ରଧାନମନ୍ତ୍ରୀ ।

ଉପନିବେଶଗୁଡ଼ିକର ସ୍ୱାଧୀନତା ପାଇଁ ସ୍ୱତନ୍ତ୍ର ଏକ ଗଣସଙ୍ଗଠନ ଗଢ଼ିବାର ଚିନ୍ତା ହୋ ଙ୍କୁ ବିବ୍ରତ କରି ପକାଇଲା । ଦକ୍ଷିଣ-ଚୀନରେ ଅବସ୍ଥାନ କରୁଥିବା ଭିଏତନାମୀ, କୋରିଆ, ଇଣ୍ଡୋନେସୀୟ ଏବଂ ଏସୀୟ ବଂଶୋଦ୍ଭବମାନଙ୍କୁ ନେଇ ସେ 'ଦଳିତ ମହାସଂଘ' ବା 'ଲିଗ୍ ଅଫ୍ ଅପ୍ରେସଡ୍ ପିପ୍‌ଲ' ଗଠନ କଲେ । ଭାରତବର୍ଷରୁ ମାନବେନ୍ଦ୍ର ନାଥ ରାୟ ଏହି ସଂସ୍ଥା ସହିତ ମୂଳରୁ ଜଡ଼ିତ ଥିଲେ । ଦଳିତ ଜନତାର ସେବାରେ ନିୟୋଜିତ ଏହି ଶିଶୁସଂସ୍ଥା ତାର ଗନ୍ତବ୍ୟପଥରେ ଆଗେଇ ଚାଲିଲା ।

୧୯୨୭ର ପ୍ରଥମ ବସନ୍ତର ଦିନ । ଶୀତର ଶେଷପତ୍ର ପରି ଝଡ଼ି ପଡ଼ୁଛି ଅତୀତ ଦିନର ଦୁଃଖ ଆଉ ବିଷାଦ । ଡାଳରେ ଡାଳରେ ନୂତନ ପତ୍ର ଶାଖା ମେଲୁଛି । ସ୍ୱଚ୍ଛ ଝରଣାର କୂଳେ କୂଳେ ନୂତନ ଲହରୀ ଦୋଳି ଖେଳୁଛି । ବିଦ୍ରୋହୀ ଯୁବସଂସ୍ଥାମାନଙ୍କରେ ବସନ୍ତ ରାତିର ମହାସମାବେଶ । କ୍ୟାଣ୍ଟନ ଜାଗ୍ରତ । ଶୋଇପାରୁ ନାହିଁ ସେ । ତାର ବକ୍ଷରେ ଆତଯାତ ହେଉଛନ୍ତି କେତେ କେତେ ଶ୍ରମିକ, ମଜଦୁର, ଛାତ୍ର, ଶିକ୍ଷକ, ଯୁବକ, ନରନାରୀ, ସମୁଦାୟ କ୍ୟାଣ୍ଟନ ସହରରେ ବସବାସ କରୁଥିବା ଜୀବନ୍ତ ସ୍ଥାବର ପ୍ରାଣୀ ଅପ୍ରାଣୀ । ବସନ୍ତର ପହିଲ ପରଶରେ ସମସ୍ତେ ଚଞ୍ଚଳ । ଠିକ୍ ସେତିକିବେଳେ ସୁନ୍-ୟେନ୍-ସେନ୍‌ର ସ୍ୱ-ପ୍ରଚାର ବନ୍ଧୁ, ଜନାସ୍ୱତ ସେନାର ଭାବୀ ଉତ୍ତରାଧିକାରୀ, ଏକଦା ପ୍ରବାସୀ ଭିଏତନାମୀ ବିଦ୍ରୋହୀ ଜଙ୍ଗୀମାନଙ୍କୁ ଗୁପ୍ତ ସାମରିକ ଶିକ୍ଷା ଦେଇ ଇଣ୍ଡୋଚୀନ ଚାଲାଣ କରୁଥିବା ସହୃଦୟୀ ଚିଆଙ୍ଗ-କାଇ-ସେକ୍ ତାର ସେନାବାହିନୀକୁ ଡାକରା ଦେଇଛି । ଚୀନା ଜାତୀୟ ବିପ୍ଳବ ସହିତ ସେ ଚରମ ବିଶ୍ୱାସଘାତକତା କରିଛି । ପ୍ରାତଃ ସ୍ମରଣୀୟ ସନ୍ୟାତ ସେନର ପ୍ରଜାତନ୍ତ୍ରରେ ପ୍ରତିଷ୍ଠା ହୋଇଛି ବ୍ୟକ୍ତିଗତ ଏକନାୟକତ୍ୱ । କ୍ୟାଣ୍ଟନ ଓ ଅନ୍ୟାନ୍ୟ ସହରମାନଙ୍କରେ ଯୁବ କମ୍ୟୁନିଷ୍ଟମାନଙ୍କୁ ନିର୍ମମ ହତ୍ୟା, କ୍ୟାଣ୍ଟନ ସହରରେ ଥିବା ବିପ୍ଳବୀମାନଙ୍କର ଅଗ୍ନିଧ୍ୱସ୍ତ କମ୍ୟୁନ୍, ସୋଭିଏତ ଋଷିଆ ସହିତ ଆଦର୍ଶଗତ ବିଭେଦ ସୃଷ୍ଟି ହେବା ଯୋଗୁଁ ତା

ସମର୍ଥିତ ଶ୍ରମିକସଙ୍ଘମାନଙ୍କ ବେଆଇନ ଘୋଷଣା ଆଉ ହତ୍ୟା, ଅତ୍ୟାଚାର, ଦମନର ବିଭୀଷିକାରେ ସମଗ୍ର ଦକ୍ଷିଣ-ଚୀନ ଥରିଲା । ଏହି ଝଡ଼ ବାତ୍ୟାର ଖର ପ୍ରବାହରେ ଲୀନ ହୋଇଗଲା ହୋ'ର 'ବିପ୍ଳବୀ ପାଠଶାଳା' ଥାନ୍‌ନିଏନ । ହୋ' ଏବଂ ତାଙ୍କର ବନ୍ଧୁମାନେ ଏହି ଅଦିନ ବର୍ଷାର ଗନ୍ଧ ଆଗରୁ ଜାଣିପାରିଲେ । ଖୁବ୍ ସତର୍କତାର ସହିତ ସେମାନଙ୍କ ମଧ୍ୟରୁ କେତେକ ହଂକଂ, କେତେକ ସାଂଘାଇ ଓ ଆଉ କେତେକ 'ହାନକୋ' ପଳାଇଗଲେ । ୧୯୨୯ ମେ' ମାସରେ 'ଥାନ-ନିଏନ'ର ସାଧାରଣ ଅଧିବେଶନ ହଂକଂଠାରେ ବସିଲା । କିନ୍ତୁ ହୋ' ସେଥିରେ ଉପସ୍ଥିତ ନ ଥିଲେ । ବୋଧହୁଏ ସେ ୧୯୨୭ ବେଳକୁ ଚୀନ ସାମ୍ରାଜ୍ୟ ପାର ହୋଇ ସାରିଥିଲେ ।

କ୍ୟାଣ୍ଟନରେ ଘଟିଯାଇଥିବା ଲୋମହର୍ଷଣକାରୀ ନାଟକୀୟ ଲୀଳା ତାଙ୍କ ଆଖି ଆଗରେ ନାଚି ଯାଉଥିଲା । କୌଣସି କୂଳ କିନାରା ସେ ପାଇଲେ ନାହିଁ । ୧୯୨୮ ମସିହାରେ ମସ୍କୋରେ ପଦାର୍ପଣ କଲେ, ଏହି ଆଶା ନେଇ ଯେ ସେଠାର ନେତୃବୃନ୍ଦଙ୍କ ସହିତ ଆଲୋଚନା ପରେ ନିଶ୍ଚୟ ଏକ ସିଦ୍ଧାନ୍ତରେ ପହଞ୍ଚି ପାରିବେ । ମସ୍କୋରୁ ସେ ବ୍ରସେଲସ ଯାତ୍ରା କଲେ । ସେଠାରେ ତାଙ୍କର ଭେଟ ହେଲା ଶ୍ରୀମତୀ ସନ ୟତ ସେନ, ଜବାହାରଲାଲ ନେହେରୁ ଏବଂ ଟ୍ରଟସ୍କି ପନ୍ଥୀ ନେତା ଥା-ଥୁ-ଥାଉଙ୍କ ସହିତ । ପ୍ରାଚ୍ୟରୁ ସାମ୍ରାଜ୍ୟବାଦୀ ଶାସନକୁ ନିର୍ମୂଳ କରିବା ପାଇଁ ଏହି ନେତୃବୃନ୍ଦ 'ସାମ୍ରାଜ୍ୟବାଦୀ ଯୁଦ୍ଧବିରୋଧୀ ସମ୍ମିଳନୀ'ରେ ଯୋଗ ଦେବାକୁ ଆସିଥିଲେ । ତାଙ୍କ ସହିତ ଏକାଠି ବସି ଏସିଆ ମହାଦେଶର ଭାଗ୍ୟନିର୍ଣ୍ଣୟ ପଥରେ ଆଲୋଚନା କରିବା ପାଇଁ ହୋ'ଙ୍କୁ ଆଉ ଏକ ସୁଯୋଗ ମିଳିଲା । ଖୁବ୍ କମ୍ ସମୟ ମଧ୍ୟରେ ପ୍ୟାରିସ, ବର୍ଲିନ୍, ସୁଇଜରଲାଣ୍ଡ ଓ ଇଟାଲୀ ଭ୍ରମଣ ଶେଷକରି ହୋ' ଫେରି ଆସିଲେ । କିନ୍ତୁ ଯିବେ କୁଆଡ଼େ ? ଚୀନର ଦ୍ୱାର ତ ତାଙ୍କ ପାଇଁ ବନ୍ଦ ।

ସେହିବର୍ଷ ଶରତର ଏକ ମନୋରମ ସନ୍ଧ୍ୟାରେ ଶ୍ୟାମ ଯାତ୍ରା କଲେ । ଏ ଯାତ୍ରାର ତିନୋଟି ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଆଗପରି ସେ ଆଉ ଲକ୍ଷ୍ୟହୀନ ତୀର୍ଥଯାତ୍ରୀ ନୁହନ୍ତି । ସେତେବେଳେ ଶ୍ୟାମ ଦେଶ ଅନେକ ଭିଏତନାମୀଙ୍କର ବାସଭୂମି । ସେହି ପ୍ରବାସୀ ଭାଇମାନଙ୍କୁ ଏକତ୍ରିତ କରାଇ ଭିଏତନାମ ସ୍ୱାଧୀନତା ସଂଗ୍ରାମରେ ଆଗୁସାର କରାଇବା, ଇଣ୍ଡୋଚୀନର ପାଖାପାଖି ରହି ଚଳନ୍ତା ଶାସନ ବିରୁଦ୍ଧରେ ଗଣବିଦ୍ରୋହ ପ୍ରସ୍ତୁତ କରିବା ଏବଂ ଦକ୍ଷିଣ-ପୂର୍ବ ଏସିଆ ଖଣ୍ଡରେ କୋମିନଟର୍ଣ୍ଣର ସାମ୍ରାଜ୍ୟବାଦ ବିରୋଧୀ ଜାଲକୁ ବିସ୍ତାର କରିବା ହେଉଛି ମୁଖ୍ୟ ଦାୟିତ୍ୱ ।

ଶ୍ୟାମ ଦେଶରେ ପୋଲିସର ବଡ଼ ପଦବୀ । ଫରାସୀ ପୋଲିସ ସହିତ ଯୋଗ ଦେଇଛନ୍ତି ଚିଆଙ୍ଗ-କାଇ-ସାକ୍‌ର ସାମ୍ରାଜ୍ୟରକ୍ଷୀ ସଶସ୍ତ୍ରବାହିନୀ । ଅଦ୍ଭୁତ ଚୀନା ପୋଷାକରେ ହୋ' ଆରମ୍ଭ କଲେ ଗଣମୁକ୍ତି ଫୌଜର ପ୍ରଥମ ଦଫା କାର୍ଯ୍ୟ । କିନ୍ତୁ ଭିଏତନାମୀମାନଙ୍କର ତୀକ୍ଷ୍ଣ ଦୃଷ୍ଟିକୁ ସେ ଏଡ଼ାଇ ପାରିଲେ ନାହିଁ । ରକ୍ତର ବନ୍ଧନ ଟାଣିଆଣି ଦେଲା ତାଙ୍କୁ ସେମାନଙ୍କ ମଧ୍ୟରେ । ବିଭିନ୍ନ ରକମର ଛଦ୍ମବେଶରେ ସେ ଘୂରିବୁଲିଲେ ଶ୍ୟାମ ଦେଶ । କେତେବେଳେ କ୍ଷେତମଜଦୁର ତ କେତେବେଳେ ଲୁଣ୍ଠିତ ମସ୍ତକ ବୌଦ୍ଧଭିକ୍ଷୁ, ଆଉ କେତେବେଳେ ସସ୍ତା କପଡ଼ାର ଫେରିବାଲା । ଯେତେବେଳେ ଯେଉଁ ପ୍ରକାରର ଜୀବିକା ନେଇ ଚଳିଲେ ମଧ୍ୟ ସଙ୍ଗଠନକୁ ଗଢ଼ିବା ଦିଗରେ କେବେହେଲେ ଅବହେଳା କରି ନାହାନ୍ତି । ଦୁଃଖ, ଦୈନ୍ୟ, ନିଃସଙ୍ଗ ମୁହୂର୍ତ୍ତରେ ସେ ଭିଏତନାମକୁ ମନେ ପକାଇ ବ୍ୟଥ ହେଉଛନ୍ତି । ସବୁ ମୁହୂର୍ତ୍ତରେ ସ୍ୱାଧୀନତା ଆନ୍ଦୋଳନ, ନିଜ ଦେଶର ବିପ୍ଳବୀ ଯୋଦ୍ଧୃଦଳ ସହିତ ଯୋଗାଯୋଗ ବଜାୟ ରଖିଛନ୍ତି । ଏପରିକି ଶ୍ୟାମରେ ଥିବାବେଳେ ସେ ଅନ୍ୟ ବନ୍ଧୁମାନଙ୍କୁ ନେଇ 'ପାରସ୍ପରିକ ସହାୟତା' ସମିତି ଗଠନ କଲେ, ଯାହା ତରଫରୁ 'ଲ୍‌ମାଜଡେ' ନାମରେ ଏକ କ୍ଷୁଦ୍ର ପତ୍ରିକା ପ୍ରକାଶ ପାଇଲା । ସୁଯୋଗ ଉଣ୍ଡି ହୋ' ଅତ୍ୟନ୍ତ ଗୋପନରେ ଏହି ପତ୍ରିକାକୁ ଇଣ୍ଡୋଚୀନ ପଠାଇ ଦେଉଥିଲେ ।



୨୦

# ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ଜନ୍ମ

ହ୍ୱାମ୍ପୋଆ ସାମରିକ ଶିକ୍ଷାକେନ୍ଦ୍ର । ପୁରାତନ ତଥା ନୂତନ ଚୀନର ପୁଣ୍ୟତୀର୍ଥ । ଶ୍ରମିକ ରାଷ୍ଟ୍ର ସୋଭିଏତ ୟୁନିଅନ୍‌ର ଅନୁମୋଦନ ଓ ନିଷ୍ପତ୍ତି କ୍ରମେ କମ୍ରେଡ଼ ବରୋଡିନ୍ ଏହାର ଅଧ୍ୟକ୍ଷ ଥାଆନ୍ତି । ସମୟ ୧୯୨୮ ସାଲ । ଏସିଆ ମହାଦେଶର ପରାଧୀନ ଜାତି ଓ ଦୁନିଆର ମେହେନତି ଜନତାର ଜୀବନସଂଗ୍ରାମକୁ ଆଗେଇ ନେବା ପାଇଁ ହ୍ୱାମ୍ପୋଆର ଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଜ୍ଞାନର ଯାହା କିଛି ଉନ୍ନତି ଘଟିଥିଲା, ସେସବୁ ପଶ୍ଚିମ ଗୋଲାର୍ଦ୍ଧ ମଧ୍ୟରେ ସୀମିତ ଥାଏ । ପ୍ରାଚ୍ୟ ଭୂଖଣ୍ଡକୁ ତାର ଆଲୋକ ସେତେବେଳ ଯାଏ ଆସି ନଥିଲା । ତେଣୁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ପଶ୍ଚିମର ଉପନିବେଶବାଦୀ ମାନବମାନଙ୍କ ସହିତ ମୁକାବିଲା କରିବା ନିମନ୍ତେ ପ୍ରାଚ୍ୟର ପାରମ୍ପରିକ ଯୁଦ୍ଧ କୌଶଳ ଅସମର୍ଥ ପ୍ରମାଣିତ ହେବା ସ୍ୱାଭାବିକ । କିନ୍ତୁ ସମରସଜ୍ଜାର ପ୍ରୟୋଜନ ଅତ୍ୟନ୍ତ ବେଶୀ । ଏହି ଦ୍ୱନ୍ଦ୍ୱ ଓ ବାସ୍ତବତାକୁ ଆଖିରେ ରଖି ସୋଭିଏତ ୟୁନିଅନ୍ ବିଶ୍ୱ-ସର୍ବହରା ଶ୍ରମିକଶ୍ରେଣୀ ଓ ପରାଧୀନ ଦେଶସମୂହର ପକ୍ଷ ଆବୋରି ନେଇଥାଏ । ତାହାରି ସାହାଯ୍ୟ, ଅକୁଣ୍ଠ ସମର୍ଥନ ଓ ପ୍ରାଣଖୋଲା ଦାନରେ ପ୍ରତିଷ୍ଠିତ ହୋଇଥାଏ ହ୍ୱାମ୍ପୋଆ ସାମରିକ ଶିକ୍ଷାକେନ୍ଦ୍ର । ବିଶ୍ୱର ବଡ଼ ବଡ଼ ବିପ୍ଳବୀମାନଙ୍କୁ ଯୁଦ୍ଧ କୌଶଳ ଶିକ୍ଷା ଦେଇ ନିଜ ଦେଶକୁ ପଠାଇ ଦିଆଯାଏ, ପ୍ରୟୋଜନ ହେଲେ ମଇଦାନରେ ଲଢ଼ାଇ କରିବା ପାଇଁ । ସେମାନଙ୍କ ମଧ୍ୟରେ ଫାମ୍ ଭାନ୍ ଡଙ୍ଗ, ହୋ-ଟୁଙ୍ଗ-ମାଉ ଏବଂ ଲେ-ହଙ୍ଗ-ଫଙ୍ଗଙ୍କ ନାମ ଉଲ୍ଲେଖଯୋଗ୍ୟ । ଲେ-ହଙ୍ଗ-ଫଙ୍ଗ ହ୍ୱାମ୍ପୋଆ ପୂର୍ବରୁ ମସ୍କୋ ସାମରିକ ଶିକ୍ଷାକେନ୍ଦ୍ରରେ ଟ୍ରେନିଂ ନେଇ ସାରିଥାନ୍ତି ।

ଚିଆଙ୍ଗ-କାଇ-ସେକ ଚୀନ କମ୍ୟୁନିଷ୍ଟ ପାର୍ଟି ସହିତ ବିଶ୍ୱାସଘାତକତା କରି କ୍ୟାଣ୍ଟନ ଦଖଲ କଲା ପରେ ଏହି ତରୁଣ ବିପ୍ଳବୀମାନେ ଆତ୍ମରକ୍ଷା ପାଇଁ ପଳାୟନ କଲେ । ଅନେକେ ବାଟରେ ଧରାପଡ଼ି ଚିଆଙ୍ଗ ସୈନ୍ୟ ହାତରେ ବନ୍ଦୀ ହେଲେ । ହୋ-ତୁଙ୍ଗ-ମାଉ ଏହି ବନ୍ଦୀମାନଙ୍କ ମଧ୍ୟରୁ ଜଣେ । ସେ ଅନେକ ଦିନ ପର୍ଯ୍ୟନ୍ତ କୋମିନ୍‌ଟାଙ୍ଗ କାରାଗାରରେ ରହିଲେ । ଯେଉଁମାନେ ଚତୁରତାର ସହିତ ଖସି ବୁଲିଗଲେ, ସେମାନେ ନିଜ ନିଜ ଦେଶରେ ସଂଗଠନ ତିଆରି କଲେ ।

୧୯୨୯ ମସିହା ମେ' ମାସରେ ଥାନ୍-ନିଏନ୍‌ର ଶେଷ ବୈଠକ ହଂକଂଠାରେ ବସିଲା । ହୋ' ସେଥିରେ ଉପସ୍ଥିତ ନ ଥିଲେ । ସେ ସେତେବେଳେ ଶ୍ୟାମ ଦେଶରେ । ଲମ ହୁକ୍ ଫୁ ଥିଲେ ଏହି ବୈଠକର ଉଦ୍ୟୋକ୍ତା । ସମବେତ ସଦସ୍ୟମାନଙ୍କ ମଧ୍ୟରେ ଅନେକ ବାଦାନୁବାଦ ପରେ ଏକ ପ୍ରସ୍ତାବ ନିଆଗଲା ଯେ ଇଣ୍ଡୋଚୀନରେ ଅବିଳମ୍ବେ ଏକ ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟି ଗଠନ କରାଯିବା ଉଚିତ୍ । ଟନକିନ୍‌ରୁ ଆସିଥିବା ତିନି ଜଣ ପ୍ରତିନିଧି ଏହା ସପକ୍ଷରେ ସେମାନଙ୍କର ମତ ଦାନ୍ତିଲେ । ଯେଉଁମାନେ ଇଣ୍ଡୋଚୀନରେ କମ୍ୟୁନିଷ୍ଟ ପାର୍ଟି ଗଠନକୁ ସମୟୋପଯୋଗୀ ବୋଲି ବିଚାର୍ ନ ଥିଲେ, ସେମାନଙ୍କ ବିରୁଦ୍ଧରେ ଟନ୍‌କିନର ପ୍ରତିନିଧିମାନଙ୍କର ଅଭିଯୋଗ ଥିଲା ଏହି ଯେ, ଜାତୀୟତାବାଦୀ ଦୃଷ୍ଟିକୋଣ ମଧ୍ୟରେ ସୀମାବଦ୍ଧ ରହି ମୁକ୍ତି ଆନ୍ଦୋଳନର ଗୁରୁତ୍ୱକୁ ସେମାନେ ଉପଲବ୍ଧି କରିପାରୁ ନାହାନ୍ତି । ସେମାନଙ୍କର ଏହି ଅଭିଯୋଗ ପଛରେ ବଳିଷ୍ଠ ଏବଂ ବାସ୍ତବ ଯୁକ୍ତି ମଧ୍ୟ ଥିଲା । କାରଣ ୧୯୨୮ ବେଳକୁ ଭିଏତନାମରେ ଶ୍ରମିକଗୋଷ୍ଠୀ ଏକ ବିଶିଷ୍ଟ ରାଜନୈତିକ ଶକ୍ତିଭାବେ ମୁଣ୍ଡଟେକି ଥାଏ । ହଂକଂ, କ୍ୟାଣ୍ଟନ, ମସ୍କୋ, ପ୍ୟାରିସ୍‌ରୁ ଚାଲାଣ ହୋଇଥିବା ପ୍ରବାସୀ ବିପ୍ଳବୀମାନଙ୍କର କାର୍ଯ୍ୟକଳାପ ସମ୍ବନ୍ଧୀୟ ପତ୍ର, ପତ୍ରିକା ସେମାନଙ୍କର ହସ୍ତଗତ ହୋଇଥାଏ । ଅଳ୍ପବହୁତେ ସେମାନେ ମୁକ୍ତି ଆନ୍ଦୋଳନ ପାଇଁ ନିଜ ନିଜ ମଧ୍ୟରେ ମସୁଧା ତିଆରି କରୁଥାଆନ୍ତି । ବାହାର ଦୁନିଆରୁ ପରିତ୍ୟକ୍ତ ଏହି ଶ୍ରମିକ ଜାତି ଯେତେବେଳେ ନିଜ ଦେଶ ମଧ୍ୟରେ ସୁଡ଼ଙ୍ଗ ଖୋଜି ପାଇଲେ ସେତେବେଳେ ଆଉ ଅବସର କାହିଁ ? ସାରା ଭିଏତନାମରେ ଶ୍ରମିକ ଅଶାନ୍ତି, ଦଙ୍ଗା, ହାଙ୍ଗାମ, ହତ୍ୟା ଅପରାଧ ବଢ଼ିଚାଲିଲା । ଶ୍ରମିକଶ୍ରେଣୀ ମଧ୍ୟରେ ଚେତନଶୀଳ ବ୍ୟକ୍ତିର ସଂଖ୍ୟା କମ୍ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଅଶାନ୍ତିର ମାତ୍ରା ଥିଲା ଖୁବ୍ ପ୍ରବଳ । ଅତିଅଳ୍ପ ସମୟ ମଧ୍ୟରେ ଜନବହୁଳ ଶିଳ୍ପାଞ୍ଚଳକୁ ସେମାନେ ଅଧିକାର କରିଗଲେ । ଖଣି, ଖାଦାନ, କ୍ଷେତ, ବାଡ଼ି, କଳକାରଖାନାରେ ବ୍ୟାପିଗଲା ଶ୍ରମିକ ଧର୍ମଘଟ । ଛଟେଇ, ତାଲାବନ୍ଦର ଧମକ୍‌ରେ ଶ୍ରମିକଶ୍ରେଣୀ ଆହୁରି ଉତ୍ତେଜିତ ହୋଇ ଉଠିଲେ । ପ୍ରତିଦିନ କେଉଁଠି ନା କେଉଁଠି ହେଲେ ଧର୍ମଘଟ ଆରମ୍ଭ ହୋଇଗଲା । '୧୯୨୯ର ସମ୍ପୂର୍ଣ୍ଣ ଦିନ କେବଳ ଧର୍ମଘଟ ମଧ୍ୟଦେଇ ବିତିଛି । କୋଇଲାଖଣି, ଲୁଗାକଳ, ତେଲଖଣି, ଫରାସୀ, ଅନାମୀ ତନ୍ତୁବାସ୍ତୁ ପ୍ରତିଷ୍ଠାନ, ଅଧା ଦେଶୀ ବିଦେଶୀ ବ୍ୟବସାୟ ସଂସ୍ଥା ମଧ୍ୟରେ ଜଳିଉଠିଲା ଅଶାନ୍ତିର ନିଆଁ । ଟନ୍‌କିନ୍‌ରୁ ଆରମ୍ଭ କରି ନାମଭିନ୍ ପର୍ଯ୍ୟନ୍ତ, ସାଇଗନରୁ ଆରମ୍ଭ କରି ହାଇଫଙ୍ଗ ପର୍ଯ୍ୟନ୍ତ ସବୁଠି ବିଦ୍ରୋହର ରାଜତି । ହଜାର ହଜାର ଶ୍ରମିକ କାର୍ଯ୍ୟବନ୍ଦ କରି ବେକାରି ବରଣ କରି ନେଇଛନ୍ତି । ରବର ବଣରୁ ଶୁଭୁଛି ଶହ ଶହ ପରିବାରର କ୍ଷୁଧିତ ଚିତ୍କାର । ପେଟ୍ରୋଲ ଶୋଧନାଗାର ଅନିର୍ଦ୍ଦିଷ୍ଟକାଳ ପାଇଁ ବନ୍ଦ । ହାନୋଇର

ରିକ୍‌ସାୱାଲାଙ୍କ ରିକ୍‌ସା ଗୁଡ଼ିକ ପଥପ୍ରାନ୍ତକୁ ଆଶ୍ରୟ କରିଛି । ଭିନ୍‌ର ସହସ୍ର ରାସ୍ତାରେ ରେଲବାଇ ଶ୍ରମିକର କଳାଧୂସର ମୁଣ୍ଡ ଗଡ଼ିପଡ଼ିଛି । ସାଇଗନରେ ଥିବା ଇଣ୍ଡୋଚୀନ ବରଫକଲର ଦ୍ୱାରରେ ବିରାଟ ବିରାଟ ତାଲା । ମୁକ୍ତିଯାତ୍ରୀ ସୈନ୍ୟ ଶିବିର ପରି ଗୃହଅଙ୍ଗେ ଶୂନ୍ୟ, ହା ହାକାର । ଅସହାୟ, କରୁଣ ସ୍ୱରରେ ଭାସିଆସୁଛି ଶ୍ରମିକ ବସ୍ତିର ଉପାନ୍ତରୁ କେତେ ଅବଳା ବଧୂର ବିଦଗ୍ଧ ଭାଷା । କ୍ଷୁଧା, ପିପାସା, ଦାରିଦ୍ର୍ୟ, ଅନାଟନର ଜ୍ୱାଳାରେ ନିମଜ୍ଜିତ ହୋଇଯାଇଛି ଜୀବନର ମଧୁର ପ୍ରକୃତି ସବୁ । ଘର, ଦ୍ୱାର ଚୁଲିଶାଳ ଗୁଡ଼ିକ ସମସ୍ତେ ଉଠି ଆସିଛନ୍ତି ସଂଗ୍ରାମର ମଇଦାନ ଉପରକୁ । ସାଇଗନ, ହାଇଫଙ୍ଗ, ହାନୋଇ, ନାମଡିନ୍, ଭିନ୍, ଟେନିନ୍, ଟନ୍‌କିନ୍, ସହର ମଫସଲ ସବୁଠି ଏଇ ଦୃଶ୍ୟ । ଏକାଧିକ ମାସର କର୍ମଚ୍ୟୁତି ପରେ ପ୍ରତି ଘରେ ରୋଗ, ବୈରାଗ୍ୟ, ମୃତ୍ୟୁର ଅବାଧାସ୍ୱ ରାଜୁତି । ତଥାପି ଭିଏତନାମର ଶ୍ରମିକ, ମଜଦୁର, ଶିଳ୍ପୀ, କାରିଗର ଏକନିଷ୍ଠ, ଏକମନ ହୋଇ ଖୋଜୁଛି ତା ଜାତିର ଲାଞ୍ଛିତ, ସୁପ୍ତ ଜୀବନକୁ ଏହି ଅକାଳ ମରଣ ମଧ୍ୟରେ ।

ମୃତ୍ୟୁର ଏହି ଅନିମନ୍ତ୍ରିତ ସ୍ୱପ୍ନ ମଧ୍ୟରୁ ଜନ୍ମହେବ ଏକ ମହାନ୍ ସତ୍ୟ । ଶ୍ରମିକଶ୍ରେଣୀ ପାଇଁ ଜୀବନାବଧି ସୁଖ ସମ୍ଭୋଗର ଦ୍ୱାର । ଭିଏତନାମରେ କମ୍ୟୁନିଷ୍ଟ-ପାର୍ଟି ଗଠନର ଆବଶ୍ୟକତା ଜରୁରୀ ହୋଇଉଠିଲା । ଧର୍ମଘଟରେ ନେତୃତ୍ୱ ନେଇଥିବା ଶ୍ରମିକନେତାମାନେ ଉପଲବ୍ଧି କଲେ ଯେ ଏକ ସୁସଂଗଠିତ କମ୍ୟୁନିଷ୍ଟ ପାର୍ଟି ବ୍ୟତିରେକ ଶ୍ରମିକଶ୍ରେଣୀର ସ୍ୱାର୍ଥକୁ ବଜାୟ ରଖାଯାଇ ପାରେନା । ମାର୍କ୍‌ସବାଦୀ-ଲେନିନ୍‌ବାଦୀ ପାର୍ଟି ନହେଲେ ଭିଏତନାମର ଶ୍ରମିକଶ୍ରେଣୀକୁ ମୁକ୍ତି ଆନ୍ଦୋଳନର ପଥରେ ଆଗୁସାର କରାଇବା ସମ୍ଭବ ନୁହେଁ । ନେତାମାନଙ୍କର ଏହି ସିଦ୍ଧାନ୍ତକୁ ଅନେକ ସେତେବେଳେ ପସନ୍ଦ କରିପାରିଲେ ନାହିଁ । କାରଣ ଜାତୀୟବାଦୀ ଚେତନାର ପ୍ରଭାବ ଏତେ ଦୃଢ଼ ଥିଲା ଯେ ହଠାତ୍ ଏକ ଶୃଙ୍ଖଳିତ ରାଜନୈତିକ ପଦ୍ଧତି ମଧ୍ୟକୁ ଆସିବାକୁ କେତେକ ଭୟ କରୁଥିଲେ । ଯେଉଁମାନେ ଓ୍ୱାମ୍ପା ବା ସେହିପରି କୌଣସି ଶ୍ରେଷ୍ଠ ଶ୍ରେଷ୍ଠ ସାମରିକ ଶିକ୍ଷା କେନ୍ଦ୍ରରୁ ଫେରି ଥାଆନ୍ତି ସେମାନେ ଏହାକୁ ଖୁବ୍ ଆଗ୍ରହର ସହିତ ଗ୍ରହଣ କରିନେଲେ । କାରଣ ସେମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହିଁ ଭିଏତନାମରେ ଶ୍ରମିକ ଧର୍ମଘଟ ସଫଳ ରୂପ ନେଇଥିଲା । ସେମାନେ ଭିଏତନାମର ପ୍ରତ୍ୟେକ ଅଞ୍ଚଳରେ ମାର୍କ୍‌ସବାଦୀ-ଲେନିନ୍‌ବାଦୀ ପାର୍ଟି ଗଠନର ମୌଳିକ ଉପାଦାନ ଖୋଜି ବୁଲୁ ଥାଆନ୍ତି । ବିଶେଷ କରି ହୋ ଙ୍କ ସହିତ ଯେଉଁମାନେ ଥାନନିଏନ୍ ସହିତ ଆଗରୁ ସଂପୃକ୍ତ ଥିଲେ ସେମାନେ ସୁଯୋଗ ଖୋଜୁଥିଲେ ଇଣ୍ଡୋଚୀନରେ ଏକ ଖୋଲଖୋଲ୍ କମ୍ୟୁନିଷ୍ଟ ସଙ୍ଗଠନ ଗଢ଼ିତୋଳିବା ପାଇଁ । ସେମାନଙ୍କୁ ଭିଏତନାମର ଏହି ଶ୍ରମିକ ଅଭ୍ୟୁଦୟ ସୁବର୍ଣ୍ଣ ସୁଯୋଗ ଆଣିଦେଲା । ତେଣୁ ହଂକଂଠାରେ ମିଳିତ ଥାନ-ନିଏନ୍‌ର ଶେଷ

ବୈଠକରେ ଯୋଗ ଦେଇ ଫେରିଥିବା ଟନକନ୍‌ର ତିନି ଜଣ ପ୍ରତିନିଧି ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ଜନ୍ମ ଘୋଷଣା କଲେ । କୋମିନଟର୍ଣ୍ଣର ଅନୁମୋଦନ ପାଇଁ ଗୋଟିଏ ଚିଠି ପଠାଗଲା । ୧୯୩୦ ମସିହା ଜୁନ୍‌ମାସ ୧୭ ତାରିଖରେ ଇଣ୍ଡୋଚୀନରେ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ପାର୍ଟିର ଶୁଭ ପଦାର୍ପଣ ଘଟିଲା । ଏହାର ନାମ ରଖାଗଲା ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି । କାର୍ଯ୍ୟାଳୟ ରହିଲା ଟନକିନ୍ ଏବଂ ଆନାମଠାରେ । ପ୍ରଥମରେ ଏହି ପାର୍ଟିରେ ସାତ ଜଣ ବିଶିଷ୍ଟ ସଦସ୍ୟ ରହିଲେ । ହୋ' ସେତେବେଳେ ଶ୍ୟାମ ଦେଶରେ । ଏହା ପରେ ପରେ ଥାନ-ନିଏନ୍ ସଙ୍ଗଠନକୁ ସଙ୍କୁଚିତ କରିବା ପାଇଁ ବନ୍ଦ କରି ଦିଆଗଲା । ସଭ୍ୟମାନେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆନୁଗତ୍ୟ ସ୍ୱୀକାର କରି ସଭ୍ୟ ହୋଇ ରହିଲେ ।

ସେହିବର୍ଷ ଅକ୍ଟୋବର ମାସରେ ଥାନ-ନିଏନରେ ଥିବା କୋଚିନ ଚ୍ୟାଇନା ଏବଂ ଦକ୍ଷିଣ-ଆନାମର ପ୍ରତିନିଧିମାନେ ଆଉ ଗୋଟିଏ କମ୍ୟୁନିଷ୍ଟ ସଙ୍ଗଠନ ତିଆରି କଲେ—ଯାହାର ନାମ ଦେଲେ 'ଆନାମ କମ୍ୟୁନିଷ୍ଟ ପାର୍ଟି' ।

ବିପ୍ଳବୀମାନଙ୍କୁ ନେଇ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ରକ୍ତ-ପତାକା ତଳେ ଏକତ୍ରିତ କରିବାର ସୁନେଲି ସ୍ୱପ୍ନ ଦେଖି ଯେଉଁ କମ୍ୟୁନିଷ୍ଟ ପାର୍ଟି ଗଠନ କରାଯାଇ ଥିଲା, ତାହାର ପଥ ବେଶିଦିନ ଆଉ ସରଳ ରହିପାରିଲା ନାହିଁ । କ୍ରମଶଃ ପାର୍ଟି ବାହାରେ ବିରୋଧ ବୃଦ୍ଧି ପାଇଲା । ଦିନକୁ ଦିନ ପରସ୍ପର ବିରୋଧୀ ଦ୍ୱନ୍ଦ୍ୱରେ ରାଜନୈତିକ ଏକନିଷ୍ଠତା ଅସ୍ଥିର ହୋଇ ଉଠିଲା । ଆନାମ କମ୍ୟୁନିଷ୍ଟ ପାର୍ଟି ପରେ ତୃତୀୟ ପ୍ରତିଦ୍ୱନ୍ଦ୍ୱୀ କମ୍ୟୁନିଷ୍ଟ ପାର୍ଟି ଜନ୍ମ ନେଲା । ତାର ନାମ 'ଇଣ୍ଡୋଚୀନ କମ୍ୟୁନିଷ୍ଟ ଲିଗ' । ଏଥିରେ ଯେଉଁମାନେ ସଭ୍ୟ ରହିଲେ ସେମାନେ ପ୍ରଥମରୁ ହୋ'ଙ୍କର 'ଥାନ-ନିଏନ'କୁ ବିରୋଧ କରି 'ତାନ ଭିଏତ' ଗଢ଼ିଥିଲେ । ଆତ୍ମ-ବିଶ୍ୱାସହୀନତା ଏବଂ ଶ୍ରମିକଶ୍ରେଣୀ ଐକ୍ୟପ୍ରତି ବିରୋଧିତାରୁ ଜନ୍ମ ନେଇଥିବା ଏହି ଅନୁଷ୍ଠାନ ଇଣ୍ଡୋଚୀନ କମ୍ୟୁନିଷ୍ଟପାର୍ଟିକୁ ବିରୋଧ କରିବା ନୀତିରେ ସଚେତନ ରହିଲା । କାରଣ ଇଣ୍ଡୋଚୀନରେ ଏକ ବିଧିବଦ୍ଧ କମ୍ୟୁନିଷ୍ଟ ଦଳ ଗଠନ ହେବା ପରେ ଆଉ ଗୋଟିଏ ପ୍ରତିଦ୍ୱନ୍ଦ୍ୱୀ ଅନୁଷ୍ଠାନ ଗଢ଼ିତୋଳିବାରେ ଆବଶ୍ୟକତା କ'ଣ ଥାଇପାରେ !!

୧୯୩୦ ମଧ୍ୟବେଳକୁ ଇଣ୍ଡୋଚୀନରେ ତିନୋଟି କମ୍ୟୁନିଷ୍ଟପାର୍ଟି । ଗୋଟିଏ ବର୍ଷ ମଧ୍ୟରେ ତିନୋଟି ପରସ୍ପର ବିରୋଧୀ ରାଜନୈତିକ ଦଳ । ନୀତିଗତ ମେଳ ଥିଲେ ମଧ୍ୟ କାହାର କାହା ସହିତ ଏକତା ନାହିଁ, ବିଶ୍ୱାସ ନାହିଁ । ସର୍ବହରା ଶ୍ରେଣୀ ସଂଗ୍ରାମରେ ବିଶ୍ୱସ୍ତ ବୋଲି ଆତ୍ମବଡ଼ିମା ଦେଖାଉଥିବା ଏହି ଦଳଗୁଡ଼ିକର ପ୍ରଧାନ ଓ ମୁଖ୍ୟ କାମ ହେଲା, ପରସ୍ପରର କୁତ୍ସାରଟନା କରିବା, ନିଜକୁ ସଚ୍ଚା କମ୍ୟୁନିଷ୍ଟପାର୍ଟି

ବୋଲି ପ୍ରମାଣିତ କରିବା । ଉକ୍ତ ଗୋଷ୍ଠୀବାଦୀଙ୍କ ପ୍ରଭାବରେ ମାର୍କସ୍‌ବାଦୀ-ଲେନିନବାଦୀ ଆଦର୍ଶର ଜୀବନ୍ତ ଚରିତ୍ର ହ୍ରାସ ପାଇଲା । ଏହାଠାରୁ ବହୁଦୂରରେ ଥାଇ ପାର୍ଟିର ସଦସ୍ୟମାନେ ପରସ୍ପର ଚରିତ୍ର ହନନକୁ ଲକ୍ଷ୍ୟ ବୋଲି ମାନିନେଲେ । ଇଣ୍ଡୋଚୀନରେ ରାଜନୈତିକ ଚେତନା ବୃଦ୍ଧି ପାଇଲା ସତ, ହେଲେ, ସାଂଗଠନିକ ନେତୃତ୍ୱର କୌଣସି ଉନ୍ନତି ଘଟିଲା ନାହିଁ । ଦେଶୀୟ ବିପ୍ଳବୀମାନଙ୍କର ଶକ୍ତି, ସାମର୍ଥ୍ୟକୁ ଆନ୍ଦୋଳନାଭିମୁଖୀ କରିବା ପାଇଁ ଉପଯୁକ୍ତ ନେତୃତ୍ୱ କମ୍ୟୁନିଷ୍ଟପାର୍ଟି ଦେଇ ପାରିଲା ନାହିଁ । କମ୍ୟୁନିଷ୍ଟ ପାର୍ଟି ପ୍ରତି ଯେଉଁମାନେ ଆଦର୍ଶଗତ ଐକ୍ୟ ଯୋଗୁଁ ଆକୃଷ୍ଟ ହୋଇଥିଲେ, ସେମାନେ ଏତାଦୃଶ ସଙ୍କଟରେ ମ୍ରିୟମାଣ ହୋଇ ପଡ଼ିଲେ । ହୋ-ଚି-ମିନ୍ ଯେ ଏ ବିପର୍ଯ୍ୟତ ମୁଖୀ ଦ୍ୱନ୍ଦ୍ୱର ଅବସାନ ଘଟାଇ ପାରିବେ, ଏଥିରେ ସେମାନଙ୍କର ସନ୍ଦେହ ରହିଲା ନାହିଁ । କାରଣ ହୋ' ବିଦେଶରେ ଥିଲେ ମଧ୍ୟ ଦୂର ପ୍ରାଚ୍ୟର ସମସ୍ତ ରାଜନୈତିକ ଘଟଣା ସହିତ ନିଜକୁ ଜଡ଼ିତ ରଖିଥିଲେ । ସାଙ୍ଘାଇଠାରେ ଅବସ୍ଥାପିତ କୋମିନଟର୍ଣ୍ଣର ପରିଚାଳନା କେନ୍ଦ୍ର ସହିତ ସେ ଯୋଗାଯୋଗ ଅବ୍ୟାହତ ରଖିଥିଲେ । ଏପରି କି କୋମିଣ୍ଟର୍ଣ୍ଣର ପ୍ରତ୍ୟକ୍ଷ ସାହାଯ୍ୟ ଓ ଆବଶ୍ୟକୀୟ ରାଜନୈତିକ ନିର୍ଦ୍ଦେଶ ପାଇଁ ସେ ମଝିରେ ମଝିରେ ଚୀନ ଆସୁ-ଥିଲେ । ତାଙ୍କର ଅନ୍ତରଙ୍ଗ ବନ୍ଧୁମାନେ ଏହା ଜାଣିପାରି ତାଙ୍କୁ ଭିଏତନାମ ଫେରାଇ ନେବା ପାଇଁ ମନ ବଳାଇଲେ । ସେତେବେଳେ ତାଙ୍କର ଶ୍ୟାମଦେଶରେ ଅବସ୍ଥାନ କଥାଟା ସମସ୍ତଙ୍କୁ ଜଣାଥାଏ ।

ବିଭିନ୍ନ ମତବାଦୀ କମ୍ୟୁନିଷ୍ଟପାର୍ଟିମାନଙ୍କୁ ନେଇ ଭିଏତନାମରେ ଯେଉଁ ରାଜନୈତିକ ଅସ୍ଥିରତା ସୃଷ୍ଟି ହୋଇଥାଏ, ସେ ସମ୍ବନ୍ଧରେ କୋମିଣ୍ଟର୍ଣ୍ଣକୁ ପୁଙ୍ଖାନୁପୁଙ୍ଖ ବିବରଣୀ ଦିଆଯାଇଥାଏ । ଏହାର ଏକ ଆଶୁ ଅବସାନ ଘଟାଇ କମ୍ୟୁନିଷ୍ଟପାର୍ଟି ମାନଙ୍କର ମିଳନ ଥାଏ ଚିନ୍ତାଶୀଳ ନେତାମାନଙ୍କର ଏକମାତ୍ର ଲକ୍ଷ୍ୟ । କୋମିଣ୍ଟର୍ଣ୍ଣ-ଠାରୁ ନିର୍ଦ୍ଦେଶ ପାଇ ମସ୍କୋରେ ଥିବା ଭିଏତନାମର ମୁଖ୍ୟ ପ୍ରତିନିଧି ତ୍ରାନ-ଫୁ, ହୋ'ଙ୍କ ସହିତ ସାକ୍ଷାତ ପାଇଁ ହଂକଂ ଯାତ୍ରା କଲେ । ଏହି ତ୍ରାନ-ଫୁ ପରବର୍ତ୍ତୀ ସମୟରେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ପାଦକ ନିର୍ବାଚିତ ହୋଇଥିଲେ । ହୋ' ତାଙ୍କର ଭିଏତନାମ ପ୍ରତ୍ୟାବର୍ତ୍ତନ ବିଷୟରେ କୌଣସି ସିଦ୍ଧାନ୍ତ ତ୍ରାନ-ଫୁଙ୍କୁ ଜଣାଇଲେ ନାହିଁ । ବୋଧହୁଏ ସେ ଏତେ ଶୀଘ୍ର ଇଣ୍ଡୋଚୀନ ଫେରିଯିବା ପାଇଁ ଇଚ୍ଛୁକ ନ ଥିଲେ । କିନ୍ତୁ ବିପ୍ଳବର ପ୍ରଥମ ପର୍ଯ୍ୟାୟରେ ଏ ପ୍ରକାର ପ୍ରତିରୋଧ, ବାଧା-ବିଘ୍ନ ଦେଖି ସେ ଧୈର୍ଯ୍ୟହରା ହୋଇପଡ଼ିଲେ । ଖୁବ୍ କମ୍ ସମୟ ମଧ୍ୟରେ ଭିଏତନାମରେ ପରସ୍ପର ବିରୋଧୀ କମ୍ୟୁନିଷ୍ଟ ଦଳ ମଧ୍ୟରୁ ଦୁଇଜଣ ଲେଖା ପ୍ରତି-ନିଧିଙ୍କୁ ହଂକଂ ଡକାଇ ଆଣିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା—ସ୍ଥାନୀୟ ପ୍ରତିନିଧିମାନଙ୍କୁ

ସଙ୍ଗଠିତ କରି ଭିଏତନାମ କମ୍ୟୁନିଷ୍ଟ ପାର୍ଟିର ପୁନର୍ମିଳନ ଘଟାଇବା । କିନ୍ତୁ ସେଥିରେ ଭାଗ ନେବା ପାଇଁ ସେ ସୁବିଧା ନ ଥିଲେ ।

୧୯୩୧ ମସିହା ଫେବୃୟାରୀ ତିନି ତାରିଖ । ହଂକଂ ଷ୍ଟାଡ଼ିଅମରେ ବିରାଟ ଜନସମାବେଶ । ସେଦିନ ଚୀନର ଏକ ବିଶିଷ୍ଟ ଫୁଟବଲ ଖେଳାଳି ଷ୍ଟାଡ଼ିଅମରେ ଖେଳ ପ୍ରଦର୍ଶନ କରୁଥାଆନ୍ତି । ଚିଆଙ୍ଗ-କାଇ-ସେକ୍ ପୁଲିସର କଡ଼ା ନଜରରେ ଧୂଳି ଦେଇ ହୋ' ଭିଏତନାମ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିମାନଙ୍କ ସହିତ ଆଲୋଚନା ଆରମ୍ଭ କଲେ ।

ଉପସ୍ଥିତ ସଦସ୍ୟମାନଙ୍କ ମଧ୍ୟରୁ ସମସ୍ତେ ନିଜକୁ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଦର୍ଶନରେ ସୁସଂସ୍କୃତ ପ୍ରବୀଣ ବୋଲି ବିଚାରୁ ଥିଲେ । ସମସ୍ତଙ୍କ ମୁଖରେ ଅପର ପାଇଁ ଅଭିଯୋଗର ଭାଷା । ହୋ' ଏହି ବିବାଦୀସ୍ତ ଯୁକ୍ତି ମଧ୍ୟରେ ସମସ୍ୟାର ସମାଧାନ ପାଇଁ ପଥ ଖୋଜି ପାଇଲେ ନାହିଁ । ସେ ଗୋଟିଏ ମାତ୍ର ବକ୍ତବ୍ୟ ଉପସ୍ଥାପିତ କଲେ, ନିଜ ଦେଶରୁ ଆସିଥିବା କମ୍ୟୁନିଷ୍ଟ ଭାଇମାନଙ୍କ ସମ୍ମୁଖରେ—

"ସୋଭିଏତ ରୁଷ, ଇଂଲଣ୍ଡ, ଫ୍ରାନ୍‌ସ, ଚୀନ, ଭାରତ ଏବଂ ଇଣ୍ଡୋନେସିଆ ପ୍ରଭୃତି ଔପନିବେଶିକ ଦେଶମାନଙ୍କରେ ମାତ୍ର ଗୋଟିଏ ଲେଖାଁ କମ୍ୟୁନିଷ୍ଟ ପାର୍ଟି ଅଛି । ତେଣୁ ଭିଏତନାମରେ ତିନୋଟି କମ୍ୟୁନିଷ୍ଟ ପାର୍ଟି କେବେହେଲେ ରହି ପାରେନା ।"

ଜାତୀୟ ସ୍ୱାଧୀନତା ପାଇଁ ସମସ୍ତ ଜାତିକୁ ଐକ୍ୟବଦ୍ଧ କରିବାକୁ ହେବ । ଏହି ଲକ୍ଷ୍ୟ ଅର୍ଜନ ପାଇଁ ଲୋଡ଼ା ସାଂଗଠନିକ ଐକ୍ୟ । ସଙ୍ଗଠନ ପୁରୁଣା ନାମ ରଖିପାରେ (ବିପ୍ଳବୀ ଯୁବସମିତି ବା ଥାନ-ନିଏନ) ବା 'କମ୍ୟୁନିଷ୍ଟ ପାର୍ଟି' ନାମ ଗ୍ରହଣ କରିପାରେ; କିନ୍ତୁ ସଙ୍ଗଠନର ରାଜନୈତିକ କର୍ମସୂଚୀ ହେବ— "ଜାତୀୟ ସ୍ୱାଧୀନତା, ଜନସାଧାରଣଙ୍କର ମୁକ୍ତି, ସମାଜତନ୍ତ୍ର ପାଇଁ ଅଭିଯାନ ।"

ହୋ'ଙ୍କର ଏହି ହୃଦୟଗ୍ରାହୀ ଦରଦୀ ଭାଷାକୁ ବୁଝିଲେ ସଦସ୍ୟମାନେ । ଅନେକ ଆଳାପ ଆଲୋଚନା ପରେ ତିନୋଟି ଉପଦଳ ମିଳି ଗୋଟିଏ 'କମ୍ୟୁନିଷ୍ଟ ପାର୍ଟି' ଗଢ଼ିବାର ସିଦ୍ଧାନ୍ତ ହେଲା । ସର୍ବସମ୍ମତ କାର୍ଯ୍ୟପ୍ରସ୍ତାବ ଗ୍ରହଣ ପରେ ସେମାନେ ଫେରିଲେ ନିଜ ଦେଶକୁ । ହୋ'ଙ୍କ ନିର୍ଦ୍ଦେଶରେ ନିର୍ଦ୍ଦିଷ୍ଟ ହୋଇ ପଡ଼ିଥିବା 'ଥାନ-ଭିଏତ ସଙ୍ଗଠନ' ସହିତ ସେମାନେ ଯୋଗାଯୋଗ ସ୍ଥାପନ କଲେ । ତାହାର ସଭ୍ୟମାନଙ୍କୁ ନିଜ ଆଦର୍ଶ ଓ କର୍ମପନ୍ଥା ପ୍ରତି ଆକୃଷ୍ଟ କରାଇ କମ୍ୟୁନିଷ୍ଟ ପାର୍ଟି ସଭ୍ୟଭୁକ୍ତ କରାଇଲେ ।

ତନୋଟି ଉପଦଳର ମିଶ୍ରଣରେ ଯେଉଁ ନୂତନ କମ୍ୟୁନିଷ୍ଟ ପାର୍ଟି ଗଠନ ହେଲା, ତାର କାର୍ଯ୍ୟପରିସର ଦିନକୁ ଦିନ ବୃଦ୍ଧି ପାଇଲା । ପାର୍ଟି ପରିଚାଳନା କମିଟି ପାଇଁ ନୂତନ ନିର୍ବାଚନ ହେଲା । ନୂତନ ଅଫିସ, ନୂତନ କର୍ମକର୍ତ୍ତା, ନୂତନ ନେତୃତ୍ୱରେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି ନବକଳେବର ଲାଭ କଲା । ଯେଉଁମାନେ ସ୍ୱଦେଶରେ ରହିଥିଲେ, ସେମାନେ ଆଉ କେବଳ ତତ୍ତ୍ୱଦର୍ଶୀ ବା ନେତାର ଆସନରେ ରହିଲେ ନାହିଁ । ଦେଶର ପ୍ରକୃତ ପ୍ରତିନିଧି ଓ ଆନ୍ଦୋଳନର ବାହକଭାବେ ସେମାନେ କାର୍ଯ୍ୟ କଲେ । ହଂକଂରୁ ପାର୍ଟି କାର୍ଯ୍ୟାଳୟ ଉଠିଆସି ହାଇଫଙ୍ଗଠାରେ ରହିଲା । ୧୯୩୦ ଫେବୃୟାରି ମାସଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ପାର୍ଟିର ନାମ ରହିଲା 'ଭିଏତନାମ କମ୍ୟୁନିଷ୍ଟ ପାର୍ଟି' । ସେହିବର୍ଷ ଅକ୍ଟୋବର ମାସକୁ ହୋ' ଆଞ୍ଚଳିକ ପାର୍ଟି ଶାଖାର ପ୍ରତିନିଧିମାନଙ୍କୁ ହଂକଂ ଡକାଇଲେ, ପାର୍ଟିର ଉନ୍ନତି, କାର୍ଯ୍ୟକ୍ରମ ଓ ପ୍ରସ୍ତୁତି ବିଷୟରେ ଜାଣିବା ପାଇଁ । ଏହି ବୈଠକର ଆଉ ଏକ ଉଦ୍ଦେଶ୍ୟ ଥିଲା ପାର୍ଟିକୁ କେବଳ ଜାତୀୟତାବାଦ ମଧ୍ୟରେ ଆବଦ୍ଧ ନ ରଖି ଏହାର ରାଜନୈତିକ ପଦ୍ଧତିକୁ ଆନ୍ତର୍ଜାତିକାଭିମୁଖୀ କରାଇବା । କାରଣ ସେ ଭଲରୂପେ ହୃଦୟଙ୍ଗମ କରିଥିଲେ ଯେ ଆନ୍ତର୍ଜାତୀୟତାକୁ ବାଦ ଦେଇ କୌଣସି କମ୍ୟୁନିଷ୍ଟ ପାର୍ଟି ସର୍ବହରାଶ୍ରେଣୀ ସଂଗ୍ରାମର ଭୂମି ଉପରେ ଦଣ୍ଡାୟମାନ ହୋଇପାରେ ନାହିଁ । ସେ ନିଜ ଦେଶର କମ୍ୟୁନିଷ୍ଟ ପାର୍ଟିକୁ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ସହିତ ସାମିଲ କରିବା ନିମନ୍ତେ ଏହି ସମୟରେ କୋମିନଟର୍ଣ୍ଣର ସାହାଯ୍ୟ ଓ ସହାନୁଭୂତି ଲୋଡ଼ିଥିଲେ । ସେହିବର୍ଷ ପାର୍ଟିର ଅଫିସ ହାଇଫଙ୍ଗରୁ ସାଇଗନକୁ ସ୍ଥାନାନ୍ତରିତ ହେଲା । ହୋ' ତାଙ୍କର ସମସ୍ତ ଯୋଗାଯୋଗ ସାଇଗନକୁ ପରିବର୍ତ୍ତନ କଲେ ।

ହୋ'ଙ୍କ ଅନୁପସ୍ଥିତିରେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି ଗଢ଼ା ହୋଇଥିଲେ ମଧ୍ୟ ସେ ଥିଲେ ତାର ପ୍ରକୃତ ପ୍ରାଣଦାତା । ଗର୍ଭବେଦନା ତାଙ୍କୁ ବାଧି ନ ଥିଲେ ବି ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ନବାଗତ ଶିଶୁଟିକୁ ସେ ଧାଈମା' ପରି ଉପଯୁକ୍ତ ସେବାଯତ୍ନ ଦେଇ ବଢ଼ାଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୩୦ ପରଠାରୁ ଏପରି ଦିନ ନାହିଁ, ଏପରି କୌଣସି ମୁହୂର୍ତ୍ତ ଯାଇନାହିଁ, ଯେଉଁ ସମୟରେ ସେ ପାର୍ଟି କଥା ଭାବିନାହାନ୍ତି । ଏପରିକି ପାର୍ଟିର ଭବିଷ୍ୟତ ସମୃଦ୍ଧି, ଉତ୍ତରୋତ୍ତର ଉନ୍ନତି ପାଇଁ ସେ ଏକପ୍ରାଣ ହୋଇ ପଡ଼ିଥିଲେ ।

୧୯୩୦ ମସିହା ଫେବୃୟାରି ମାସରେ ସାଇଗନ ପାର୍ଟି ଅଫିସରେ ଏକ ମୁଦ୍ରିତ ପୁସ୍ତକ ଆସି ପହଞ୍ଚିଲା । ତାହା ଥିଲା ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ନୂତନ ଇସ୍ତାହାର । ହୋ' ପାର୍ଟି ପାଇଁ ଏହି ଖସଡ଼ା ପ୍ରସ୍ତୁତ କରିଥିଲେ । ଦଶ

ଦଫା ସମ୍ବଳିତ କାର୍ଯ୍ୟକ୍ରମ ମାଧ୍ୟମରେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ଉପନିବେଶବାଦ-ବିରୋଧୀ ମୁକ୍ତି ସଂଗ୍ରାମ ଆରମ୍ଭ ହେଲା ।

(୧) ଭିଏତନାମ ମାଟିରୁ ସାମ୍ରାଜ୍ୟବାଦ, ସାମନ୍ତବାଦୀ ଅର୍ଥନୀତି ଏବଂ ପ୍ରତିକ୍ରିୟାଶୀଳ ବୁର୍ଜୁଆମାନଙ୍କୁ ଲୋପ କରିବାକୁ ପଡ଼ିବ ।

(୨) ଇଣ୍ଡୋଚୀନ ପାଇଁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦାବୀ ।

(୩) ଶ୍ରମିକ, କୃଷକ ଓ ସୈନ୍ୟମାନଙ୍କୁ ନେଇ ନୂତନ ସରକାର ଗଠନ ।

(୪) ସମସ୍ତ ବ୍ୟାଙ୍କ ଏବଂ ବିଦେଶୀ । ବ୍ୟବସାୟ ପ୍ରତିଷ୍ଠାନର ଜାତୀୟକରଣ । ସର୍ବହରା ସରକାର ହାତରେ କ୍ଷମତା ଅର୍ପଣ ।

(୫) ସାମ୍ରାଜ୍ୟବାଦୀ ଓ ପ୍ରତିକ୍ରିୟାଶୀଳ ବୁର୍ଜୁଆମାନଙ୍କଦ୍ୱାରା କବଳିତ ଜମିଦାରୀ ଏବଂ ଅନ୍ୟାନ୍ୟ ବେଆଇନ ସମ୍ପତ୍ତିର ବାଜ୍ୟାପ୍ତିକରଣ । ଦରିଦ୍ର କୃଷକ ଓ ପ୍ରଜାମାନଙ୍କ ମଧ୍ୟରେ ବଳକା ଜମି ବଣ୍ଟନ ।

(୬) ଦିନରେ ଆଠଘଣ୍ଟିଆ ଶ୍ରମ ବ୍ୟବସ୍ଥା ପ୍ରଚଳନ ।

(୭) ଦରିଦ୍ରମାନଙ୍କୁ ଶୋଷୁଥିବା ବାଧ୍ୟତାମୂଳକ କର ଓ ଋଣ ବ୍ୟବସ୍ଥାର ପ୍ରତ୍ୟାହାର ।

(୮) ସାଧାରଣ ଜନତା ହାତରେ ଗଣତାନ୍ତ୍ରିକ ସ୍ୱାଧୀନତା ଅର୍ପଣ ।

(୯) ସମସ୍ତଙ୍କ ପାଇଁ ଶିକ୍ଷାଦାନ ବ୍ୟବସ୍ଥା ପ୍ରଚଳନ ।

(୧୦) ପୁରୁଷ ଓ ସ୍ତ୍ରୀ ମଧ୍ୟରେ ସମତା ।

ପାର୍ଟି ମଧ୍ୟରେ ଥିବା ଛୋଟ ବଡ଼ ମତାନୈକ୍ୟ ଏହାପରେ ଆପେ ଆପେ ସମାହିତ ହୋଇଗଲା । ଲକ୍ଷ୍ୟପଥ ବର୍ତ୍ତମାନ ସ୍ପଷ୍ଟ । ହୋ' ହେଉଛନ୍ତି ଏହି ଯାତ୍ରାପଥର ଅଧିନାୟକ । ତାଙ୍କର ବହୁଦିନର ଇପ୍ସିତ ବାଞ୍ଛା ଆଜି ପୂର୍ଣ୍ଣ ହୋଇଛି । ଦଶଦଫାସମ୍ବଳିତ ପାର୍ଟିର ଇସ୍ତାହାରରେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟମାନେ ଆଗ୍ରହ, ଉତ୍ସାହ, ପ୍ରେରଣା ଓ ଉନ୍ମାଦନାରେ ଏକାତ୍ମ ହୋଇ ଉଠିଛନ୍ତି । ସମସ୍ତଙ୍କ ପାଖରେ ସେହି ଗୋଟିଏ ଦାବୀ—ଜାତୀୟ ସ୍ୱାଧୀନତା ଓ ଶ୍ରମିକଶ୍ରେଣୀର ସର୍ବାଙ୍ଗୀନ ଉନ୍ନତିକଳ୍ପେ ହୋ'ଙ୍କର ନିର୍ଦ୍ଦିଷ୍ଟ ଇସ୍ତାହାରକୁ ପୂର୍ଣ୍ଣପ୍ରାଣରେ କାର୍ଯ୍ୟକାରୀ କରିବା । ବିଦେଶରେ ଥାଇ ହୋ' ଏହି ଆନନ୍ଦ ଉଲ୍ଲାସକୁ ଉପଭୋଗ କରୁଛନ୍ତି ଏକାନ୍ତ ଚିତ୍ତରେ । ମନ ତାଙ୍କର ଇଣ୍ଡୋଚୀନ ମାଟିରେ ବୁଲି ପୁଣି ଫେରିଯାଉଛି ହଂକଂ । ରହିଯିବା ପାଇଁ ଇଚ୍ଛାହେଉଥିଲେ ମଧ୍ୟ ତାଙ୍କୁ ନିୟନ୍ତ୍ରିତ କରିବାକୁ ପଡ଼ୁଛି ସେ ମନକୁ । ଇଣ୍ଡୋଚୀନ ଫେରିବା ପାଇଁ ସମୟ ଏଯାଏ ଆସିନାହିଁ ।

୧୯୩୦ ମସିହା । ଇଣ୍ଡୋଚୀନ ଇତିହାସର ବସନ୍ତକାଳ । ଏହି ବର୍ଷରେ ଯେ କେବଳ 'କମ୍ୟୁନିଷ୍ଟ ପାର୍ଟି'ର ଶୁଭଜନ୍ମ ଘଟିଥିଲା ତା ନୁହେଁ, ଶତାବ୍ଦୀର ପ୍ରାରମ୍ଭରୁ ଯେଉଁ ଯେଉଁ ମହାନ୍ ଘଟଣାବଳୀ ଇଣ୍ଡୋଚୀନର ଜୀବନକୁ ସମୁଜ୍ଜ୍ୱଳ, ମରଣୀୟ କରି ରଖିଥିଲା, ସେସବୁ ଘଟିଛି ଏହି ବର୍ଷ ମଧ୍ୟରେ । ଭିଏତନାମ ତାର ଆତ୍ମମୁକ୍ତିରୁ ଅନେକ ଉତ୍ଥାନ ପତନ ଦେଇ ଗତି କରିଛି । ସମୟର କରାଳ ରଥଚକ୍ର ତଳେ କେବେ ପେଷିହୋଇ ଯାଇଛି ତ, କେବେ ପୁଣି ଆନନ୍ଦ ଉଲ୍ଲାସରେ ହୋରି ଖେଳିଛି ତାର ଦିନଗୁଡ଼ିକ । କିନ୍ତୁ ଏପରି ଏକ ସମୟ ଆସିଲା, ତାର ଜୀବନରେ ଯାହାକୁ ସେ ଭୁଲି ଯିବାକୁ ଚାହିଁଲେ ମଧ୍ୟ ପାରେ ନାହିଁ । ସେହି ମୁହୂର୍ତ୍ତଗୁଡ଼ିକ ହେଉଛି ଏହି ୧୯୩୦ର ଫେବୃୟାରୀ ମାସର ପ୍ରଥମ ସପ୍ତାହ । ଧୀର ବସନ୍ତର ପହିଲି ଛୁଆଁରେ ଶୀତ ଚାଲିଯିବାକୁ ବସିଛି । ଥୁଣ୍ଟା ଗଛର ଡାଳରେ ଡାଳରେ ନବପତ୍ରର ଗହଳି । କୃଷ୍ଣଚୂଡ଼ାର ଅପୂର୍ବ ଲାଲିମା ବାରିହୋଇପଡ଼ୁଛି ସାରା ଦୁନିଆଁଟା ଯାକ । ନାରକେଳ ବଣ ଭିତରୁ ଶୀତାର୍ତ୍ତ ସନ୍ତର ରୁଚି ଆସ୍ତେ ଆସ୍ତେ ଅପସରି ଯାଉଛି । ପଶୁ, ପକ୍ଷୀ, ଗଛ, ଲତା, ବଣ, ବୁଦାରେ ସତେ ଯେପରି ଅଭିନବ ରୂପସଜ୍ଜା । ବସନ୍ତ ଆସିଛି ବରଷକ ପରେ । ମାତି ଉଠିବନ ପାଇଁ, କେତୋଟି ରାତି ପାଇଁ ।

ଗୁଏନ୍ ଆଇ ହୋକ ନାମକ ଜଣେ ସାଧାରଣ ସ୍କୁଲ୍ ଶିକ୍ଷକ ତିନିବର୍ଷ ପୂର୍ବେ ନୂଆକରି ଗୋଟିଏ ଜାତୀୟତାବାଦୀ ପାର୍ଟି ଗଠନ କରିଥିଲେ । ଏହି ଦଳ ମୁଖ୍ୟତଃ କୋମିଂଟାଙ୍ଗର ନୀତି ଅନୁସରଣ କରିଥିଲା । ଶତ୍ରୁ ସହିତ ପ୍ରତ୍ୟକ୍ଷ ମୁକାବିଲା, ଯୁଦ୍ଧଂଗୋଳରେ ଏମାନଙ୍କର ପ୍ରଗାଢ଼ ବିଶ୍ୱାସ । 'ହିଂସା ଆଉ ହିଂସା ସମାଧାନର ପଥ' ଏହା ଥିଲା ତାଙ୍କର ଆଦର୍ଶ ।

ଗୁଏନ୍ ଥାଇ ହୋକ ହେଉଛନ୍ତି ଏହି ଧର୍ମର ପୁରୋଧା । ୧୯୩୦ ବସନ୍ତର ଗୋଟିଏ ଉଜାଗର ରାତି ପାହାନ୍ତି ସ୍ୱପ୍ନ ପରି ଅତୀତର ସମସ୍ତ ଗ୍ଲାନି, କ୍ରୋଧ, ଆତ୍ମଲଜ୍ଜା ପରଦା ଏଡ଼ାଇ ଉଭାଇ ଯାଉଛି କେଉଁଆଡ଼େ । ତା ବଦଳରେ ମନ-ରାଜ୍ୟରେ ବିଚରଣ କରୁଛି ଲାଞ୍ଛିତ ଜୀବନର ପ୍ରତିଶୋଧୀ ପ୍ରବୃତ୍ତି । ଆତ୍ମାରେ ଆତ୍ମାରେ ତାର ସ୍ପନ୍ଦନ । ହୃଦୟ ହୃଦୟରେ ତାର ବଜ୍ରଗମ୍ଭୀର ପ୍ରତିଧ୍ୱନି । ଗୁଏନ୍ ଥାଇ ହୋ'ଙ୍କ ନେତୃତ୍ୱରେ ତାଙ୍କ ଦଳର ତରୁଣ ଜଙ୍ଗୀମାନେ ସାମରିକ ବିଦ୍ରୋହର ଆହ୍ୱାନ ଦେଲେ । ତାଙ୍କର ଏହି ବିଦ୍ରୋହାତ୍ମକ ଅଭିଯାନକୁ ଜନତା ଆଗରେ ସଫଳ ପ୍ରମାଣିତ କରାଇ ଭିଏତନାମୀ ଗଣମୁକ୍ତି ଆନ୍ଦୋଳନକୁ ସାମରିକ ଛାଞ୍ଚରେ ସଜ୍ଜିତ କରିବା ଥିଲା ଏହାର ଅନ୍ତର୍ନିହିତ ଉଦ୍ଦେଶ୍ୟ । କିନ୍ତୁ ଫଳ ହେଲା ଠିକ୍

ବିପର୍ଯ୍ୟସ୍ତ । ସେଦିନର ସେହି ବାସନ୍ତୀ-ହିନ୍ଦୋଳ, ଉଜାଗର ରାତିର ବିରହିଣୀ ରୂପକନ୍ୟା ପରି ସ୍ୱପ୍ନରେ ରହିଗଲା । ଚୁଏନ୍-ଆଇ-ହୋଙ୍କର ପ୍ରସ୍ତୁତି ପର୍ବରେ ଯେଉଁମାନେ ସାଥୀରେ ଥିଲେ, ସେମାନେ ମଧ୍ୟ ଆସିଲେ ନାହିଁ । ଏକାନ୍ତ ନିଃସଙ୍ଗ, ନିଃସମ୍ବଳ ଅବସ୍ଥାରେ ଚୁଏନ୍-ଆଇ-ହୋଙ୍କ ଆଦେଶ ଦେଲେ ମୁଷ୍ଟିମେୟ ତାଙ୍କର ତରୁଣ କମ୍ରେଡ଼ମାନଙ୍କୁ ଅନ୍ତତଃପକ୍ଷେ ଆତ୍ମନିହାରୁ ରକ୍ଷା ପାଇବା ନିମନ୍ତେ । ଘନ ତମିସ୍ରାର କଳାଗ୍ରନ୍ଥିଣୀକୁ କାଟି ଗର୍ଜି ଉଠିଲା ସରକାରୀ ବିମାନରୁ ପ୍ରଚୁର ଗୋଳା, ବାରୁଦ ଓ ମାରଣାସ୍ତ୍ର । 'ସ୍ୱେନ-ବେ'ର ଗ୍ରାମ ଉପରେ ହିଂସ୍ୟାର ବିଭୀଷିକା । 'ସ୍ୱେନ ବେ' ଓ ତାର ଆଖପାଖରେ ଥିବା ଶାଗଣ୍ଡା ଜଳିପୋଡ଼ି ଛାରଖାର ହୋଇଗଲା । ମୃତାହତ ହୋଇ ଅନେକ ବାସସ୍ଥାନ ଛାଡ଼ି ଚାଲିଗଲେ ଦୂରପ୍ରାନ୍ତକୁ । ବିଦ୍ରୋହୀମାନଙ୍କର କବଳସ୍ଥ ସେନାମାନଙ୍କୁ ଭୂତଳଶାୟୀ କରିବା ନିମନ୍ତେ ସରକାର ପକ୍ଷରୁ ବିପୁଳ ସାମରିକ ଆୟୋଜନ । ରକ୍ତର ବନ୍ୟାରେ ଭାସିଗଲା ଫସଲର ସବୁଜ ଅରଣ୍ୟ । 'ସ୍ୱେନ-ବେ' ସବୁଦିନ ପାଇଁ ମିଶିଗଲା ବସୁଧା ମାଟିରେ । ବିଦ୍ରୋହୀମାନଙ୍କର ଚନ୍ଦ୍ରାରାଜ୍ୟରେ ଅଭିନ ମହାମାରୀ । ନିଶା କଟିଗଲା । ତନ୍ଦ୍ରା ଭାଙ୍ଗିଗଲା । ମୁଣ୍ଡରେ ବିଫଳତାର ଟୀକା ନେଇ ଫେରିଲେ ସେମାନେ ଜନତା ପାଖକୁ ।

୧୯୩୦ ଏପ୍ରିଲ ମାସରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରକମିଟି ହଂକଂଠାରେ ବସିଲା । ଏହି ବୈଠକ ବସିବାର ଏକମାତ୍ର ଲକ୍ଷ୍ୟ ଥିଲା 'ସ୍ୱେନ-ବେ' ବିଦ୍ରୋହୀ-ମାନଙ୍କର ଭୁଲ୍ ସୁଧାରି ପାର୍ଟିକୁ ପୁଣି ନୂତନ ମାର୍ଗରେ ଆଗେଇ ନେବା । ହୋ ଏହି ବୈଠକରେ ନିଜେ ଯୋଗଦେଇ ପାରିନଥିଲେ । ସେ ତରୁଣ ଜଙ୍ଗୀମାନଙ୍କର ଏତାଦୃଶ ହିଂସାତ୍ମକ ବିଦ୍ରୋହକୁ 'ରାଜନୈତିକ ପାଗଳାମି' ବୋଲି ବିଚାରୁଥିଲେ ମଧ୍ୟ ଏହି ଘଟଣା ଯେ ତତ୍କାଳୀନ ରାଜନୈତିକ ଭିତ୍ତିଭୂମିକୁ ସଂଗ୍ରାମର ମଇଦାନରେ ଆହୁରି ଶାଣିତ, ବଳଶାଳୀ କରି ପାରିଥିଲା, ଏଥିରେ କୌଣସି ମତଦ୍ୱୈଧର ଅବକାଶ ନ ଥିଲା । କାରଣ ଯେଉଁ କେତେଜଣ ବିପ୍ଳବୀ ତରୁଣ ସେଦିନ ରକ୍ତନଦୀର ବକ୍ଷରେ ସନ୍ତରଣ କରି ନିଜେ ଡ଼ୁବି ଯାଇଥିଲେ ସେମାନେ ଆଜି ପ୍ରତି ହୃଦୟରେ ନାମାଙ୍କିତ ରହିଛନ୍ତି । କି କୃଷକ, କି ମଜଦୁର, କି ଛାତ୍ର, କି ମହିଳା କେହି ହେଲେ ସେହି ସୁପୁତ୍ରମାନଙ୍କୁ କେବେ ବି ପାଶୋରି ଦିବେ ନାହିଁ । ସେମାନଙ୍କର ଏହି କାର୍ଯ୍ୟ 'ରାଜନୈତିକ ଅପରିପକ୍ୱତା'ର ପରିଚୟ ଦେଇଥିଲା ସତ, ହେଲେ ଭିଏତନାମୀ ଜନସାଧାରଣଙ୍କ ହୃଦୟରେ ଏକ ବିରାଟ ପରିବର୍ତ୍ତନ ଦେଖାଦେଇ ଥିଲା । ଫ୍ରାନ୍ସ, ଇଂଲଣ୍ଡ ଏବଂ ପଡ଼ୋଶୀ ରାଷ୍ଟ୍ରମାନଙ୍କରେ

ଏହାର ଅନୁରୂପ ପ୍ରଭାବ ହେଲା । ବିଶେଷ କରି ଏହି ଘଟଣା ସେତେବେଳର କମ୍ୟୁନିଷ୍ଟ ନେତାମାନଙ୍କୁ ଉଚିତ୍ ଶିକ୍ଷା ଦେଇଥିଲା । ଯେଉଁମାନେ ଇଣ୍ଡୋଚୀନର ସ୍ୱାଧୀନତା ପାଇଁ ସଶସ୍ତ୍ର ବିପ୍ଳବର ଆୟୋଜନରେ ଲାଗିପଡ଼ିଥିଲେ, ସେମାନଙ୍କ ପାଇଁ ଏହା ଏକ ମହାନ୍ ଦୀକ୍ଷା ପରି ।

ପାର୍ଟିର ଅଧିକାଂଶ ସଭ୍ୟ ବୈପ୍ଳବିକ କାର୍ଯ୍ୟକ୍ରମ ସହିତ ଜଡ଼ିତ ଥିଲେ ମଧ୍ୟ ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱକୁ ଠିକ୍‌ରୂପେ ଧରିପାରି ନ ଥିଲେ । ପାର୍ଟି ତରଫରୁ ସେମାନଙ୍କୁ ନିୟମିତ ଶିକ୍ଷାଦେବା ପାଇଁ କୌଣସି ବ୍ୟବସ୍ଥା ସେତେବେଳେ ନ ଥିଲା । ତେଣୁ ୧୯୩୦ରୁ ଆରମ୍ଭ କରି ୧୯୩୧ ମସିହାର ଶେଷଯାଏ ଭିଏତନାମରେ ହିଂସାତ୍ମକ ବିଦ୍ରୋହ ଭାଙ୍ଗି ଲାଗି ରହିଲା । ଏହା ଫଳରେ ମୁକ୍ତି-ଆନ୍ଦୋଳନର ଗତି ବାଧା ପାଇଲା ବହୁ ପରିମାଣରେ । ଫରାସୀ ସରକାରଙ୍କର ଦମନଲୀଳାର ଶିକାର ହେଲେ ତରୁଣ ବିପ୍ଳବୀଗଣ । ହୋ' ବିପ୍ଳବର ଏହି କ୍ଷିପ୍ତ ଧାରାକୁ ସହ୍ୟ କରି ପାରିଲେ ନାହିଁ । ପାର୍ଟିର ସଭ୍ୟମାନଙ୍କର ତାତ୍ତ୍ୱିକ ଶିକ୍ଷାର ମାନ ବଢ଼ାଇବା ନିମନ୍ତେ ଏବଂ ସେମାନଙ୍କରଶ୍ରେଣୀ ଚରିତ୍ରକୁ ସଚେତନ କରାଇବା ଉଦ୍ଦେଶ୍ୟ ରଖି ନୂତନ ଶିକ୍ଷା ପ୍ରଣାଳୀ ଅନୁସରଣ କରିବା ପାଇଁ ପାର୍ଟିର କେନ୍ଦ୍ର କମିଟିକୁ ଅନୁରୋଧ କଲେ । ଫଳରେ ପାର୍ଟି ତରଫରୁ ସ୍ୱତନ୍ତ୍ର ରାଜନୈତିକ ଶିକ୍ଷା ଦେବାର ବ୍ୟବସ୍ଥା କରାଗଲା । ମାର୍କସ୍‌ବାଦୀ ତତ୍ତ୍ୱର ପ୍ରସାର ପାଇଁ ପାର୍ଟି ପକ୍ଷରୁ ପତ୍ର ପତ୍ରିକା ଓ ରାଜନୈତିକ ଦଲିଲ୍‌ମାନ ପ୍ରସ୍ତୁତ ହେଲା । ଯୁବକ ସଭ୍ୟମାନଙ୍କୁ ପାର୍ଟିର ଶୃଙ୍ଖଳାବୋଧ, ଦାୟିତ୍ୱ ଓ ଭବିଷ୍ୟତ ସମ୍ବନ୍ଧରେ ଅବହିତ ରହିବା ପାଇଁ ତାଲିମ କେନ୍ଦ୍ରମାନ ପ୍ରତିଷ୍ଠା ହେଲା । ଅଳ୍ପ ସମୟ ମଧ୍ୟରେ ଦେଖାଗଲା, ଯେଉଁ ବିପ୍ଳବୀ ତରୁଣଗୋଷ୍ଠୀ ସେମାନଙ୍କର ରାଜନୈତିକ ଚିନ୍ତା-ବିଭ୍ରାନ୍ତି ଯୋଗୁ ଅନାବଶ୍ୟକ ହିଂସାକାଣ୍ଡରେ ଲିପ୍ତ ରହୁଥିଲେ, ସେହିମାନେ ଆସି ଭିଏତନାମର ଶିଳ୍ପସମୃଦ୍ଧ, ଜନବହୁଳ, କୃଷିପ୍ରଧାନ ଅଞ୍ଚଳମାନଙ୍କରେ ସଙ୍ଗଠନ ଆରମ୍ଭ କରି ଦେଇଛନ୍ତି । ଏହି ସଙ୍ଗଠନ ପଛରେ ରହିଛି ଦୃଢ଼ ରାଜନୈତିକ ଆଦର୍ଶ ଏବଂ ତାକୁ କାର୍ଯ୍ୟକାରୀ କରିବାର ଅବ୍ୟର୍ଥ ଉଦ୍ୟମ । ସେମାନଙ୍କର ସଫଳ କୃତି ସ୍ୱରୂପ ଗଢ଼ିଉଠିଲା 'ଲାଲ୍ ଶ୍ରମିକ ସଙ୍ଘ', 'ଲାଲ୍ କୃଷକ ବାହିନୀ', 'ଯୁବକମ୍ୟୁନିଷ୍ଟ ଲିଗ୍', 'ମୁକ୍ତିକାମୀ ମହିଳା ସଂସଦ", "ଲୋହିତ ସେବା ସଂସ୍ଥା" ' ପନିବେଶବାଦ ବିରୋଧୀ ଜାତୀୟଗଣସାମୁଖ୍ୟ' ପରି ଗଣ ଅନୁଷ୍ଠାନମାନ । ଏହି ଅନୁଷ୍ଠାନ ମଧ୍ୟ ଦେଇ ଭିଏତନାମର ନରନାରୀ, ଆବାଳବୃଦ୍ଧବନିତା ଫରାସୀ-ବିରୋଧୀ ମୁକ୍ତି ଆନ୍ଦୋଳନ ପାଇଁ ସଜାଗ ହୋଇଉଠିଲେ ।

ହୋ' ଜଣେ କୁଶଳୀ ରାଜନୀତିଜ୍ଞ । ସେ ଦେଖିଲେ ପରସ୍ପରବିରୋଧୀ, ନିଜ ନିଜ ଭିତରେ ମୌଳିକ ସାମଞ୍ଜସ୍ୟ ନ ଥିବା ଅନେକ ଏହି ଗଣଅନୁଷ୍ଠାନ ମଧ୍ୟରେ ସାମିଲ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ଶ୍ରମିକ, କୃଷକ, ବୁଦ୍ଧିଜୀବୀ, ବ୍ୟବସାୟୀ ଏପରି କି ଜମିଦାରଶ୍ରେଣୀର ମଧ୍ୟ । ଶ୍ରେଣୀସ୍ୱାର୍ଥ ଦୃଷ୍ଟିରୁ ସେମାନଙ୍କର ଅହି-ନକୁଳ ସମ୍ପର୍କ । କିନ୍ତୁ ସେମାନେ ଭିଏତନାମର ସ୍ୱାଧୀନତା ଇଚ୍ଛା କରନ୍ତି । ଏହି ସମସ୍ତ ବିବାଦୀୟ ଶକ୍ତିଙ୍କୁ ଏକତ୍ର କରି ଲକ୍ଷ୍ୟବାଟେ ଆଗେଇ ନେବା ପାଇଁ ହୋ' ନୂତନ ଏକ ପନ୍ଥାର ଉଦ୍ଭାବନ କଲେ । ତାହା ହେଲା "ସମ୍ପୂର୍ଣ୍ଣ ସ୍ୱାଧୀନତା ହାସଲ କରି ଭିଏତନାମକୁ ସମାଜବାଦ ଓ ସାମ୍ୟବାଦ ପଥରେ କଢ଼ାଇ ନେବାକୁ ହେଲେ ଫରାସୀ ଉପନିବେଶବାଦୀ ଏବଂ ଦେଶୀୟ ସାମନ୍ତବାଦୀ ଶାସକମାନଙ୍କୁ ଗାଦିଚ୍ୟୁତ କରିବାକୁ ପଡ଼ିବ । ସେଥିପାଇଁ ପ୍ରଧାନ ରାଜନୈତିକ ମାର୍ଗ ହେଉଛି ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ଏବଂ କୃଷି ବିପ୍ଳବକୁ ତ୍ୱରାନ୍ୱିତ କରିବା । ଏହି ରାଜନୈତିକ ସିଦ୍ଧାନ୍ତକୁ ବାସ୍ତବରୂପ ଦେବାପାଇଁ ଶ୍ରମିକଶ୍ରେଣୀର ପାର୍ଟି ଅପରିହାର୍ଯ୍ୟ । ଶ୍ରମିକ-କୃଷକ ଏକତା ଅବଶ୍ୟମ୍ଭାବୀ । ବୁଦ୍ଧିଜୀବୀ ତଥା ବ୍ୟବସାୟୀମାନଙ୍କର ସହଯୋଗ ଏକାନ୍ତ ପ୍ରୟୋଜନ । ଏ ସମସ୍ତ ଶ୍ରେଣୀକୁ ଏକଜୁଟ କରାଇ ଏକ ବିରାଟ ଜାତୀୟତାବାଦୀ ଗଣସାମ୍ମୁଖ୍ୟ ଗଠନ କରିବାର ସମୟ ଆଗତପ୍ରାୟ । ଭିଏତନାମ ମୁକ୍ତି ଆନ୍ଦୋଳନ ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତାହାର ସ୍ୱୀକୃତି ପାଇଁ ଆଉ ବେଶୀ ଡେରି ନାହିଁ । କିନ୍ତୁ ଏ ସମସ୍ତ କ୍ରିୟା ପ୍ରକ୍ରିୟାର ନେତୃତ୍ୱ ନେବ ଶ୍ରମିକଶ୍ରେଣୀ । କାରଣ ବିପ୍ଳବର ଘନଅନ୍ଧକାର ପଥରେ ସେ ହିଁ ଏକମାତ୍ର ନିର୍ଭରଯୋଗ୍ୟ ଆଲୋକ ବିନ୍ଦୁ । ଭିଏତନାମର କୃଷକଶ୍ରେଣୀ ସହିତ ତାର ନିବିଡ଼ତା ଖୁବ୍ ବେଶୀ, ଏଥିରେ ସନ୍ଦେହ ନାହିଁ । ଭିଏତନାମ ଗଣବିପ୍ଳବ ଦୁଇ ମୁଖ୍ୟ ପର୍ଯ୍ୟାୟ ଦେଇ ଗତି କଲାବେଳେ ଶ୍ରମିକଶ୍ରେଣୀ ନିଷ୍ଟସ୍ଥ ଆଗକୁ ଆସିଯାଏ । ପ୍ରଥମ ପର୍ଯ୍ୟାୟରେ ସେ ବୁର୍ଜ୍ୱୟା ଗଣତାନ୍ତ୍ରିକ ଆନ୍ଦୋଳନକୁ ବାଟ କଢ଼ାଇ ନିଏ ସଠିକ ମାର୍ଗରେ । ତାର ଅନବରତ ବିଦ୍ରୋହ ଘୋଷଣା, ଅଶାନ୍ତି, ଜୁଲମାନ ସଂଘର୍ଷ ମଧ୍ୟରେ ସାମ୍ରାଜ୍ୟବାଦୀ ଯୁଦ୍ଧ ବ୍ୟବସାୟୀମାନଙ୍କର ଅଣ୍ଟା ଭାଙ୍ଗିଯାଏ । ସାମନ୍ତବାଦୀ ଶାସକଙ୍କର ମୁଖା ତଳକୁ ଖସିପଡ଼େ । ଜାତୀୟ ସ୍ୱାଧୀନତାର ଅବଗାହନ କରି ଶ୍ରମିକଶ୍ରେଣୀ କୃଷକ ଜାତିକୁ ମୁକ୍ତ କରେ ଭୂସ୍ୱାମୀର ରୁଦ୍ଧ କାରାଗାର କକ୍ଷରୁ । ତା ପରେ ବିଶାଳ କୃଷକ ପ୍ରଜା ସହିତ ମିଳିତ ହୋଇ ସେ ଅର୍ଥନୈତିକ ଦାସତ୍ୱରୁ ମୁକ୍ତିର ସନ୍ଧାନ ଖୋଜେ । ଏଇଠାରୁ ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ । ଶ୍ରମିକଶ୍ରେଣୀ ଓ କୃଷକଶ୍ରେଣୀର ମେହେନତି ନିଃଶ୍ୱାସରେ ପୁଞ୍ଜିବାଦୀ ପିରାମିଡ଼ ଆପେ ଆପେ ଟଳିପଡ଼େ ଦୂରରୁ । ସେ ଆଉ ପ୍ରବେଶ କରିପାରେ ନାହିଁ

ସେମାନଙ୍କ ସ୍ୱାର୍ଥରେ । ପାରମ୍ପରିକ ମତରେ ଚଳି ଆସୁଥିବା ପୁଞ୍ଜିବାଦୀ ବ୍ୟାଧିର ସଂକ୍ରମଣ ପୂର୍ବରୁ ସମାଜବାଦୀ ଦୁନିଆ ହସିଉଠେ ।

ପାର୍ଟିର ଏହି ରାଜନୈତିକ ବିଚକ୍ଷଣତା ଦେଖି କୃଷକ ଶ୍ରମିକଶ୍ରେଣୀ ଆଶାବାଦୀ ହୋଇ ଉଠିଲେ । ହୋ' ସେମାନଙ୍କୁ ଗୋଟିଏ ସାଧାରଣ ଏବଂ ସର୍ବସମ୍ମତ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ "ଉପନିବେଶବାଦ ବିରୋଧୀ ଲିଗ୍" ଗଠନ କରିବା ପାଇଁ ପରାମର୍ଶ ଦେଲେ । ତ'ହାର ପ୍ରଧାନ ଏବଂ ପ୍ରଥମ କର୍ମ ହେଲା ଫରାସୀ ଉପନିବେଶୀ ଶାସନକୁ ହସ୍ତାନ୍ତର କରି ଭିଏତନାମ ପାଇଁ ସମ୍ପୂର୍ଣ୍ଣ ସ୍ୱାଧୀନତା ଆଣି ଦେବା । ସ୍ୱାଧୀନତା ପରେ ଅନ୍ୟ ସବୁ ସମସ୍ୟା ସମାଧାନର ପଥ ସୁଗମ ହୋଇପିବ ଏହା ହେଲା ତାଙ୍କର ବିଶ୍ୱାସ । ଏହି ଗୋଟିଏ ମାତ୍ର ଲକ୍ଷ୍ୟକୁ ଆଖି ଆଗରେ ରଖି ହୋ' ଭିଏତନାମୀ ଦେଶବତ୍ସଳ ଶ୍ରମିକ, କୃଷକଶ୍ରେଣୀକୁ ଆହ୍ୱାନ ଜଣାଇଲେ ।

୧୯୩୦ ମସିହା ବିଶ୍ୱ ଅର୍ଥନୀତିର ଏକ ଦାରୁଣ ମୁହୂର୍ତ୍ତ । ଜାପାନ, ଆମେରିକା, ୟୁରୋପ ପରି ଉନ୍ନତ ପୁଞ୍ଜିବାଦୀ ଦେଶ ସମୂହରେ ନାହିଁ ନ ଥିବା କରୁଣ ପରିସ୍ଥିତି । ବେକାରି, ମୁଦ୍ରାସ୍ଫୀତି, ଖାଦ୍ୟାଭାବ, ଉତ୍ପାଦନ ହ୍ରାସ, ରୋଗ ବ୍ୟାଧିରେ ସାରା ଦୁନିଆ ଥରହର । ଭିଏତନାମର ଅବସ୍ଥା ତଦୁପରି । କାରଣ ଏ ପ୍ରକାର ଅର୍ଥନୈତିକ ଦୁଃସ୍ଥିତିରୁ ଫାଇଦା ଉଠାଇବା ପାଇଁ ଫ୍ରାନସ ଆଗ ଅପେକ୍ଷା ଆହୁରି ତତ୍ପର ହୋଇ ଉଠିଛି । ଭିଏତନାମରେ ବେକାରିର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇଛି । ଅତିମାତ୍ରା ଦରଦାମ୍ ବୃଦ୍ଧିରେ ଦରିଦ୍ର କୃଷକ, ଶ୍ରମିକଶ୍ରେଣୀ ହନ୍ତସନ୍ତ ହୋଇ ଯାଉଛନ୍ତି । ବଳକା ଖାଦ୍ୟ ଓ ଖାଉଟି ଦ୍ରବ୍ୟ ସବୁ ଫ୍ୟାରିସ ଚାଲାଣ ହୋଇ ଯାଉଛି । ଯେଉଁ ଶ୍ରମିକ ଓ କୃଷକ କ୍ଷେତ, ଖମାର ବା କଳକାରଖାନାରେ କାମ କରୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ବେକାର ହୋଇ ପଡ଼ିଲେ । ଆଉ ଯେତେକ ରହିଲେ, ସେମାନଙ୍କର ଜୀବିକା ନିର୍ବାହର ମାନ ବହୁ ତଳକୁ ଖସି ଆସିଲା । ସଂକ୍ଷେପରେ କୁହାଗଲେ ଭିଏତନାମର ସମୁଦାୟ କୃଷି ଓ ଶିଳ୍ପ ଉତ୍ପାଦନ ଯାହା ଉପରେ ନିର୍ଭର କରି ଚଳୁଥିଲା, ସେହି ଶ୍ରେଣୀ ଅର୍ଥନୈତିକ କାରଣରୁ ପଙ୍ଗୁ ହୋଇ ପଡ଼ିଲେ । ଉତ୍କଟ ଖାଦ୍ୟାଭାବ ଯୋଗୁଁ ମହାମାରୀ, ଗୋ-ମଡ଼କ ଦେଖାଗଲା । ଶ୍ରମିକଶ୍ରେଣୀ ବେଶୀଦିନ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ସେମାନେ ସ୍ଥାନେ ସ୍ଥାନେ ଗଣ୍ଡଗୋଳ ଆରମ୍ଭ କରିଦେଲେ । ସେମାନଙ୍କଠାରୁ ହିମତ୍ ପାଇ କୃଷକଶ୍ରେଣୀ ମଧ୍ୟ ଆଗେଇ ଆସିଲେ ଦଙ୍ଗା ହାଙ୍ଗାମ ନିମନ୍ତେ । କାରଣ କୃଷକମାନେ ଅପେକ୍ଷାକୃତ ଅଧିକ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ । ୧୯୩୦ ମସିହା ସେପଟେମ୍ବର ୧୨ ତାରିଖରେ

ହୁଅର-ଅଜାମର ଛ' ହଜାର କୃଷକ ମେଳି ହୋଇ ଅନଶନ ଧର୍ମଘଟ ଆରମ୍ଭ କରିଦେଲେ । ଭିଏତନାମ ଶ୍ରମିକ କୃଷକ ବିଦ୍ରୋହର ଇତିହାସରେ 'ଗେ-ଟିନ୍ ସେ ଭି୯ତ' ବିଦ୍ରୋହର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସଭା, ଶୋଭାଯାତ୍ରା, ଅନଶନ, ଧର୍ମଘଟ ମଧ୍ୟରେ ଏହି କୃଷକମେଳି ଭୟଙ୍କର ରୂପ ଧାରଣ କଲା । କିଛିଦିନ ପରେ ସେମାନଙ୍କ ମଧ୍ୟରୁ ଅନେକ ମୃତ୍ୟୁବରଣ କଲେ କିନ୍ତୁ ତାଙ୍କର ସଙ୍ଗଠନ, ସାଙ୍ଗଠନିକ ନେତୃତ୍ୱ, ଏତେ ପ୍ରଭାବଶାଳୀ ଥିଲା ଯେ, ସେମାନେ ସହଜରେ ଦବିଗଲେ ନାହିଁ । ଅଧିକନ୍ତୁ ତାଙ୍କଠାରୁ ଶିଖି ଆନାମ, ଟନକିନ୍ ଓ ଅନ୍ୟ ସ୍ଥାନର କୃଷକମାନେ ନିଜ ଦାବୀ ହାସଲ ପାଇଁ ବିଦ୍ରୋହର ପ୍ରସ୍ତୁତି ଆରମ୍ଭ କରିଦେଲେ । କୃଷକମାନଙ୍କର ଏ ପ୍ରକାର ଗଣ-ଆନ୍ଦୋଳନ ପଛରେ ଶ୍ରମିକମାନଙ୍କର ପୂର୍ଣ୍ଣସମର୍ଥନ ହାତ ଥିଲା । କାରଣ କୃଷି ହେଉ ବା ଶିଳ୍ପ ହେଉ ସେମାନେ ହେଉଛନ୍ତି ଶ୍ରମଜୀବୀ ଶ୍ରେଣୀର । ଉଭୟ କ୍ଷେତ୍ରରେ ସେମାନଙ୍କର ସ୍ଥାନ, ଦୁରବସ୍ଥା ଓ ଦାୟିତ୍ୱ ସମାନ । ଉଭୟ ପଟରୁ ସେମାନେ ଶୋଷିତ, ଲାଞ୍ଛିତ । ତେଣୁ ସଂଗ୍ରାମ ପଥରେ ସେମାନେ ପରସ୍ପରର ଲଢ଼ୁଆ ସାଇ ପରି । ହୋ' ଏହି ଦୀକ୍ଷା ଦେଲେ ସେମାନଙ୍କୁ । "ଉପନିବେଶବାଦ ବିରୋଧୀ ଭିଏତନାମ ସ୍ୱାଧୀନତା ଲିଗ୍'ର ସେମାନେ ମୁଖ୍ୟ ସାହୁଥାନ୍ତି ।



## ୨୨

# କାଠଗଡ଼ାରେ

'ଉପନିବେଶବାଦ ବିରୋଧୀ ଭିଏତନାମୀ ସ୍ୱାଧୀନତା ଲିଗ୍' ସଙ୍ଗଠିତ ଐକ୍ୟବଦ୍ଧ ଆନ୍ଦୋଳନର ମଇଦାନରେ ଠିଆ ହୋଇଛୁ । ଫରାସୀ ଓ କୋମିଣ୍ଟାଙ୍ଗ ପୁଲିସର ଆଖିରେ ଧୂଳି ଦେଇ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି ହୋ' । ଦେଶଠାରୁ ଯୋଜନ ଯୋଜନ ଦୂରରେ ଥାଇ, ସୀମା ସରହଦର୍ ଆରପାରିରୁ—

—ଭିଏତନାମର ଜନସାଧାରଣ ମିଳିତଶକ୍ତିର ହାତମୁଠା ଟାଣ କର ।
—ଫାସିଜିମର ବିରୁଦ୍ଧରେ ସଂଗ୍ରାମ ଚାଲୁରଖ ।
— ଫରାସୀ ଉପନିବେଶବାଦକୁ ସମାଧି ଦିଅ ।
— ଜାତୀୟ ସ୍ୱାଧୀନତା ପାଇଁ ସଂଗ୍ରାମ କର ।
—ଭିଏତନାମବାସୀ ଏକ ହୁଅ ।

ଶତ୍ରୁର ଶତ୍ରୁ ବନ୍ଧୁ ନୁହେଁ । ଫାସିଜିମ୍‌ର ପରାଜୟ ପାଇଁ ସ୍ୱାଧୀନତା ସଂଗ୍ରାମର ପଥକୁ ଆହୁରି ଶାଣିତ କରିବା ପାଇଁ ମିଳିତ ଶକ୍ତିର ହାତମୁଠାକୁ ଟାଣ କରିବାକୁ ହେବ । ଖୁବ୍ କମ୍ ସମୟ ମଧ୍ୟରେ ଭିଏତନାମର ଗଗନ ପବନ ମୁଖରିତ ହୋଇ ଉଠିଲା ଏହି ବାଣୀରେ । ନିର୍ଯାତନା, ନିପୀଡ଼ନ ସତ୍ତ୍ୱେ ଭିଏତନାମୀ ନିଜସ୍ୱ କରିନେଲେ ଏହି ଆଦର୍ଶକୁ ।

'ସ୍ୱାଧୀନତା ଲିଗ୍' କେବଳ କମ୍ୟୁନିଷ୍ଟ ସଙ୍ଗଠନ ନ ଥିଲା । ବାମପନ୍ଥୀମାନଙ୍କ ମଧ୍ୟରେ ନୂତନଭାବେ ଦେଖାଦେଇ ଥିବା ଉଗ୍ରଗୋଷ୍ଠୀବାଦକୁ ଏଡ଼ାଇବା ନିମନ୍ତେ ଏଥିରେ ନାନା ରାଜନୈତିକ ଦଳ ଓ ଶ୍ରେଣୀର ସମାବେଶ ଘଟିଥିଲା । ଶ୍ରମିକ ଓ କୃଷକ ଏହିତ ବୁର୍ଜୁଆ ବୁଦ୍ଧିଜୀବୀ, ବ୍ୟବସାୟୀ ଶ୍ରେଣୀ ଏହି ଜାତୀୟ ଗଣ ସାମ୍ମୁଖ୍ୟର ଧ୍ୱଜା ତଳେ ମିଳିତ ହୋଇଥିଲେ । ଯାହାର ମୂଳ ଲକ୍ଷ୍ୟ ଥିଲା, "ଭିଏତନାମ ଜାତୀୟ ସ୍ୱାଧୀନତା ପାଇଁ ସଂଗ୍ରାମ ।"

ଅନେକ କହନ୍ତି, ହୋ'ର ବେଦନାପ୍ଳୁତ ଜୀବନର ଏ ଏକ ସଫଳ ନିର୍ଯ୍ୟାସ । ଦୀର୍ଘ ୯ ମାସ ବିତିଗଲାଣି ହୋ'ଙ୍କର ଅନ୍ତରଙ୍ଗ ସହକର୍ମୀମାନେ ଜୀବନକୁ ପାଣି ଛଡ଼ାଇ ସଙ୍ଗଠନ ପାଇଁ କାମ କରି ଚାଲିଛନ୍ତି । ଜୀବନର ନିରାପତ୍ତା

ସେମାନଙ୍କ ପାଇଁ ମୂଲ୍ୟହୀନ । କେତେବେଳେ ହଂକଂ ତ କେତେବେଳେ ହାନୋଇ । ଦୁର୍ଦ୍ଧର୍ଷ କୋମିଂଟାଙ୍ଗ ପୁଲିସର ନଜର ଏଡ଼ାଇ ଦିନରାତି ଲୁଚାଛପା କାର୍ଯ୍ୟ ଚାଲିଛି । ସମ୍ବାଦପତ୍ର, ଗୁପ୍ତ ଖବର, ପ୍ରଚାରପତ୍ରସବୁ ଗୁପ୍ତରେ ଚାଲାଣ କରିବାକୁ ପଡ଼ୁଛି । ଇଣ୍ଡୋଚାଇନ୍‌କୁ ପାର୍ଟି ପାଇଁ ନିର୍ଦ୍ଦେଶନାମା ସବୁବେଳେ କିଛି ନା କିଛି ଥାଏ । ଫାମ୍ ଭନ୍‌ଡୁଙ୍ଗ ଏବଂ ଟନଡୁକ୍ ଥାଙ୍ଗ ଏହି ଗୋପନ ଶିବିରର ଅଗ୍ରଣୀ । ବିଦେଶୀ ଶତ୍ରୁ, ଦେଶଦ୍ରୋହୀମାନଙ୍କର ଅନ୍ତର୍ଘାତୀ କାର୍ଯ୍ୟକୁ ସାମନା କରି ଚାଲିଛନ୍ତି ସେମାନେ । ହୋ' ହେଉଛନ୍ତି ସେମାନଙ୍କର ପ୍ରେରଣାର ଉତ୍ସ । ପାର୍ଟି ପ୍ରତି ଆନୁଗତ୍ୟ, ଦେଶଭକ୍ତି, ସାଧାରଣ ଜନତା ପାଇଁ ଆତ୍ମତିତିକ୍ଷାର ଅଗ୍ନିପରୀକ୍ଷା ଚାଲିଛି ପ୍ରତି ମୁହୂର୍ତ୍ତରେ । ୧୯୩୦ ମସିହାର ଏକ ଅଚାନକ ଘଡ଼ିରେ ଫରାସୀ ଗୁଇନ୍ଦା ପୁଲିସଙ୍କ ହାତରେ ଧରାପଡ଼ିଲେ ଉଲ୍ଲିଖିତ କମ୍ରେଡ଼ଦ୍ୱୟ । ଇଣ୍ଡୋଚାଇନରେ ସେମାନଙ୍କୁ ନ ରଖି ସଙ୍ଗେ ସଙ୍ଗେ ସ୍ଥାନାନ୍ତରିତ କରାଗଲା ସୁଦୂର ପୋଲେ କଣ୍ଡୋର ଦ୍ୱୀପକୁ । ସେଠାରୁ ସେମାନଙ୍କର ବିଚାର ଚାଲିଲା, କିନ୍ତୁ କିଛିଦିନ ନିର୍ବାସନ ପରେ ଏପ୍ରିଲ ୧୯୩୧ ଦିନ କୋଲୋନ୍ ଚିକିତ୍ସାଳୟରେ ଟ୍ରାନ ଫୁଙ୍କର ଅକାଳ ମୃତ୍ୟୁ ଘଟିଲା । ଇଣ୍ଡୋଚାଇନ ସରକାରୀ ପୋଲିସର ଅତ୍ୟାଚାର ବିରୁଦ୍ଧରେ ଶେଷ ସଂଗ୍ରାମ କରି ସେ ସେହିଠାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମୃତ୍ୟୁ ବେଳକୁ ସେ ଇଣ୍ଡୋଚାଇନ କମ୍ୟୁନିଷ୍ଟ ପାର୍ଟିର ନିର୍ବାଚିତ ସମ୍ପାଦକଭାବେ କାର୍ଯ୍ୟ କରୁଥିଲେ ।

ଜୀବନର ସଂକୁଳ ଯାତ୍ରାପଥରେ ଦୁଇ ବିଶ୍ୱସ୍ତ ଅନ୍ତରଙ୍ଗ ସହଯୋଗୀଙ୍କୁ ହରାଇ ହୋ' ମ୍ରିୟମାଣ ହୋଇ ପଡ଼ିଲେ । ବନ୍ଧନର ଶେଷ ଗ୍ରନ୍ଥିଟି ଛିଡ଼ିଗଲା ପରି ତାଙ୍କର ମନେହେଲା । ବିଦେଶରେ ଥାଇ ମନର ଅବସାଦ ମେଣ୍ଟାଇବାର ଏକମାତ୍ର ଉପାୟ ଥିଲା ତାଙ୍କ ନିକଟରେ, ତାହା ହେଉଛି ପ୍ରତିଶୋଧ । ତାଙ୍କପରି ଜଣେ ଭାବବାଦୀ ଚିନ୍ତାଗ୍ରସ୍ତ ବ୍ୟକ୍ତି ରାଗ, କ୍ରୋଧରେ ନିମିଷକ ପାଇଁ ଜର୍ଜରିତ ହୋଇ ପଡ଼ିଲେ । ହଂକଂର ରାସ୍ତାଘାଟ, କାନ୍ଥବାଡ଼ରେ ଶୁଣିବାକୁ ପାଇଲେ ମୃତ ଜୀବନର କରୁଣ ଚିତ୍କାର । ବଞ୍ଚି ରହିବାର ନିରାଶାଗ୍ରସ୍ତ ସ୍ୱର । ବନ୍ଧୁଙ୍କୁ ସେ ଭୁଲି ପାରିଲେ ନାହିଁ । ସମ୍ମୁଖ ଅଗଣାରେ ନିଜକୁ ଦେଖିଲା ପରି ସେ ଦେଖିଲେ ବନ୍ଧୁଙ୍କର ବିଦାୟୀ ପ୍ରତିବିମ୍ବ । ଗୁଏନ୍-ଆଇ-କୋକ୍‌ର ନାମ ବଦଳାଇ ଟଙ୍ଗ-ଭାନ-ସୋ ନାମରେ କାର୍ଯ୍ୟ ଆରମ୍ଭ କଲେ । ସେତେବେଳେ ସେ ପୋଲିସର କଡ଼ା ନଜରରେ ଥାଆନ୍ତି । ତାଙ୍କର ଅନୁପସ୍ଥିତିରେ ଭିନ୍ ନ୍ୟାୟାଳୟ ତାଙ୍କର ମୃତ୍ୟୁଦଣ୍ଡ ଘୋଷଣା କରିସାରିଛନ୍ତି । ଜୀବନ୍ତ ବା ମୃତ ଧରାଇଦେଲେ ବହୁ ମୂଲ୍ୟବାନ ପୁରସ୍କାରର ବାଜିଥାଏ ତାଙ୍କ ମୁଣ୍ଡ ଉପରେ ।

ଦକ୍ଷିଣ-ପୂର୍ବ ଏସିଆରେ ରାଜନୈତିକ ପରିସ୍ଥିତି ଖୁବ୍ ଉତ୍ତପ୍ତ ଥାଏ । ଭାରତ, ଇଣ୍ଡୋନେସିଆ, ବର୍ମା, ସିଂହଳ ଆଦି ପ୍ରାଚ୍ୟର ସବୁ ରାଷ୍ଟ୍ରରେ କମ୍ୟୁନିଷ୍ଟ ଗଣସଂଗଠନ ଆଦିକୁ ବାହାର କରି ଥାଏ । ସାମ୍ରାଜ୍ୟବିରୋଧୀ ଆନ୍ଦୋଳନର ପୁରୋଧାମାନେ ହୋ'ଙ୍କ ସହିତ ନିବିଡ଼ ଯୋଗସୂତ୍ର ରଖିଥାଆନ୍ତି । ହୋ' ଯେ ସରକାରୀ ଶାସନକଳର ଏକ ମୁଖ୍ୟ ବିରୋଧୀ ଶକ୍ତି, ଏଥିରେ ଆଉ ସନ୍ଦେହ ରହିଲା ନାହିଁ । ଅପର ପକ୍ଷରେ ସମଗ୍ର ଏସିଆ ମହାଦେଶରେ ଜାଗମାନ-ବିପ୍ଳବର ସ୍ରୋତକୁ ସେ ବେଗମତୀ କରାଇ ନେଉଛନ୍ତି ବୋଲି ତାଙ୍କ ବିରୁଦ୍ଧରେ ପ୍ରବଳ ତମ୍ବିତୋଫାନ ଚାଲିଥାଏ । ହଂକଂ ଯେଉଁଠି ଜଗିଥାଆନ୍ତି ବ୍ରିଟିଶ ପୋଲିସ ଏବଂ ତାଙ୍କୁ ସାହାଯ୍ୟ କରୁଥାନ୍ତି ଚିଆଙ୍ଗ-କାଇ-ସେକର ଗୁଇନ୍ଦାଦଳ ।

୧୯୩୧ ମସିହା ଜୁନ୍ ମାସ ଛ ତାରିଖରେ ହୋ' ହଂକଂଠାରେ ବ୍ରିଟିଶ ପୋଲିସ ହାତରେ ଧରାପଡ଼ିଲେ । ତାଙ୍କର ଦୁଇଜଣ କୋମିନଟର୍ଣ୍ଣ ପ୍ରତିନିଧି ବନ୍ଧୁ ଯୋସେଫ ଡ୍ୟୁକ୍ରୋକ୍ସ ଏବଂ ନ୍ୟୁଲେନଙ୍କର ସାମାନ୍ୟତମ ଅସାବଧାନତା ଯୋଗୁଁ ପୋଲିସ ତାଙ୍କର ସମ୍ବାଦ ପାଇଗଲା । ନ୍ୟୁଲେନ ସ୍ବିସ୍ ଅଧିବାସୀ ଥିଲେ ଏବଂ ଡ୍ୟୁକ୍ରୋକ୍ସ ଫରାସୀ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ । ଏମାନେ ସାଙ୍ଘାଇ ଏବଂ ସିଙ୍ଗାପୁରଠାରେ ଅବସ୍ଥାନ କରି ହୋ'ଙ୍କ ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କରନ୍ତି । କୋମିନଟର୍ଣ୍ଣର ନିର୍ଦ୍ଦେଶରେ ସେମାନେ ଇଣ୍ଡୋଚୀନ, ଫରାସୀ କମ୍ୟୁନିଷ୍ଟ ପାର୍ଟି ଏବଂ ମସ୍କୋ ସହିତ ଗୋପନ ଯୋଗସୂତ୍ରକାରୀଭାବେ ନିଯୁକ୍ତ ହୋଇଥିଲେ ।

ହଂକଂ କେନ୍ଦ୍ର ଜେଲର ଏକ ଦୁର୍ଗନ୍ଧମୟ କ୍ଷୁଦ୍ର କୋଠରୀ ମଧ୍ୟକୁ ତାଙ୍କୁ ପେଶାଡ଼ି ଦିଆଗଲା । ସେତେବେଳେ ତାଙ୍କ ବିରୁଦ୍ଧରେ ମନଗଢ଼ା ଅଭିଯୋଗମାନ ପ୍ରସ୍ତୁତ ହୋଇଥାଏ । ବ୍ରିଟିଶ ଦଲାଲ, ସୋଭିଏତ ୟୁନିଅନର ଗୁପ୍ତଚର ତଥା ପଶ୍ଚିମା ଉପନିବେଶ ଶାସନ ବିରୋଧୀ ଆନ୍ଦୋଳନର ନେତା ଆଦି ପରସ୍ପର ବିରୋଧୀ ଅଭିଯୋଗରେ ସେ ଦଣ୍ଡିତ ହେଲେ । ଅଭିଯୋଗ ପ୍ରମାଣିତ ହେଲନି ସତ, କିନ୍ତୁ ଏହି ଆଳରେ ତାଙ୍କୁ ଅନେକ ଦିନ ପାଇଁ ନିର୍ଜନ କାରା କୋଠରୀରେ ଭର୍ତ୍ତି କରି ଦିଆଗଲା । ହୋ' ଯେ କାରାଗାରରେ, ବାହାର ଦୁନିଆକୁ ଏ ସମ୍ବାଦ ଜଣାଇ ଦିଆଗଲା ନାହିଁ । ପୋଲିସର କଡ଼ା ପହରା ସହିତ ନିସ୍ତବ୍ଧ କୋଠରୀରେ ତାଙ୍କୁ ମୁଦ ଦିଆଗଲା । ଏପ୍ରକାର ନିର୍ବାସିତ କାରାଜୀବନ ଗ୍ରହଣ କଲାପରେ ହୋ' ନିଜ ଭାଗ୍ୟ ପାଇଁ ଆଦୌ ବିଚଳିତ ନ ଥିଲେ । କାରଣ ସେ ଭଲରୂପେ ଜାଣିଥିଲେ ନିଆଁରେ ଚାଲିବାକୁ ଗଲାବେଳେ ଗୋଡ଼ ନିଶ୍ଚୟ ପୋଡ଼ିବ । ଏକଥା ମଧ୍ୟ ସେ ଜାଣିଥିଲେ ଯେ କାରାଗାରରେ ବନ୍ଦୀ ଅବସ୍ଥାରେ ହୁଏତ ଜୀବନଟା ଚାଲିଯାଇ

ପାରେ କିନ୍ତୁ ବନ୍ଦୀଶାଳାରୁ ଖସି ଆସିପାରିଲେ ସେ ବିପ୍ଳବର ରଣାଙ୍ଗନକୁ ପୁଣି ଫେରିପିବେ । ରାତଦିନ ବସି ବସି ସେ କେବଳ ନିଜ ଦେଶରେ ଚାଲିଥିବା ଆନ୍ଦୋଳନ କଥା ହିଁ ଚିନ୍ତା କରୁଥିଲେ । ସବୁପ୍ରକାର ଭାବନା ମଧ୍ୟରେ ତାଙ୍କୁ ଗୋଟିଏ ପ୍ରଶ୍ନ ସଦାବେଳେ ଅସ୍ଥିର କରି ଦେଉଥିଲା "ଯେଉଁ କାମ ସେ ନିଜେ ଶେଷ କରିପାରିଲେ ନାହିଁ, ତାକୁ କିଏ ପୂରଣ କରିପାରିବ ? ନିଜେ ଅଙ୍ଗେ ଲିଭାଇ ଥିବା ଜୀବନ୍ତ ଅନୁଭୂତିଗୁଡ଼ିକୁ ସେ କିପରି ଅନ୍ୟ କମ୍ରେଡ଼ମାନଙ୍କୁ ଶୁଣାଇବେ ? ଯେଉଁ ଗୁପ୍ତ ତଥ୍ୟ, ଯୋଗସୂତ୍ର ସମ୍ବନ୍ଧରେ ସେ କେବଳ ଅବହିତ ଥିଲେ ତାକୁ କିଏ ପୁନଃପ୍ରତିଷ୍ଠା କରିବ ? ବର୍ଷାଦିନର ପୂର୍ଣ୍ଣଗର୍ଭା ନଦୀ ପରି ପାର୍ଟିର ସମ୍ମାନ ଦିନକୁ ଦିନ ବଢ଼ି ଚାଲିଛି । ଶ୍ରମିକ ଓ କୃଷକଶ୍ରେଣୀର ବିଦ୍ରୋହାନଳ ରାଜ୍ୟକୁ ରାଜ୍ୟ ବ୍ୟାପି ଚାଲିଛି । ସାମ୍ରାଜ୍ୟବାଦୀମାନେ ତାର ଦମନ ପାଇଁ ସବୁମନ୍ତ୍ରେ ଚେଷ୍ଟା ଅବ୍ୟାହତ ରଖିଛନ୍ତି । ଅଧିକାଂଶ କମ୍ରେଡ଼ ଜେଲ ଘର ଭିତରେ ବନ୍ଦୀ । ସେମାନଙ୍କ ମଧ୍ୟରୁ କେତେ ମୃତାହତ ଅବସ୍ଥାରେ । ଶ୍ରମିକ ସଙ୍ଗଠନ, ଯୁବସଙ୍ଘ, କୃଷକ ସଂସ୍ଥାମାନ ଗୋଟିକ ପରେ ଗୋଟିଏ ଭାଙ୍ଗି ପଡ଼ୁଛି । କିଏ ସେମାନଙ୍କୁ ନେତୃତ୍ୱ ଦେବ ? ସେମାନଙ୍କ ବିନା ମୁକ୍ତି ଆନ୍ଦୋଳନକୁ ବଳାୟତ୍ତ ରଖିହେବ ବା କିପରି ?

ଜୁଲାଇ ମାସର ବର୍ଷା । ନିର୍ଜନ କୋଠରୀ ଭିତରେ ବସି ବସି ହୋ' ଦେଖୁଛନ୍ତି ତାର ଧାରାପାତ । ନିଃସଙ୍ଗ ନିର୍ବାନ୍ଧବ ଜୀବନରେ ବର୍ଷା ଜଳର ଛିଟିକାଏ ହେଉଛି ତାଙ୍କର ସାଥୀ । ଖୋଲା ଆକାଶ ତଳେ ମୁକ୍ତ ଶ୍ରାବଣରେ ଉଚ୍ଛୁଳା ହସକୁ ସେ ପ୍ରାଣ ଭରି ଉପଭୋଗ କରିପାରୁ ନାହାନ୍ତି । ଏହା ହିଁ ଆଣିଛି ତାଙ୍କ ମନରେ ଦୁଃଖ । ପଶୁ , ପକ୍ଷୀଙ୍କଠାରୁ ସେ ଆଜି ହୀନ । ସେମାନଙ୍କର ସ୍ୱାଧୀନତା ଅଛି, ହେଲେ ସେ ଝରକା ଗୁଡ଼ି ଦ୍ୱାରବନ୍ଧକୁ ଆସି ପାରୁନାହାନ୍ତି । କଏଦୀ ଜୀବନର ଦାରୁଣ ଅନୁଭୂତିକୁ ରୋମନ୍ଥନ କରିବା କେବଳ ସାର ।

ବୟସ ମାତ୍ର ଚାଳିଶ । ଅବିବାହିତ ଜୀବନର ଅକ୍ଷୁଣ୍ଣ ତାରୁଣ୍ୟ ସ୍ୱାନ୍ତିମାନଙ୍କୁ ଟିକେ ତେଜେଇ ଦେବା ସ୍ୱାଭାବିକ । କିନ୍ତୁ ସେ ଆଉ ଅତୀତ ଯୌବନକୁ ଭାବି ପାରୁନାହାନ୍ତି । ଯୌବନ ତାଙ୍କ ପାଦତଳେ ମଉଳା ପଦ୍ମକଢ଼ିଟି ପରି ପଡ଼ିରହିଛି । ତାର ଶେଷ ସୁଗନ୍ଧକୁ ନେଇ ସେ କେବଳ ବଞ୍ଚିରହିଛନ୍ତି ଆସନ୍ତା ସୂର୍ଯ୍ୟାଲୋକ ପାଇଁ ।

ରାଜବନ୍ଦୀ ସେ । ସ୍ୱତନ୍ତ୍ର ସୁବିଧା ସୁଯୋଗ ଉପଭୋଗ କରିବା ପାଇଁ ହକଦାର । କିନ୍ତୁ ତାଙ୍କ ପାଇଁ ସେସବୁର ଦ୍ୱାର ବନ୍ଦ । ଗୋଟିଏ ସନ୍ତସନ୍ତିଆ ଅସ୍ୱାସ୍ଥ୍ୟକର କୋଠରୀ ମିଳିଛି ତାଙ୍କୁ । ଝରକା କହିଲେ ହାଣ୍ଡିମୁହଁ ପରି ଗୋଲକାର

ଏକ ସୁଡ଼ଙ୍ଗ ପଥ । ଦିନରେ ଦୁଇଥର ପତ୍ରମାଛ ସହିତ ପୋକଲଗା ଚାଉଳର ଭାତ ଖାଇବାକୁ ଦିଆଯାଏ । ସପ୍ତାହରେ ମାତ୍ର ଦୁଇଥର ସେ ଭଲ ଭାତ ଖାଇବାକୁ ପାଉଥିଲେ । ପ୍ରତିଦିନ କେବଳ ପନ୍ଦର ମିନିଟ ପାଇଁ ଅନ୍ୟ କଏଦୀମାନଙ୍କ ସହିତ ବାହାରେ ବୁଲିବାକୁ ଯାଆନ୍ତି । ପନ୍ଦର ମିନିଟ ସ୍ୱଳ୍ପ ସମୟ ହେଲେ ମଧ୍ୟ ବାହାର ଦୁନିଆ ସହିତ ଏହି ମିଳନ ତାଙ୍କୁ ସାମୟିକ ମୁଗ୍ଧ କରି ରଖେ । ମଣିଷର କଣ୍ଠସ୍ୱର, ମଣିଷର ମୁହଁ ଏବଂ ସର୍ବୋପରି ମୁଣ୍ଡ ଉପରେ ଥିବା ଅନନ୍ତ ନୀଳ ଆକାଶ ତାଙ୍କୁ ଆନ୍ତରିକ ଆଶାବାଦୀ କରି ପକାଏ । ପନ୍ଦର ମିନିଟ ପରେ ପୁଣି ସେଇ ନିର୍ଜନ କାରାକୋଠରି । ନିବିଡ଼ ଅନ୍ଧକାର । ଏହି କୋଠରିରେ ଖାଇବା, ପିଇବା, ଝାଡ଼ା, ପରିସ୍ରା, ଶୋଇବା ଆଦି ବନ୍ଦୀ ଜୀବନର ନିତିଦିନିଆ ଘଟଣା । ଦିଆଲ ମଝିରେ ଥିବା ଛୋଟ ଛୋଟ ଜାଲା ଦେଇ ଭାରତୀୟ ପ୍ରହରୀମାନେ ମଝିରେ ମଝିରେ ଚାହିଁ-ଦେଇ ଯାଆନ୍ତି । ବନ୍ଦୀ ଜୀବନ୍ତ ନାଁ ମୃତ, ନାଁ ପଳାତକ ।

ଏହି ଅନ୍ଧାରି କାରାମୁହୂର୍ତ୍ତଗୁଡ଼ିକରେ ମନେ ପଡ଼େ ଛାଡ଼ି ଆସିଥିବା ଅତୀତ । ନିଜର ଭୁଲ ଭ୍ରାନ୍ତି ବିଶ୍ଳେଷଣ କରିବା ପାଇଁ ପର୍ଯ୍ୟାପ୍ତ ସମୟ । ନିଦ ମାଡ଼ିଲେ ଛାତର କଡ଼ିଗଣା । ଆଉ ଧନ୍ଦା କିଛି ନ ଥାଏ । ଆଲୁଅର ପ୍ରଶ୍ନ ତ ଉଠି ପାରେନା । ମୁହଁ ଅନ୍ଧାରି କୋଠରି ମଧ୍ୟକୁ ଛୋଟ ଜାଲିଣା ଦେଇ ଯେଉଁ ଆଲୋକ ଟିକେ ପଶି ଆସି ଆଲୋକିତ କରି ଦେଇ ଯାଏ, ତାକୁ ଦେଖିଲେ ମନେହୁଏ ସତେ ଯେପରି କେଉଁ ବିଷର୍ଣ୍ଣ-ବେଦନାସିକ୍ତ ମଣିଷର ଆଖି ଦୁଇଟି ।

ନୀରସ, ଦୁଃଖଦଗ୍ଧ କାରା ଦିନଗୁଡ଼ିକରେ ହୋ' ଜାଣିଲେ, ଇଣ୍ଡୋଚୀନରେ ଥିବା ଫରାସୀ ଗୁଇନ୍ଦା ପୋଲିସମାନେ ବ୍ରିଟିଶ ଗୁଇନ୍ଦା ବିଭାଗକୁ ସମସ୍ତ ପ୍ରୟୋଜନୀୟ ତଥ୍ୟ ସରବରାହ କରୁଛନ୍ତି । ସେଥିମଧ୍ୟରୁ କିଛିଟା ଠିକ୍ ଥିଲା ନିଶ୍ଚୟ: କିନ୍ତୁ ଅଧିକାଂଶ ଥିଲା ସମ୍ପୂର୍ଣ୍ଣ ମିଥ୍ୟା ଏବଂ କପୋଳକଳ୍ପିତ । ଅଳ୍ପ କେତେଦିନ ପରେ ଜଣା-ପଡ଼ିଲା ଯେଉଁମାନେ ବନ୍ଦୀ ହୋଇ ଆସିଥିଲେ ସେ ସମସ୍ତଙ୍କୁ ଚିୟାଂ-କାଇ-ସେକ୍ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିଛି । ସେମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ନିର୍ଦ୍ଦୋଷ ନିରପରାଧ, ଯେଉଁମାନେ କି ଦଣ୍ଡିତ ହେବା ଭଳି କୌଣସି ଦୋଷ କରି ନାହାନ୍ତି । ହୁଏତ ବ୍ରିଟିଶ ଇଲାକାରୁ ସେମାନଙ୍କୁ ବାହାର କରିହୋଇ ପାରି ଥାଆନ୍ତା । କିନ୍ତୁ ସେ ସମସ୍ତେ କୋମିଂଟାଙ୍ଗ ଜଲ୍ଲାଦର କରକବଳିତ ।

ହୋ'ଙ୍କ ପାଇଁ ଏହି ଦିନ ବହୁତ ଆଗରୁ ଅପେକ୍ଷା କରି ରହିଥିଲା । କିନ୍ତୁ ଲୋଜେବି ନାମକ ଜଣେ ଇଂରେଜ ଆଇନଜୀବୀ ତାଙ୍କର ଏହି ଦୁର୍ଭାଗ୍ୟକୁ ନିଜ

ହାତରେ ବଦଳାଇ ଦେଇଥିଲେ । ହୋ'ଙ୍କ ପାଖରେ ଠିଆ ହୋଇ ସେ ନିଜର ସମସ୍ତ ପେଶାଗତ ଦକ୍ଷତା ବଳରେ ସାକ୍ଷାତ ଯମଦଣ୍ଡରୁ ଫେରାଇ ଆଣିଲେ ।

ଲେଜେବଙ୍କ ପରି ଜଣେ ମାନବବାଦୀ ଇଂରେଜ ଆଇନଜୀବୀର ଆଦର୍ଶଗତ ଲଢ଼ାଇ ପାଇଁ ଏ ମଣିଷଜାତି ଚିରକୃତଜ୍ଞ ରହିବ । ଆଇନର ସୂକ୍ଷ୍ମଛିଦ୍ରକୁ ଲେଜେବଙ୍କୁ ଅପସାରିତ କରିବା ପାଇଁ ହଂକଂର କର୍ତ୍ତୃପକ୍ଷ ଯେ ଚେଷ୍ଟା ନ କରିଛି ତା ନୁହେଁ; କିନ୍ତୁ ଫଳତଃ କୌଣସି କାର୍ଯ୍ୟ ହୋଇପାରିଲା ନାହିଁ । ଲେଜେବ ନିଜ ପକ୍ଷ ସମର୍ଥନ କରି ସ୍ପଷ୍ଟ ଘୋଷଣା କଲେ—"ଏକଦା ସନାଦୃତ ସେନଙ୍କୁ ରକ୍ଷା କରିଥିଲେ ଜଣେ ଇଂରେଜ, ଆଉ ଆଜି ମୁଁ ସେହି ଇଂରେଜ ଜାତିର ପରମ୍ପରା ରକ୍ଷା କରି ଆପଣଙ୍କୁ ରକ୍ଷା କରିବା ପାଇଁ ଠିଆ ହୋଇଛି ଅଦାଲତ ସାମନାରେ । ଆପଣଙ୍କ ପକ୍ଷ ସମର୍ଥନ କରିବା ପାଇଁ ସର୍ବନିମ୍ନ ଯାହା ଦରକାର, ତାହାଛଡ଼ା ମୁଁ ଅଧିକ କିଛି ଜାଣିବାକୁ ଚାହୁଁ ନାହିଁ । ମୁଁ ଭଲଭାବରେ ଜାଣେ ପ୍ରତ୍ୟେକ ବିପ୍ଳବୀର କିଛି ନା କିଛି ଗୋପନ କାହାଣୀ ରହିଛି ।"

ହଂକଂର ସୁପ୍ରିମ କୋର୍ଟରେ ଏହି ଅଭିଯୋଗର ବିଚାର ଚାଲିଲା । ଲେଜେବ ହେଲେ ହୋ'ଙ୍କର ଓକିଲ । ହଂକଂ ସୁପ୍ରିମ କୋର୍ଟ ପାଇଁ ଏ ଥିଲା ପ୍ରଥମ ରାଜନୈତିକ ମାମଲା । ତା' ଛଡ଼ା ଏହାର ଚରିତ୍ର ମଧ୍ୟ ଥିଲା ସ୍ୱତନ୍ତ୍ର ।

ବିଚାର ଆରମ୍ଭ ଦିନ । ସୁପ୍ରିମ କୋର୍ଟର କାଠଘେରା ମଧ୍ୟରେ ନୁଏନ-ଅଇ-କୋକ୍ ବା ହୋ' ସଶସ୍ତ୍ର ଜମୁଆଳୀ ଘେର ମଧ୍ୟରେ ବନ୍ଦୀ । ବାହାରେ ଓ ଭିତରେ ବ୍ରିଟିଶ, ଫରାସୀ ଗୋଇନ୍ଦା ପୋଲିସଙ୍କର ଯାତାୟତ ଚାଲିଛି । କର୍ତ୍ତୃପକ୍ଷଙ୍କ ମନରେ ପ୍ରବଳ ଭୟ "ପୋଲିସ ଆଖିରେ ଧୂଳି ଦେଇ କଏଦୀ ପଳାଇ ଯାଇପାରେ ।" ଅଦାଲତ କକ୍ଷରେ ବାହାର ଜନତାର ପ୍ରବେଶ ନିଷେଧ । ସେଠାରେ ଜରୁରୀ ଅବସ୍ଥା ସେ ଦିନକ ପାଇଁ ଜାରି ହୋଇଛି । ସରକାରୀ ପୋଲିସ, ସରକାରୀ ଓକିଲ, ବିଚାରପତିଙ୍କ ବ୍ୟତୀତ ଅନ୍ୟମାନଙ୍କର ସ୍ଥାନ ନାହିଁ ସେଠାରେ । ଚାରିଆଡ଼େ ଲୁହାଶିକୁଳିଘେରା କୃତ୍ରିମ କାରାଗାରର ପ୍ରାଚୀର । ବ୍ରିଟିଶ ସମ୍ବାଦଦାତା ମାନେ ସବୁବେଳେ ଜାଗିଥାଆନ୍ତି ପ୍ରେସକୁ ତାଜା ଖବର ଜଣାଇବା ପାଇଁ । ବିଚାର ଆରମ୍ଭ ହୋଇଯାଇଛି ।

ଅଦାଲତରେ କଥା କହିବାର ଅଧିକାର ଅଉ କାହାର ନାହିଁ । ମାତ୍ର ଚାରିଜଣଙ୍କ ବ୍ୟତୀତ—ବିଚାରପତି, ଉପ-ବିଚାରପତି, ସରକାରୀ ଓକିଲ ଏବଂ ଅସାମୀ ପକ୍ଷର ଓକିଲ । ହୋ'ଙ୍କର ଓକିଲ ଲେଜେବଙ୍କ ବ୍ୟତୀତ ତାଙ୍କ ପାଇଁ ମୁହଁ ଖୋଲିବାକୁ ଦ୍ୱିତୀୟ ବ୍ୟକ୍ତି କେହି ନାହିଁ, ଏପରି କି ଆସାମୀ ମଧ୍ୟ ନୁହେଁ ।

ଦିନେ ଅଧେ ନୁହେଁ । ଦୀର୍ଘ ଏକମାସ ଧରି ମାମଲା ଚାଲିଲା । ପ୍ରତିଥର ହୋ'ଙ୍କ ବିରୁଦ୍ଧରେ ଥିବା ଅଭିଯୋଗ ଖାରଜ ହୋଇଯାଉଥାଏ । ଏସବୁ ସତ୍ତ୍ୱେ ଆଦେଶ ହେଲା ହୋ'ଙ୍କୁ ସ୍ୱତନ୍ତ୍ର ଜାହାଜ ଯୋଗେ ହଂକଂର ସୀମା ବାହାରକୁ ନେଇ ଯିବା ପାଇଁ । ଏହା ପଛରେ ଏକମାତ୍ର ଉଦ୍ଦେଶ୍ୟ ଥିଲା, ହଂକଂରୁ ନେଇ ଫରାସୀ ଉପନିବେଶୀ ପୋଲିସ ହାତରେ ସମର୍ପି ଦେବା । ଜନସାଧାରଣଙ୍କୁ ଧୋକ୍କା ଦେବା ପାଇଁ ହିଁ ଅଦାଲତ ମୁକ୍ଦର ଖେଳ ଖେଳିଥିଲା ।

ହଂକଂ ସୁପ୍ରିମ କୋର୍ଟର ଏହି ନିଷ୍ପତ୍ତି ବିରୁଦ୍ଧରେ ହୋ' ଲଣ୍ଡନ ପ୍ରିଭି-କାଉନସିଲ୍‌ଙ୍କୁ ଆବେଦନ କଲେ । ସେତେବେଳକୁ ବାହାର ଦୁନିଆ ଜାଣିଥାଏ, ହୋ' କାରାଗାରରେ ବନ୍ଦୀ । 'ଉପନିବେଶବାଦ ବିରୁଦ୍ଧରେ ଭିଏତନାମ ସ୍ୱାଧୀନତା ଲିଗ୍' ତରଫରୁ ହୋ'ଙ୍କର ମୁକ୍ତିଦାବୀ କରି ପ୍ରତିବାଦ ଜଣାଇଲେ ବ୍ରିଟିଶ ସରକାରଙ୍କ ନିକଟରେ । "ଆନ୍ତର୍ଜାତିକ ଲାଲ-ସାହାଯ୍ୟ ବାହିନୀ" ବାରିଷ୍ଟର ଲୋଜେବିଙ୍କୁ ପ୍ରଚୁର ଅର୍ଥଦାନ କରିଥିଲା ଏହି କାର୍ଯ୍ୟରେ । ବ୍ରିଟିଶ ଶ୍ରମିକ ସଂଗଠନର ଅନୁମୋଦନ କ୍ରମେ ବାମପନ୍ଥୀ ଶ୍ରମିକ ଦଳର ନେତା ଷ୍ଟାଫୋର୍ଡ଼ କ୍ରିପ୍‌ସ ହୋ'ଙ୍କର ପକ୍ଷ ନେଇ ଲଢ଼ିଲେ । ଲଣ୍ଡନ ଦରବାରରେ ଶୁଣାଣି ଚାଲିଥିଲା ବେଳେ ହୋ' ଗୁରୁତର ଅସୁସ୍ଥ ହୋଇ ହଂକଂ ସରକାରୀ ଚିକିତ୍ସାଳୟକୁ ସ୍ଥାନାନ୍ତରିତ ହେଲେ ।

ସେଠାରେ ଜଣାପଡ଼ିଲା ହୋ' ଉତ୍କଟ ଯକ୍ଷ୍ମାରୋଗ ଆକ୍ରାନ୍ତ । ଚିକିତ୍ସା ବିଜ୍ଞାନର ଅଗ୍ରଗତି ଯାହା, ସେଥିରେ ହୋ'ଙ୍କର ବ୍ୟାଧି ଭଲ ହୋଇ ପାରିଲା ନାହିଁ । ବହୁତ ଦିନ ଧରି ସେ କ୍ଷୟରୋଗରେ ପଡ଼ିରହିଲେ । ସ୍ୱାସ୍ଥ୍ୟ ଦିନକୁ ଦିନ ଭାଙ୍ଗି ପଡ଼ିଲା ।

କଡ଼ା ପ୍ରହରୀ ମଧ୍ୟରେ ହାସପାତାଲର ଦରଜା ବନ୍ଦ । ଆଗରେ ଝୁଲୁଛି ବଡ଼ ବଡ଼ ତାଲା । ପୂର୍ବାପେକ୍ଷା ଅଧିକ ଶକ୍ତ ଏବଂ ସଚେତନ । ତାରଜାଲି ଦେଇ ରୁଗ୍ଣ ବନ୍ଦୀର କୋଠରୀକୁ ବାୟୁରୁଦ୍ଧ କରି ଦିଆଗଲା । ତଳେ, ଉପରେ ସବୁଠି ଅନ୍ଧାରର ରାଜୁତି । ନିଜକୁ ନିଜେ ଦେଖି ହେଉନାହିଁ । ଖର ନିଃଶ୍ୱାସରେ ଉପସ୍ଥିତ କେବଳ ଚେତାଇ ଦେଉଛି ବନ୍ଦୀ ଜୀବନର ଶେଷଦିନଗୁଡ଼ିକ । କୋଠରୀ ବାହାରେ ଓ ଭିତରେ ଦୁଇଜଣ ଲେଖାଏଁ ସଶସ୍ତ୍ର ଜଗୁଆଳୀ । ଆସନ୍ନ ମୃତ୍ୟୁର ଦ୍ୱାରଦେଶରେ ଗୁଏନ ବିପ୍ଳବୀ ଆତ୍ମାର ସର୍ବୋତ୍ତମ ଗୌରବମୟ ମୃତ୍ୟୁ ପାଇଁ ଅପେକ୍ଷା କରି ବସିଛନ୍ତି ।

କ୍ରିପସଙ୍କ କୌଶଳ ଓ କଲ୍ୟାଣ ଯୋଗୁଁ ଗୁଏନ ବିନାଦୋଷରେ ଖଲାସ ହେଲେ । ପ୍ରଥମତଃ ରୁଷ ଗୁପ୍ତଚର ହୋଲ ତାଙ୍କ ବିରୁଦ୍ଧରେ କୌଣସି ପ୍ରମାଣ ନାହିଁ । ଦ୍ୱିତୀୟତଃ ଫରାସୀ ସାମ୍ରାଜ୍ୟବାଦର ଧ୍ୱଂସ ପାଇଁ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ,

ତା' ବିରୁଦ୍ଧରେ ମଧ୍ୟ କୌଣସି ପ୍ରମାଣ ଯୋଗାଇ ଦିଆଯାଇ ପାରିଲା ନାହିଁ । ତୃତୀୟତଃ କମ୍ୟୁନିଷ୍ଟ ବା ଜାତିସ୍ୱତନ୍ତ୍ରାବାଦୀ ହେବା ଇଂରେଜ ଆଇନାନୁଯାୟୀ କୌଣସି ପ୍ରକାର ଦଣ୍ଡନୀୟ ନୁହେଁ ।

ଆଇନ ଆଗରେ ସୁଏନ ବିଜୟୀ । କିନ୍ତୁ ସିଏ ବା କୁଆଡ଼େ ? ତାଙ୍କର ସମସ୍ତ ଗତିବିଧି ଯେ ଫରାସୀ ଓ ଚ୍ୟାଂକାଇସେକ୍‌ଙ୍କର ଶ୍ୟେନଦୃଷ୍ଟିରେ ପଡ଼ିଛି !! ସୁବିଧା ପାଇଲେ ଛଞ୍ଚାଣ ପରି ଝାମ୍ପ ଦେବାକୁ ପଛାଇବେ ନାହିଁ ସେମାନେ ।

ଗ୍ରେଟବ୍ରିଟେନ ଯିବା ନିମନ୍ତେ ସୁଏନ ଭିସା ପାଇଁ ଦରଖାସ୍ତ କଲେ । ସରକାରଙ୍କ ଆଦେଶନାମା ପାଇବାରେ ବିଳମ୍ବ ଦେଖି ଦିନେ ଗୋପନରେ ଲଣ୍ଡନଗାମୀ ଜାହାଜ ମଧ୍ୟରେ ବସିପଡ଼ିଲେ । ଯାତ୍ରାପଥ ସୁଗମ ନ ଥିଲା । ସିଙ୍ଗାପୁରଠାରେ ଧରାହୋଇ ହଂକଂ ପୋଲିସ ହାତରେ ପଡ଼ିଲେ । "ବିନାଅନୁମତିରେ ଉପନିବେଶ ମଧ୍ୟରେ ପ୍ରବେଶ" ଅଭିଯୋଗରେ ହଂକଂ କେନ୍ଦ୍ର ଜେଲରେ ତାଙ୍କୁ ଭର୍ତ୍ତି କରି ଦିଆଗଲା । ପୁଣି ସେହି କାରାଦିନର କଳାବାଦଲଗୁଡ଼ିକ ଘନେଇ ଆସିଲା ତାଙ୍କ ମୁଣ୍ଡ ଉପରେ ।

ହଂକଂ କେନ୍ଦ୍ର ଜେଲ୍ । ବନ୍ଦୀଶାଳାର ଅବରୁଦ୍ଧ କୋଠରୀରୁ ହୋ' ବାହାରି ପରି ଚାହିଁ ରହିଛନ୍ତି ବାହାରକୁ । ଗ୍ରୀଷ୍ମ ଶେଷର ବର୍ଷାକୁ ଚାହିଁ ଚାହିଁ ଆଖିରୁ ପାଣି ମରି ଗଲଣି । ବର୍ଷାରାତିର ନମ୍ର 'ଧାରାପାତରେ ପାଣି ସହ ମିଶି ବାହାରେ ବୋହିଯିବା ପାଇଁ ଇଚ୍ଛା । ହାତରେ ଲୁହାର ଶିକୁଳି, ବେକରେ କଡ଼କାଠର ଭାରି ବୋଝ । ପଳାଇଯିବାର ରାସ୍ତା ଚାରିପଟରୁ ବନ୍ଦ । ନିକଟ ଅତୀତରେ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତି ପାଇଛନ୍ତି ସେ । ଶରୀରରେ ପୂର୍ବ-ଅବସ୍ଥା ଫେରି ଆସିନାହିଁ । ସେହି ଅବସ୍ଥାରେ ପୋଲିସ, ପହରାଦାର ମାନଙ୍କର ଅତ୍ୟାଚାର ବଢ଼ିଚାଲିଛି ଦିନକୁ ଦିନ । ସମ୍ଭାଳି ପାରୁନାହାନ୍ତି ସେ ଆଉ । ବେଦନାକାତର ଆଖିକୋଣରେ ଜମାଟବନ୍ଧା ଲୁହ ପଥ ଖୋଜୁଛି ଗଡ଼ିଯିବା ପାଇଁ । ବାପା, ମା, ଘରଦ୍ୱାର, ଗାଁଗଣ୍ଡା ମନେ ପଡ଼ୁଛି ଗୋଟିକ ପରେ ଗୋଟିଏ । ଭାଇ, ଭଉଣୀ ସମସ୍ତେ ଆଜି ତାଙ୍କଠାରୁ ଦୂରରେ । ଏତେବଡ଼ ଦୁନିଆରେ ସେ ଏକା । ଯୌବନର ତେଜ ପଦ୍ଧତି ହସ୍ତର ଗ୍ରାଇ ପରି ଖଦ୍ ଦ୍ରୁତଗତିରେ ମାଡ଼ି-ଯାଉଛି ପଛକୁ । ଚାଳିଶ ବର୍ଷ ପାର ହୋଇଗଲଣି ତାଙ୍କୁ । କାରାଗାରରେ ରହି ଅବଶିଷ୍ଟ ବୟସକୁ ପାରିଦେବା ତାଙ୍କ ପକ୍ଷରେ ଅସହ୍ୟ ।

ଏଥର ମଧ୍ୟ ଲୋକେଇ ତାଙ୍କ ପକ୍ଷରେ ଠିଆ ହେଲେ । ସେ ଦେଖିଲେ ଆଇନର ଦ୍ୱାରସ୍ଥ ହୋଇ ବିଚାର ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଲେ ଅନ୍ୟାନ୍ୟ ଯୋଜନା ସବୁ ପଛେଇ ଯାଇପାରେ । କାରଣ ବ୍ରିଟିଶ ପୋଲିସ ସହିତ

ଫରାସୀ ଗୋଇନ୍ଦାମାନେ ମିଳିତ ହୋଇ ହୋ'ଙ୍କ ବିରୁଦ୍ଧରେ ଠିଆ ହୋଇଛନ୍ତି । ସେମାନଙ୍କର ପ୍ରାଣାନ୍ତକ ଚେଷ୍ଟା ହୋ'ଙ୍କୁ ମୃତ ଅବସ୍ଥାରେ ବନ୍ଦୀକକ୍ଷରେ ଦେଖିବେ । ଲେକେବ ଦେଖିଲେ ହୋ'ଙ୍କ ଜୀବନ ଘୋର ସଙ୍କଟର ସମ୍ମୁଖୀନ । ବନ୍ଦୀରରେ ହୁଏତ ସେ ନ୍ୟାୟ ପାଇ ନ ପାରନ୍ତି । ତେଣୁ ସେ ଓ ତାଙ୍କ ସ୍ତ୍ରୀଙ୍କ ସହାୟତାରେ ହୋ' କାରାକକ୍ଷରୁ ପଳାୟନ କଲେ । ଲେକେବ ଦ୍ୱାରରକ୍ଷୀମାନଙ୍କୁ ହାତ କରି ସାରିଥିଲେ ।

ପଳାୟନର ପଥ ଏତେ ସୁଦୃଢ଼ ଥିଲା ଯେ ଦୁର୍ଦ୍ଧର୍ଷ ବ୍ରିଟିଶ ପୋଲିସ ତାର ଟେର ପାଇଲେ ନାହିଁ । କଡ଼ା ପହରା ମଧ୍ୟରେ ହୋ'ଙ୍କୁ ସେମାନେ ହନଗ୍ରଡ ଆଗରୁ ଜଗିଥିଲେ ପରା !!

ଧନୀ ଚୀନା ବ୍ୟବସାୟୀର ଛଦ୍ମବେଶରେ ହୋ' କାଣ୍ଟୋନଠାରୁ ବାହାରି ଆସିଲେ । ବାହାରେ ଅପେକ୍ଷା କରିଥିଲେ ଲେକେବ ଏବଂ ତାଙ୍କର ସହଧର୍ମିଣୀ । ଚୀନରେ ଥିବା ଲେକେବଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ସେ ସାକ୍ଷାତ କରିବା ପାଇଁ ଅନୁମତି ପତ୍ର ନେଇ ଗାଢ଼ ଅନ୍ଧକାର ମଧ୍ୟରେ ହୋ' ହଂକଂର ରାଜରାସ୍ତା ପାରି ହୋଇଗଲେ । ଚୀନରେ ପହଞ୍ଚିବା ପରେ ଲେକେବଙ୍କ ବନ୍ଧୁ ଆତ୍ମଗୋପନ ଦିଗରେ ଅନେକ ସାହାଯ୍ୟ କରିଛନ୍ତି । ଧନୀଲୋକର ଆଦବ କାଇଦା ନେଇ ସେ କିଛିଦିନ ସେଠାରେ କଟାଇ ଦେଲେ । ଭାଙ୍ଗି ଯାଇଥିବା ସ୍ୱାସ୍ଥ୍ୟ ତାଙ୍କର ଫେରି ଆସିଲା । ଛିଡ଼ି ଯାଇଥିବା ଯୋଗସୂତ୍ରଗୁଡ଼ିକ ଯୋଡ଼ି ହୋଇଗଲା ଆପେ ଆପେ । ଚୀନରେ ଛଦ୍ମବେଶରେ ବେଶୀଦିନ ରହିବା ସମ୍ଭବ ନୁହେଁ ଜାଣି ତେଣେ ସେ ମସ୍କୋ ଟ୍ରେନରେ ବସିପଡ଼ିଲେ ।



## ୧୨

## ଫାସିବାଦ-ବିରୋଧୀ ସଂଗ୍ରାମର ପ୍ରଥମ ପର୍ବ— ଭିଏତମିନ୍ ବାହିନୀ ଗଠନ

୧୯୩୨ ମସିହା ଜୁଲାଇ ମାସ । ହୋ' ହଂକଂ ଜେଲରୁ ଗୋପନରେ ପଳାୟନ କରିଛନ୍ତି । ହଂକଂରେ ଥିବା ବ୍ରିଟିଶ ଗୋଇନ୍ଦା ବିଭାଗ ସମେତ ଫରାସୀ ତଥା କୋମିଂଟାଙ୍ଗ ଗୁପ୍ତ ପୋଲିସ ବାହିନୀ ଏହି ଘଟଣାରେ ମର୍ମାହତ । ହୋ'ଙ୍କ ପରି ଜଣେ ରୁଗ୍ଣ, କ୍ଷୀଣାକୃତି ପ୍ରୌଢ଼ ଯେ ଜେଲ କୋଠରୀର ପ୍ରାଚୀର ଡେଇଁ ଆତ୍ମଗୋପନ କରିବେ, ଏହି ସତ୍ୟକୁ ସେମାନେ ବିଶ୍ୱାସ କରିପାରୁ ନାହାନ୍ତି । ନିଜ ଅସାବଧାନତାଜନିତ ଅପରାଧକୁ ଘୋଡ଼ାଇବାକୁ ପାଇଁ ହୋ' ବ୍ରିଟିଶ ଗୁଇନ୍ଦା ବିଭାଗର ଜଣେ ତକମାପ୍ରାପ୍ତ ଏଜେଣ୍ଟ ଏପରି ଅପପ୍ରଚାରର ସାରା ଚୀନରେ ପ୍ରଚାରିତ ହୋଇଯାଇଛି । ଚୀନର ବଡ଼ ବଡ଼ ସହରମାନଙ୍କରେ କାନ୍ଥବାଡ଼ ଭର୍ତ୍ତି ହୋଇଯାଇଛି ତାଙ୍କ କୁତ୍ସା ରଟନାରେ । ପ୍ରାଚୀରପତ୍ରଠାରୁ ଆରମ୍ଭ କରି ପ୍ରଚାର ବାଣୀରେ ବନ୍ଦର-କୂଳିଆ ଅଞ୍ଚଳ ଭରପୂର । କାରଣ ସନ୍ଦେହ କରାଯାଉଥିଲା, ହୁଏତ ହୋ' ସମୁଦ୍ର-ତୀରବର୍ତ୍ତୀ ସ୍ଥାନମାନଙ୍କରେ ରହିଯାଇଥାଇ ପାରନ୍ତି । ଅନେକଙ୍କ ମନରେ ଦୃଢ଼ ଧାରଣା, ହୋ' ବ୍ୟାଙ୍କକ ଯାଇ ଇଂରେଜ ଗୁଇନ୍ଦା ସଂସ୍ଥାକୁ ସମ୍ବାଦ ସରବରାହ କରୁଛନ୍ତି । ଆଉ କେତେକ କହିଲେ—ସେ ବର୍ତ୍ତମାନ ମସ୍କୋରେ । ଏହିପରି ଅନେକ ମିଥ୍ୟା ପ୍ରଚାର ଚାଲିଲା ତାଙ୍କ ବିରୁଦ୍ଧରେ । କିନ୍ତୁ ଫରାସୀ ସରକାର ତରଫରୁ ନିଯୁକ୍ତ ମିଃ ଆରନକ୍ସଙ୍କ ପରି ଜଣେ ପ୍ରତିଷ୍ଠାବାନ ଗୁଇନ୍ଦା ଏହାର ଉତ୍ତରରେ କହିଲେ, "ମୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ଗୁଏନ୍‌ଙ୍କ ପଛରେ ଲାଗିରହିଛି । ତାଙ୍କପରି ଜଣେ ସଚ୍ଚୋଟ ନିଷ୍ଠାପର ବ୍ୟକ୍ତି ଯେ ବ୍ରିଟିଶ ସରକାରର ଦଲାଲି କରିବେ, ଏକଥା ଅନ୍ୟ କେହି ବିଶ୍ୱାସ କଲେ ମଧ୍ୟ ମୁଁ କରିପାରିବି ନାହିଁ । ଯଦି ତାହା ହୋଇପାରି ଥାଆନ୍ତା, ତେବେ ମୁଁ ତାଙ୍କଠାରୁ ଅନେକ ଗୋପନ ତଥ୍ୟ ଆଦାୟ କରିପାରି ଥାନ୍ତି । ମୁଁ ତେବେ ପଚାରିବା ପାଇଁ ସାହସ କରି ପାରିଲି ନାହିଁ କାହିଁକି ? ପୁଣି ଆଜି ୧୯୩୨ ମସିହାରେ ତାଙ୍କୁ ନେଇ ଏଇ ସନ୍ଦେହ ? ଏହା କେବେ ବି ସମ୍ଭବ ହୋଇ ନ ପାରେ । ଜୀବନର ଆଦ୍ୟଘଡ଼ିରୁ ସେ ଏପରି କାମ କେବେ କରି ନାହାନ୍ତି ।" ହୋ'ଙ୍କୁ ଘେନି ସେତେବେଳେ ବାଦ-ବିସମ୍ବାଦର ତୁମୁଳ ଝଡ଼, ଯେ ସେତେବେଳେ ସାଂଘାଇରେ ।

ସାଂଘାଇରେ ପ୍ରବଳ ରକ୍ତପାତ । କମ୍ୟୁନିଷ୍ଟମାନଙ୍କ ରକ୍ତରେ ଚିଆଙ୍ଗ-କାଇ-ସେକ୍‌ର ସର୍ବାଙ୍ଗ ଶରୀର ବୁଡ଼ିରହିଛି । ପାର୍ଟିର କୌଣସି କମ୍ରେଡ଼ ରାସ୍ତା ଉପରେ ଠିଆହୋଇ ଅନ୍ୟଜଣକୁ କଥା କହିପାରୁ ନାହିଁ । କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରାଯାଇଛି । ଟ୍ରେଡ ବଡ଼ ଅନେକ ସଙ୍ଗଠନ ଅର୍ଦ୍ଧମୃତ ଅବସ୍ଥାରେ । ଠିକ୍ ସେଦିନକବେଳେ ନୁଏନ୍ ସାଂଘାଇର ଜନପଥରେ ଘୂରି ବୁଲୁଛି ପୁରୁଣା ସାଥୀମାନଙ୍କ ଅନ୍ୱେଷଣରେ । ମାତ୍ର ଅଳ୍ପ କେତେଦିନ ତଳର କଥା, ସେ ସାଙ୍ଘାଇ ଛାଡ଼ିଥିଲେ । କେତେ ସାଥୀ, କେତେ ଅନ୍ତରଙ୍ଗ ବନ୍ଧୁ, କେତେ ବିଶ୍ୱସ୍ତ ସହକର୍ମୀ ଏଠାରେ ନ ଥିଲେ !! ଏହିଠାରୁ ଜନ୍ମନେଇଥିଲା ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ସ୍ୱପ୍ନ । ପୁଣି ଆଜି ସେ ଏଠିକୁ ଫେରି ଆସିଛନ୍ତି ଛାଡ଼ି ଯାଇଥିବା ସ୍ୱପ୍ନକୁ ବାସ୍ତବ କରିବା ପାଇଁ ; ଅପୂରଣ ରହିଯାଇଥିବା ଦାୟିତ୍ୱକୁ ପୂରଣ କରିବା ପାଇଁ । କାହାକୁ କେଉଁଠି ଭେଟିବେ ? ଆଗରୁ ଯେଉଁଠି ଅଫିସ ଥିଲା, ସେଠାକୁ ଗଲେ । ହେଲେ ରକ୍ତ-ନଦୀରେ ଚିହ୍ନ କାହିଁ ? କାନ୍ଥରେ ବାଜିଥିବା ଦା' ହାତୁଡ଼ିର ଛାପ କାହିଁ ? କମ୍ୟୁନିଷ୍ଟ ପାର୍ଟି ସହିତ ସମ୍ପର୍କ କିପରି ସ୍ଥାପନ କରିବେ ? ଭାଗ୍ୟକୁ ସେହିଦିନ ସନ୍ଧ୍ୟାକୁ ପାଲ-ଭାଇଲାଣ୍ଟ କୋଟେରିସେ ସାଂଘାଇରେ ଅବସ୍ଥାନ କରୁଥିଲେ । ତାଙ୍କ ସହିତ ସାକ୍ଷାତ୍ କରିବେ ସେ ଚୀନ କମ୍ୟୁନିଷ୍ଟ ପାର୍ଟି ସହିତ ଯୋଗାଯୋଗ ରକ୍ଷାକରିବା ଦିଗରେ ସଫଳ ହେଲେ । କିନ୍ତୁ ବେଶିଦିନ ସାଂଘାଇରେ ରହିବା ସମ୍ଭବ ହୋଇପାରିଲା ନାହିଁ । ସୋଭିଏତ ରୁଷ ଅଭିମୁଖେ ଯାତ୍ରା କରୁଥିବା ଜାହାଜରେ ସେ ଭ୍ଲାଡ଼ିଭଷ୍ଟକ ଯାତ୍ରାକଲେ । ସେଠାରୁ ମସ୍କୋ ।

ମସ୍କୋରେ ଥିବା ଲେନିନ୍ ବିଶ୍ୱବିଦ୍ୟାଳୟରେ 'ଲିନୋଭ' ନାମ ନେଇ ସେ ଜଣେ ପ୍ରବାସୀ ଛାତ୍ରଭାବେ ଭର୍ତ୍ତି ହେଲେ । ଏହି ବିଦ୍ୟାଳୟ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ ନ ଥିଲା । ବିଶ୍ୱର ବଡ଼ ବଡ଼ ବିପ୍ଳବୀମାନଙ୍କୁ ଯୋଗ୍ୟତା ଅନୁଯାୟୀ ପାର୍ଟିର ଉଚ୍ଚତମ ତାତ୍ତ୍ୱିକ ଶିକ୍ଷା ନିମନ୍ତେ ଏହାର ପ୍ରତିଷ୍ଠା । ସେଠାରୁ ତାଙ୍କର ଶିକ୍ଷା ଶେଷ କରି ହୋ' "କୋମିନଟର୍ଣ୍ଣର ଜାତୀୟ ଏବଂ ଉପନିବେଶ ସମସ୍ୟା ଗବେଷଣା କେନ୍ଦ୍ର"ରେ କାର୍ଯ୍ୟ କଲେ । ସେହିଠାରେ ଥିବା ସମୟରେ ସେ ମସ୍କୋରେ ଥିବା ଭିଏତନାମୀ ଛାତ୍ରମାନଙ୍କ ସମ୍ପର୍କରେ ଆସିଲେ । ସେମାନଙ୍କ ମଧ୍ୟରୁ ଅନେକ ଭିଏତନାମ ସ୍ୱାଧୀନତା ଆନ୍ଦୋଳନ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ହୋ'ଙ୍କ ସହିତ ଭାବ ଆଦାନ ପ୍ରଦାନ ଫଳରେ ଉଭୟଙ୍କର ଚିନ୍ତାରାଜ୍ୟ ପରିବ୍ୟାପ୍ତ ହେଲା ଏବଂ ପରସ୍ପରର ସାହାଯ୍ୟ ବିନିମୟ ଯୋଗୁଁ ଭାବୀ କର୍ମପନ୍ଥା ନିର୍ଦ୍ଧାରଣ ପାଇଁ ସୁଯୋଗ ମିଳିଲା । ହୋ ସେମାନଙ୍କୁ ପାର୍ଟିର ଶୃଙ୍ଖଳା, ଦାୟିତ୍ୱବୋଧ, ଏକତାଜ୍ଞାନ, ସାଂଗଠନିକ ଦକ୍ଷତା, ସର୍ବୋପରି ସର୍ବହରା ଆନ୍ତର୍ଜାତୀୟତା ସମ୍ବନ୍ଧରେ ସଚେତ

କରାଇଲେ । ନିଜ ଜୀବନର ଅତୀତର ଅନୁଭୂତି ସେମାନଙ୍କ ମନରେ ଗଭୀର ଛାପ ପକାଇଥିଲା ।

୧୯୩୫ ମସିହା ଜୁଲାଇ ମାସରେ କମ୍ୟୁନିଷ୍ଟ ଇଣ୍ଟରନ୍ୟାସନାଲର ସପ୍ତମ କଂଗ୍ରେସ ମସ୍କୋଠାରେ ବସିଲା । ଇଣ୍ଡୋଚିନ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିଭାବେ ଲେ ହଙ୍ଗ ଫଙ୍ଗ ଏହି ସମ୍ମିଳନୀକୁ ନିମନ୍ତ୍ରିତ ହୋଇଥିଲେ । ହୋ ସମ୍ମିଳନୀରେ ଜଣେ ପର୍ଯ୍ୟବେକ୍ଷକ ଭାବେ ଯୋଗ ଦେଇଥିଲେ । କୋମିନଟର୍ଣ୍ଣର ସର୍ବସମ୍ମତ ନିଷ୍ପତ୍ତି କ୍ରମେ ଲେ ହଙ୍ଗ ଫଙ୍ଗ ପାର୍ଟିର କେନ୍ଦ୍ରୀୟ କମିଟିକୁ ନିର୍ବାଚିତ ହେଲେ । କିନ୍ତୁ ୧୯୪୦ ମସିହାରେ ଦକ୍ଷିଣପୂର୍ବ ଏସିଆରୁ ସେ ଗିରଫ ହେଲେ । ପୋଲେ କେଣ୍ଡୋର ବନ୍ଦୀଶାଳାରେ ତାଙ୍କ ମୃତ୍ୟୁ ଘଟିଲା । ହୋ ମୃତ ବନ୍ଧୁଙ୍କର ଦାୟିତ୍ୱ ନିଜ ମୁଣ୍ଡରେ ବହନ କଲେ ।

ଇଣ୍ଡୋଚିନ କମ୍ୟୁନିଷ୍ଟ ପାର୍ଟି ନିର୍ଯ୍ୟାତକ କମ୍ୟୁନିଷ୍ଟ ଆନ୍ଦୋଳନର ଯଥାରୀତି ସଭ୍ୟପଦ ଗ୍ରହଣ କରିସାରିଥାଏ । ୧୯୩୭ ମସିହାର ଗ୍ରୀଷ୍ମାବକାଶରେ ମକାଓ ଠାରେ ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ସଭ୍ୟମାନଙ୍କୁ ନେଇ ଏକ ପୂର୍ଣ୍ଣାଙ୍ଗ ପ୍ଲେନମ୍ ଡକାଗଲା । କମ୍ରେଡ ଲେ ହଙ୍ଗ ଫଙ୍ଗ ଏହି ସଭାରେ ସଭାପତିତ୍ୱ କରି ବାହାରିଲେ । କିନ୍ତୁ ସେତେବେଳର ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦଙ୍କ ସହିତ ପ୍ରକାଶ୍ୟ ଦ୍ୱନ୍ଦ୍ୱ ଯୋଗୁଁ ସେ ଏବଂ ହୋ ସମ୍ମିଳନୀରେ ଉପସ୍ଥିତ ରହିଲେ ନାହିଁ । ସେମାନଙ୍କ ଅନୁପସ୍ଥିତିରେ ପାର୍ଟି ଯେଉଁ ନିଷ୍ପତ୍ତି ଗ୍ରହଣ କଲା ତାହା ହେଉଛି—

"ବିପ୍ଳବ ପାଇଁ ସମସ୍ତ ଓ ପରିବେଶ ବର୍ତ୍ତମାନ ଖୁବ୍ ଅନୁକୂଳ । କେବେ ହେଲେ ଭୁଲିବା ଉଚିତ ହେବ ନାହିଁ ଯେ— ଶ୍ରେଣୀ ସଂଗ୍ରାମର ଚୂଡାନ୍ତ ରୂପ ସଶସ୍ତ୍ର ବିଦ୍ରୋହ ବ୍ୟତିରେକ ଶୋଷଣକାରୀମାନଙ୍କୁ ବିନାଶ କରିବା ସମ୍ଭବ ନୁହେଁ । ୧୯୩୦-୩୧ ମସିହାରେ ଆମର ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ଆମେ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଛେ । ତାହା ପ୍ରମାଣିତ କରୁଛି ଯେ ଶ୍ରେଣୀ ସଂଗ୍ରାମ ସାହସିକତା ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସହ ସମାନ୍ତରାଳ ଗତିରେ ସଂଗଠିତ ଏବଂ କାର୍ଯ୍ୟକାରୀ ହେବା ଉଚିତ" ।

ହୋ ଏହି ମତର ବିରୋଧୀ ଥିଲେ ନିଶ୍ଚୟ । କାରଣ ସେ ଭିଏତନାମର ଜଳବାୟୁ, ବିଦ୍ରୋହୀ ପରମ୍ପରା, ବିଭେଦଗ୍ରସ୍ତ ଶ୍ରେଣୀ, ପରାଧୀନ ଜାତିର ଦୁର୍ବଳତା ସମ୍ବନ୍ଧରେ ସଚେତ ଥିଲେ । ତେଣୁ ଜାତୀୟ ସ୍ୱାଧୀନତା ହାସଲ ପାଇଁ ସେ ଉମିତ୍ରଭଙ୍କ ପରି ଗଣ ସାମ୍ମୁଖ୍ୟର ପରିକଳ୍ପନା କରିଥିଲେ । ପାର୍ଟି ନିଷ୍ପତ୍ତିର

ପୁନର୍ବିଚାର ପାଇଁ ମାତ୍ର ତିନିମାସ ପରେ ଆନ୍ତର୍ଜାତିକ ସମ୍ମିଳନୀ ବସିଲା । ସେଥିରେ ଉଗ୍ରଚରମବାଦକୁ ବିରୋଧ କରିଯାଇ ହୋ'ଙ୍କ ପ୍ରସ୍ତୁତ ପାର୍ଟି ଇସ୍ତାହାରର ନୂତନ ଚିଠା ତିଆରି ହେଲା ।

(୧) ଜାପାନୀମାନଙ୍କ ଫାନ୍ଦରେ ପାର୍ଟି ପଡ଼ିବ ନାହିଁ । ବର୍ତ୍ତମାନ (ଜାତୀୟ ସ୍ୱାଧୀନତା, ପାର୍ଲାମେଣ୍ଟ) ଅତ୍ୟଧିକ ଦାବୀ କରି ପାରିବ ନାହିଁ ।

ସାମୟିକ ଭାବେ ଗଣତାନ୍ତ୍ରିକ ଅଧିକାର ଦାବୀ କରିବା ହିଁ ଯୁକ୍ତିଯୁକ୍ତ । ସଂଗଠନର ସ୍ୱାଧିକାର, ସମାବେଶର ସ୍ୱାଧୀନତା, ସମ୍ବାଦପତ୍ରର ସ୍ୱାଧୀନତା, କଥା କହିବାର ସ୍ୱାଧୀନତା. ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଆଇନସଂଗତ ଭାବେ ପାର୍ଟିର କାର୍ଯ୍ୟକରିବାର ଅଧିକାର ପାଇଁ ଦାବୀ ହେବ ।

(୨) ଏହି ଲକ୍ଷ୍ୟ ହାସଲ କରିବାର ଉଦ୍ଦେଶ୍ୟ ନେଇ ଗଣସାମ୍ମୁଖ୍ୟ ଗଠନ କରିବା ଆମର ସର୍ବପ୍ରଧାନ କର୍ତ୍ତବ୍ୟ । ଗଣସାମ୍ମୁଖ୍ୟରେ କେବଳ ଯେ ଇଣ୍ଡୋଚୀନ ଅଧିବାସୀ ରହିବେ ତା ନୁହେଁ, ପ୍ରଗତିଶୀଳ ଫରାସୀ ମଧ୍ୟ । ଏହି ସାମ୍ମୁଖ୍ୟ ହିଁ ଶ୍ରମିକ ଓ ବୁର୍ଜ୍ଜୁଆ ଉଭୟ ଶ୍ରେଣୀକୁ ନେଇ କାର୍ଯ୍ୟ କରିବ ।

(୩) ବୁର୍ଜ୍ଜୁଆ ମାନଙ୍କ ସହିତ ସମ୍ପର୍କ ରଖିଥିବା ବେଳେ ପାର୍ଟି ସର୍ବଦା ରାଜନୈତିକ କୁଶଳତା ଓ ନମନୀୟତା ପ୍ରଦର୍ଶନ କରିବା ଉଚିତ । ସେମାନଙ୍କୁ ସାମ୍ମୁଖ୍ୟ ମଧ୍ୟକୁ ଆଣିବା ପାଇଁ ସର୍ବତୋଭାବେ ଚେଷ୍ଟା କରିବା ଉଚିତ । ଯେତେ ବେଶୀ ସମ୍ଭବ ହେବ ସେମାନଙ୍କୁ ସାମ୍ମୁଖ୍ୟ ପକ୍ଷଭୁକ୍ତ କରି ନେବା ପ୍ରୟୋଜନ । ଯେଉଁମାନେ ଆଜି ଦୋଳାୟମାନ ଅବସ୍ଥାରେ ଅଛନ୍ତି ସେମାନଙ୍କୁ ଗୋଷ୍ଠୀ ନିରପେକ୍ଷ କରିବା ଶ୍ରେୟସ୍କର । ଏ ସମସ୍ତ ଶକ୍ତିମାନେ ସାମ୍ମୁଖ୍ୟର ବାହାରେ ରହିବା ଉଚିତ୍ ନୁହେଁ ।

(୪) ଟ୍ରଟସ୍କିପନ୍ଥୀମାନଙ୍କ ସହିତ କୌଣସି ମୈତ୍ରୀ ସମ୍ପର୍କ ରହିବ ନାହିଁ । କୌଣସି ସୁବିଧା ସୁଯୋଗ ମଧ୍ୟ ନାହିଁ । ଫାସିଷ୍ଟବାଦୀ ଦୁର୍ବୃତ୍ତ ହିସାବରେ ସେମାନଙ୍କର ପ୍ରକୃତ ମୁଖା ଯେନ ତେନ ପ୍ରକାରେଣ ଖୋଲି ଦେବା ମଙ୍ଗଳ ହେବ ।

(୫) ନିଜର ଶକ୍ତିବୃଦ୍ଧି ପାଇଁ, ପ୍ରଭାବଶାଳୀ କ୍ଷେତ୍ର ପ୍ରସାରଣ ନିମନ୍ତେ ତଥା କାର୍ଯ୍ୟକ୍ରମକୁ ଫଳପ୍ରସୂ କରିବା ଦିଗରେ ଗଣତାନ୍ତ୍ରିକ ସାମ୍ମୁଖ୍ୟର 'ଫରାସୀ ଗଣ ସାମ୍ମୁଖ୍ୟ' ସହିତ ଘନିଷ୍ଠ ଯୋଗାଯୋଗ ବଜାୟ ରଖିବାକୁ ପଡ଼ିବ । ଏ ସାମ୍ମୁଖ୍ୟ ମଧ୍ୟ ସ୍ୱାଧୀନତା ଓ ଗଣତନ୍ତ୍ର ପାଇଁ ସଂଗ୍ରାମ ଚଳାଇଛି । ଆମକୁ ସେ ଯଥେଷ୍ଟ ସାହାଯ୍ୟ ଦେଇ ପାରିବ ।

(୬) ପାର୍ଟି ନିଜର କର୍ତ୍ତୃତ୍ୱ 'ଫଣ୍ଡ' ଉପରେ ଜାରି ରଖିପାରିବ ନାହିଁ । ଗୋଷ୍ଠୀବାଦୀ ମନୋଭାବ ଓ ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ବଦଳରେ ସଂଗ୍ରାମ ଅବ୍ୟାହତ ରହିବ । ମାର୍କସବାଦ-ଲେନିନ୍‌ବାଦକୁ ଗଭୀର ଅଧ୍ୟୟନ କରିବାକୁ ପଡ଼ିବ । ପାର୍ଟି ସଭ୍ୟ ଓ ବିଦ୍ରୋହୀ ଜଙ୍ଗୀ ମାନଙ୍କର ରାଜନୈତିକ ଚେତନାକୁ ବଢ଼ାଇବାକୁ ହେବ । ଫରାସୀ କମ୍ୟୁନିଷ୍ଟପାର୍ଟି ସହିତ ଘନିଷ୍ଠ ଯୋଗାଯୋଗ ରଖିବାକୁ ହିଁ ପଡ଼ିବ ।

ଇଣ୍ଡୋଚୀନ କମ୍ୟୁନିଷ୍ଟପାର୍ଟିର ସଭ୍ୟମାନେ ହୋ'ଙ୍କର ଏହି ପ୍ରସ୍ତାବକୁ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ସାରିବା ପରେ ଗ୍ରହଣ କରିବା ପାଇଁ ବାଧ୍ୟ ହେଲେ । ଲିଓନ୍ ବ୍ଲୁମଙ୍କ ନେତୃତ୍ୱରେ ଗୋଟିଏ ଅନୁସନ୍ଧାନ କମିଟି ଭିଏତନାମ ପଠାଗଲା, ବାସ୍ତବ ପରିସ୍ଥିତି ଅନୁଧ୍ୟାନ କରିବା ପାଇଁ । ସେତେବେଳେ ହୋ'ଙ୍କର ଅନେକ ସହକର୍ମୀ ଜେଲରେ ଥା'ନ୍ତି । ବ୍ଲୁମଙ୍କ ଉଦ୍ୟମ ବଳରେ ସେମାନେ ଜେଲରୁ ଖଲାସ ପାଇଲେ । ଫାମ୍-ଭାନ୍-ଡଙ୍ଗ ମୁକ୍ତ ଆସାମୀମାନଙ୍କ ମଧ୍ୟରୁ ଜଣେ । ଇଣ୍ଡୋଚୀନରେ କମ୍ୟୁନିଷ୍ଟପାର୍ଟି ଉପରୁ ନିଷେଧାଜ୍ଞା ଉଠିଗଲା । ଫଳରେ ପ୍ରକାଶ୍ୟରେ କମ୍ୟୁନିଷ୍ଟପାର୍ଟି କାର୍ଯ୍ୟ କରିବାକୁ ସୁଯୋଗ ପାଇଲା । ହୋ'ଙ୍କର ଅନୁପସ୍ଥିତିରେ ତାଙ୍କ ଅନୁସୃତ ରାଜନୈତିକ ପଦ୍ଧତି ଇଣ୍ଡୋଚୀନରେ କାର୍ଯ୍ୟକାରୀ ହେବାକୁ ଆରମ୍ଭ କଲା । ଶ୍ରମିକ, କୃଷକ, ବୁର୍ଜୁଆ ଶ୍ରେଣୀ ମିଶି ସ୍ୱାଧୀନତା ଆନ୍ଦୋଳନରେ ଭାଗନେଲେ । ଏହି ଆନ୍ଦୋଳନକୁ ସକ୍ରିୟ ଓ ଚେତନଶୀଳ ରଖିବା ପାଇଁ ଫାମ୍-ଭାନ୍-ଡୁଙ୍ଗଙ୍କ ସମ୍ପାଦନାରେ "ଲ ଭ୍ରେଲେଣ୍ଡେ ଇଣ୍ଡୋଚୀନ୍" ପତ୍ରିକା ପ୍ରକାଶ ପାଇଲା ।

ହୋ'ଙ୍କର ଗଣ ଆନ୍ଦୋଳନ ମୂର୍ତ୍ତି ରୂପ ନେଲା ୧୯୩୮ ମସିହା ମେ ପହିଲାରେ । ବିଶ୍ୱ ଶ୍ରମଜୀବୀ ଜନତାର 'ଶୁଭ ଜନ୍ମତିଥି' । ପରାଧୀନ ହାନୋଇର ବିପଣୀ ଦ୍ୱାରରେ ହଜାର ହଜାର ମେହେନତି ମଣିଷର ଭିଡ଼ । କମ୍ୟୁନିଷ୍ଟପାର୍ଟିର ରକ୍ତ ବୈଜୟନ୍ତୀ ତଳେ ମିଳିତ ହୋଇଛନ୍ତି ଇଣ୍ଡୋଚୀନର ଶ୍ରମିକ ଗଣ । ସେହିପରି ମେଳବାନ୍ଧି ଆସିଛନ୍ତି ସୋସିଆଲିଷ୍ଟ ପାର୍ଟିର ସଭ୍ୟମାନେ । ଉଭୟ ଦଳର ପତାକା ତଳେ ଏକଜୁଟ ହୋଇଛନ୍ତି ବିଭିନ୍ନ କଳକାରଖାନା, ଖଣିଖାଦାନ, କ୍ଷେତ ବାଡ଼ିର ମଜଦୁର । ଶହେ, ହଜାରେ ନୁହନ୍ତି । ଦଶ ହଜାରରୁ କୋଡ଼ିଏ ହଜାର ଯାଏ । ସେମାନେ କେବଳ ଇଣ୍ଡୋଚୀନ ଅଧିବାସୀ ନୁହନ୍ତି, ଅନେକ ଅଛନ୍ତି ଫରାସୀ ଶ୍ରମିକ । ପାର୍ଟିର ଏତାଦୃଶ ପ୍ରଭାବ ଓ ପ୍ରସାର ଦେଖି ଇଣ୍ଡୋଚୀନରେ ଅବସ୍ଥାପିତ ଫରାସୀ ଉପନିବେଶୀ ସରକାର ଆଉ ବେଶିଦିନ ବରଦାସ୍ତ କରି ପାରିଲେ ନାହିଁ । ସେତେବେଳେ ମହାନ୍ ଦୁର୍ଦ୍ଧର୍ଷ ସାମରିକ ଅବସରପ୍ରାପ୍ତ ସେନାଧ୍ୟକ୍ଷ

ଆଡ଼ମିରାଲ ଡ୍ୟକ୍ସ ଥାନ୍ତ ଭିଏତନାମ ଶାସନ ଦାୟିତ୍ୱରେ । ପାର୍ଟି ବେଆଇନ ହେଲା । ସଭ୍ୟମାନେ ଲୁଚିଛପି ଦେ ମୁଅଡ଼େ ଚାଲିଗଲେ ।

୧୯୩୯ ମସିହା । ଦ୍ୱିତୀୟ ବିଶ୍ୱ ମହାସମରର ଉଦ୍ୟୋଗ ପର୍ବ । ଫାମଭ୍ୟାନଡଙ୍ଗ, ଭୋ ଙ୍ଗୁଏନ ଗିଆପ ଏବଂ ଡାଙ୍ଗ ଜୁଆନ୍ ଖିଙ୍କ ପରି ଅତି ଚତୁର କମ୍ରେଡ଼ମାନେ ଚୀନ ପଳାଇଗଲେ । ଟ୍ରାନ୍ ଫୁ ଲିଭ, ଡିଙ୍ଗ ବାଡମାଇ ଆଦି ଗିରଫ ହୋଇ ଜେଲରେ ରହିଲେ । ପାର୍ଟି ବେସାହାରା ହୋଇ ପଡ଼ିଲା । ଉପଯୁକ୍ତ ନେତୃତ୍ୱର ଅଭାବରେ ଡ୍ୟକ୍ସଙ୍କ ଦମନନୀତି ଅବାରିତ ରହିଲା ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି ପାଇଁ ।

ହୋ' ଇଣ୍ଡୋଚୀନ କମ୍ୟୁନିଷ୍ଟପାର୍ଟିଠାରୁ କେବେ ବିଚ୍ଛିନ୍ନ ହୋଇ ନାହାନ୍ତି । ୧୯୩୯ରେ ପାର୍ଟିର ଏତାଦୃଶ ଦୁରବସ୍ଥା ଦେଖି ସେ ବିଚଳିତ ହୋଇ ପଡ଼ିଲେ । ସେହିବର୍ଷ ସେ ମସ୍କୋରୁ ଫେରିଲେ । ମସ୍କୋର ଉତ୍କଟ ହିମ ପ୍ରଭାବ ତାଙ୍କର ପୁରାତନ ବ୍ୟାଧିକୁ ଭଲ କରି ପାରିଲା ନାହିଁ । ତଥାପି ସେ ଇଣ୍ଡୋଚୀନ ପାଇଁ ଅତ୍ୟଧିକ ପରିଶ୍ରମ କରୁଥାଆନ୍ତି । ଦିନର ଅଧିକାଂଶ ସମୟ ଯାଉଥାଏ ପାର୍ଟି ପାଇଁ ଲେଖା ଲେଖିରେ । ସାଇଗନରେ ଥିବା ପାର୍ଟି ଅଫିସକୁ ନିୟମିତ ଛପା କାଗଜପତ୍ର ଆସୁଥାଏ । ଲିନ୍ ନାମରେ ହୋ' ଏସବୁ ଲେଖା ଲେଖୁଥାଆନ୍ତି ।

୧୯୩୯ ମସିହାରେ ଏସିଆ ମହାଦେଶର ଗୌରବ ଅସ୍ତମିତ ହେବାକୁ ଯାଉଛି । ଖବରକାଗଜ ଓ ଆକାଶବାଣୀରୁ ନିତ୍ୟ ପ୍ରଚାର ଚାଲିଥାଏ—ଜାପାନୀମାନଙ୍କର ରାଜ୍ୟ ପରେ ରାଜ୍ୟ ବିଜୟର ବାଣୀ । ଇଣ୍ଡୋଚୀନ ଓ ଫ୍ରାନ୍ସରେ ଥିବା 'ଗଣତାନ୍ତ୍ରିକ ସାମ୍ରାଜ୍ୟ' ନେତୃତ୍ୱ ବିହୀନ ହୋଇ ଏହି ମର୍ମନ୍ତୁଦ ଦୃଶ୍ୟକୁ ଉପଭୋଗ କରୁଥାଏ । ଜାପାନୀମାନେ ବିଶାଳ ଚୀନ ଖଣ୍ଡରେ ରାଜୁତି ପ୍ରତିଷ୍ଠା ପାଇଁ ଅଦମନୀୟ ଲୋଭ ନେଇ ବାହାରି ଥାଆନ୍ତି । କୃତଘ୍ନ ଚିଆଙ୍ଗ-କାଇ-ସେକ ନିଜର ସ୍ଥିତି ବିପଦ ସଙ୍କୁଳ ଜାଣି କମ୍ୟୁନିଷ୍ଟମାନଙ୍କର ଦ୍ୱାରସ୍ଥ ହୋଇଛି । ହୋ'ଙ୍କ ପାଇଁ ସୁବର୍ଣ୍ଣସୁଯୋଗ । କମ୍ୟୁନିଷ୍ଟମାନଙ୍କ ଉପରୁ ଚିଆଙ୍ଗ-କାଇ-ସେକ୍‌ର ଶ୍ୟେନ ଦୃଷ୍ଟି ହଟି ଯାଇଛି । ହୋ' ନିର୍ଭୟରେ ୟେନାନ୍ ଯାତ୍ରାକଲେ ।

କୋମିଣ୍ଟାଙ୍ଗ ସରକାରର ପତନ ଆସନ୍ନ ଦେଖି ଚିଆଙ୍ଗ-କାଇ-ସେକ୍ ଚୀନ କମ୍ୟୁନିଷ୍ଟପାର୍ଟିକୁ 'ଗରିଲା ବାହିନୀ' ଗଠନ ପାଇଁ ଅନୁମତି ଦେଲା । ସେତେବେଳେ ଅନେକ ତରୁଣ, ଯୁବକ, ବିଦ୍ରୋହୀ ଚୀନା ଏହି ଦେଶରକ୍ଷା ବାହିନୀରେ ଯୋଗ ଦେବା ପାଇଁ ଧାଇଁ ଆସିଲେ । ଫାସିଷ୍ଟମାନଙ୍କ କବଳରୁ ଆତ୍ମରକ୍ଷା ପାଇଁ ହୋ' ନିଜେ ମଧ୍ୟ ପଥ ବାଛିନେଲେ ।

୧୯୪୦ ମସିହା ଫେବୃୟାରୀ ମାସରେ ଦକ୍ଷିଣ ଚୀନର ଏକ ଅନାମଧେୟ ଅଞ୍ଚଳରେ ହୋ' ଭେଟିଲେ ତାଙ୍କର ଦୁଇ ବରିଷ୍ଠ ସହକର୍ମୀ ଫାମ୍ ଭାନ୍ ଡଙ୍ଗ ଏବଂ ଭୋ ନୁଏନ ଗିଆପଙ୍କୁ । ହଜିଯାଇଥିବା ଅମୂଲ୍ୟ ନିଧି ସେ ଫେରି ପାଇଲେ, ଯୁଦ୍ଧୋତ୍ତର ମଶାଣିରୁ ପ୍ରିୟଜନର ଅସ୍ଥି ଖୋଜି ପାଇଲା ପରି । ଫରାସୀ ଅତ୍ୟାଚାର ହାତରୁ ବର୍ତ୍ତି ପଳାୟନ କରିଥିବା ଇଣ୍ଡୋଚୀନ କମ୍ୟୁନିଷ୍ଟପାର୍ଟିର ଅନେକ ସଭ୍ୟ ଏକଜିତ ହୋଇଗଲେ ସେଠାରେ । ଫାମ-ଭାନ-ଡଙ୍ଗଙ୍କ ପରି ଆଜନ୍ମ ସଦାବ୍ରତ ବିପ୍ଳବୀ ଓ ଭୋ ନୁଏନ ଗିଆପଙ୍କ ପରି କୁଶଳୀ ରାଜନୀତଜ୍ଞଙ୍କୁ ପାଖରେ ପାଇଁ ମୃତ ଆଶା ପୁଣି ଜାଗି ଉଠିଲା ତାଙ୍କ ମନରେ । ୧୯୪୦ ଶେଷ ଭାଗକୁ ଚୀନ ସୀମାନ୍ତରେ 'ଇଣ୍ଡୋଚୀନ ସ୍ୱାଧୀନତା ବିପ୍ଳବୀ ସଙ୍ଘ' ଗଠିତ ହୋଇ ସାରିଥାଏ ।

୧୯୪୦ ମସିହା ଜୁନ୍ ମାସରେ ଜର୍ମାନ ଫାସିଷ୍ଟମାନେ ଫ୍ରାନ୍ସ ଆକ୍ରମଣ କଲେ । ଫରାସୀ ସରକାରର ପତନ ଘଟିଲା । ଇଣ୍ଡୋଚୀନ ଉପନିବେଶରେ ଥିବା ଫରାସୀ କର୍ତ୍ତୃତ୍ୱ ଆପେ ଆପେ ଭୁଶୁଡ଼ି ପଡ଼ିଲା । ଏସିଆ ମହାଦେଶରେ ଫାସିଷ୍ଟ ଜାପାନ ଭିଏତନାମ ଦଖଲ ପାଇଁ ମନ ବଳାଇଲେ । ହୋ' ଚୀନର କୋଲୁନ୍‌ଠାରେ ରହୁ ଥାଆନ୍ତି । ସେ ପାର୍ଟିର ସମସ୍ତ ସଭ୍ୟ ଓ ସମର୍ଥକଙ୍କୁ ନିର୍ଦ୍ଦେଶ ଦେଲେ ଦେଶକୁ ଫେରିଯିବା ପାଇଁ, ଫାସିଷ୍ଟ ଜଲ୍ଲାଦମାନଙ୍କ ହାତରୁ ଇଣ୍ଡୋଚୀନକୁ ରକ୍ଷା କରିବା ପାଇଁ । ଫାନ୍-ଭାନ୍-ଡଙ୍ଗ୍ ଏବଂ ଭୋ ନୁଏନ୍ ଗିଆପ ଚିଆଙ୍ଗ-କାଇ-ସେକ୍ ଗରିଲା ବାହିନୀରେ ଯୋଗ ଦେଇ ଆବଶ୍ୟକୀୟ ରଣକୌଶଳ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଅର୍ଜନ କରିଥାଆନ୍ତି । ହୋ'ଙ୍କର ଭରସା ଥାଏ ସେହିମାନଙ୍କ ଉପରେ । ହୋ' ସେମାନଙ୍କୁ ପଠାଇ ଦେଇ ନିଜେ ଭିଏତନାମକୁ ଫେରି ଯିବାକୁ ଚାହିଁଲେ । ତାଙ୍କର ଏହି ପ୍ରତ୍ୟାଗମନର ଏକମାତ୍ର ଉଦ୍ଦେଶ୍ୟ ଥିଲା ଫରାସୀ ଶାସକମାନଙ୍କ ସାଙ୍ଗରେ ହାତ ମିଳାଇ ଜାପାନୀ ଆକ୍ରମଣକୁ ବାଧାଦେବା । କାରଣ ଉପନିବେଶୀମାନଙ୍କଠାରୁ ଫାସିଷ୍ଟମାନଙ୍କୁ ସେ ଅଧିକ ବିପଜ୍ଜନକଭାବି ଭୟ କରୁଥିଲେ । କିନ୍ତୁ ଫରାସୀମାନେ ସେମାନଙ୍କର କଥା ଶୁଣିଲେ ନାହିଁ । ବିନା ରକ୍ତପାତରେ ଜାପାନୀମାନଙ୍କ ହାତରେ ଭିଏତନାମକୁ ଟେକି ଦେଲେ । ଭିଏତନାମର ଜନତା ଦୁଇପଟରୁ ପ୍ରବଳ ଧକ୍କା ପାଇଲେ । ଗୋଟିଏ ପଟରେ ଉପନିବେଶୀ ଫରାସୀ, ଅନ୍ୟପଟରେ ଫାସିଷ୍ଟ ଜାପାନୀ । ସେହି ବର୍ଷ ନଭେମ୍ବର ମାସରେ ପାର୍ଟିର କେନ୍ଦ୍ର କମିଟିର ଜରୁରୀ ବୈଠକ ବସିଲା । ଜାପାନୀ ଓ ଫରାସୀମାନଙ୍କୁ ଇଣ୍ଡୋଚୀନ ମୃତ୍ତିକାରୁ ନିକାଲି ଦେବା ନିମନ୍ତେ ଏକମାତ୍ର ସର୍ବସମ୍ମତ ନିଷ୍ପତ୍ତି ପ୍ରକାଶ ପାଇଲା । ତାହା ହେଲା କ୍ଷମତା ଦଖଲ କରିବା ନିମନ୍ତେ ଗଣ ଅଭ୍ୟୁତ୍‌ଥାନ ପାଇଁ ସେନାବାହିନୀ ଗଠନ କରିବାର ଉପଯୁକ୍ତ ସମୟ ଆସି ହୋଇଛି । ଏହି ତତ୍ତ୍ୱର

ପରୀକ୍ଷାମୂଳକ ଗବେଷଣାଗାର ହେଲା 'ବାକ୍‌ସନ' । ହେଇଠାରୁ ଉପତ୍ୟକାମାନର ପ୍ରଥମ ଗରଲବାହିନୀ ମୁଣ୍ଡ ଟେକିଛି ।

୧୯୪୦ ମସିହା ଡିସେମ୍ବର ଶେଷଭାଗ । ଘନ କୁହୁଡ଼ିର ବହଳ ପରଦା ତଳେ ସମଗ୍ର ଏସିଆ ମହାଦେଶ ଶୋଇଯାଇଛି । ମଧ୍ୟମୁକ୍ତର ଉତ୍ସୁକଙ୍ଗ ବାଦ୍ୟ କ୍ଷଣିକ ପାଇଁ ନୀରବ ହୋଇଯାଇଛି ସେହି ଶୀତରେ । ଦାମୀ ୟୁରୋପୀୟ ପୋଷାକରେ ଦକ୍ଷିଣ ଚୀନର ସୀମାନ୍ତ ତଟରେ ଠିଆହେଲେ ହୋ' । ନିଜକୁ ନିଜେ ଦେଖିନେଲେ । ଚିହ୍ନି ହେବ ନାହିଁ । ଚୀନ ସୀମାନ୍ତ ପାରହେଲା ପରେ ପୋଷାକ ଦେହରୁ ହରିଗଲା । ଟ୍ରାନ୍ ନାମ ବହୁଥିବା ଧରି ବୁଲିଲେ ଏ ସ୍ଥାନରୁ ସେ ସ୍ଥାନ ହୋଇ । କେଉଁଠି ଭଣ୍ଡାରୀ ଦୋକାନରେ ବାଲ କାଟୁଥିବା କୃଷକ ତ ଆଉ କେଉଁଠି ଲଣ୍ଡିତ ମସ୍ତକ ବୌଦ୍ଧ ଭିକ୍ଷୁ । ଘଞ୍ଚ ଜଙ୍ଗଲରେ ଗ୍ରାମ୍ୟ କାଠୁରିଆ ଭାବେ ଜୀବନ କଟିଛି ତ କେତେବେଳେ ପୁଣି ସୁଧୀମୀମାଂସକ ହୋଇ ମଦ୍ୟପ ସ୍ୱାମୀର ବେହୋଘାତ ଆଗରୁ ତାର ସ୍ତ୍ରୀକୁ ଛଡ଼ାଇ ଆଣିଛନ୍ତି । ଏହିପରି କିଛିଦିନ ପଥଭ୍ରଷ୍ଟ ଜୀବନ ବିତାଇଲା ପରେ ସେ ପହଞ୍ଚିଲେ ଟନ୍‌କିନ୍‌ରେ । ତା' ପୂର୍ବରୁ ଉତ୍ତର-ଟନ୍‌କିନ୍, କୋଚିନ ଚ୍ଛଇନା, ନେ-ଅନ୍‌ର ସ୍ଥାନେ ସ୍ଥାନେ ପ୍ରବଳ ରକ୍ତପାତ ଆରମ୍ଭ ହୋଇଥାଏ । ସ୍ଥାନୀୟ ଶ୍ରମିକ ଓ କୃଷକମାନଙ୍କର ବିଦ୍ରୋହୀ ଅଭ୍ୟୁତ୍‌ଥାନକୁ ଦମନ କରିବା ପାଇଁ ଫରାସୀମାନେ ଜାପାନୀ ଫାସିଷ୍ଟ ସହିତ ମିଶି ମୂଳଗୋଳାର ଆଶ୍ରୟ ନେଇଥାନ୍ତି । ବିଶେଷ କରି ନେ-ଆନ୍ ପ୍ରଦେଶର ଜଙ୍ଗୀ ଶ୍ରମିକମାନେ ଫରାସୀ ସୈନ୍ୟବାହିନୀକୁ ହାତାହାତି ମୁକାବିଲା କରିବାକୁ ଯାଇ ଚରମ ପରାଜୟ ସ୍ୱୀକାର କରିଥାନ୍ତି । ହୋ' ଏସବୁ ଖବର ପାଇଲେ, ହେଲେ ଆବଶ୍ୟକୀୟ ପ୍ରସ୍ତୁତ ବିନା ଏପରି ବଳାତ୍ମକ ପ୍ରତିରୋଧକୁ ସେ ଗ୍ରହଣ କରିପାରୁ ନ ଥିଲେ । ଅନ୍ୟ ପଟରେ ଦୁର୍ଦ୍ଦଶା ଜର୍ଜରିତ କୃଷକ ଓ ଶ୍ରମିକଶ୍ରେଣୀଙ୍କର ଉତ୍ତେଜନା ଆୟତ୍ତ କରିବା ଆହୁରି କଠିନ ବ୍ୟାପାର । ପାରନ୍ତୁ ବା ହାରନ୍ତୁ ସଶସ୍ତ୍ର ବିଦ୍ରୋହ ପାଇଁ ସେମାନେ ସବୁବେଳେ ଜାଗ୍ରତ ଥାଆନ୍ତି । ହୋ' ସେମାନଙ୍କର ଏହି ପ୍ରାଣବନ୍ତ ଉତ୍ସାହକୁ ଭାଙ୍ଗି ଦେବାପାଇଁ ଚାହୁଁ ନ ଥିଲେ । ପ୍ରକାରାନ୍ତରେ ସେ ଆଶା କରୁଥିଲେ ଫରାସୀ ବା ଯେ କୌଣସି ଯୁଦ୍ଧଖୋର ଶକ୍ତିକୁ ସାମରିକ ବଳ ପ୍ରୟୋଗରେ ପ୍ରତିହତ କରିବାକୁ ହେଲେ ସେଥିପାଇଁ ଦୀର୍ଘ ଦିନର ପ୍ରସ୍ତୁତି ଅପରିହାର୍ଯ୍ୟ । ପ୍ରତିଶୋଧର ନିଆଁରେ ତାଙ୍କର ସର୍ବାଙ୍ଗ ଶରୀର ଜଳିଉଠୁଥିଲା । ରକ୍ତନଦୀର ବନ୍ୟାରେ ସନ୍ତରଣ ପାଇଁ ସେ ମଧ୍ୟ ଉଚ୍ଚାଟ ହୋଇ ପଡ଼ିଲେ ।

୧୯୪୦ ମସିହାର ଶୀତଋତୁ । ଫେବୃୟାରୀ ଅଠ ତାରିଖ । ଦକ୍ଷିଣ-ଚୀନର ସରହଦ ଅତିକ୍ରମ କରି ହୋ' ପହଞ୍ଚିଲେ କାଓ ବାଙ୍ଗ ପ୍ରଦେଶର 'ବାକ୍ ବୋ'ଠାରେ ।

ଦୀର୍ଘ ତିରିଶ ବର୍ଷ ପରେ ନିଜ ଜନ୍ମଭୂମିରେ ପାଦଦେଲେ । ଛାଡ଼ିଯାଇଥିବା ଅତୀତ, ଶୈଶବ, କୈଶୋର ମନେ ପଡ଼ିଲା । କେତେ ବଦଳି ଯାଇଛି ଭିଏତନାମ୍ ! ନିଘଞ୍ଚ ନାରିକେଳ ମାଳ ଭିତରୁ ସେଦିନର ମନଲୋଭା ସୌନ୍ଦର୍ଯ୍ୟ ସେ ଖୋଜି ପାଉନାହାନ୍ତି ଆଜି । ପ୍ରୌଢ଼ ଆଖିର ମୋଟା ପରଦା ଉପରେ ଦେଖୁଛନ୍ତି ତାର ଧୂସର ବିବର୍ଣ୍ଣ ରୂପ !! ପ୍ରକୃତି ତାର ମଝିରେ ମଝିରେ ଚମକାଇ ଦେଉଯାଉଛି ଆସନ୍ନ ପାହାନ୍ତା ସମ୍ଭବରେ । ସକାଳର ସୂର୍ଯ୍ୟାଲୋକ ପୂର୍ବରୁ ତାଙ୍କୁ କେଉଁଠି ହେଲେ ଲୁଚି ଯିବାକୁ ପଡ଼ିବ । ନ ହେଲେ ପୁଣି ସେହି କାରାକୋଠରୀ । ଅଦୂରର ମୁଣ୍ଡିଆ ପାହାଡ଼ ସାଦର ନିମନ୍ତ୍ରଣ କରୁଛି ତା କୋଳରେ ଅନ୍ତିମ ଆଶ୍ରୟ ଦେବା ପାଇଁ । ଶୁଭ ନ ହେଲେ ମଧ୍ୟ ନିରାପଦ ନିଶ୍ଚୟ । ତାହାର ଦେହରେ ଏକ ବିରାଟ ଗୁମ୍ଫା । ପାଦ ତଳେ ବହିଯାଉଛି ସ୍ୱଚ୍ଛ ଏକ ନିର୍ଝରଣୀ । ହୋ'ଙ୍କ ପରି ସେ ମଧ୍ୟ ଅକ୍ଷତ ଏବଂ ଅନୂଢ଼ା । ତା ଜୀବନର ସୀମା ତଟରେ ସେ କେଉଁ ବନ୍ଧୁଙ୍କୁ ଭେଟିଛି କି ନା ସନ୍ଦେହ । ନିହାତି ନିଃସଙ୍ଗ ପରି ମନେ ହେଲା ସେ ହୋ'ଙ୍କୁ । ହୋ ନିଜକୁ ତା'ର ହାତରେ ସମର୍ପି ଦେଲେ । ଦିନ ଯାଇ ସଞ୍ଜ ଆସିଲା । ପାହାଡ଼ୀ ଝରଣା ତଟରେ ବସି—ଦୂରସ୍ଥ ଶୈଳଶ୍ରେଣୀକୁ ଚାହିଁ ଚାହିଁ ସେଦିନଟି କଟିଗଲା । କେତେଦିନ ଏପରି ଚାଲିବ ? ମାର୍କସ ଓ ଲେନିନଙ୍କର ଅମ୍ଳାନ ସ୍ମୃତିକୁ ସାଇତି ରଖିବା ପାଇଁ ଝରଣାର ନାମ ରଖିଲେ 'ଲେନିନ୍' । ପାହାଡ଼ ହେଲା 'ମାର୍କସ' । ଜନଶୂନ୍ୟ ବଣପଦାରେ ଏହି ଆତ୍ମସାନ୍ତ୍ୱନା ହିଁ ତାଙ୍କ ପାଇଁ ଥିଲା ଯଥେଷ୍ଟ । ବସି ବସି ତାଙ୍କୁ ଆଉ ଭଲ ଲାଗିଲା ନାହିଁ । କେତେ ବସିବେ ? ଏତେ ସମୟ ପାଇଁ ଖବନା ବା କାହିଁ ? ଯାଙ୍ଗରେ ଲୁଚାଇ ଆଣିଥିବା "ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ଇତିହାସ" ଅନୁବାଦ କଲେ । ସେଥିରେ ମଧ୍ୟ ତାଙ୍କ ମନ ମାନିଲା ନାହିଁ । ସେ ନିକଟରେ ଥିବା ଗାଁ, ଗଣ୍ଡା ଯେପରି ହାତଠାରି ଡାକିଲା ତାଙ୍କୁ । ନିକଟ ମଫସଲରୁ ଆସିଥିବା ଅଶିକ୍ଷିତ ଚାଷୀର ପୋଷାକ ପିନ୍ଧି ସେ ବାହାରିଲେ । ମାଓ ଖୁଦ୍‌ଭିନ୍ ସମସ୍ତ ମଝିରେ ସେ ପରିଚିତ ହେଲେ ଭିଏତନାମର ବିପ୍ଳବୀମାନଙ୍କ ସହିତ । ନିଜେ ପାହାଡ଼ ଗୁମ୍ଫାରେ ବସି ଲେଖିଥିବା କାଗଜଗୁଡ଼ିକ ତାଙ୍କ ହାତରେ ଦେଲେ । ପରସ୍ପରର ଭାବ ବିନିମୟରେ ଗୋପନ କାର୍ଯ୍ୟ ପାଇଁ ବାଟ ଫିଟିଗଲା । 'ବାକ୍ ବୋ' ପାହାଡ଼ ପାଦଦେଶରେ ତିଆରି ହେଲା ଏକ ଗୁପ୍ତ ବିପ୍ଳବୀ ଶିବିର । ଦିନକୁ ବଢ଼ିଯାଏ ଏକାଧିକ ବ୍ୟକ୍ତିଙ୍କର ସେଠାରେ ଗୁପ୍ତ ଆଲୋଚନା ଚାଲିଥାଏ । ସେମାନଙ୍କ ଉଦ୍ୟମରେ 'ସ୍ୱାଧୀନ ଭିଏତନାମ' ପତ୍ରିକା ପ୍ରକାଶ ପାଇଲା । ଛାପା ହେବାର ସୁବିଧା ନ ଥିଲା । ତେଣୁ କର୍ମୀମାନେ ନିଜ ହାତରେ ଲେଖି ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି ସଭ୍ୟଙ୍କ ସହାୟତାରେ ବାଣ୍ଟି ଦେଉଥିଲେ ।

ଏହା ଭିତରେ ତିନି ଚାରି ମାସ ବିତିଗଲାଣି । ବାଉଁଶ ପଥର ବିଛଣା ଉପରୁ ଭୋର ଚାରିଟାରୁ ଉଠି ବାହାରେ ବୁଲି ଆସନ୍ତି ହୋ' । ଖାଦ୍ୟପେୟ ମଧ୍ୟରେ ବଣଜାତ ଫଳମୂଳ ବା ଶାଗ, ପତ୍ରବା । କେବେ ବନ୍ଧୁମାନେ ବାହାରୁ ପ୍ରସ୍ତୁତ ଖାଦ୍ୟ ନେଇ ଆସନ୍ତି । ପିଇବା ପାଇଁ ଝରଣା ଜଳ । ଅନ୍ୟଆଡ଼େ ପିବାକୁ ପଡ଼େ ନାହିଁ । ତେଲ, ସାବୁନ, ଅଇନା, ପାନଆଉ ପ୍ରୟୋଜନ ନାହିଁ । ଲେଖାଲେଖି କରିବ ପାଇଁ ପଥର କୁନ୍ଦ । ଗୋଡ଼ରେ ବାଉଁଶ ଚିଆରି ହଳେ ଯୋତା । ଆବଶ୍ୟକତା ମେଣ୍ଟାଇବା ପାଇଁ ପ୍ରକୃତି ସବୁ ଖଂଜି ଦେଇଛି । ହଂକଂ ଜେଲର ଝିତ, ମାଛ ତରକାରୀ ଆଉ ମନେପଡ଼ୁନାହିଁ । ବିପ୍ଳବୀ ଜୀବନରେ ରୁଚିବୋଧର ସ୍ଥାନ କାହିଁ ? ବିଳାସବ୍ୟସନଠାରୁ ସେ ବହୁତ ଦୂରରେ । କମ୍ରେଡ଼ମାନଙ୍କ ପରିଶ୍ରମରେ ଠିଆ ହୋଇଛି ଅପେକ୍ଷାକୃତ ବଡ଼ ଆଉ ଏକ ଘର । ବାଉଁଶ, କାଠ ଓ ତାଳପତ୍ରରେ ଘେରା ଏହି କୁଟୀରକୁ ଦୂରରୁ ଦେଖିଲେ ଯେ କେହି ଭାବିବ ଏକ ଯୋଗସିଦ୍ଧ ସନ୍ନ୍ୟାସୀର ତପୋବନ ବୋଲି । ଭିତରେ ରହିଛି କଂଚା କାଠରେ ତିଆରି ଟେବୁଲଟିଏ । ହୋ'ଙ୍କ ପାଇଁ ଏ ସାଜସଜ୍ଜା ପରିପାଟୀ ଏକ ବର୍ଣ୍ଣାଢ଼୍ୟ ସମ୍ମୁଖରେ ନିବୁଜ ଜଳ୍ପା ପରି । ସେ ଇଚ୍ଛା କରି ସବୁବେଳେ ବାହାରେ ବସୁଛନ୍ତି ।

୧୯୪୧ ମସିହା ମଇ ମାସ ଦଶ ତାରିଖରେ ହୋ' ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟିର ବୈଠକ ଡକାଇଲେ । ଏହା ଥିଲା ଅଷ୍ଟମ ପୂର୍ଣ୍ଣାଙ୍ଗ ବୈଠକ । ଇଣ୍ଡୋଚୀନର ସବୁସ୍ଥାନକୁ ପ୍ରତିନିଧିତ୍ୱ କରୁଥିବା ପାର୍ଟି ସଭ୍ୟମାନେ ଏଥିରେ ଯୋଗ ଦେଲେ । 'ଖାକ୍ ବୋ' ପର୍ଣ୍ଣକୁଟୀରରେ ସେଦିନ ଆନନ୍ଦ ମହୋତ୍ସବ । ସମ୍ମୁଖସ୍ଥ କାଠଗଦା ଉପରେ ହୋ' ଦେଖୁଛନ୍ତି ନିଜ ଦେଶର କେତେ ଚିହ୍ନା ଅଚିହ୍ନା ମୁହଁ । ଅଧିକାଂଶ ହେଉଛନ୍ତି ନୂଆ । ସମସ୍ତଙ୍କ ଆଖିରେ ଅନୁସନ୍ଧିତ୍ସାର ଦାରୁଣ ପିପାସା । ହତୋତ୍ସାହ ଓ ନୈରାଶ୍ୟ ଅନ୍ଧକାର ମଧ୍ୟରେ ସମସ୍ତଙ୍କର ଜ୍ୟୋତି ହଜି ଯାଇଛି ଯେପରି । ନିଜ ପ୍ରିୟଜନଙ୍କୁ ଦୁଃଖର ଚରମ ମୁହୂର୍ତ୍ତରେ ଦେଖି ହୋ' ଭାବପ୍ରବଣ ହୋଇଉଠିଲେ । ଅନେକ ଦିନରୁ ଅକୁହା କଥା ଅନର୍ଗଳ ବୋହି ଚାଲିଲା ତାର ବାଟରେ ।

ସମ୍ମାନୀୟ ଗୁରୁଜନବୃନ୍ଦ,<br>
ଦେଶପ୍ରେମୀ ଯୁବକବନ୍ଧୁ,<br>
ବୁଦ୍ଧିଜୀବୀ, କୃଷକ, ଶ୍ରମିକ, ବ୍ୟବସାୟୀ ଓ ସେନାନୀଗଣ ।<br>
ପ୍ରିୟ ସହଯାତ୍ରୀ,

ଜର୍ମାନୀମାନଙ୍କ ହାତରେ ପରାଜିତ ହେବା ପରେ ଫରାସୀମାନେ ଶକ୍ତିହୀନ ହୋଇ ପଡ଼ିଛନ୍ତି । ଭୀରୁ କାପୁରୁଷ ପରି ସେମାନେ ଆମ ଦେଶକୁ ଜାପାନ ହାତରେ

ସମର୍ପି ଦେଇଛନ୍ତି । ପୂର୍ବରୁ ଆମ ଦେଶ ଫରାସୀ ଦସ୍ୟୁର ଭାରବାହୀ ଜୀବ ଭାବରେ ରହିଥିଲା । ଆଜି ସେ ଜାପାନୀ ଡକାୟତମାନଙ୍କର ଦାସ । ଲକ୍ ଏବଂ ହଙ୍ଗର * ଦୁଇକୋଟିରୁ ଅଧିକ ବଂଶଧର ଏ ଅବସ୍ଥା ଆଉ ମାନି ନେବାକୁ ରାଜି ନୁହଁନ୍ତି । ଆଜି ମୁକ୍ତିର ଦିନ ଆସି ଯାଇଛି । ଅତୀତରେ ଯେବେ ମୋଗଲ ଆକ୍ରମଣର ଆଶଙ୍କା ଦେଖାଦେଇଥିଲା, ସେତେବେଳେ ତ୍ରାନ ବଂଶର ବୟୋବୃଦ୍ଧମାନେ ଆଗେଇ ଆସିଥିଲେ । ସେହି କଣତ୍ରକର୍ମୀ ପୂର୍ବପୁରୁଷ ଯେଉଁ ଦୃଷ୍ଟାନ୍ତ ରଖିଯାଇଛନ୍ତି, ଆମ ଜାତିର ବର୍ଷୀୟାନ ଓ ଦେଶପ୍ରେମୀମାନେ ତାକୁ ଅନୁସରଣ କରି ଚାଲିବାକୁ ହେବ ।

ପ୍ରତିଷ୍ଠାବାନ ଓ ବିତ୍ତଶାଳୀ ବ୍ୟକ୍ତି, ସୈନ୍ୟ, ଶ୍ରମିକ, କୃଷକ, ବୁଦ୍ଧିଜୀବୀ, ରାଜକର୍ମଚାରୀ, ବଣିକ, ଯୁବକ, ଓ ମହିଳାମାନେ, ଆପଣଙ୍କ ଅନ୍ତର ଗଭୀର ଦେଶଭକ୍ତିରେ ପୂର୍ଣ୍ଣ । ବର୍ତ୍ତମାନ ସମୟରେ ଜାତୀୟମୁକ୍ତିକୁ ସବୁଠାରୁ ଆଗ ସ୍ଥାନ ଦିଆଯିବା ଉଚିତ । ଜାପାନୀ ଓ ଫରାସୀ ଫାସିଷ୍ଟମାନଙ୍କର ଓ ସେମାନଙ୍କର ଶୃଗାଳମାନଙ୍କୁ ନିଧନ କରିବା ପାଇଁ ଆମକୁ ଏକଜୁଟ ହେବାକୁ ପଡ଼ିବ ...... ।

ମୁକ୍ତିଯୋଦ୍ଧାଗଣ, ସମୟ ଆସିଯାଇଛି । ଅଭ୍ୟୁତ୍ଥାନର ଝଣ୍ଡା ଉର୍ଦ୍ଧ୍ୱକୁ ଟେକି ଧର । ପିତୃଭୂମିର ପବିତ୍ର ଆହ୍ୱାନ ଆପଣମାନଙ୍କ କାନରେ ପ୍ରତିଧ୍ୱନିତ ହେଉଛି ...... ।

ଭିଏତନାମର ବିପ୍ଳବ ବିଜୟୀ ହେବ ।
ବିଶ୍ୱ ବିପ୍ଳବର ଜୟ ହେବ ।

ଗିରି ଗୁମ୍ଫାରୁ ବାହାରି ଆସିଲା ଲୁପ୍ତ ଅଗ୍ନେୟଗିରିର ବିସ୍ଫୋରଣ । ନିଃଶବ୍ଦ ପରିବେଶରେ ସୃଷ୍ଟି ହେଲା—ଅଦିନ ଝଡ଼ର କମ୍ପନ ।

ଶରାହତ ବ୍ୟାଘ୍ର ପରି ଗର୍ଜି ଉଠିଲେ ସମସ୍ତେ । ଅପମାନ, ଧିକ୍କାରରେ ମୁଣ୍ଡ ତଳକୁ ନଇଁଗଲା । ଆତ୍ମପ୍ରତିଧ୍ୱନିର ନୀରବ ଗୁଞ୍ଜରଣ ନିକଟସ୍ଥ ପାହାଡ଼, ଝରଣା, ତୃଣାକ୍ତ ବନାନୀକୁ ଭେଦିଗଲା ।

ସେହି 'ପାକ୍ ବୋ' ଝରଣାତଟ, ମାର୍କସ୍ ନାମରେ ନାମିତ ଗିରିପଥରୁ ଜନ୍ମ ନେଲା 'ସଶସ୍ତ୍ର ବିପ୍ଳବୀ ବାହିନୀ' ବା 'ଭିଏତମିନ' । ଜଣ ଜଣଙ୍କର ରକ୍ତ-ସ୍ୱାକ୍ଷରରେ ଲେନିନ୍ ନୀଳ ତରଙ୍ଗରେ ରୁଧିରର ବହ୍ନିଳ ଆସ୍ତରଣ । ଆଗ୍ନେୟ ଶପଥରେ ଶୀତର ହିମ କୁହୁଡ଼ିଖଣ୍ଡ ପାଣି ହୋଇ ବର୍ଷା ଝାଡ଼ୁଛି । ଜାତୀୟ ମୁକ୍ତିର ଦ୍ୱାରଦେଶରେ ନିଜକୁ

---

* କିମ୍ବଦନ୍ତୀ କୁହେ, ସେମାନେ ହେଉଛନ୍ତି ଭିଏତନାମ୍ ଜାତିର ପ୍ରତିଷ୍ଠାତା

ଅଜାଡ଼ି ଦେଇଛନ୍ତି ଭିଏତନାମର ଆବାଳବୃଦ୍ଧବନିତା । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଏକଜୁଟ କରି ସ୍ୱାଧୀନତାର ହୋମାଗ୍ନିରେ ଅନ୍ତିମ ଝାସ ଦେବାକୁ ହେବ ।

'ଅସ୍ତ୍ରର ଜବାବ୍ ଅସ୍ତ୍ରରେ—'ସୋଭିଏତ ବଲସେଭିକ ଆନ୍ଦୋଳନର ଇତିବୃତ୍ତି ପଢ଼ିଲାବେଳେ ହୋ'ଙ୍କ ଶରୀରରେ ଅନନୁମେୟ ଶିହରଣ । ସନ୍-ଟୁଜଙ୍କର 'ରଣକୌଶଳ' ସେ ନିଜେ ଅନୁବାଦ କରିଛନ୍ତି । ନିର୍ଭୀକ ପାଇଁ ତାଙ୍କର ନୈତିକତା, ଅହିଂସ ପ୍ରକୃତି ଅବନମିତ ହୋଇଯାଇଛି 'ସନ୍-ଟଜ'ଙ୍କ ନିକଟରେ । 'ସଂଗଠିତ ସଶସ୍ତ୍ର ବିଦ୍ରୋହର ଅନ୍ତିମ ବିଜୟ' ପାଇଁ ସେ ଆଶାବାଦୀ ହୋଇ-ପଡ଼ିଛନ୍ତି । ତାଙ୍କର ପ୍ରାଣୋପମ ଭିଏତନାମ ପାଇଁ ସେ ଏହାର ପରୀକ୍ଷା ଚାହାନ୍ତି । ଲକ୍ଷ ଲକ୍ଷ, କୋଟି କୋଟି ଦେଶଭକ୍ତଙ୍କର ଜୀବନୀଶକ୍ତି ନେଇ ସେ ଭିଏତନାମର ମୁକ୍ତିଦାଣ୍ଡରେ ସମବେତ କରିବାକୁ ଚାହାନ୍ତି । ତାଙ୍କର ଭିତରୁ ଆନ୍ଦୋଳନ, ବିଦ୍ରୋହ, ଅଶାନ୍ତିର ଚରମ ପ୍ରତିଫଳନ ସେ ଆଶା କରନ୍ତି, ଐକ୍ୟବଦ୍ଧ ଗଣ ଅଭ୍ୟୁତ୍‌ଥାନ ରୂପରେ ।

୧୯୪୧ ମସିହା ମେ' ମାସରେ ବିଶ୍ୱଇତିହାସର ଅନବଦ୍ୟ ବିପ୍ଳବୀ ଗଣ ସଙ୍ଗଠନ 'ଭିଏତମିନ୍' ଜନ୍ମ ନେଲା । କମ୍ରେଡ଼ ହୋ' ରହିଲେ ନିଜେ ଏହାର ମୁଖ୍ୟ ଦାୟିତ୍ୱରେ । କିନ୍ତୁ ଅତ୍ୟାଧୁନିକ ରଣ କୌଶଳ, ଗରିଲା ଯୁଦ୍ଧ, ଗଣବିଦ୍ରୋହ ସମ୍ବନ୍ଧରେ ତାଙ୍କର ଜ୍ଞାନ ଖୁବ୍ ସୀମିତ ଥିଲା । ହୋ' ନିଜର ଏହି ଅଜ୍ଞତାକୁ କେବେ ଅନ୍ୟ ପାଖରେ ଲୁଚାଇ ନାହାନ୍ତି । ଅଧିକନ୍ତୁ ସେ 'ଭିଏତମିନ'କୁ ଉପଯୁକ୍ତ ନେତୃତ୍ୱ ଦେବାପାଇଁ ଭୋ-ନ୍‌ଗୁଏନ୍ ଗିଆପ ଏବଂ ଚ୍-ଗ୍ୱିନ୍-ଟାନଙ୍କୁ ଅନୁରୋଧ କରିଛନ୍ତି । ନିଜର ପ୍ରିୟତମ ବନ୍ଧୁ, ଭିଏତନାମ ସ୍ୱାଧୀନତା ଆନ୍ଦୋଳନର ସର୍ବସମ୍ମତ ନେତାଙ୍କର ଆସ୍ଥା, ବିଶ୍ୱାସ ରଖି ଗିଆପ ଭିଏତମିନ୍‌ର ସେନାଧ୍ୟକ୍ଷ ହେଲେ । ପ୍ରଥମାବସ୍ଥାରେ 'ଭିଏତମିନ'ର କାର୍ଯ୍ୟପରିସର 'ପାକବୋ' ଓ ତାର ପାଖ ଅଞ୍ଚଳ ମଧ୍ୟରେ ସୀମିତ ରହିଲା । ତା' ପୂର୍ବରୁ ଭିଏତନାମ ଜାତୀୟମୁକ୍ତି ସାମ୍ମୁଖ୍ୟ ତରଫରୁ ଏପରି କୌଣସି ସଶସ୍ତ୍ର ପ୍ରତିରକ୍ଷା ବାହିନୀ ଗଢ଼ା ହୋଇ ନ ଥିଲା । ନିଜ ଜାତିର ମୁକ୍ତି ହାସଲ ପାଇଁ ପ୍ରସ୍ତୁତିର ଉଦ୍ୟୋଗ ପର୍ବରେ ମୂଲ୍ୟବାନ ଯୋଦ୍ଧା ଓ ଦେଶପ୍ରେମୀ-ମାନଙ୍କର ଜୀବନରକ୍ଷା ଅନିବାର୍ଯ୍ୟ ହୋଇ ପଡ଼ିଲା । ଏ ବୃହତ୍ତି ଗୁରୁଦାୟିତ୍ୱ ବହନ କଲା 'ଭିଏତମିନ' । 'ବିପ୍ଳବୀର ଜୀବନ ତାର ନିଜସ୍ୱ ନୁହେଁ ସାରା ଦେଶର' ଓ ତାକୁ ରକ୍ଷା କରିବାର ଦାୟିତ୍ୱ ହିଁ ଦେଶ ଉପରେ ନ୍ୟସ୍ତ । ଏହି ପାରସ୍ପରିକ ଚେତନାବୋଧ ଜାଗ୍ରତ ହେଲା କମ୍ରେଡ଼ମାନଙ୍କ ମଧ୍ୟରେ । ଫରାସୀ ସେନାବାହିନୀ ନିକଟରୁ ସେମାନଙ୍କର ଭବିଷ୍ୟତ କାର୍ଯ୍ୟ ଯୋଜନା ଜାଣିବା ନିମନ୍ତେ ସ୍ୱତନ୍ତ୍ର

'ପ୍ରଚାର ବାହିନୀ' ଗଢ଼ା ହେଲା । ଏହାର ଉଦ୍ଦେଶ୍ୟ ହେଲା 'ଭିଏତମିନ୍'କୁ ସାଧାରଣ ଜନତା ନିକଟରେ ପରିଚିତ କରାଇବା ସଙ୍ଗେ ସଙ୍ଗେ ସେହି ଲୋକମାନଙ୍କ ମଧ୍ୟରୁ ସରକାରୀ ଗୋପନ ତଥ୍ୟ ସଂଗ୍ରହ କରିବା ।

କେବଳ ଯେ ରାଜନୀତି ନିପୁଣ, ରଣକୌଶଳୀ ଗରିଲାମାନଙ୍କୁ ନେଇ 'ଭିଏତମିନ' ଗଢ଼ାହେଲା ତା ନୁହେଁ, ଶ୍ରମିକ, କୃଷକ, ବୁଦ୍ଧିଜୀବୀ, ବେପାରୀ, ଛାତ୍ର, ମହିଳା ଦୁଃସ୍ଥ ଜନତାର ସକଳ ଭରସାର ସ୍ଥଳ ଥିଲା ଏହି 'ଭିଏତମିନ୍' । ସେତେବେଳର ଦାରିଦ୍ର୍ୟ କହିଲେ ନ ସରେ । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଶେଷ ବେଳକୁ ଉପନିବେଶୀ ରାଷ୍ଟ୍ରମାନଙ୍କର ପୁଞ୍ଜିର ଚାହିଦା, ବିନିଯୋଗ, ଉତ୍ପାଦନର ପରିମାଣ କ୍ରମଶଃ ବୃଦ୍ଧି ପାଇଲା ବେଳକୁ ଉପନିବେଶମାନଙ୍କର ଅର୍ଥନୈତିକ ସ୍ଥିତି ଘୋର ସଙ୍କଟମୟ ଅବସ୍ଥାରେ । ଜମିଦାରମାନଙ୍କ ହାତରେ ବିପୁଳ ଅର୍ଥ, ଅଥଚ ଦରିଦ୍ର କୃଷକ ତା'ର ଯୁଜୁରାଣ ମେଣ୍ଟାଇ ପାରୁନାହିଁ । କୃଷକମାନଙ୍କ ଦୁଃଖ ମୋଚନ କରି ନ ପାରିଲେ ଭିଏତନାମର ଜନତା ସ୍ୱାଧୀନତା ପାଇଁ ସଚେତନ ହୋଇ ପାରିବେ ନାହିଁ । କାରଣ ଭିଏତନାମ କୃଷକ ଓ ଶ୍ରମିକର ଦେଶ । 'ଭିଏତମିନ' ତା ଦେଶପ୍ରେମୀ ନିଷ୍ଠାର ପରୀକ୍ଷା ସ୍ୱରୂପ ପ୍ରଥମ ପଦକ୍ଷେପ ନେଲା— "ବିଶ୍ୱାସଘାତକମାନଙ୍କର ଜମିଦାରୀ ବାଜ୍ୟାପ୍ତ କର—ଫଳରେ ଦରିଦ୍ର ପ୍ରଜା ସେଥିରେ ଭାଗୀଦାର ହେବେ" । ଯେ କୌଣସି ପ୍ରକାରେ ଏହି ନିମ୍ନତମ ଦାବୀ ହାସଲ ପାଇଁ 'ଭିଏତମିନ' ଦୃଢ଼ ପ୍ରତିଜ୍ଞ ରହିଲା । 'ବାକ୍-ବୋ ଅଞ୍ଚଳ'ରୁ ସେ ଯାଇ 'ଥାଇ-ନୁଏନ'ରେ ପହଞ୍ଚିଲେଣି । ଦିନକୁ ଦିନ ସେ ଗ୍ରାମ ପରେ ଗ୍ରାମ ବ୍ୟାପି ଚାଲିଛି । 'ବାକ୍-ବୋ' ଟ୍ରେନିଂ କ୍ୟାମ୍ପରୁ କେତେ ସ୍ୱେଚ୍ଛାସେବୀ ଗରିଲା ଶିକ୍ଷା ପାଇ ଅନ୍ୟ ସ୍ଥାନକୁ ଚାଲି ଗଲେଣି । ଗୋଟିଏ ବର୍ଷ ମଧ୍ୟରେ ସମଗ୍ର ଭିଏତନାମ ଦଖଲ ହିଁ ଲକ୍ଷ୍ୟ ।

ସେହି ବର୍ଷ ଫାସିଷ୍ଟ ଜର୍ମାନୀର ନାଜିବାହିନୀ ସୋଭିଏତ ୟୁନିଅନ ଆକ୍ରମଣ କଲା । ବିଶ୍ୱବୈପ୍ଲବିକ ଆନ୍ଦୋଳନର ଆତ୍ମକେନ୍ଦ୍ର 'ସୋଭିଏତ ରୁଷର ଏହି ମର୍ମନ୍ତୁଦ ଘଟଣାରେ ହୋ' ଏବଂ ତାଙ୍କର ସାଥୀମାନେ ବିଚଳିତ ହୋଇ ପଡ଼ିଲେ । ସଦ୍ୟ ଗଠିତ ଗରିଲାବାହିନୀକୁ ସାହାଯ୍ୟ ଦେବ କିଏ ? ଏଣେ ପରାକ୍ରମୀ ଫରାସୀ ସରକାର ସହିତ ମୁକାବିଲାରେ ହତିଆର ଆସିବ କେଉଁଠୁ ? ଅସ୍ତ୍ରଶସ୍ତ୍ର, ଖାଦ୍ୟ, ବସ୍ତ୍ରର ପ୍ରୟୋଜନୀୟତା ମେଣ୍ଟାଇବାକୁ ଯାର ସମ୍ବଳ ନାହିଁ ସେ ସଶସ୍ତ୍ର ବିଦ୍ରୋହକୁ ଏକାକୀ ସାମନା କରିବ କିପରି ?

ଅତୀବ ଭାରାକ୍ରାନ୍ତ ହୃଦୟ ନେଇ ୧୯୪୨ ମସିହା ଜୁଲାଇ ମାସରେ ହୋ' ଚୀନ ଯାତ୍ରା କଲେ । ସେତେବେଳେ ତାଙ୍କ ଆଗରେ ଦୁଇଟି ଲକ୍ଷ୍ୟ ଥିଲା ।

ପ୍ରଥମରେ ଅନୁଷ୍ଠାନକଲ୍ପେ ଚିଆଙ୍ଗ-କାଇ-ସେକ୍ ସହିତ ସାକ୍ଷାତ୍ କରି, ଜାପାନୀ ଫାସିଷ୍ଟମାନଙ୍କ ବିରୁଦ୍ଧରେ ଲଢ଼ିବା ନିମନ୍ତେ 'ଭିଏତମିନ୍' ପାଇଁ ସାହାଯ୍ୟ ଭିକ୍ଷା କରିବା । ଦ୍ୱିତୀୟ ଓ ମୁଖ୍ୟ ଉଦ୍ଦେଶ୍ୟ ଥିଲା—ଚୀନ କମ୍ୟୁନିଷ୍ଟ ପାର୍ଟି ସହିତ ସମ୍ପର୍କ ପୁନଃପ୍ରତିଷ୍ଠା କରି ତାହାର ସହଯୋଗକ୍ରମେ ମସ୍କୋ ସହିତ ଯୋଗସୂତ୍ର ସ୍ଥାପନ କରିବା, 'ଭିଏତମିନ'ର ଜାତୀୟ ସାମ୍ମୁଖ୍ୟ ଗଠନ କରିବାର ମାର୍ଗ ଓ କାର୍ଯ୍ୟ ସମ୍ବନ୍ଧରେ କୋମିନ୍‌ଟର୍ଣ୍ଣଙ୍କୁ ଅବହିତ କରାଇବା । ଏଥର ଚୀନ ଯାତ୍ରା ତାଙ୍କ ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ନିଜର ନାମ ହୋ' ସହିତ 'ଚି-ମିନ' ଏହିଠାରେ ଯୋଡ଼ିଲେ । ତା'ର ଅର୍ଥ ହେଲା—'ଯେ ଅନ୍ୟଙ୍କୁ ଆଲୋକଦାନ କରେ' । ବାସ୍ତବରେ ସେ ଏହି ନାମର ଉପଯୁକ୍ତ କରି ନିଜକୁ ଗଢ଼ି ସାରିଥିଲେ । ମୁକ୍ତି ଆନ୍ଦୋଳନର ବିଶାଳ ନେତୃତ୍ୱ ତଳେ ତାଙ୍କର ଆଲୋକଦାୟୀ ସତ୍ତା ଟିକକ୍ ସବୁବେଳେ ନୂତନ ଦୂର୍ଯ୍ୟାଲୋକ ପରି ଅନ୍ଧକାରକୁ ଘୋଡ଼ାଇ ପକାଉଥିଲା । ଜଣେ ଚୀନା ସାମ୍ବାଦିକର ଛଦ୍ମଦେଶରେ ସେ ପେଶାଦାର ସାମ୍ବାଦିକମାନଙ୍କର ଖଣ୍ଡେ ପ୍ରବେଶପତ୍ର ଯୋଗାଡ଼ କରି ଚୀନସାରା ବୁଲି ବୁଲିଲେ । ସେ ବେଶୀ ବାଟ ଆଗେଇ ପାରିଲେ ନାହିଁ । ଠିକ୍ ଚୀନ ସୀମା ଟପିଲା ବେଳକୁ ଚିଆଙ୍ଗ-କାଇ-ସେକ୍‌ର ପୋଲିସ ହାତରେ ଧରା ପଡ଼ିଲେ । ସାଙ୍ଗରେ ଥିଲେ ଜଣେ ଗାଇଡ଼ । ସେ କି ଚୀନର ଗ୍ରାମ, ସହର, ଗଳିପଥ ଚିହ୍ନାଇ ଦେବାରେ ସାହାଯ୍ୟ କରୁଥିଲେ । ପୋଲିସ ହାତରେ ଧରାପଡ଼ିବା ପୂର୍ବରେ ସେ ବହୁତ ରାସ୍ତା ପାଦରେ ଚାଲି ଚାଲି ବୁଲିଛନ୍ତି । ଚୀନରେ ଥିବା ଭିଏତନାମୀମାନଙ୍କ ସହିତ ସାକ୍ଷାତ୍ କରିବାର ନିଶା ତାଙ୍କୁ ପାଗଳ କରିଦେଇ ଥିଲା । ଦିନେ ଅଧେ ନୁହେଁ, ଦଶ ପନ୍ଦର, ପାଞ୍ଚ ଦିନ ସେ ଏପରି ଖାଲି ପାଦରେ ଚାଲିଛନ୍ତି । ଗାଡ଼ି ଘୋଡ଼ାରେ ଯିବାପାଇଁ ସମ୍ବଳର ଅଭାବ । ପଥଶ୍ରାନ୍ତି ଭୁଲିବା ପାଇଁ ସମୟ କାହିଁ ?

ପୁଣି ସେହି ଦୁଃଖଭୋଗର ନୂତନ ଅଧ୍ୟାୟ ଆରମ୍ଭ ହେଲା । ଧଳାତକ କଏଦୀର ନିର୍ମମ ଜୀବନ ତାଙ୍କୁ ଠିକଣୀ ପକାଇ ଦେଲା ତାଙ୍କ ମୁହଁରେ । ଏହି ବନ୍ଦୀଶାଳାରେ ଆଗରୁ ଥିବା ସମୟରେ ଜେଲ କର୍ତ୍ତୃପକ୍ଷ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ସହିତ ତାଙ୍କର ପରିଚୟ ଥିଲା । କିନ୍ତୁ ସରକାରୀ କଟକଣା ଭୟରେ ସେମାନେ ହୋ'ଙ୍କୁ ଚିହ୍ନା ଦେଲେ ନାହିଁ । ଅକାଳ ମରଣର ଘଣ୍ଟି ଶୁଣି ଶୁଣି ସେ ପଡ଼ିରହିଲେ ଜେଲ କୋଠରୀ ମଧ୍ୟରେ ।

ଦେଢ଼ମାସ ପରେ ତାଙ୍କୁ ସ୍ଥାନାନ୍ତର ପାଇଁ କୋଠରୀ ମଧ୍ୟରୁ ବାହାର କରାହେଲା । ସାଙ୍ଗରେ ଛ' ଜଣ ବନ୍ଧୁକଧାରୀ ସିପାହୀ ଲୁହା ଶିକୁଳିରେ ହାତ ଓ ଅଣ୍ଟା ଶକ୍ତଭାବେ ବନ୍ଧା ହୋଇଛି । ହୋ' ଚାଲିଛନ୍ତି ସେମାନଙ୍କ ସହିତ । କ୍ଷେତ୍ର

ମାଥର ଖଣ୍ଡ ବରୁଡ଼ି ହୋଇ ପଡ଼ୁଛି ମୁଣ୍ଡ ଉପରେ । ଅଯତ୍ନବର୍ଦ୍ଧିତ ପାଚି ଥିବା କେଶ ଫୁରୁ ଫୁରୁ ହୋଇ ଉଡ଼ୁଛି ପବନରେ । ବାଟରେ କେତେ ପାହାଡ଼, ନଦୀ, ନାଳ, ଗାଁକି ଗାଁକି ସେ ଚାଲିଛନ୍ତି । ଜାଣନ୍ତି ନାହିଁ ଗନ୍ତବ୍ୟସ୍ଥଳୀ କେଉଁଆଡ଼େ । ମୂକ, ବଧିର ପରି ପୋଲିସର ଲାଠିମାଡ଼ ଖାଇ ଖାଇ ସମସ୍ତ ସହି ଯାଉଛନ୍ତି । ଦିନ ଯାଇ ରାତି ହେଲାଣି । ତଥାପି ଯାତ୍ରାର ଶେଷ ନାହିଁ । ପୋଲିସର କ୍ଷୀଣ ଟର୍ଚ୍ଚ ଆଲୁଅରେ ସମ୍ମୁଖ ରାସ୍ତା ଅଧିକ ଭୟସଙ୍କୁଳ ଦୁର୍ଗମ ଜଣାପଡ଼ୁଛି । ଆକାଶରେ ତାରା ଉଠିବାକୁ ଆଉ ସମସ୍ତ ବାକି ଅଛି ବୋଧହୁଏ ! ନିର୍ଜନ ଏକ ବନଭୂମିରେ ତାଙ୍କୁ ଅଟକାଇ ରଖା ହେଲା । ଗ୍ରେଟ କୋଠରିର ଚାରିପଟରେ ଅସଂଖ୍ୟ ଜଙ୍ଗଲଆଳି । ଲୋକ ନଜରକୁ ଏଡ଼ାଇବା ପାଇଁ ତାଙ୍କୁ ଏଠାକୁ ଅଣାଯାଇଛି ବୋଲି ଜଣାପଡ଼ିଗଲା । କିନ୍ତୁ ଏ ଘଟଣା ଲୁଚିଛପି ରହିଲା ନାହିଁ । ଠିକ୍ ପରଦିନ ତାଙ୍କର ବନ୍ଧୁମାନେ ତାଙ୍କ ନିର୍ଜନ କାରାବାସ ସମ୍ବନ୍ଧରେ ଖବର ପାଇଲେ । ପୁଣି ତାଙ୍କୁ ସେ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆଗଲା । ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ ସେ ମାସେଠାରୁ ଅଧିକ ସମସ୍ତ ରହିଛନ୍ତି । ଦୀର୍ଘ ପନ୍ଦର ମାସ ଧରି ଏହି ଅବସ୍ଥା । ସେ ଗ୍ରୀଷ୍ମରୁ ଏ ଗ୍ରୀଷ୍ମ ଯାଇ ବର୍ଷା ଆସିଲାଣି । ଶେଷ ବର୍ଷାର ଦିନଗୁଡ଼ିକ ଶରତର ଶୁଭ ସୂଚନା ଦେଇ ଗଲାଣି । ହୋ' ଗଣି ପାରୁନାହାନ୍ତି ଦିନଗୁଡ଼ାକ । ସାରା ଦେହରେ ଅସମ୍ଭବ ରକମର ଘା । ପୂଜ ପାଣିରେ ହାତ ଗୋଡ଼ ଜୁଡ଼ୁବୁଡ଼ୁ । ସେଥିରେ ପୁଣି ମଶା, ମାଛିଙ୍କର ଉତ୍ପାତ କମ୍ ନୁହେଁ । ଅଣ୍ଠାରେ ପିମ୍ପୁଡ଼ି ଧାର ଲଗି ଘା' ମଧ୍ୟକୁ ପଶି ଆସିଲେଣି । କି ଉତ୍କଟ ସେମାନଙ୍କର ଜ୍ୱାଳା ! ଗୋରୁଗୁହାଳରେ ବନ୍ଧାହେଲା ପରି ପାଖ ଖୁଣ୍ଟରେ ବନ୍ଧା ହୋଇଛନ୍ତି ଦାଗୀ, ଖୁଣୀ ଆସାମୀମାନେ । ପିଠିକୁ ପିଠି ଘଷିହୋଇ ରକ୍ତ ବହାଇଲେଣି । ଖୁଣୀ ଡକାୟତମାନଙ୍କର ଆକ୍ରମଣରେ ସେ ସାରାରାତି ଶୋଇପାରୁ ନାହାନ୍ତି । ମଣିଷଖିଆ ବାଘ ପରି ସେମାନେ ଝପଟି ଆସୁଛନ୍ତି ତାଙ୍କ ଉପରକୁ । ରୋଗ ବ୍ୟାଧିଗ୍ରସ୍ତ କ୍ଷୀଣ ଶରୀର ନେଇ ସେ କେତେ ଲଢ଼ିବେ ତାଙ୍କ ସହିତ ! ସ୍ୱଭାବତଃ ଦସ୍ୟୁଙ୍କ ପୁଣି ଅନୁରାଗୀ ।

ଦିନେ ପାହାନ୍ତାରୁ ଉଠି ସେ ଚାହିଁଲେ ପାଖ ଜନ୍ତୁଶାଳୁ । ଗତ ରାତିରେ ତାଙ୍କ ସହିତ ନିର୍ଘୁମ ମାଡ଼ଗୋଲ କରି ଶୋଇଯାଇଥିବା ବନ୍ଦୀଟି ବଡରା ମରି ପଡ଼ିଛି !! ଆଉଜଣେ କଏଦୀ ବନ୍ଧୁ ସହିତ ହୋ ମୃତ୍ୟୁରକୁ ଜଙ୍ଗଲ ମଧ୍ୟରେ ସମାଧି ଦେଲେ । ଦାଗୀ ନରହନ୍ତା ହେଲେ ମଧ୍ୟ ତାଙ୍କ ଆଗରେ ସେ ନିର୍ଦ୍ଦୋଷ । ତାର ଦାରୁଣ ମୃତ୍ୟୁରେ ହୋ'ଙ୍କ ପରି ଜଣେ ଅଜବ କବିତା ରଚନା କଲେ ।

"ମୁଦା ଆଖି ତଳୁ ଯେବେ ଝରେ ତୁମ କଅଁ
ନିଷ୍ପାପ-ପରଶ ଜାଣି ପାରୁଛି ମୁଁ ବ୍ୟଥା
ଭଲ-ମନ୍ଦ ବୋଲି ଯାହା ଦୃଶ୍ୟ ଦେଖି ସବୁ
ଦୋଷୀ ବା ନିର୍ଦ୍ଦୋଷ ହୁଅ
ପରିସ୍ଥିତି କରିଛି ସେ ସବୁ" ।

ସହକର୍ମୀର ମୃତ୍ୟୁ ପରେ ହୋ'ର ମନରେ ତୀବ୍ର ଆଲୋଡ଼ନ ସୃଷ୍ଟି ହୋଇଛି । ଜୀବନର ଶେଷଦିନ ଯେପରି ଆଗତପ୍ରାୟ । ବାଳ ପାଚି ସମ୍ପୂର୍ଣ୍ଣ ପାଚିଯିବାକୁ ବସିଲାଣି । ଦୃଷ୍ଟିଶକ୍ତି କମି କମି ଚାଲିଛି । ଶରୀର ରୋଗ ବ୍ୟାଧିର ମନ୍ଦିର । ହୁଏତ ଅଜାଣତରେ ମୃତ୍ୟୁ କେଉଁଦିନ ନିକଟେଇ ଆସିବ ! ଜନସାଧାରଣଙ୍କ ନିକଟରେ ଦେଇଥିବା କଥାଗୁଡ଼ିକ ଅହରହ କାନରେ ବାଜିଯାଉଛି । ଯେଉଁ ସମୟରେ ସେ ସବୁଠାରୁ ବେଶୀ ଦରକାର ସେପରି ଜରୁରୀ ପରିସ୍ଥିତିରେ ସେ ବନ୍ଦୀ । ବହୁ ମୂଲ୍ୟବାନ ସମୟ ବୃଥାରେ କଟିଯାଉଛି । ଦୁନିଆରେ କେତେ ପରିବର୍ତ୍ତନ ଘଟିଯାଉଛି । ଭିଏତନାମର ଅବସ୍ଥା ହୁଏତ ବଦଳି ଯାଇଥିବ । କମ୍ରେଡ଼ମାନେ ତାଙ୍କ ଅନୁପସ୍ଥିତିରେ ନିଜକୁ ବଡ଼ ହେୟ ମନେ କରୁଥିବେ ନିଶ୍ଚୟ !! ଅଯତ୍ନ ଅବହେଳାରେ ସଂଗଠନର ଅବସ୍ଥା କ'ଣ ହୋଇଥିବ !! ଏହି ଚିନ୍ତାରେ ହୋ' ବେଶୀ ଭାଙ୍ଗି ପଡ଼ିଲେ । କାରାଗାରରୁ ମୁକ୍ତି ପାଇବାର ପଥ କାହିଁ ? ଗୋଟିଏ ସ୍ଥାନରେ ବସି ଚିନ୍ତା କରିବା ପାଇଁ ମଧ୍ୟ ଅବକାଶ ନାହିଁ । ଏ ବନ୍ଦୀଶାଳରୁ ସେ ବନ୍ଦୀଶାଳା ହୋଇ ସେ ସାରା ଚୀନ୍ ବୁଲି ଆସିଲେଣି । ଏବେ ପହଞ୍ଚିଛନ୍ତି 'ଲିଉ ଚାଉ'ରେ । ଦୂରରେ ରହିଗଲାଣି କୁଇଲିନ୍ । ଲିଉ-ଚାଉର ସାମରିକ କାରାଗାରରେ ସେ ବନ୍ଦୀ ହେଲେ । ଏଠାରେ ତାଙ୍କୁ ରାଜବନ୍ଦୀର ମର୍ଯ୍ୟାଦା ଦିଆଗଲା । ଯଥେଷ୍ଟ ପରିମାଣର ଖାଦ୍ୟ ଖାଇବାକୁ ପାଇଲେ । ନିତ୍ୟକର୍ମ ସମାପନ ପାଇଁ ବାହାରେ ଯିବା ଲାଗି ଅନୁମତି ମିଳୁଥିଲା । ମଝିରେ ମଝିରେ ଖବରକାଗଜ ସହିତ ଯୋଗାଯୋଗ ହେଉଥିଲା । ଗରମ ପାଣିରେ ସ୍ନାନ କରିବା ଯୋଗୁଁ ତାଙ୍କର ଘା'ଗୁଡ଼ିକ ଆସ୍ତେ ଆସ୍ତେ ଶୁଖିବାକୁ ଆରମ୍ଭ କଲା । ସ୍ୱାସ୍ଥ୍ୟର ଉନ୍ନତି ଘଟିଲା ।

ଜେଲଖାନାର ବାରଣ୍ଡାରେ ଦିନେ ବସିଥିବାବେଳେ ସେ ପ୍ରହରୀ ମୁଖରୁ ଶୁଣିଲେ ଲିଉଚାଉଠାରେ ଭିଏତନାମୀ ବିପ୍ଳବୀ ଲିଗ୍ ବୋଲି ଗୋଟିଏ ସଂଗଠନ ଅଛି । ତାକୁ ଧ୍ୱଂସ କରିବା ପାଇଁ ହୋ' ଚୀନ ଆସିଛନ୍ତି, ସନ୍ଦେହ କରି ଚିଆଙ୍ଗ କାଇ ସେକ୍‌ର ପୋଲିସ ଗିରଫ କରିଛନ୍ତି । ହୋ' ନିଜ କାନରେ ଏହି କଥାକୁ ବିଶ୍ୱାସ କରିପାରୁ ନ ଥିଲେ । ପୋଲିସର ସନ୍ଦେହ କେତେ ଅବାନ୍ତର ସତେ !!

ଦୀର୍ଘ ପନ୍ଦର ମାସ କାରାବରଣ ପରେ ହୋ' ମୁକ୍ତ ପାଇଲେ । ଜେଲର ଲୌହ ଫାଟକ ଅତିକ୍ରମି ଆସି ପହଞ୍ଚିଲେ ଜନପଥରେ । ହାତ ଗୋଡ଼ରେ ଶିକୁଳି ନାହିଁ ସତ, ସ୍ୱାସ୍ଥ୍ୟରେ କଡ଼ା ପ୍ରହରୀ । ସେ ନଜରବନ୍ଦୀରେ ବର୍ତ୍ତମାନ । ଆଗକୁ ଚାଲିବାକୁ ପାଦରେ ବଳ ନାହିଁ । ଆଖି ଆଗରେ କୁହୁଡ଼ି ଖାଲି ଝାପସା ଝାପସା ଦିଶୁଛି । କାନକୁ ମଧ୍ୟ ଭଲ ଶୁଭୁ ନାହିଁ । କଏଦୀ ଜୀବନର ରୋଗବ୍ୟାଧିରେ ସେ କଙ୍କାଳ ପାଲଟି ଯାଇଛନ୍ତି ।

ଅଦୂର ପାହାଡ଼ରେ ଶୁଭ୍ର ଶରତର ଜ୍ୟୋତ୍ସ୍ନା-ବନ୍ୟାର । ଦୁର୍ବଳ ପାଦରେ ସେ ଉପରକୁ ଉଠିବା ପାଇଁ ଚେଷ୍ଟା ଚଳାଇଲେ । ମୁକ୍ତ ଆକାଶ ତଳେ ଫିଟି-ଯାଇଥିବା ପାଦଦୁଇଟି ପୁଣି ସଜାଗ ହୋଇ ଉଠିଲା । ରାତିର ଘନତା ମଧ୍ୟରେ ସେ ଆଖି ଦୁଇଟିକୁ ଟାଣି ଟାଣି ଆଗକୁ ନେଲେ । ଆତ୍ମବଳରେ ବଳୀୟାନ ତାଙ୍କର ଶରୀର । ସେ ଆଉ ଭୂଗର୍ଭବନ୍ଦୀ ନୁହନ୍ତି । ନବଜୀବନ ଫେରିପାଇଥିବା ଭିଏତନାମର ତ୍ରାଣକର୍ତ୍ତା । 'ଭିଏତନାମ ସ୍ୱାଧୀନତା ଲିଗ୍' ସ୍ୱପ୍ନକୁମାରୀ ପରି ଆଖି ପରଦାରେ ଭାସି ଯାଉଛି । କୃଷକ ଆନ୍ଦୋଳନର ସମବେତ କଣ୍ଠସଙ୍ଗୀତ ଦୋହଲାଇ ଦେଇ ଯାଉଛି ତାଙ୍କ କର୍ଣ୍ଣଗହ୍ୱରକୁ । ଭାବବିହ୍ୱଳ କଣ୍ଠରେ ସେ ମନେ ମନେ କବିତା ରଚନା କରି ଗାଉଛନ୍ତି—

"ନୀଳ ଜୀମୂତରେ ଚୁମ୍ବି ନୁଆଁଇ ତା ମଥା
ଗାଢ଼ ପ୍ରେମ ଆଲିଙ୍ଗନେ ଏ ପାହାଡ଼ କହେ କେତେ କଥା
ଦକ୍ଷିଣ ଆକାଶ ଦୂର ଦିଗ୍‌ବଳୟ ଭେଦି···
ବହିଯାଏ ଅନ୍ତରୁ ମୋ ନୈରାଶ୍ୟର ବ୍ୟଥା·····
ଏକାନ୍ତେ ଭାବୁଛି ବନ୍ଧୁ ପରିଜନ କଥା ।"

ନିଃସଙ୍ଗ ହେଲେ ମନୀଷୀ ସ୍ୱଭାବତଃ ଦରଦୀ, ଭାବବାଦୀ ହୋଇପଡ଼େ । ହୋ'ଙ୍କ ପରି କଠୋର ବାସ୍ତବବାଦୀ ବ୍ୟକ୍ତି ମଧ୍ୟ ସେଥିରୁ ବଂଚିତ ନ ଥିଲେ । କାରା ଅନ୍ତରାଳରେ ସେ ଏହିପରି ଅନେକ କବିତା ଲେଖିଛନ୍ତି, ଯାହାକି ପରବର୍ତ୍ତୀ ସମୟରେ 'ଜେଲ୍ ଡାଏରି' କବିତାଗୁଚ୍ଛ ଆକାରରେ ପ୍ରକାଶ ପାଇଛି ।

୧୯୪୩ ମସିହା ସେପ୍ଟେମ୍ବର ମାସରେ ହୋ' 'ବିପ୍ଲବୀ ଲିଗ୍'ର ସଭ୍ୟ-ମାନଙ୍କ ସହିତ ଦେଶକୁ ଫେରିଯିବାକୁ ଅନୁମତି ପ୍ରାର୍ଥନା କଲେ । କିନ୍ତୁ ସେଠାରେ ଥିବା ଲିଗ୍‌ର ସଭ୍ୟମାନେ ତାଙ୍କୁ ଛାଡ଼ିବାକୁ ଚାହିଁଲେ ନାହିଁ । ଜେନେରାଲ ଚାଅଂ ଫା'ଙ୍କ ଅନୁମୋଦନ କ୍ରମେ ସେ ମୁକ୍ତ ପାଇଲେ ।

## ୨ ୩

## ସଶସ୍ତ୍ର ବିଦ୍ରୋହର ଯୁଗ

୧୯୪୩ ମସିହାର ବସନ୍ତ ଋତୁ । ହୋ' ଜେଲ କୋଠରୀରୁ ମୁକ୍ତ ହୋଇ ଫେରିଆସିଛନ୍ତି ନିଜ ଦେଶକୁ ତୁଇ ବର୍ଷ ପରେ । ପୁଣି ସେହି ପାକ୍ ବୋ' ପାହାଡ଼ର ଅନ୍ଧାରୀ କୋଳକୁ । ବାହାରର ଦୁନିଆ ନିତ୍ୟନୂତନ ଦିଶୁଛି ତାଙ୍କୁ । କେତେ କମ୍ ସମୟର ବ୍ୟବଧାନ ମଧ୍ୟରେ କେତେ ବିରାଟ ପରିବର୍ତ୍ତନ ! ଜାପାନୀ ଫାସିଷ୍ଟମାନଙ୍କର ବିଜୟୋଦ୍ଦୀପ୍ତ ରଣହୁଙ୍କାର ଶୁଭୁଛି ସୀମା ସରହଦ ସେ-ପଟରୁ । ଫରାସୀ ଉପନିବେଶବାଦୀମାନଙ୍କର ଯୁଗ ଯୁଗର ରାଜୁତି ବୋଧହୁଏ ନେବ ଏ ମାଟିରୁ । ତା ବଦଳରେ ଆସିବେ ଜାପାନୀ ମୁନିବମାନେ । ଆଗାମୀ କେତେ ଶହ ବର୍ଷର ଯୋଜନା ସେମାନଙ୍କର । ରାଜ୍ୟଜୟୀ, ସାମ୍ରାଜ୍ୟଲିପ୍ସୁ, ଧନଲୋଭୀ ସ୍ୱପ୍ନ-ବିଳାସ ବାସ୍ତବରେ ପରିଣତ ହେବାକୁ ଯାଉଛି । ଭୋଗ, ଉପଭୋଗର ଚାରଣଭୂମି ଏହି ନିରୀହ ଭିଏତନାମ । ଧୂଳି ଧୂସରିତ ଅସହାୟ ପାଳିତ ତା'ର ମାଟି ।

ହୋ' କେତେଦିନ ଆଉ ଏ ଅବସ୍ଥା ଆଖିବୁଜି ଦେଖିପାରନ୍ତେ ! କୋମିଣ୍ଟାଙ୍ଗ ସହିତ ଥିବା ତାଙ୍କର ସମସ୍ତ ଦ୍ୱନ୍ଦ୍ୱ ଯେପରି ଅପସରି ଯାଇଛି । ନିଜ ଦେଶର ମୁକ୍ତି, ପିତୃଭୂମିର ସ୍ୱାଧୀନତା ଆଗରେ ଆଉ ଯେତେ ଯେତେ ଆନୁଷଙ୍ଗିକ ବେଦନା ସବୁ ଯେମିତି ସଧା ଦୀପର ଶିଖା ପରି ମଳିନ । ମାସକୁ ଲକ୍ଷେ ଡଲାର ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରି ହୋ' ଫେରିଲେ ନିଜ ସ୍ଥାନକୁ । ଆଗରେ ଦୁଇଟି ପ୍ରଧାନ ରାସ୍ତା, ଯାହାର ଗତିପଥ ଆହୁରି କେତେ ଭାଗରେ ବିଭକ୍ତ ହୋଇପାରେ । ଜାପାନୀ ଫାସିଷ୍ଟମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା ଏବଂ ଭିଏତନାମର ସମ୍ପୂର୍ଣ୍ଣ ସ୍ୱାଧୀନତା ହାସଲ ।

ୟୁନାନ ପ୍ରଦେଶର ଏକ ଅନାମଧେୟ ଅଞ୍ଚଳ । ଜେଲରୁ ମୁକ୍ତି ପାଇବାର ମାତ୍ର କେତୋଟି ମାସ ହୋଇଛି । ଖାଇବା, ପିଇବାର ଅସ୍ୱାସ୍ଥ୍ୟକରତା ଅଭାବରୁ ସ୍ୱାସ୍ଥ୍ୟ ପୁନର୍ବାର ଭାଙ୍ଗିବାକୁ ଆରମ୍ଭ କଲାଣି । ସ୍ଥିର ନିଶ୍ଚଳ ହୋଇ ସେ ବସିଛନ୍ତି ଗୋଟିଏ ସ୍ଥାନରେ । ଆଗରେ ଅଧାଜଳା ମହମବତୀଟି ଘନ ଅନ୍ଧକାରକୁ ଉପହାସ କରି ହସିଉଠୁଛି । ମୁହଁରୁ ଅଧା ମାଂସ ଝଡ଼ିଯାଇ ଗାଲ ଦୁଇଟି କେଉଁଆଡ଼େ ପଶି-ଯାଇଛି । ଚକ୍ଷୁ କୋଟରଗତ । କିନ୍ତୁ ଆନନ୍ଦର ଦୀପ୍ତି ଶୁଷ୍କ ମୁଖମଣ୍ଡଳକୁ ସ୍ମିତ-ଆଲୋକ ମଧ୍ୟରେ ଆହୁରି ଜ୍ୱଳମାନ କରି ରଖିଛି । ଦେହରେ ଖଦଡ଼ର ତାଳି ;

କମ୍ବଳ ଭିତରୁ ସାରା ଶରୀର ଥରି ଉଠୁଛି । ଦାନ୍ତ ପୂର୍ବବତ୍ ଘେରି କଳା ଦିଶୁଛି । କିନ୍ତୁ ମୁଣ୍ଡରେ ଦୁଇଚାରିଟି ବାଳ ସିଲ୍ଭର ସୂତା ପରି ଗୁଡ଼ାଇ ହୋଇ ଯାଇଛି ବୟସର ପରିମାପ ପାଇଁ । ଅଯତ୍ନବର୍ଦ୍ଧିତ ଲମ୍ବାବାଳ ଗୋଛାକ ମୁଣ୍ଡତଳେ ତକିଆର କାମ ଦେଉଛି । ଗଭୀର ତନ୍ଦ୍ରାମଗ୍ନ ସେ । ନିଦ୍ରାର ଉପସ୍ଥିତି ସେଠି ଅସହନୀୟ । ଏହି ଅବସ୍ଥାରେ ତାଙ୍କୁ ଦେଖିଲେ ମୁଣ୍ଡ ସ୍ୱତଃ ତଳକୁ ନଇଁଯାଏ । ଏଇ ବ୍ୟାଧିଗ୍ରସ୍ତ ଲୋକ ଭିତରେ ଦେଶପ୍ରେମର କି ଗଭୀର ନିଶା !! ଭଙ୍ଗୁର ଶରୀର ନେଇ ମଣିଷକୁ ପୁଣି ଏପରି ଭଲ ପାଇ ହୁଏ !

ଦୀର୍ଘ ଚାରିବର୍ଷ ବିତିଗଲାଣି । ଦ୍ୱିତୀୟବାର କାରାବରଣ କରିବା ପୂର୍ବରୁ ଇଣ୍ଡୋଚୀନ ଜାପାନମାନଙ୍କ ହାତରେ ପଡ଼ିଛି । ଏହି ଚାରିବର୍ଷ ମଧ୍ୟରେ ସେମାନେ ସେମାନଙ୍କର ଫାସିବାଦୀ ଷଡଯନ୍ତ୍ରକୁ ଆହୁରି ରୋମାଞ୍ଚକର, ଆହୁରି ସୁଦୃଢ଼ କରି ପାରିଛନ୍ତି ଇଣ୍ଡୋଚୀନ ମାଟିରେ । ପ୍ରାଚ୍ୟ ଇଲାକାରେ ସେମାନଙ୍କର କର୍ତ୍ତୃତ୍ୱକୁ ଜାହିର କରିବା ହେଉଛି ମୂଳ ଲକ୍ଷ୍ୟ । ଶରୀର ଯନ୍ତ୍ରଣାଠାରୁ ଏହା ଅଧିକ ବେଦନାଦାୟକ । ମନରେ ସାହସ ଓ ଆଶା ନେଇ ହୋ' ସେହି ପାର୍ବତ୍ୟାଞ୍ଚଳରୁ ବାହାରିଲେ । ଲୁଚି ଛପି ରହିବାରେ ଆଉ କୌଣସି ମାଦକତା ନାହିଁ । ପ୍ରତ୍ୟକ୍ଷ ସଂଗ୍ରାମର ସମୟ ଆସନ୍ନ । ତାକୁ ହାସଲ କରିବାର ସୁଯୋଗ ଉପସ୍ଥିତ ।

ଚାଓବାଙ୍ଗ ଓ ଥାଇ ଗୁଏନ୍ ହୋଲ ସାହାପଥରେ ପ୍ରଥମ ମାଇଲଖୁଣ୍ଟ । ସେତେବେଳକୁ ଗିଆପ ଚୁ-ଭ୍ରାନ୍-ଟାନ୍ ଗରିଲାବାହିନୀ ସହିତ ଯୋଗସୂତ୍ର ସ୍ଥାପନ କରି ଟନ୍‌କିନ୍‌ଠାରେ ବିଦ୍ରୋହାତ୍ମକ କାର୍ଯ୍ୟ ଆରମ୍ଭ କରିଦେଇ ଥାଆନ୍ତି । ଫରାସୀ ଶାସନ ବିରୁଦ୍ଧରେ ସେମାନଙ୍କର ବିଦ୍ରୋହ ଘୋଷଣା ସ୍ଥାନୀୟ ଜନସାଧାରଣଙ୍କ ମନରେ ଅଭୂତପୂର୍ବ ସାହସ ଓ ଦମ୍ଭ ସଞ୍ଚାର କରିଥାଏ । ଏଥିରେ ଜନତାର ସାମରିକ ସହଯୋଗ ନ ଥିଲେ ମଧ୍ୟ ନୈତିକ ସମର୍ଥନ ଥିଲା ନିଃସ୍ୱ । ଗିଆପଙ୍କର ଜଙ୍ଗୀ ଗରିଲାବାହିନୀ ସାମରିକ ବଳ ପ୍ରୟୋଗ କରି ଜାପାନୀ ଓ ଫରାସୀ ହାତରୁ ଇଣ୍ଡୋଚୀନ ଛଡ଼ାଇ ଆଣିବା ମସୁଧାରେ ମସଗୁଲ । ତାର ପ୍ରସ୍ତୁତି, ଯୋଜନା ଓ ସଫଳତା ପାଇଁ ସେମାନେ କାୟ-ମନୋବାକ୍ୟରେ ଲାଗି ପଡ଼ିଛନ୍ତି । ସଂଖ୍ୟା ଲଘୁ ହେଲେ ମଧ୍ୟ ସେମାନଙ୍କର ପରାକ୍ରମରେ ଫରାସୀ ଓ ଜାପାନୀ ସରକାରଦ୍ୱୟ ସ୍ପଷ୍ଟ ଇଣ୍ଡୋଚୀନରେ ଅବସ୍ଥାନକୁ ଆଉ ଅନୁକୂଳ ଦେଖିପାରୁ ନାହାନ୍ତି । ତେଣୁ ସରକାରଦ୍ୱୟ ମହଲରୁ ଗିଆପବିରୋଧୀ ଜନମତ ସୃଷ୍ଟି କରିବା ପାଇଁ ବିପୁଳ ଆୟୋଜନ ଚାଲିଛି । ଏହି ଅବସରରେ ୟୁନାନ୍ ପ୍ରଦେଶର ରାଜଧାନୀ କୁନମିଙ୍ଗଠାରେ ସେମାନେ ଗୁରୁତ୍ୱପୂର୍ଣ୍ଣ ବୈଠକ ଆହ୍ୱାନ କଲେ । ଏହାର ନେତୃତ୍ୱ ନେଲେ ଫରାସୀ ଉପନିବେଶୀ ଶାସନ ତରଫରୁ ସ୍ୱୟଂ ଜେନେରାଲ ଡଗଲ୍ । ଏହି ବୈଠକର

ସହସମ୍ମତ ନିଷ୍ପତ୍ତିକ୍ରମେ ଜେନେରାଲ ଶିଆଙ୍କୁ ଚୀନ ଜାତୀୟତାବାଦୀ ଆନ୍ଦୋଳନ ତରଫରୁ ଆସୁଥିବା ପ୍ରଭୂତ ସାହାଯ୍ୟ ଓ ସମର୍ଥନ ବନ୍ଦ କରିଦେବା ନିମନ୍ତେ ଏକ ପ୍ରସ୍ତାବ ନିଆଗଲା । ଭିଏତନାମର ବିପ୍ଳବୀ ଯୁବଗଣଲୀଗ କମ୍ୟୁନିଷ୍ଟମାନଙ୍କର ଅନୁଶାସନରେ ବିବେଚ୍ୟ କରୁଛନ୍ତି ବୋଲି ଚୀନ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଗଲା । ଫଳରେ ହୋ' ଏବଂ ତାଙ୍କର ଅନ୍ୟ ଯେଉଁ ବନ୍ଧୁମାନେ ଚୀନର କୋମିଣ୍ଟାଙ୍ଗର ନେତୃତ୍ୱଠାରୁ ଆର୍ଥିକ ତଥା ନୈତିକ ଦମ୍ଭ ପାଉଥିଲେ, ସେଥିରୁ ସେମାନେ ବଞ୍ଚିତ ହେଲେ । ଏହାଦ୍ୱାରା ଚୀନ୍, ଭିଏତନାମ ଫ୍ରାନ୍ସ ଓ ଜାପାନର କମ୍ୟୁନିଷ୍ଟବିରୋଧୀ ଶକ୍ତିମାନଙ୍କର ସାମୟିକ ବିଜୟ ଘଟିଲା । ହେଲେ ହୋ' ଏହି ପ୍ରତିରୋଧରେ ଦବିଗଲେ ନାହିଁ । ସେ ଦେଖିଲେ ଦିନକୁ ଦିନ ଗଣବିଦ୍ରୋହର ସ୍ରୋତ ରାସ୍ତା କଡ଼ର ପଥର ବନ୍ଦ ତଳେ ଜମାଟ ବାନ୍ଧିବାକୁ ଆରମ୍ଭ କରିଛି । ତାକୁ ଠିକ୍ ମାର୍ଗରେ ଗଡ଼ାଇନେବା ହେଉଛି ତାଙ୍କର ପ୍ରଧାନ ଏବଂ ପ୍ରଥମ କର୍ତ୍ତବ୍ୟ । ୧୯୪୪ ମସିହା ମାର୍ଚ୍ଚ ମାସରେ ସେ ଲିଉଚୁଉଠାରେ ଏକ ସମ୍ମିଳନୀ ଡକାଇଲେ । ସେହି ସମ୍ମିଳନୀର ସିଦ୍ଧାନ୍ତ ଅନୁଯାୟୀ ସେଠାରେ ଏକ ଗରିଲା ଯୁଦ୍ଧ-ଶିବିର ପ୍ରତିଷ୍ଠା ହେଲା । ଯୁବ, ତରୁଣ, ଜଙ୍ଗୀମାନଙ୍କୁ ଉପଯୁକ୍ତ ରାଜନୈତିକ ଶିକ୍ଷା ମାଧ୍ୟମରେ ସମରିକ ବିଦ୍ରୋହ ପାଇଁ ପ୍ରସ୍ତୁତ କରିବା ହେଲା ଏହାର ମୂଳଲକ୍ଷ୍ୟ । କିନ୍ତୁ ତାହାର ସଫଳତା ନିର୍ଭର କରୁଥିଲା ଶିବିରର ଜନପ୍ରିୟତା ଓ ସାଧାରଣ ସହଯୋଗ ଉପରେ । ହୋ' ନିଜେ ଏହି କର୍ମବିଶ୍ୱାସୀ ଥିଲେ । ତେଣୁ ସେ ପ୍ରଥମେ କାଓବାଙ୍ଗ ଓ ଥାଇ-ନୁଏନ୍‌ର ନିବିଡ଼ ଅଞ୍ଚଳକୁ ନିଜର କର୍ମକ୍ଷେତ୍ର ବୋଲି ବାଛିନେଲେ ।

ଲିଉଚୁଉଠାରେ ଯେଉଁ ସମ୍ମିଳନୀ ଆହୂତ ହେଲା, ସେଥିରେ ଭିଏତନାମର ପ୍ରତିନିଧି ଥିଲେ ହୋ'-ଚି-ମିନ୍ ଏବଂ ଫାମ୍ ଭାନ୍ ଡଙ୍ଗ୍ । ସେମାନଙ୍କୁ ମୁକାବିଲା କରିବା ପାଇଁ ପ୍ରତିପକ୍ଷରୁ ଥିଲେ ଚୀନ, ଜାପାନ ଓ ଫ୍ରାନ୍ସ ସମର୍ଥିତ ପ୍ରତିନିଧିମାନେ । ଏହି ସମ୍ମିଳନରେ ହୋ' ଏବଂ ଫାମ୍-ଭାନ-ଡଙ୍ଗ୍‌ଙ୍କୁ ଗୁରୁତ୍ୱଦେଲେ ସେମାନଙ୍କୁ ସମର୍ଥନ ଜଣାଇବା ପାଇଁ ଅନ୍ୟ କେହି ପ୍ରତିନିଧି ନ ଥିଲେ । ଅଉ ସମସ୍ତେ ଜାତୀୟତାବାଦୀ, କମ୍ୟୁନିଷ୍ଟ ବିରୋଧୀ ନେତୃବୃନ୍ଦ । ଲିଉ-ଚୁଉ ସମ୍ମିଳନୀ ହୋ'ଙ୍କ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଏଠାରେ ସେ ଯେପରି ନଗ୍ନଭାବରେ ସମାଲୋଚିତ ହେଲେ ତାଙ୍କର ଜୀବଦଶାରେ ସେ କେବେ ଭୁଲି ନ ଥିବେ । ଭିଏତନାମର ଗଣ-ଆନ୍ଦୋଳନକୁ ନିଜସ୍ୱାର୍ଥ ହାସଲ ଦିଗରେ ପରିଚାଳିତ କରୁଛନ୍ତି ବୋଲି ତାଙ୍କ ବିରୁଦ୍ଧରେ ପ୍ରବଳ ଅଭିଯୋଗ । ଗଣମୁକ୍ତିର ସଂଘର୍ଷରୁ ସେ ଅପର୍ଯ୍ୟାପ୍ତ ଲାଭ ଉଠାଉଛନ୍ତି ବୋଲି ଅନ୍ୟାନ୍ୟ ବିରୋଧୀ ବନ୍ଧୁମାନଙ୍କ ମଧ୍ୟରେ ତୁମୁଳ ବାଦାନୁବାଦ । କେତେକ କହିଲେ ହୋ' ନିଜ ନାମର ପ୍ରଚାର ଓ ପ୍ରସାର ପାଇଁ

ଆନ୍ଦୋଳନକୁ ଏକବୃତିଆ ବ୍ୟବସାୟୀ ପ୍ରତିଷ୍ଠାନ ଭଳି ମାଡ଼ି ବସିଛନ୍ତି । ଏହିପରି ଅନେକ ଅପ୍ରାସଙ୍ଗିକ ଏବଂ ମନଗଢ଼ା ଅଭିଯୋଗ ତାଙ୍କ ବିରୁଦ୍ଧରେ ଅଣାଗଲା । ପ୍ରତିବାଦୀମାନଙ୍କର ଏ ପ୍ରକାର ନିର୍ବୋଧ ଓ ପରିକଳ୍ପିତ ଦୋଷାରୋପଦ୍ୱାରା ଚୀନ କର୍ତ୍ତୃପକ୍ଷ କେତେକାଂଶରେ ପ୍ରଭାବିତ ହୋଇପଡ଼ିଲେ । କାରଣ ଅଧିବେଶନରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ଯେତେବେଳେ ଭିଏତନାମ ନିମନ୍ତେ ଏକ ଅସ୍ଥାୟୀ ସରକାର ଗଠନ କରାଗଲା, ହୋ' ସେ ସରକାରର ଏକ ସାଧାରଣ ମନ୍ତ୍ରୀଭାବେ ସ୍ଥାନ ପାଇଲେ । ଅନେକଙ୍କ ମଧ୍ୟରୁ ସେ ହେଲେ ଜଣେ । ଯାହାଁର ବିଶେଷ ଦାୟିତ୍ୱ କିଛି ନାହିଁ କହିଲେ ଚଳେ । ଚୀନର ଜଣେ ପୁରାତନ ବନ୍ଧୁ ଟ୍ରୁଙ୍ଗ-ବୋଇ-କଙ୍ଗ ହେଲେ ଏହି ସରକାରର ପ୍ରଧାନ ମନ୍ତ୍ରୀ । ପ୍ରତିବାଦୀମାନଙ୍କର ବିଷାକ୍ତ ବଳୟର ଘେର ମଧ୍ୟରେ ପଡ଼ି ହୋ' ଯେ ସେଦିନ ଅପମାନିତ ବୋଧ କରି ନ ଥିଲେ ତା ନୁହେଁ, କିନ୍ତୁ ଭବିଷ୍ୟତର ଅନ୍ତିମ ସ୍ୱାର୍ଥକୁ ଆଖି ଆଗରେ ରଖି ସେ ନୀତି ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ସେ ଜାଣିଥିଲେ ଆବଶ୍ୟକୀୟ ସଂଖ୍ୟାର ସମର୍ଥନ-ବାଦୀଙ୍କ ବ୍ୟତିରେକ ମୁହଁ ଖୋଲିବା ଅର୍ଥ ହିଁ ସବୁଦିନ ପାଇଁ ନିଷ୍କ୍ରିୟ ହୋଇଯିବା । ତା'ଛଡ଼ା ଯେତେବେଳେ ଜାପାନୀମାନଙ୍କ ବିରୁଦ୍ଧରେ ଚୀନ-ମାର୍କିନ ବୁଝାମଣାର ଯେଉଁ ପର୍ବ ଆରମ୍ଭ ହୋଇଛି, ସେଥିରେ ହୁଏତ ବିଳମ୍ବ ଘଟିପାରେ !! ତେଣୁ ପରିସ୍ଥିତିର ଦାବୀ ଆଗରେ ହୋ' ମୁଣ୍ଡ ନୁଆଁଇବାକୁ ଶ୍ରେୟ ମଣିଲେ ।

କିନ୍ତୁ ସମୟକ୍ରମେ ଏହି ଅମୃମନ୍ୟ ସରକାର ମଧ୍ୟରେ ମୁହଁ ଗୁଞ୍ଜି ପଡ଼ିରହି-ଥିବା ହୋ'ଙ୍କର ବନ୍ଧୁମାନେ ଅଶାନ୍ତିରେ କୁହୁଳି ଉଠିଲେ । ପରସ୍ପର ବିରୋଧୀ ଶକ୍ତିମାନଙ୍କୁ ନେଇ ସରକାର ବଂଚାଇ ରଖିବା ସମ୍ଭବ ହୋଇ ପାରିଲା ନାହିଁ । ଏହା ଆପେ ଆପେ ଭୁସୁଡ଼ି ପଡ଼ିଲା ।

ଯେତେବେଳେ ହୋ' ଇଣ୍ଡୋଚୀନ ସୀମା ମଧ୍ୟରେ । ବିଦେଶରୁ ତାଙ୍କର ମମତା ତୁଟିଯାଇଛି । ଇଣ୍ଡୋଚୀନର ସୀମାନ୍ତ ଅଞ୍ଚଳ ବୁଲି ବୁଲି ସେ ଅମୃହରା ହୋଇ ପଡ଼ିଛନ୍ତି । ସରକାରର ଅକାଳ ପତନ ତାଙ୍କ ମନରେ ଲେଶମାତ୍ର ଛାପ ପକାଇ ପାରିନାହିଁ । ଅପର ପକ୍ଷରେ କ୍ରମବର୍ଦ୍ଧମାନ ଗରିଲାବାହିନୀର ତେଜସ୍ୱିତା ଦେଖି ସେ ଅଭିଭୂତ ହୋଇ ପଡ଼ିଛନ୍ତି । ସେମାନଙ୍କ ପାଖରେ ପାଇ ନିକଟ ଭବିଷ୍ୟତରେ 'ମୁକ୍ତ-ଭିଏତନାମର ସ୍ୱର୍ଗରାଜ୍ୟ ପାଇଁ ସ୍ୱପ୍ନ ଦେଖୁଛନ୍ତି । ସେ ନିଜକୁ ହଜାଇ ଦେଇଛନ୍ତି ସେମାନଙ୍କ ମଧ୍ୟରେ । ସେ ନିଜେ ଜଣେ ଗରିଲା ।

୧୯୪୩ ମସିହା ଡିସେମ୍ବର ମାସ ୮ ତାରିଖ । ଆଲଜିୟର୍ସଠାରୁ ସମ୍ବାଦ ଆସିଲା ଜେନେରାଲ୍ ଡିଗଲ୍ ଇଣ୍ଡୋଚୀନରେ ଫରାସୀ କର୍ତ୍ତୃତ୍ୱର ପୁନଃପ୍ରତିଷ୍ଠା ପାଇଁ ଘୋଷଣା କରିଛନ୍ତି । ଡିଗଲଙ୍କର ଏହି ଘୋଷଣା ଫଳରେ ଭିଏତନାମର

ରାଜନୈତିକ ବାୟୁମଣ୍ଡଳ ଭିନ୍ନରୂପ ଧାରଣ କଲା । ଭିଏତନାମରେ ଯେଉଁମାନେ ଦୀର୍ଘକାଳ ଧରି ଫାସିଷ୍ଟ ଫ୍ରାଙ୍କୋ ଏବଂ ଗଣତନ୍ତ୍ରବାଦୀ ଡିଗଲପନ୍ଥୀମାନଙ୍କ ମଧ୍ୟରେ ପ୍ରାର୍ଥକ୍ୟ ବିଚାର କରି କାର୍ଯ୍ୟ କରି ଆସୁଥିଲେ, ସେହିମାନେ ଡିଗଲଙ୍କର ଏତାଦୃଶ ଚରିତ୍ର ଯୋଗୁ ମର୍ମାହତ ହୋଇପଡ଼ିଲେ । ଜୁନ ମାସରେ ହନକନ୍‌ଠାରେ ଗୋଟିଏ ପ୍ରଚାରପତ୍ର ବଣ୍ଟାଗଲା । ସେଥିରେ ଡିଗଲଙ୍କୁ ମୁଖ୍ୟତଃ ସମାଲୋଚନା ହିଁ କରାଯାଇଥିଲା—

"ତା' ହେଲେ ଜର୍ମାନୀ ପ୍ରଭୁତ୍ୱ ବିରୁଦ୍ଧରେ ଯେଉଁ ଫରାସୀମାନେ ଲଢ଼ାଇ ଆରମ୍ଭ କରିଛନ୍ତି, ସେମାନେ ହିଁ ଚାହୁଁଛନ୍ତି ଅନ୍ୟ ଜାତି ଉପରେ ନିଜ କର୍ତ୍ତୃତ୍ୱ ବଜାୟ ରଖିବାକୁ । ତେଣୁ ଆମେ ଇଣ୍ଡୋଚୀନର କମ୍ୟୁନିଷ୍ଟମାନେ ଆଲଜିଅର୍ସ ସମ୍ମିଳନୀର ଏହି ପରିବର୍ତ୍ତିତ ମତବାଦକୁ ତୀବ୍ର ବିରୋଧ କରୁଛୁ । ଇଣ୍ଡୋଚୀନରେ ଫାସିଷ୍ଟ ବିରୋଧୀ ଗଣସଂଗଠନ ଗଢ଼ିତୋଳିବା ମାଧ୍ୟମରେ ଆମେ ଏବଂ ଆମର ପରି ଅନ୍ୟ ଫାସିଷ୍ଟ ବିରୋଧୀ ବିଦେଶୀ ବନ୍ଧୁମାନେ ଜାପୋପନସ୍ଥ ଫାସିଷ୍ଟ ଯୁଦ୍ଧବାଦୀଙ୍କର ଉତ୍ପୀଡ଼ନ କବଳରୁ ନିଜକୁ ମୁକ୍ତ କରିବାକୁ ଚାହୁଁ । କିନ୍ତୁ ତା ଫଳରେ ଅନ୍ୟ କେହି ଯଦି ମନେ କରେ ଯେ ଆମ୍ଭେମାନେ ଆମର ଜାତୀୟ ସ୍ୱାଧୀନତାକୁ ବଳି ଦେବୁ କିମ୍ବା ଡିଗଲପନ୍ଥୀ ବା ଅନ୍ୟ କାହାର ପ୍ରଭୁତ୍ୱକୁ ମାନିନେବୁ, ତା ହେଲେ ସେ ଖୁବ୍ ଭୁଲ୍ କରିବ ।"

ତିନି ମାସ ଯାଇନି, ଆଉ ଗୋଟିଏ ପ୍ରଚାରପତ୍ର ସେହି ମର୍ମରେ ବଣ୍ଟାଗଲା । ଏହି ପ୍ରଚାରପତ୍ର ପ୍ରମାଣିତ କରିଦେଲା ଯେ ହୋ' ଏବଂ ତାଙ୍କର ବନ୍ଧୁମାନେ ତତ୍କାଳୀନ ରାଜନୈତିକ ଅବସ୍ଥାକୁ ସମୀକ୍ଷା କରିବା ଦିଗରେ କେତେ ଧୂରନ୍ଧର ଥିଲେ ।

"ସମୟ ଆସନ୍ନ ପ୍ରାୟ । ଜର୍ମାନମାନେ ପରାଜିତ । ସେମାନଙ୍କର ପତନ ପରେ ଜାପାନର ପରାଜୟ ଘଟିବ ହିଁ ଘଟିବ । ତା' ପରେ ଆମେରିକୀୟ ଓ ଚୀନାମାନେ ଇଣ୍ଡୋଚୀନ ମଧ୍ୟକୁ ପ୍ରବେଶ କରିବେ ଏବଂ ଡିଗଲପନ୍ଥୀମାନେ ଜାପାନୀମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବେ । ବହୁପୂର୍ବରୁ ଜାପାନୀମାନେ ଫରାସୀ ଫାସିଷ୍ଟମାନଙ୍କୁ ଗାଦିଚ୍ୟୁତ କରି ସାମରିକ ସରକାର ପ୍ରତିଷ୍ଠା କରିବେ । ଇଣ୍ଡୋଚୀନରେ ବିଶୃଙ୍ଖଳାର ରାଜୁତି ଚାଲିବ । ଆମର କ୍ଷମତା ଦଖଲ କରିବାର ପ୍ରୟୋଜନ ହେବ ନାହିଁ ; କାରଣ ସେତେବେଳକୁ କୌଣସି କ୍ଷମତା ନ ଥିବ । ଆମମାନଙ୍କ ମଧ୍ୟରୁ ଅଭ୍ୟୁତ୍‌ଥାନର ବିସ୍ଫୋରଣ ଘଟିବ ଖୁବ୍ ଅନୁକୂଳ ପରିସ୍ଥିତିରେ । ଆମ ଜାତିର ଇତିହାସରେ ତା'ର କୌଣସି ତୁଳନା ହେବ ନାହିଁ । ମାହେନ୍ଦ୍ର ବେଳା ଉପସ୍ଥିତ । ଅନୁକୂଳ ଅବସ୍ଥାର ସୁଯୋଗ ନ ନେବା ହିଁ ହେବ ଆମ ପକ୍ଷରେ ଅମାର୍ଜନୀୟ ଅପରାଧ, ଆମ ଦେଶର ଇତିହାସ ବିରୁଦ୍ଧରେ ଅପରାଧ ।

ଏହି ପ୍ରସ୍ତାବପତ୍ର ଇଣ୍ଡୋଚୀନର ସ୍ୱରାଷ୍ଟ୍ର କମିଟି ମଧ୍ୟରେ ଖେଳି-ଗଲା । ଗିଆପ ଏବଂ ତାଙ୍କର ଗରିଲାବାହିନୀ ପାଇଁ ଏହା ଥିଲା ଏକ ପବିତ୍ର ଆହ୍ୱାନ ପତ୍ର । ସେମାନେ ବହୁଦିନରୁ ଆକାଂକ୍ଷିତ ଥିଲେ ନିଜର ମହାନ୍ ନେତାଙ୍କଠାରୁ ଏହିପରି ଏକ ନିର୍ଦ୍ଦେଶ ପାଇଁ । ୧୯୪୪ ମସିହା ଜୁଲାଇ ମାସର ଶେଷ ବେଳକୁ କାଓବାଙ୍ଗ ଅଞ୍ଚଳର ବିପ୍ଳବୀ ପାର୍ଟି କମିଟି ସାରା ଉତ୍ତର ଭିଏତନାମରେ ଏକ ସଶସ୍ତ୍ର ଅଭ୍ୟୁତ୍ଥାନ ପାଇଁ ପ୍ରସ୍ତାବ ଗ୍ରହଣ କଲା । କମିଟିର ପ୍ରସ୍ତାବ ଅନୁସାରେ କାଓ ବାଙ୍ଗ, ବାକ୍ ସନ୍ ଓ ଭୁ ନାଇ ପ୍ରଦେଶରେ ଗରିଲାବାହିନୀକୁ ମୁତୟନ କରାଗଲା । ଗିଆପ ହେଲେ ଏହି ଅଭିଯାନର ସୂତ୍ରଧର । ତାଙ୍କ ମତରେ ଏ-ପ୍ରକାର ଅନୁକୂଳ ପରିବେଶକୁ ଛାଡ଼ିଦେଲେ ସାମରିକ ବିଦ୍ରୋହ ହୁଏତ ସଫଳ ହୋଇ ନ ପାରେ ।

ସେହି ବର୍ଷ ସେପ୍ଟେମ୍ବର ମାସରେ ହୋ' ପାକ୍ ବୋ ପାହାଡ଼ଗୁମ୍ଫାରେ ଅବସ୍ଥାନ କରୁଥାଆନ୍ତି । ଗିଆପ ନିଜର ପ୍ରସ୍ତୁତି ଓ ଅଭିଯାନ ସମ୍ବନ୍ଧରେ ଜଣାଇବା ପାଇଁ ଗଲେ । ଅନ୍ୟ ପକ୍ଷରେ ହୋ'ଙ୍କ ସହିତ ସାକ୍ଷାତ ହିଁ ଥିଲା ତାଙ୍କର ଆଉ ଏକ ମୁଖ୍ୟ ଉଦ୍ଦେଶ୍ୟ । ହୋ' ନିଜ ପାଖରେ ତାଙ୍କର ଅତି ଅନ୍ତରଙ୍ଗ ଉତ୍ସାହୀ, ଜଙ୍ଗୀ ତରୁଣ ସହକର୍ମୀକୁ ପାଇ ଆନନ୍ଦରେ ଅଧୀର ହୋଇ ଉଠିଲେ । କିନ୍ତୁ ଗିଆପଙ୍କ ମଧ୍ୟରେ ଉଦ୍ଦାମ ତାରୁଣ୍ୟର ଅସ୍ଥିରତା ଦେଖି ସେ ସାମୟିକ ବିଚଳିତ ହୋଇ ପଡ଼ିଥିଲେ । ଅନମନୀୟ ଏହି ତରୁଣ ବିଦ୍ରୋହୀଟିକୁ ସେ ଯଦି ନିଜ ପଥରେ ସୁସଂଗତ, ସୁସଂଯତ କରି ନ ପାରିବେ, ତେବେ ଅନାଗତ ଦିନର ପଥଯାତ୍ରୀଙ୍କୁ ସେ ସମ୍ଭାଳି ପାରିବେ କିପରି !! ବୃଦ୍ଧଙ୍କ ମୁହଁରେ ଅଖଣ୍ଡ ନୀରବତା । ପାକ୍ ବୋ ପାହାଡ଼ ତଳେ ଶରତ ସନ୍ଧ୍ୟାର ଶିଖା ନଇଁ ଆସୁଛି । ହୋ' ମୁଣ୍ଡଟେକି ଚାହିଁଲେ ତାଙ୍କର ଅଳ୍ପ ବୟସ୍କ ସାଥୀ ଜଣକୁ । ମୁଖରେ ଅପୂର୍ବ ଦୀପ୍ତିର ଛଟା । ପାହାନ୍ତ ଜହ୍ନର ସ୍ନିଗ୍ଧ, କୋମଳ ଅଭ୍ର ପରି ବିକିରଣ କରୁଛି ସମୁଦାୟ ପ୍ରସ୍ତର ଖଣ୍ଡକୁ । ଦରଦୀ ଏବଂ ମୁରବୀସୁଲଭ କଣ୍ଠରେ ହୋ' ଆରମ୍ଭ କଲେ, ''ଆମେ ଶାନ୍ତିପୂର୍ଣ୍ଣ ବିପ୍ଳବର ସ୍ତର ଅତିକ୍ରମ କରି ଆସିଛୁ ; କିନ୍ତୁ ଗଣ-ଅଭ୍ୟୁତ୍ଥାନର ସମୟ ଏପର୍ଯ୍ୟନ୍ତ ଆସିନାହିଁ । ବର୍ତ୍ତମାନ ହୁଏତ ଆମ ନିକଟରେ ଯଥେଷ୍ଟ ଶକ୍ତି ନାହିଁ; କିନ୍ତୁ ତା ବୋଲି ନିଷ୍କ୍ରିୟ ହୋଇ ସେ ଅତ୍ୟାଚାରୀଙ୍କ ଦମନର ଶିକାର ହେବା, ତା ପଛରେ କୌଣସି ଯୁକ୍ତି ନାହିଁ ।'' ଏହି ପ୍ରସଙ୍ଗରେ ହୋ' ଗିଆପଙ୍କୁ ସ୍ପଷ୍ଟ କହିଦେବାକୁ ଚାହୁଁଥିଲେ ଯେ କାଓ-ବାଙ୍ଗ ସମ୍ମିଳନୀରେ ଯେଉଁ ପ୍ରସ୍ତାବ ଅନୁମୋଦିତ ହୋଇଛି, ସେଥିରେ ଦେଶର ସର୍ବାତ୍ମକ ରାଜନୈତିକ ବାୟୁମଣ୍ଡଳକୁ ସମୀକ୍ଷା କରାଯାଇ ନାହିଁ । ମାତ୍ର କେତୋଟି ସୀମିତ ଅଞ୍ଚଳର ଅବସ୍ଥାକୁ ଆଖି ଆଗରେ ରଖି ଏପରି ଏକ ସମୟବିରୋଧୀ ପଦକ୍ଷେପ ନିଆଯାଇଛି ।

ଦେଶରେ ଅଧିକାଂଶ ଅଞ୍ଚଳ ସଶସ୍ତ୍ର ବିଦ୍ରୋହ ପାଇଁ ପ୍ରସ୍ତୁତ ନୁହେଁ । ବିଦ୍ରୋହୀ ତରୁଣ ସ୍ୱେଚ୍ଛାସେବୀ, କର୍ମୀମାନେ ସୁସଂଗଠିତ ନୁହଁନ୍ତି । ଅନ୍ୟ ପକ୍ଷରେ ସେମାନଙ୍କ ହାତରେ ଅସ୍ତ୍ରଶସ୍ତ୍ରର ପ୍ରବଳ ଅଭାବ । ମେରୁଦଣ୍ଡ ହୋଇ ସାମନାରେ ଠିଆହେବା ଭଳି ସଂଗଠନ ମଧ୍ୟ ନାହିଁ । ଏପରି ଅବସ୍ଥାରେ ଗୋଟିଏ ଫାସିଷ୍ଟ ଶାସନ ବିରୋଧରେ ସାମରିକ ବିଦ୍ରୋହର ଡାକରା ଦେବା ରାଜନୈତିକ ଅପରିପକ୍ୱତାର ବିଲକ୍ଷଣ ନିଦର୍ଶନ । ଅକାଳମୃତ୍ୟୁକୁ ଡାକିଆଣିବା ସହିତ ସମାନ ହେବ । ଚରମ ବିଫଳତାକୁ କୋଳ କରି ପରି ହେବ ।

ସାମରିକ ବିଦ୍ରୋହରୁ ନିବୃତ୍ତ କରାଇ ହୋ' ଗିଆପଙ୍କୁ ନିରୁତ୍ସାହିତ କରି ନ ଥିଲେ । ସାମରିକ ସୈନ୍ୟବାହିନୀ ଗଠନ ଦିଗରେ ସେ ତାଙ୍କୁ ନୂତନ ପଥ ଦେଖାଇ ଦେଲେ । ତାହା ହେଲା 'ମୁକ୍ତିବାହିନୀ' । କିନ୍ତୁ ଏହି ମୁକ୍ତିବାହିନୀ ପରିଚାଳନାର ମାଧ୍ୟମ ହେବ ମୁଖ୍ୟତଃ ରାଜନୈତିକ ଏବଂ ପରବର୍ତ୍ତୀ ସମୟରେ ପ୍ରୟୋଜନ ହେଲେ, ଜନସହଯୋଗ ମିଳିଲେ, ସାଂଗଠନିକ ଦକ୍ଷତା ବଢ଼ିଲେ ମୁକ୍ତି ନିମନ୍ତେ ଅସ୍ତ୍ରଧାରଣ କରିବା କୌଣସି ସ୍ତରରେ ନିନ୍ଦନୀୟ ନୁହେଁ । ଅପର ପକ୍ଷରେ ସୁସଂଗତ, ସୁସଂଗଠିତ ସଶସ୍ତ୍ର ସମରରେ ଶତ୍ରୁଠାରୁ ନିଜ ଜାତିର ମୁକ୍ତି ହାସଲ ହିଁ ପରମ ସୌଭାଗ୍ୟର ବିଷୟ । ତେଣୁ ସେ ଗିଆପଙ୍କୁ ସାମରିକ ଓ ରାଜନୈତିକ ଏ ଦୁଇ ମୌଳିକ ଦିଗକୁ ଆଖି ଆଗରେ ରଖି ସୈନ୍ୟବାହିନୀ ଗଠନ କରିବା ପାଇଁ ପରାମର୍ଶ ଦେଲେ । ପ୍ରଥମ ସ୍ତରରେ ରାଜନୈତିକ ଚେତନା ବଳରେ ସଂଗଠନକୁ ଦୃଢ଼ କରିବା ଏବଂ ସେଥିରେ ସାଧାରଣ ଜନତାର ସହଯୋଗକୁ ଅପରିହାର୍ଯ୍ୟ ବୋଲି ସ୍ୱୀକାର କରିବା । ଦ୍ୱିତୀୟରେ ଉପଯୁକ୍ତ ପ୍ରସ୍ତୁତି ସହିତ ଗଣଆନ୍ଦୋଳନକୁ ତୀବ୍ର ଓ ସଂଘର୍ଷଶୀଳ କରି ଅସ୍ତ୍ରଧାରଣ କରିବାକୁ ବାଧ୍ୟ କରିବା । ହୋ'ଙ୍କର ଅକାଟ୍ୟ ଯୁକ୍ତି ଓ ରାଜନୈତିକ ଚୂଡ଼ାମଣି ନିକଟରେ ଗିଆପ ସେଦିନ ନତମସ୍ତକ ହୋଇ ଯାଇଥିଲେ । ତାଙ୍କର ଚିନ୍ତାରାଜ୍ୟରେ ଥିବା ଧୂମକୁହେଳୀ ଅଳ୍ପେ ଅଳ୍ପେ ଉଭେଇ ଗଲା । ବିଦ୍ରୋହର ଅଳଂଘ୍ୟ ଉଦ୍‌ବେଳନ କୂଳ ଖୋଜି ପାଇଲା । ସେ ବିଦାୟ ନେବାକୁ ବସିଲେ । ସ୍ନେହ-ସରାଗଭରା ହୋ'ଙ୍କର କ୍ଷୀଣ ଅସ୍ଥିସାର ପାପୁଲି ଦୁଇଟି ତାଙ୍କ ହାତକୁ ଜାବୁଡ଼ି ଧରିଛି । "ଛପି ଛପି ରହି କାମ ସାରୁଥିବ । ଦରକାର ହେଲେ ହଠାତ୍ ଆକ୍ରମଣ କରିବ । ଶତ୍ରୁ ପ୍ରତିଆକ୍ରମଣ ପାଇଁ ସୁଯୋଗ ପାଇବା ପୂର୍ବରୁ ଅଦୃଶ୍ୟ ହୋଇଯିବ ।"

ଭିଏତନାମରେ ସଶସ୍ତ୍ର ବିଦ୍ରୋହ ପାଇଁ ଉନ୍ମାଦନା ଦିନକୁ ଦିନ ବୃଦ୍ଧି ପାଉଛି । ଶ୍ରମିକ, କୃଷକ, ଛାତ୍ର, ମହିଳା ସଂଗଠନ ମଧ୍ୟରେ ଅନୁରୂପ ପ୍ରତିଫଳନ ହୋ' ଦୂରରେ ରହି ଲକ୍ଷ୍ୟ କରୁଛନ୍ତି ଆନ୍ଦୋଳନର ଗତିବିଧିକୁ । ମୁକ୍ତି ପାଇଁ ସ୍ୱତନ୍ତ୍ର

ସଶସ୍ତ୍ରବାହିନୀ ଭିଏତନାମରେ ଗଢ଼ି ତୋଳିବା ତାଙ୍କର ଅଭୂତ ଦିନର ବାସନା । ସେ ଏହି ସୁଯୋଗର ଅପେକ୍ଷାରେ ଥିଲେ । ୧୯୪୪ ମସିହା ଡିସେମ୍ବର ୨୨ ତାରିଖରେ ହୋ' "ଭିଏତନାମ ମୁକ୍ତି ପାଇଁ ସଶସ୍ତ୍ର ପ୍ରଚାରବାହିନୀ" ଗଠନ ନିମନ୍ତେ ସରକାରୀ ନିର୍ଦ୍ଦେଶ ସ୍ୱାକ୍ଷର କଲେ । ଚଉତିରିଶ ଜଣ ସଶସ୍ତ୍ର ଯୋଦ୍ଧାଙ୍କୁ ନେଇ କମ୍ରେଡ୍ ଜେନେରାଲ ଗିଆପଙ୍କ ନେତୃତ୍ୱରେ ପ୍ରଚାର ବାହିନୀ ଗଢ଼ାହେଲା । ସେତେବେଳେ ଏହାର ପ୍ରଧାନ କାର୍ଯ୍ୟାଳୟ ହେଲା, 'ଟନକାନ୍' । ବାହିନୀର ପ୍ରଥମ ଇସ୍ତାହାର ହେଲା :

(୧) "ଭିଏତନାମ ମୁକ୍ତି ପାଇଁ ସଶସ୍ତ୍ର ପ୍ରଚାର ବାହିନୀ"—ଏହି ନାମରୁ ସ୍ପଷ୍ଟ ବୁଝାପଡ଼ୁଛି ଯେ ସାମରିକ ଶକ୍ତି ଅପେକ୍ଷା ରାଜନୈତିକ ଶିକ୍ଷା ଉପରେ ହିଁ ଏହି ବାହିନୀ ବେଶୀ ନିର୍ଭରଶୀଳ । ଏହା ପ୍ରଚାରର ହତିଆର । ସାମରିକ ସଫଳତାର ମୂଳ ଉପାଦାନ ହେଲା ଶକ୍ତିବୃଦ୍ଧି ଘଟାଇବା । ଯେତେବେଳେ ସାଧାରଣ ଜନତା ଆମ ପ୍ରତିରୋଧର ମୂଳ ଭିତ୍ତି, ସେତେବେଳେ ସେମାନଙ୍କୁ ସାମରିକ ବଳରେ ସଜ୍ଜିତ କରାଇବା ଅପରିହାର୍ଯ୍ୟ । କିନ୍ତୁ ପ୍ରଥମେ ଦଳଗଠନ ପାଇଁ ଶକ୍ତିସଂଗ୍ରହ କଲାବେଳେ ଦେଖିବାକୁ ହେବ, ଯେପରି ପ୍ରତି ଅଞ୍ଚଳରେ ସଶସ୍ତ୍ର ବିଦ୍ରୋହୀ ଉପ-ସଂଗଠନମାନ ଠିକ୍ ଅଛି । ଆବଶ୍ୟକତା ପଡ଼ିଲେ ପ୍ରତି ସ୍ତରରେ ସେମାନେ ସଂଗଠିତ ହୋଇ ଆମକୁ ସାହାଯ୍ୟ କରି ପାରିବେ । ଅନ୍ୟ ପକ୍ଷରେ ମୁଖ୍ୟ ଦଳର କର୍ତ୍ତବ୍ୟ ହେଲା, ଆଂଚଳିକ ସଶସ୍ତ୍ରବାହିନୀର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଉପଯୁକ୍ତ ନିର୍ଦ୍ଦେଶ ଦେବା, ସାମରିକ ଶିକ୍ଷାକ୍ଷେତ୍ରରେ ସେମାନଙ୍କ ସହିତ ସହଯୋଗ କରିବା, ବିଭିନ୍ନ ଅଞ୍ଚଳରେ ଥିବା ଏହି ପ୍ରକାର ସାମରିକ ଶାଖାମାନଙ୍କୁ ଉନ୍ନତ ଧରଣର ଅସ୍ତ୍ରଶସ୍ତ୍ର ଯୋଗାଇବା ଏବଂ ସର୍ବୋପରି ପ୍ରତ୍ୟେକ ଶାଖାମାନଙ୍କୁ ଶକ୍ତିବୃଦ୍ଧି କରାଇବା ନିମନ୍ତେ ଉତ୍ସାହ ଦେବା ।

(୨) ଆଞ୍ଚଳିକ ସାମରିକ ଶାଖାମାନଙ୍କ ସମ୍ବନ୍ଧରେ—ଅଞ୍ଚଳିକ ଶାଖାର କାଡ଼ରମାନଙ୍କୁ ଏକତ୍ର କରାଇ ଯୁଦ୍ଧ ପରିଚାଳନା ଶିକ୍ଷା ଦେବା, ଯେଉଁମାନେ ଟ୍ରେନିଂ ପାଇ ସାରିଛନ୍ତି, ସେମାନଙ୍କୁ ବିଭିନ୍ନ ଉପଦଳମାନଙ୍କୁ ପଠାଇ ସ୍ୱବ ଅଡାନ ପ୍ରଦାନ କରିବା, ମନୋବଳ ବଜାୟ ରଖିବା ଏବଂ ପ୍ରତ୍ୟେକ କାର୍ଯ୍ୟ ସହିତ ସମନ୍ୱୟ ସ୍ଥାପନ କରିବା ହିଁ ଏହାର ମୂଳ ଲକ୍ଷ୍ୟ ହେବ ।

(୩) କୌଶଳ—ଯେଉଁ ଗରିଲାମାନେ ଏହି ମହାନ୍ କର୍ତ୍ତବ୍ୟବୋଧରେ ବ୍ରତୀ ହେବେ, ସେମାନେ ଅତ୍ୟନ୍ତ କୌଶଳୀ ହେବା ଉଚିତ । ଗୋପନୀୟତା, କ୍ଷିପ୍ରତା, ଦୁଃସାହସ ସେମାନଙ୍କର ଭୂଷଣ ହେବା ବାଞ୍ଛନୀୟ । ଦେଖାଦେଇ ନିମିଷକରେ ନିଶ୍ଚିହ୍ନ ହୋଇଯିବା ହିଁ ହେବ ସେମାନଙ୍କର ସାଧାରଣ ନୀତି ।

ପ୍ରସ୍ତର ବାହିନୀ – ମୁକ୍ତି ସେନାପରିବାରର ବଟବୃକ୍ଷ ମୂଳଖିଆ ପରି । ଏହା ହିଁ ମୁକ୍ତି ଫୌଜର ଭ୍ରୂଣ ଏବଂ ଏହାର ପରିସୀମା ଉତ୍ତରରୁ ଦକ୍ଷିଣ, ଏହିପରି ସାରା ଭିଏତନାମ ।

ହୋ ବର୍ତ୍ତମାନ ଭିଏତନାମ ମୁକ୍ତି ଆନ୍ଦୋଳନର ଅପ୍ରତିଦ୍ୱନ୍ଦ୍ୱୀ ନେତା । ତାଙ୍କ ଠାରୁ ସାହସ ଓ ଦମ୍ଭ ନେଇ ଅଚିରେ ଭିଏତନାମରେ ପ୍ରଥମ ଶଧିବଙ୍କ ଯୋଦ୍ଧା ବାହିନୀ ଗଢ଼ି ଉଠିଲା । ସେମାନଙ୍କର ସହଯୋଗ ଏବଂ ବାହୁଗ୍ରସ୍ତାଟଙ୍କ ଆଶ୍ରୟ ନେଇ ହୋ ପାକ୍‌ ବୋ ଛାଡ଼ି ବାହାରିଲେ ଭିଏତନାମର ଆଭ୍ୟନ୍ତରୀଣ ପ୍ରଦେଶକୁ । ଅକ୍ଟୋବର ୨୯ ତାରିଖରୁ ତାଙ୍କର ଏହି ଗୋପନ ଅଭିଯାନ ଆରମ୍ଭ ହେଲା । ଗ୍ରାମ ପରେ ଗ୍ରାମ, ପ୍ରଦେଶ ପରେ ପ୍ରଦେଶ ହୋ' ସାରା ଭିଏତନାମ ଘୂରି ଆସିଲେ । ଆଖି ପୂରାଇ ଥରଟିଏ ପାଇଁ ଦେଖିନେଲେ ନିଜ ପିତୃଭୂମିକୁ । ଅତୀତ ସହିତ ତୁଳନା କଲେ କେତେ ପରିବର୍ତ୍ତିତ ସତେ !! ଥାଇ ଙ୍ଗୁଏନ ପ୍ରଦେଶରେ ପ୍ରଧାନ କାର୍ଯ୍ୟାଳୟ ରହିଲା । ଦଶମାସ ପରେ ହୋ' ହାନୋଇ ଉପକଣ୍ଠରେ ପାଦ ଦେଲେ । କିନ୍ତୁ ପାକ୍‌ ବୋ ସବୁବେଳେ ମନେପଡ଼େ । ଲେନିନ୍‌ ସିନ୍ଧୁ ତଟରେ ସେହି ଛଳ ଛଳ ଆଖି, ମାର୍କସ୍‌ ପାହାଡ଼ୀ ଝୁଣ୍ଟାର ଅନାବିଳ ମମତା ତାଙ୍କୁ ପୁଣି ବାହୁଡ଼ାଇ ଆଣେ । ଆଶ୍ରୟ ନେବାକୁ ସେ ମଝିରେ ମଝିରେ ଆସି ଯାଆନ୍ତି । ନିହାତି ନିରାପଦ ଓ ଆପଣାର ଭାବି । ଦିନେ ଅଧେ ନୁହେଁ, ୧୯୪୭ରୁ ୧୯୫୪ ପର୍ଯ୍ୟନ୍ତ ଅନେକ ଦିନ, ଅନେକ ରାତି ସେହିଠାରେ କଟିଛି ।

ଏହି ସମୟଟା ଥିଲା ମୁଖ୍ୟତଃ ପ୍ରସ୍ତୁତିର ସମୟ । ଭିଏତନାମୀ ଗରିଲାମାନେ ଫରାସୀ ସେନାବାହିନୀରେ ମିଶି ଜାପାନୀ ଫାସିଷ୍ଟମାନଙ୍କ ସହିତ ଲଢ଼ାଇ ଆରମ୍ଭ କରି ଦେଇଥାନ୍ତି । ସମୟକ୍ରମେ ଗରିଲାବାହିନୀ ନୂତନ କୌଶଳ ଅନୁସରଣ ଯୋଗୁ ଗ୍ରାମ ପରେ ଗ୍ରାମ ଦଖଲ କରୁଥାନ୍ତି । ଖୁବ୍ କମ୍‌ ସମୟ ମଧ୍ୟରେ ପାହାଡ଼ୀ ଅଞ୍ଚଳରେ ସେମାନେ ନିଜ କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରିଲେ । ମଇଦାନରେ ଲଢ଼ାଇ ସହିତ ଜଙ୍ଗଲରେ ସାମରିକ ପାଠଶାଳା ମାନଙ୍କରେ ନୂତନ କ୍ୟାଡ଼ରମାନଙ୍କୁ ଶିକ୍ଷା ଦିଆଯାଉଥାଏ । ଗିଆପ ଥିଲେ ଏହାର ଅଧିନାୟକ । ତାଙ୍କୁ କେନ୍ଦ୍ର କରି ଭିଏତନାମ ମୁକ୍ତିବାହିନୀ ନୂତନ ସାମରିକ ସ୍ତର ଦେଇ ଗତି କରୁଥାଏ । ହୋ' ମଝିରେ ମଝିରେ ଏହି ସ୍କୁଲରେ ଯୋଗ ଦେଉଥିଲେ । ପିଲାମାନଙ୍କ ସହିତ ନିଜେ ବସି ପାଠ ପଢ଼ିବାର କମ୍‌ ସଉକ ନ ଥାଏ ତାଙ୍କର । ଗରିଲା ମୁକ୍ତିବାହିନୀ ଗଠନ ପର ଠାରୁ ଭିଏତନାମୀ ତରୁଣ ଜଙ୍ଗୀମାନଙ୍କ ମନରେ ଅଭିନବ ଆଶାର ସଂଚାର ହୋଇଛି । ଯୌବନର ଉଚ୍ଛଳ ଯମୁନା ତଟରେ ଘୂରିଘୂରି ସେମାନେ ଖୋଜି ପାଇଛନ୍ତି । ବାମପନ୍ଥୀ ସମରବିଳାସୀ ଭାବପ୍ରବଣ ଏକ ସଂଗଠନ । ଯାହାପାଇଁ ସେମାନଙ୍କର ଉଦ୍ଦାମ

ଯୌବନ, କୁଳଲକ୍ଷ୍ମୀ ଶକ୍ତି, ତେଜ, ସାମର୍ଥ୍ୟ ଅପେକ୍ଷା କରି ରହିଥିଲା । ବିସ୍ମୃତିର ଅଦ୍ୟ କୈଶୋରରୁ ଜୀବନର ବିଷାକ୍ତ ବଳୟ ମଧ୍ୟକୁ ଡେଇଁ ପଡ଼ିବାର ଯେଉଁ ନିଶା ସେମାନଙ୍କୁ ପାଇଥିଲା ତାହା ସ୍ୱଭାବତଃ ଶାନ୍ତ ହେବାକୁ ଲାଗିଲା । ଘନ-ଜଙ୍ଗଲରେ ଆତ୍ମଗୋପନକାରୀ ଗରିଲା ହୋଇ ଜୀବନ ବିତାଇବାର ଯେଉଁ ଦୁର୍ବାର ବାସନା ଅଭିଶପ୍ତ ହୋଇ ପଡ଼ିରହିଥିଲା ତାହା ଆଜି ବାସ୍ତବରେ ପରିଣତ ହେବାକୁ ଯାଉଛି । ସବୁଜ ଶ୍ୟାମଳ ଶସ୍ୟ କ୍ଷେତ ମଧ୍ୟରୁ ଉତ୍ତପ୍ତ ବାୟୋନେଟର ଗନ୍ଧ ଆସୁଛି । ନିର୍ଭୀକ, ଦୁଃଖଦ, ବିପଦ ପୂର୍ଣ୍ଣ ଜୀବନର ରୋମାଞ୍ଚକର ଆହ୍ୱାନରେ ଭିଏତନାମର ଦୁର୍ଦ୍ଧର୍ଷ ତରୁଣ ଆତ୍ମହରା ହୋଇ ଉଠିଛି । ସେ ଝୁଲିଯିବାକୁ ଚାହେଁ ଯେଉଁ ଘନପର୍ବତ ଦେଶ୍ୱ ମାଳ ଅଞ୍ଚଳକୁ, ଯେଉଁଠି ରହି ସେ ଭିଏତନାମର ମୁକ୍ତିଘଣ୍ଟି ପିଟି ପାରିବ । ଦଳ ଦଳ ହୋଇ ଛୁଟିଲେ ସେହିଆଡ଼େ । ଭିଏତନାମର ଜଙ୍ଗଲ, ଗିରିପଥ, ସବୁଜ ଶସ୍ୟକ୍ଷେତରେ ଆଜି ଆତ୍ମଗୋପନକାରୀ ତରୁଣ ଗରିଲା, କିଶୋର ଜଙ୍ଗୀ ।

ସେମାନଙ୍କର ଏତାଦୃଶ ଗଡ଼ଜଣା ଅଭିଯାନ ଦେଖି ହାନୋଇରେ ଅବସ୍ଥାପିତ ଫରାସୀ ଶାସନକର୍ତ୍ତା ଆଉ ସହି ପାରିଲେ ନାହିଁ । ଭିଏତମିନ୍‌କୁ ଇଣ୍ଡୋଚୀନ ମୃତ୍ତିକାରୁ ମୂଳପୋଛ କରିଦେବା ପାଇଁ ସିଦ୍ଧାନ୍ତ ହେଲା । ବିଂଶ-ଶତାବ୍ଦୀର ମଧ୍ୟଭାଗ । ଫରାସୀ ପୁଞ୍ଜିତନ୍ତ୍ରୀ ସରକାର ହାତରେ ଗୁଳିଗୋଳାର ପରିମାଣ କିଛି କମ୍ ନୁହେଁ । ସାମରିକ ବାହିନୀ ଅନୁରୂପ ବଳଶାଳୀ । ଭିଏତମିନ୍ ପରି ସଦ୍ୟଜନ୍ମ ଶିଶୁଟିକୁ ଗୋଡ଼ରେ ଦଳିଦେବା ପାଇଁ କେତେ ସମୟ ଲାଗିବ ! ୧୯୪୫ ମସିହା ମାର୍ଚ୍ଚ ମାସ ୧୨ ତାରିଖ ପାଇଁ ଦିନ ଠିକ୍ ହେଲା । ହାନୋଇର ଉତ୍ତରପଟରୁ ଆକ୍ରମଣ ପାଇଁ ସାମରିକ ବାହିନୀ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ଠିକ୍ ତାର ତିନିଦିନ ପୂର୍ବରୁ ମାର୍ଚ୍ଚ ମାସ ୯ ତାରିଖ ପ୍ରଭାତରୁ ଜାପାନୀ ସୈନ୍ୟବାହିନୀ ଫରାସୀ ସୈନ୍ୟଛାଉଣୀ ଆକ୍ରମଣ କଲେ । ହାନୋଇରେ ଥିବା ଫରାସୀ ମୁଖ୍ୟମାନେ ଜାପାନୀ ହାତରେ ବନ୍ଦୀ ହେଲେ । ବସ୍ତୁତଃ ଫରାସୀ ଶାସନର ପତନ ଘଟିଲା । ଇଣ୍ଡୋଚୀନରେ ଜାପାନୀମାନେ ନିଜ ରାଜତ୍ୱ ପ୍ରତିଷ୍ଠା କଲେ । ଏ ପ୍ରକାର ଅଚାନକ ଘଟଣାବଳୀର ଆଶୁ ସମାଧାନ ପାଇଁ କେନ୍ଦ୍ର ପାର୍ଟିର ସ୍ଥାୟୀ ପରିଷଦ ମାର୍ଚ୍ଚ ୯ ତାରିଖରୁ ୧୨ ତାରିଖ ପର୍ଯ୍ୟନ୍ତ ତିନି ଦିନ ବାଙ୍ଗ ଠାରେ ବସିଲା । ଏହି ବୈଠକର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସାମ୍ପ୍ରତିକ ରାଜନୈତିକ ପରିସ୍ଥିତିର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଇଣ୍ଡୋଚୀନ ମୁକ୍ତିବାହିନୀର ଭୂମିକାକୁ ଜନସାଧାରଣଙ୍କ ସମ୍ମୁଖରେ ସ୍ପଷ୍ଟ କରିଦେବା । ବୈଠକର ନିଷ୍ପତ୍ତି ଅନୁଯାୟୀ ଏକ ପ୍ରସ୍ତାବ ପତ୍ର "ଜାପାନୀ ଫରାସୀ ଦ୍ୱନ୍ଦ୍ୱ ଏବଂ ଆମର କର୍ତ୍ତବ୍ୟ" ଶିରୋନାମାରେ ପ୍ରକାଶ ପାଇଲା ।

'କ୍ଷମତା ଦଖଲ ପରେ ଫାସିବାଦୀ ଜାପାନହିଁ ଭିଏତନାମ ବିପ୍ଳବର ଏକମାତ୍ର ଶତ୍ରୁ । ତେଣୁ ଯେଉଁ ଫରାସୀମାନେ ଫାସିଷ୍ଟ ଜାପାନୀ ସହିତ ପ୍ରକୃତରେ ଲଢ଼ାଇ କରିବା ପାଇଁ ଆଗ୍ରହୀ ସେମାନଙ୍କ ସହିତ ଭିଏତନାମୀ ବିପ୍ଳବୀମାନେ ଯୋଗାଯୋଗ ସ୍ଥାପନ କରିବେ । ସାଧାରଣ ଅଭ୍ୟୁତ୍ଥାନ ଆରମ୍ଭ କରିବା ପୂର୍ବରୁ କିଛି କିଛି ଆଞ୍ଚଳିକ ବିଦ୍ରୋହ କରିବା ପାଇଁ ବୈଠକ ସିଦ୍ଧାନ୍ତ ଗ୍ରହଣ କରିଛି । କମିଟିର ନିର୍ଦ୍ଦେଶାବଳୀରୁ ବୁଝା ପଡ଼େ ଯେ କେଉଁ ପଥ ଧରି ଚାଲିବାକୁ ହେବ ଏବଂ ଅଭ୍ୟୁତ୍ଥାନ ପୂର୍ବ ସମସ୍ତ ପାଇଁ କେଉଁ କର୍ମପନ୍ଥା ଶ୍ରେଷ୍ଠ । ସାରା ଦେଶରେ ମୁକ୍ତ-ଫୌଜ ଗଢ଼ା ହୋଇ ଯାଉଛି । ତା' ସହିତ ଗଢ଼ା ହେବ ସାମରିକ ବାହିନୀ, ମୁକ୍ତ ବାହିନୀ ଏବଂ ଜନସାଧାରଣଙ୍କର ବିପ୍ଳବୀ ସଂସ୍ଥା । କିନ୍ତୁ ପରିସ୍ଥିତି ବର୍ତ୍ତମାନ ସୁଦ୍ଧା ସାମରିକ ଅଭ୍ୟୁତ୍ଥାନ ପାଇଁ ଅନୁକୂଳ ନୁହେଁ" ।

ପାର୍ଟିର କଠୋର ନିର୍ଦ୍ଦେଶ ସହିତ ଗିଆପର 'ସଶସ୍ତ୍ର ପ୍ରଚାର ବାହିନୀ' ଏବଂ ଚୂଭାନ୍ ଟାନର 'ଜାତୀୟ ମୁକ୍ତ ବାହିନୀ' ନିଜ ଗନ୍ତବ୍ୟ ପଥରେ ଆଗେଇ ଚାଲିଲା । ଦିନ ପରେ ଦିନ ସେମାନଙ୍କର ଅଭିଯାନ ବଢ଼ି ଚାଲିଥାଏ । ଏପ୍ରିଲ ମାସର ପ୍ରଥମ ବେଳକୁ ଦୁଇ ଦଳ ମୁହାଁମୁହିଁ ହେଲେ ଥାଇନୁଏନ୍ ଠାରେ । ହଏପ ହୋଆ ଠାରେ ଗରିଲା ନେତାମାନଙ୍କର ସାଧାରଣ ବୈଠକ ଡକାଯାଇଥାଏ । ଗିଆପ ମଧ୍ୟ ବୈଠକରେ ଯୋଗ ଦେଲେ । ଯୋଦ୍ଧା ବାହିନୀର ନେତାମାନେ ସର୍ବସମ୍ମତିକ୍ରମେ ନିଷ୍ପତ୍ତି ଦେଲେ ସାଧାରଣ ଅଭ୍ୟୁତ୍ଥାନ ପାଇଁ । ଦକ୍ଷିଣ ପଟରୁ ଭିଏତନାମକୁ ଦଖଲ କରିବା ହେଲା ପ୍ରଥମ ପ୍ରୟାସ । ଠିକ ସେହି ସମୟରେ ହୋ' ଗିଆପଙ୍କୁ ଡକାଇ ପଠାଇଲେ, ବହୁତଦିନ ପରେ ଟିକେ ଦେଖିବା ପାଇଁ ।

ଅତୀତର କାହାଣୀ ଦୋହରା ହେଲା ମାତ୍ର । ପୁରୁଣା ଗୀତରେ ନୂଆ ସୁର ପରି । ହୋ' ସହଯୋଦ୍ଧାଟିକୁ ପୁଣି ପାଖକୁ ଟାଣି ଆଣିଲେ । ତାଙ୍କର ଅତ୍ୟଧିକ ଭାବପ୍ରବଣତା, ଦୁଃସାହସିକତା ବିରୁଦ୍ଧରେ ମୃଦୁସ୍ୱର ଉତ୍ତୋଳନ କରି କହିଲେ, ସାଧାରଣ ଅଭ୍ୟୁତ୍ଥାନର ଡାକରା ଦେଇ ପାର ମାତ୍ର ତା ପୂର୍ବରୁ ତିନୋଟି ସର୍ତ୍ତ ପୂରଣ କରିଥିବା ନିତାନ୍ତ ପ୍ରୟୋଜନ ।

(୧) ଶତ୍ରୁ ଘୋର ସଙ୍କଟର ସମ୍ମୁଖୀନ ।
(୨) ଶୋଷଣ, ନିପୀଡ଼ନ ସମ୍ବନ୍ଧରେ ଜନସାଧାରଣ ସମ୍ପୂର୍ଣ୍ଣ ସଚେତନ ।
(୩) ବିପ୍ଳବୀମାନଙ୍କ ତରଫରୁ ଅଭ୍ୟୁତ୍ଥାନର ଉଦ୍‌ଯୋଗ ପର୍ବ ସମାପ୍ତ ପ୍ରାପ୍ତ ।

୧୯୪୫ମସିହା ଜୁନ୍ ୨ ତାରିଖରେ ହୋ' ମୁକ୍ତ ବାହିନୀ ରଣ କୌଶଳରେ ସାମାନ୍ୟ ପରିବର୍ତ୍ତନ ପାଇଁ ଇଚ୍ଛାକଲେ । ଦେଶ ମଧ୍ୟରେ ଥିବା ବିଭିନ୍ନ ପ୍ରକାରର

ଗେରିଲା ବାହିନୀ, ମୁକ୍ତି ସେନାନୀମାନଙ୍କୁ ନୂତନ ଉପାୟରେ ସଂଗଠିତ କରିବା ପାଇଁ ସେ ମନ ବଳାଇଲେ । ପ୍ରତି ଅଞ୍ଚଳରେ ଗୋଟିଏ ଲେଖାଁ ମୁକ୍ତ ଫୌଜ ରହିବାର ସିଦ୍ଧାନ୍ତ ହେଲା । ଏହି ସମସ୍ତ ଆଞ୍ଚଳିକ ଶାଖାମାନ ଏକତ୍ରିତ ହୋଇ ଗୋଟିଏ ମୁକ୍ତି ବାହିନୀରେ ସାମିଲ ହେବେ ଯାର ସୈନ୍ୟାଧ୍ୟକ୍ଷ ହେବେ କମ୍ରେଡ଼ ଗିଆପ । ବିପ୍ଳବୀମାନଙ୍କର ଅସ୍ଥାୟୀ ରାଜଧାନୀ ହେଲା ଥାନଥୁଏ । ଦାପ ନ୍ତାଓ ଦଖଲ ପରେ ପାର୍ଟି ପାଇଁ ପ୍ରଥମ ଟେଲିଫୋନ୍ ଆସିଲା । ଠିକ୍ ସେତିକବେଳେ ହୋ' ଖୁବ୍ ଅସୁସ୍ଥ ହୋଇ ପଡ଼ିଲେ । ଗିଆପ ତାଙ୍କ ପାଖରେ ରହୁଥାଆନ୍ତି । ନିଜର ସହୃଦୟୀ ନେତା ଓ ମୁକ୍ତି ଆନ୍ଦୋଳନର ସୂତ୍ରଧାରଙ୍କୁ ଏପରି ଅବସ୍ଥାରେ ଦେଖି ସେ ବିଚଳିତ ହୋଇ ପଡ଼ିଲେ । ତାଙ୍କର ବିଛଣା ପାଖରେ ବସି ନିଜ ଡାଏରୀ ପୃଷ୍ଠାରେ ଲେଖିଥିଲେ—

"ଘଣ୍ଟା ଘଣ୍ଟା ଧରି ସେ ଅଜ୍ଞାନ ରହୁଥାଆନ୍ତି । ଜ୍ଞାନ ଫେରି ପାଇଲେ ବିଳବିଳେଇ ହୁଅନ୍ତି "ବର୍ତ୍ତମାନ ଆମ ପାଇଁ ଅନୁକୂଳ ଅବସ୍ଥା ଆସିଛି ସେ କୌଣସି ମୂଲ୍ୟର ବିନିମୟରେ ସ୍ୱାଧୀନତା ଛଡ଼ାଇ ଆଣିବାକୁ ହେବ, ଏପରିକି ତା ପାଇଁ ସମୁଦାୟ ଟ୍ରୁଙ୍ଗ୍ ସନ୍ ଗିରିଶୃଙ୍ଗରେ ଅଗ୍ନି ସଂଯୋଗ କରିବା ପାଇଁ ପଡ଼ିଲେ ମଧ୍ୟ । ଗରିଲ ମୂଳରେ ଏହି ଜ୍ୱଳନ୍ତ ଅଭ୍ୟୁତ୍ଥାନର ସୁଯୋଗ ନେବାକୁ ହେବ ଏବଂ ଗଣଶକ୍ତିକୁ ବ୍ୟାପକ କରିବାକୁ ପଡ଼ିବ । ସେତେବେଳେ ମୁଁ ବିଶ୍ୱାସ କରି ନ ଥିଲି ଯେ ମୁଁ ତାଙ୍କର ମୃତ୍ୟୁକାଳୀନ ଜମାନବନ୍ଦୀ ନେଉଛି । ପରେ ଯେତେବେଳେ ସେହିକଥା ମୁଁ ଚିନ୍ତାକରେ, ମୁଁ ବୁଝିଛି ସେଦିନ ସେ ଏତେ ଦୁର୍ବଳ ଅନୁଭବ କରୁଥିଲେ ଯେ ସେ ନିଜେ ମୋତେ ତାଙ୍କର ଶେଷ ନିର୍ଦ୍ଦେଶ ଦେଉଥିଲେ" ।

କିଛିଦିନ ପରେ ହୋ' ସୁସ୍ଥ ହୋଇ ଉଠିଲେ । ବନ୍ଧୁମାନଙ୍କୁ ଦେଇଥିବା ନିର୍ଦ୍ଦେଶ ସେ ନିଜେ ବର୍ତ୍ତମାନ ପାଳନ କରୁଛନ୍ତି । ଗଣମୁକ୍ତି ଫୌଜ ଜନମନ ଭିଏତନାମରେ ଆସନ ଜମାଇବାରେ ଲାଗିଛି ।

ଆମେରିକା ସେନବାହିନୀର ମୁଖ୍ୟ ଜେନେରାଲ ଓ୍ୱେଡମେୟର ସେତେବେଳେ ଦକ୍ଷିଣ ଚୀନରେ ଥାଆନ୍ତି । ୟୁନାନ୍ ପ୍ରଦେଶରେ ଥିବା ମୁଖ୍ୟ ବିମାନଘାଟିକୁ ଜାଳି ଉଡ଼ାଇଦେବା ପାଇଁ ଜାପାନୀମାନେ ଧମକ୍ ଦେଇ ଥାଆନ୍ତି । ସେହି ଧମକ୍‌ର ମୁକାବିଲା କରିବା ପାଇଁ ମାର୍କିନ୍ ସେନାଧ୍ୟକ୍ଷ ନିଜର ମିତ୍ରପକ୍ଷ ଖୋଜିବୁଲୁଥାଆନ୍ତି । ଚୁଙ୍କିଙ୍ଗଠାରେ ଥିବା ଫରାସୀ ସାମରିକ ବାହିନୀ ସହିତ ତାଙ୍କର ଯୋଗାଯୋଗ ହେଲା । କିନ୍ତୁ ଇଣ୍ଡୋଚୀନରେ ଫରାସୀ ଆଧିପତ୍ୟକୁ

ଆମେରିକୀୟ ସେନାଧ୍ୟକ୍ଷ ସହଜରେ ଗ୍ରହଣ କରି ପାରିଲେ ନାହିଁ । କାରଣ ସେମାନେ ମଧ୍ୟ ଚାହୁଁଥିଲେ ଫରାସୀମାନଙ୍କୁ ଗାଦିଚ୍ୟୁତ କରି ଇଣ୍ଡୋଚୀନ ଦଖଲ କରିବାକୁ ଆମେରିକାର ସ୍ୱତନ୍ତ୍ର ଯୋଗସ୍ଥାପନକାରୀ ସଂସ୍ଥା ଭିଏତମିନ୍ ସହିତ ଆଲୋଚନା ଆରମ୍ଭ କଲେ । ଉଭୟଙ୍କ ମଧ୍ୟରେ ସ୍ୱାର୍ଥଗତ ସାମଞ୍ଜସ୍ୟ ନ ଥିଲେ ମଧ୍ୟ ମାର୍କିନ୍ ସେନାବାହିନୀ ଭିଏତମିନ୍ ସହିତ ସାଲିସ କରିବା ଶ୍ରେୟ ମଣିଲେ ।

୧୯୪୫ ଫେବୃଆରୀ ମାସରେ ହୋ' ବ୍ୟକ୍ତିଗତଭାବେ ଆମେରିକୀୟ ଜେନେରାଲ୍ ହାଲିଓ୍ୱେଲଙ୍କ ସହିତ ସାକ୍ଷାତ କରିବା ପାଇଁ କୁନମିଙ୍ଗ ଯାତ୍ରା କଲେ । ଆଲୋଚନା ପ୍ରସଙ୍ଗରେ ଭିଏତନାମ ଗଣଆନ୍ଦୋଳନର ଅପ୍ରତିଦ୍ୱନ୍ଦ୍ୱୀ ନେତା କମ୍ରେଡ଼ ହୋ' ମାର୍କିନ ସେନାମୁଖ୍ୟଙ୍କୁ ଗୁଳିଗୋଳା ଓ ଅତ୍ୟାଧୁନିକ କିଛି ଅସ୍ତ୍ରଶସ୍ତ୍ର ଯୋଗାଇବା ପାଇଁ ଅନୁରୋଧ ଜଣାଇଲେ । କିନ୍ତୁ ହାଲିଓ୍ୱେଲଙ୍କ ପ୍ରତିଶ୍ରୁତି ପୂର୍ବରୁ ଦୁଇଟି ସର୍ତ୍ତ ଥିଲା, ପ୍ରଥମରେ ମାର୍କିନ ଅସ୍ତ୍ରଶସ୍ତ୍ର ଫରାସୀମାନଙ୍କ ବିରୁଦ୍ଧରେ ବ୍ୟବହୃତ ହେବନାହିଁ ଏବଂ ଦ୍ୱିତୀୟରେ ଭିଏତନାମର ମୁକ୍ତ ଅଞ୍ଚଳମାନଙ୍କରେ ଆମେରିକୀୟମାନଙ୍କର ଅବାଧ ପ୍ରବେଶ ବଜାୟ ରହିବ । ହୋ' ଏହି ସର୍ତ୍ତର କୌଣସି ଉତ୍ତର ଦେଇ ନ ଥିଲେ ସତ କିନ୍ତୁ ତାଙ୍କର ନୀରବତା ଦେଖି ହାଲିଓ୍ୱେଲ ଅସ୍ତ୍ର ଯୋଗାଇବାର ସିଦ୍ଧାନ୍ତ ନେଇଥିଲେ । ଯାହା କିଛି ଅସ୍ତ୍ର ଆମେରିକାରୁ ଆସିଥିଲା ତାହା ଭିଏତନାମର ଆବଶ୍ୟକତା ତୁଳନାରେ କିଛି ନୁହେଁ ଏବଂ ତାହା ଉନ୍ନତ ଧରଣର ନ ଥିଲା । ହୋ'-ଙ୍କର କୁନମିଙ୍ଗ ଯାତ୍ରା ଯେ ବ୍ୟର୍ଥ ହେଲା ତା ନୁହେଁ, ସେହି ମୁହୂର୍ତ୍ତଠାରୁ ମାର୍କିନ ଅନୁପ୍ରବେଶ ସମ୍ବନ୍ଧରେ ସେ ସଚେତନ ରହିଲେ । ସେମାନଙ୍କର କୌଶଳ, ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ରକୁ ବୁଝିବା ପାଇଁ ହୋ' ପାଇଲେ ପର୍ଯ୍ୟାପ୍ତ ସମୟ ।

ମାର୍କିନ ସେନାମୁଖ୍ୟଙ୍କଠାରୁ ଆଂଶିକ ଆଘାତପ୍ରାପ୍ତ ହୋଇ ହୋ' ଫରାସୀ ସାମରିକ ସଂସ୍ଥାର ମୁଖ୍ୟ ସାନ୍ତେନିଙ୍କ ସହିତ ଯୋଗାଯୋଗ କରିବା ପାଇଁ ବ୍ୟଗ୍ର ହୋଇ ପଡ଼ିଲେ । କାରଣ ସେ ଫରାସୀ ସରକାର ତରଫରୁ ଇଣ୍ଡୋଚୀନ ଶାସନ ଦାୟିତ୍ୱରେ ଥାଆନ୍ତି । ହୋ' ଇଣ୍ଡୋଚୀନର ରାଜନୈତିକ ଲକ୍ଷ୍ୟ ସମ୍ବନ୍ଧରେ ଏକ ପାଞ୍ଚଦଫା ସମ୍ବଳିତ ସ୍ମାରକଲିପି ସାନ୍ତେନିଙ୍କୁ ଦେଲେ । ଏହାକୁ ପ୍ରସ୍ତୁତ କରିବା କ୍ଷେତ୍ରରେ ତାଙ୍କୁ ସାହାଯ୍ୟ କରିଥିଲେ ମାର୍କିନ ସାମରିକ ଦପ୍ତରର ଜଣେ ସଦସ୍ୟ ଲେଫ୍ଟନାଣ୍ଟ ଫେଲିନ ।

ଏହି ସ୍ମାରକଲିପି ଥିଲା—

(୧) ସାର୍ବଜନୀନ ଭୋଟ ଦାନ ଭିତ୍ତିରେ ନିର୍ବାଚିତ ପାର୍ଲାମେଣ୍ଟ ଏହି ଦେଶ ଶାସନ କରିବ । ଆମେ ଯେତେଦିନ ପର୍ଯ୍ୟନ୍ତ ସ୍ୱାଧୀନ ନ ହୋଇଛୁ,

ସେତେଦିନ ପର୍ଯ୍ୟନ୍ତ ଜଣେ ଲେଖାଁ ଫରାସୀ ଗଭର୍ଣ୍ଣର ରହିବେ; ସେ କେବଳ ପ୍ରଧାନମନ୍ତ୍ରୀର ଦାୟିତ୍ୱ ତୁଲାଇବେ । ସେ ପାର୍ଲାମେଣ୍ଟ ଅନୁମୋଦିତ ମନ୍ତ୍ରୀମଣ୍ଡଳ ବା ପରାମର୍ଶଦାତା କମିଟି ଗଠନ କରି ପାରିବେ । ଏହି ବିଭିନ୍ନ ଦେହର ନିର୍ଦ୍ଦିଷ୍ଟ ଦାୟିତ୍ୱ ପରେ ସ୍ପଷ୍ଟ କରି ଦିଆଯିବ ।

(୨) ଅନ୍ୟୁନ ପାଞ୍ଚବର୍ଷ ଏବଂ ସର୍ବାଧିକ ପଚିଶବର୍ଷ ମଧ୍ୟରେ ଏହି ଦେଶକୁ ସ୍ୱାଧୀନତା ଦେବାକୁ ପଡ଼ିବ ।

(୩) ଏ ଦେଶରେ ଥିବା ସମସ୍ତ ପ୍ରାକୃତିକ ସମ୍ପଦ ଦେଶବାସୀଙ୍କର ହେବ । ବର୍ତ୍ତମାନ ଆଇନସିଦ୍ଧ ମାଲିକମାନେ ଅବଶ୍ୟ କ୍ଷତିପୂରଣ ପାଇବେ । ଫରାସୀମାନେ ଅର୍ଥନୈତିକ ସୁବିଧା ସୁଯୋଗ ହାସଲ କରି ପାରିବେ ।

(୪) ଜାତିସଂଘଦ୍ୱାରା ଅନୁମୋଦିତ ସକଳ ପ୍ରକାର ସ୍ୱାଧୀନତା ଇଣ୍ଡୋଚୀନର ଜନସାଧାରଣ ଭୋଗ କରିବେ ।

(୫) ପ୍ରିଅମ୍ ଚୁକ୍ତି ନଷ୍ଟ ହେବ ।

ହୋ' ଅନେକ ଦିନ ଅପେକ୍ଷା କଲେ ଏହାର ଉତ୍ତର ପାଇବା ପାଇଁ । କିନ୍ତୁ ସାନ୍ତେନିଙ୍କଠାରୁ କୌଣସି ପ୍ରତ୍ୟୁତ୍ତର ମିଳିଲା ନାହିଁ । ସାମାନ୍ୟତମ ଅବହେଳା ଏବଂ ବୁଦ୍ଧିମତ୍ତାର ଅଭାବ ଯୋଗୁଁ ସାନ୍ତେନି ଏହି ସୁଯୋଗକୁ ବିନିଯୋଗ କରି ପାରିଲେ ନାହିଁ । ଏଇ ଅବକାଶ ମଧ୍ୟରେ ହୋ'-ଙ୍କର ଆପୋଷ ଆଲୋଚନାର ସଫଳ ସ୍ୱପ୍ନ ଭାଙ୍ଗି ଚୁରମାର ହୋଇଗଲା ।

ହୋ' କିନ୍ତୁ ଏଥିରେ ବିଚଳିତ ହୋଇ ନ ଥିଲେ । ଲକ୍ଷ୍ୟସ୍ଥଳ ଦୁରୂହ ହେଲେ ବି ଜାଣିଶୁଣି ସେ ସେଥିରେ ପାଦ ଦେଇଛନ୍ତି । ହଟିବାର ସମସ୍ୟା ଏ ନୁହେଁ । ନିଜ ପକ୍ଷରୁ ସେ ଚେଷ୍ଟା ଚଳାଇଲେ ସାନ୍ତେନି କିମ୍ବା ଅନ୍ୟ କୌଣସି ଫରାସୀ କର୍ତ୍ତୃପକ୍ଷଙ୍କ ସହିତ ସାକ୍ଷାତ୍ କରିବା ପାଇଁ । ଜୁଲାଇ ବାର ତାରିଖରେ ଫରାସୀ କମାଣ୍ଡର ରେଭେଲ୍ ଭିଏତନାମୀ ପ୍ରତିନିଧିଙ୍କୁ ଦେଖା କଲେ । ଜାପାନୀମାନଙ୍କ ବିରୁଦ୍ଧରେ ଫରାସୀମାନଙ୍କ ସଙ୍ଗେ ସହଯୋଗ କରିବା ପାଇଁ ଭିଏତନାମ ପକ୍ଷ ପ୍ରତିଶ୍ରୁତି ଦେଲେ । କିନ୍ତୁ ଏହି ରାଜିନାମାର ଗୋଟିଏ ସର୍ତ୍ତ ରହିଲା—ଫରାସୀମାନେ କିଛି ଅସ୍ତ୍ରଶସ୍ତ୍ର ଭିଏତମିନକୁ ଯୋଗାଇବେ ।

ଏହି ଆଲୋଚନାର ଫଳାଫଳ ରେଭେଲ୍ ସାଙ୍ଗେ ସାଙ୍ଗେ ସାନ୍ତେନିଙ୍କୁ ଜଣାଇ ପ୍ୟାରିସରୁ ଏହାର ମତାମତ ଲୋଡ଼ିଲେ । ଫ୍ରାନ୍ସର କର୍ତ୍ତୃପକ୍ଷ ଏଥିରେ ଦ୍ୱିମତ ହେଲେ ନାହିଁ ସତ କିନ୍ତୁ କାର୍ଯ୍ୟତଃ କିଛି କଲେ ନାହିଁ । ଯେତେବେଳେ ହୋ'ର ବିପ୍ଳବୀ ମୁକ୍ତି ବାହିନୀର ଶକ୍ତି ସମ୍ବନ୍ଧରେ ଉଣା ଅଧିକେ ସମସ୍ତେ ଜାଣିପାରି

ଥାନ୍ତି । ତା' ପରେ ଜଣେ ଦେଶଭକ୍ତ ସଚ୍ଚା କମ୍ୟୁନିଷ୍ଟଙ୍କୁ କେଉଁ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ଅସ୍ତ୍ର ଯୋଗାଇ ଆସନ୍ତା ! ! ହୋ'ଙ୍କ ସନ୍ଧାନ କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ପହଞ୍ଚି ସେମାନେ ଫାଇଦା ଉଠାଇବାକୁ ଚାହୁଁଥିଲେ । ତେଣୁ ମାକ୍ଲେନ ହୋ'ଙ୍କ ସହିତ ଯୋଗାଯୋଗ ଅବ୍ୟାହତ ରଖିଥିଲେ । ଅପର ପକ୍ଷରେ ଟନକିନ୍ଠାରେ ଅଭିଯାନ ଚଳାଇଥିବା ଜିଆପର ଗରିଲା ବାହିନୀ ଉପରେ ଫରାସୀ କର୍ତ୍ତୃପକ୍ଷ ତୀକ୍ଷ୍ଣ ଦୃଷ୍ଟି ରଖିଆସନ୍ତି । ହୋ' ଯେ ଏ ସମ୍ବନ୍ଧରେ ଅବହିତ ନ ଥିଲେ ତା ନୁହେଁ, କିନ୍ତୁ ରାଜନୈତିକ ଲକ୍ଷ୍ୟ ହାସଲ ଆଗରେ ସେ ଅନ୍ୟ ଘଟଣାବଳୀକୁ ଗୌଣ ବୋଲି ବିଚାରୁଥିଲେ । ସାନ୍ତେନିଙ୍କର ଏ ପ୍ରକାର ପଦକ୍ଷେପ ମୂଳରେ ଗୋଟିଏ ମାତ୍ର ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଥାଏ—ତାହା ହେଲା ଇଣ୍ଡୋଚୀନ ମାଟିରେ ହୋ'ଙ୍କ ସହିତ ସଫଳ ଆଲୋଚନା ମଧ୍ୟ ଦେଇ ସେଠାରେ ଥିବା ସ୍ଥାନୀୟ ପ୍ରତିନିଧିଙ୍କୁ ନିରଗତ କରିବା ଏବଂ ସମସ୍ତକ୍ରମେ ଭିଏତନାମ ଅଞ୍ଚଳରେ ଫରାସୀ ଦଖଲକୁ ସୁପ୍ରତିଷ୍ଠିତ କରିବା । ତେଣୁ ସେ ପ୍ୟାରିସ, ଚୀନ କିମ୍ବା ଅନ୍ୟ କୌଣସି ବିଦେଶୀ ସ୍ଥାନରେ ହୋ'ଙ୍କୁ ଭେଟିବା ପାଇଁ ଚାହୁଁ ନ ଥିଲେ ।

ନୂତନ ଚୁକ୍ତି ଘଟିବା ପୂର୍ବରୁ ୧୯୪୫ ମାର୍ଚ୍ଚ ୨୪ ତାରିଖରେ ଭିଏତନାମ ସମ୍ପର୍କରେ ପ୍ୟାରିସରୁ ଏକ ଘୋଷଣା ପ୍ରକାଶ ପାଇଲା । ଏହି ଘୋଷଣାପତ୍ର ମୁଖ୍ୟତଃ ଭିଏତନାମର ଭୌଗୋଳିକ ସ୍ଥିତି ନେଇ ପ୍ରସ୍ତୁତ ହୋଇଥିଲା । ତାହା ଅନୁଯାୟୀ ସମୁଦାୟ ଭିଏତନାମକୁ ଟନକିନ୍, ଆନାମ ଏବଂ କୋଚିନ୍ ଚୀନରେ ଖଣ୍ଡ ଖଣ୍ଡ କରି ଦିଆଗଲା । କମ୍ବୋଡ଼ିଆ, ଲାଓସ ପରି ସେମାନେ ମଧ୍ୟ ଏକ ବୃହତ୍ ପରିବାର ମଧ୍ୟରୁ ବିଚ୍ଛିନ୍ନ ହୋଇଗଲେ । ସମଗ୍ର ଇଣ୍ଡୋଚୀନ ବର୍ତ୍ତମାନ ଶରୀର । ବିକୃତ ଅସ୍ଥି ପରି । ସର୍ବସ୍ୱ ହରାଇ ସର୍ବସ୍ୱାନ୍ତ ଭିକାରୀ ପରି ସେମାନେ ନିରସ୍ତ ଓ ନୀରବ । ହୋ'ଙ୍କ ପରି ଜାତିପ୍ରେମୀ ଦେଶବତ୍ସଳ ବ୍ୟକ୍ତିଙ୍କ ପକ୍ଷରେ ଏହା ବରଦାସ୍ତ କରିବା ସମ୍ଭବ ନ ଥିଲା । କାରଣ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରକୁ ବାଧ କରି ଖଣ୍ଡି ଦେଲେ ଯେଉଁ ଦାରୁଣ ବ୍ୟଥାରେ ମୁଣ୍ଡ ନଇଁଯାଏ ହୋ'ଙ୍କ ଭାଗ୍ୟରେ ତାହାହିଁ ଘଟିଲା । ପ୍ୟାରିସ ରେଡ଼ିଓରୁ ପ୍ରସାରିତ ସମ୍ବାଦ ପ୍ରତି ସେ କାନ ବୁଜି ଦେଲେ । ଅସହ୍ୟ ବେଦନାରେ ପ୍ରାଣ ହା ହା କାରି କରି ଉଠିଲା । ଏ ପ୍ରକାର ଧମକରେ ସେ ଅପମାନ ବୋଧକଲେ ନିଶ୍ଚୟ । ସ୍ୱାଭିମାନ ଉପରେ ଅଯଥା ବଜ୍ରପାତକୁ ସେ ମୃତ୍ୟୁ ସହିତ ସମାନ ବୋଲି ଭାବି ଟେକି ନେଲେ ନିଜ ଉପରକୁ ।



## ୨୪

# ଗଣ ପ୍ରଜାତନ୍ତ୍ରର ଜନ୍ମ

୧୯୪୫ ମସିହା । ମାନବ ଇତିହାସରେ ଏକ ମାହେନ୍ଦ୍ର ବେଳା । ପ୍ରବଳ ପରାକ୍ରମୀ ହିଟଲରର ନାଜୀସାହି ରାଜୁତିର ପତନ ଘଟିଛି । 'ତୃତୀୟ ରାଇଖର' ବୃଥା ଦମ୍ଭ, ଗର୍ବ ଅଭିମାନ ଭାଙ୍ଗି ଧୂଳିରେ ଲୋଟି ପଡ଼ିଛି । ଉତ୍ପୀଡ଼କ ଫାସିବାଦ କବଳରୁ ସମଗ୍ର ମାନବଶ୍ରେଣୀ ଶାନ୍ତିର ନିଃଶ୍ୱାସ ମାରୁଛି । ଯୁଦ୍ଧଜୟୀ ବାହିନୀ ଅଭିନ ଭଙ୍ଗୀରେ ପଦ ମିଳାଇ ଯାଉଛି ଯେଉଁଆଡ଼େ । ସର୍ବଗ୍ରାସୀ ସ୍ୱପ୍ନର ରଙ୍ଗତୁଳୀରୁ ରଙ୍ଗ ଖସି ପଡ଼ିଛି । କେବଳ ହିଟଲରୀ ଜର୍ମାନୀ ନୁହେଁ, ଫାସିଷ୍ଟ ଜାପାନ ମଧ୍ୟ ବେଇଜ୍ଜତ ହୋଇ ମୁହଁ ଲୁଚାଇଛି ପଛ ପଟେ ।

ଅଗଷ୍ଟ ମାସ ପାଞ୍ଚ ତାରିଖ । ଜାପାନର ପ୍ରାଚୀନତମ ହିରୋସୀମାରେ ଚଳିଲ ବୋମାମାଡ଼ । ଆମେରିକାର ଅଗ୍ନିନଳ ବୋମା ବର୍ଷଣ ଫଳରେ ପୁଂଜିତନ୍ତ୍ରୀ ପିରାମିଡ଼ କାଳର ଐତିହ୍ୟ ତଳେ ଆତ୍ମଗୋପନ କରିଛି । ଲକ୍ଷ ଲକ୍ଷ ନରନାରୀ, ପିଲ କବିଲଙ୍କ ତାଜାରକ୍ତରେ ହିରୋସୀମାର ସମ୍ପୂର୍ଣ୍ଣ ଜନପଥ ରଙ୍ଗୀନ ହୋଇ ଉଠିଛି । ଫାସିବାଦର କ୍ଷତ ବିକ୍ଷତ ତନୁଲତା ଲୋଟିଯାଇଛି ଭୂତଳରେ ।

ଏଇମାତ୍ର ପାଞ୍ଚ ମାସ ଆଗରୁ ଯେଉଁ ଜାପାନୀମାନେ ବଳପ୍ରୟୋଗ ଦ୍ୱାରା ଫରାସୀମାନଙ୍କୁ ଗାଦିଚ୍ୟୁତ କରି ଇଣ୍ଡୋଚୀନ ଦଖଲ କରିଥିଲେ, ସେମାନେ ଆଜି ପରାଜିତ ଯୁଦ୍ଧର ଅତଳ ଗହ୍ୱରରେ ଲୀନ ।

ଫ୍ରାନ୍ସ, ତା ପରେ ଜାପାନର ଏ ପ୍ରକାର ଦାରୁଣ ବିପର୍ଯ୍ୟୟକୁ ଆଖି ଆଗରେ ଦେଖି ହୋ' ନିଜର ଭବିଷ୍ୟତ ଯୋଜନା ସମ୍ବନ୍ଧରେ ସଚେତ ହୋଇ ଉଠିଲେ । ସେ ଏହି ଶୁଭ ଲଗ୍ନର ଅପେକ୍ଷାରେ ଥିଲେ । ଇଣ୍ଡୋଚୀନ ରାଜନୈତିକ ଆକାଶ ଆଜି ତାଙ୍କୁ ଖୁବ୍ ପରିଷ୍କାର ଦିଶୁଛି । ମେଘମୁକ୍ତ ଧରଣୀରେ ଶାରଦୀୟ ତିଥିର ସମ୍ଭାର । ଶୂନ୍ୟ ବଳୟ ଆଡ଼େ ଚାହିଁ ହୋ' ନିଜକୁ ପ୍ରସ୍ତୁତ କରୁଛନ୍ତି ସେହି ସ୍ଥାନ ପାଇଁ । କିଏ ଏହି ଶୂନ୍ୟସ୍ଥାନ ପୂରଣ କରିବ ? ଶାସନ ଗାଦି ତ ଅପୂର୍ଣ୍ଣ ରହି ପାରିବ ନାହିଁ ? ଏ ସୁବର୍ଣ୍ଣ ସୁଯୋଗର ଅଧିକାରୀ ହେବ କିଏ ?

ସେ ଜଣେ କୁଶଳୀ ରାଜନୀତିଜ୍ଞ । ହଠାତ୍ ମନେ ପଡ଼ିଲେ ଲେନିନ । ତାଙ୍କର ଶିକ୍ଷା, କୌଶଳ, ସମୟୋପଯୋଗୀ ପାରଦର୍ଶିତା, ସର୍ବୋପରି ପରିସ୍ଥିତି ପରୀକ୍ଷା କରିବାର ଯେଉଁ ପ୍ରବୀଣତା, ସେ ସବୁ ଗୋଟି ଗୋଟି ହୋଇ ସାମନାରେ ଠିଆ

ହୋଇ ପଡ଼ିଲେ । ସବୁଠାରୁ ବେଶି ଆକୃଷ୍ଟ କରିଥିଲ ସେହି ଦୁଇଟି କଥା... 'ଅନୁକୂଳ ସମୟ' ଏବଂ 'ମୁଖ୍ୟ ପ୍ରତିବନ୍ଧକ'। ଜୀବନ ଭରି ହୋ' ନଜେ ଏହି ଅନୁକୂଳ ସମୟ ଉପରେ ପରୀକ୍ଷା ଚଳାଇ ଆସିଛନ୍ତି । ଆଉ ଆଜି ସେ ହାତ ପାହାନ୍ତାରେ । ବର୍ତ୍ତମାନ ଭିଏତନାମର ଭବିଷ୍ୟତ ତାଙ୍କର ଦିଗଦର୍ଶନ ଉପରେ ନିର୍ଭର କରୁଛି ।

ଗତ ତିନ ଚ୍ୱରି ମାସ ହେଲା, ମାର୍ଚ୍ଚ ୯ ତାରିଖ ଠାରୁ, ବନ୍ଧୁମାନେ ତାଙ୍କୁ ସବୁବେଳେ ଉତ୍ତ୍ୟକ୍ତ କରୁଛନ୍ତି । ବର୍ତ୍ତମାନ ତ ଫ୍ରାନସ ଦୂରରେ ଅଛି । ଜାପାନୀମାନଙ୍କୁ ଗୋଟିଏ ଥର ଧକ୍କା ଦେଲେ ହୁଅନ୍ତା ନାହିଁ ? ଜାପାନୀମାନଙ୍କ ବିରୁଦ୍ଧରେ ଗଣ ଅଭ୍ୟୁତ୍ଥାନ ହେଲେ କ୍ଷତି କ'ଣ ? କିନ୍ତୁ ପ୍ରତିଥର ହୋ' ସେମାନଙ୍କୁ ଏହି ଦୁଃସାହସିକ ପଦକ୍ଷେପରୁ ନିବୃତ୍ତ କରିଛନ୍ତି ଅନୁକୂଳ ସମୟର ଅଭାବ ଯୋଗୁଁ । ତାଙ୍କ ମତ ଯେ ଆଭ୍ୟନ୍ତରୀଣ ଅଞ୍ଚଳମାନଙ୍କରେ ଜାପାନୀମାନେ ଭିଏତମିନର ବିରୁଦ୍ଧରେ । ଏପରିକି ଆନ୍ତର୍ଜାତିକ ପରିସ୍ଥିତି ବର୍ତ୍ତମାନ ଏ ବିଦ୍ରୋହ ପାଇଁ ଅନୁକୂଳ ନୁହେଁ । ଆହୁରି ଅପେକ୍ଷା କରିବାକୁ ହେବ ସେ ଦିନକୁ, ଯେବେ ଜାପାନୀମାନେ ସବୁମତେ ଦୁର୍ବଳ ହୋଇ ପଡ଼ିବେ, ଏବଂ ଫରାସୀମାନେ ପୁନର୍ବାର ଉଠିବା ପାଇଁ ଆଉ ସୁଯୋଗ ପାଇବେ ନାହିଁ । ଠିକ୍ ସେତିକି ବେଳେ ଆମକୁ ତାଙ୍କ ଉପରେ ଆକ୍ରମଣ ଚଳାଇବାକୁ ପଡ଼ିବ । ଜାପାନର ପରାଜୟ ପରେ ବନ୍ଧୁମାନେ ପ୍ରଗଳଭ ହୋଇ ଉଠିଲେ ମଧ୍ୟ ହୋ' ପରିସ୍ଥିତିକୁ ଖୁବ୍ ଭୋରିହିବେ ନିରୀକ୍ଷଣ କରୁଥିଲେ । କାରଣ ତାଙ୍କ ଆଗରେ ଶତ୍ରୁ ରୂପେ କେବଳ ଜାପାନୀ କିମ୍ବା ଫରାସୀ ନ ଥିଲେ । କ୍ରମାନ୍ୱୟରେ ସେମାନେ ହେଲେ ଫରାସୀ ଉପନିବେଶବାଦୀ, ଜାପାନୀ ଫାସିବାଦୀ ଚୀନା ସଂପ୍ରସାରଣବାଦୀ ଏବଂ ସର୍ବଶେଷରେ ମାର୍କିନ ସାମ୍ରାଜ୍ୟବାଦୀମାନେ । କିନ୍ତୁ ପ୍ରତିଥର କାର୍ଯ୍ୟ ଆରମ୍ଭ କରିବାକୁ ଗଲବେଳେ ମୁଖ୍ୟ ଏବଂ ପ୍ରଥମ ଶତ୍ରୁ ସ୍ପଷ୍ଟ ଚିହ୍ନିତ ହୋଇସିବା ଉଚିତ ଏବଂ ଅନ୍ୟ ଗୌଣ ଶତ୍ରୁର ସାହାଯ୍ୟ ସମର୍ଥନ ନେଇ ତାର ମୁକାବିଲା କରିବା ବାଂଛନୀୟ ।

୧୯୪୫ ମସିହା ଅଗଷ୍ଟ ମାସ ୧୦ ତାରିଖ । ହିରୋସୀମା ପତନର ମାତ୍ର ଚ୍ୱରିଦିନ ପରେ ହୋ' ଟ୍ରାନ ଟ୍ରାଓ ଠାରେ ଏକ ବିଶେଷଧରଣରେ ସମ୍ମିଳନୀ ଅହ୍ୱାନ କଲେ । ସେତେବେଳେ ସୁଦ୍ଧା ସେ ସଂପୂର୍ଣ୍ଣ ରୋଗମୁକ୍ତ ହୋଇ ନ ଥାନ୍ତି । ଭିଏତନାମର ବିଭିନ୍ନ ଅଞ୍ଚଳରୁ ଭିନ୍ନ ଭିନ୍ନ ରାଜନୈତିକ ଦଳର ପ୍ରତିନିଧିତ୍ୱ କରି ସମୁଦାୟ ୬୦ ଜଣ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ୧୩ ତାରିଖ ଅଗଷ୍ଟମାସରେ ସମ୍ମିଳନୀର ସିଦ୍ଧାନ୍ତ ଅନୁଯାୟୀ ଭିଏତନାମ ଜାତୀୟ ମୁକ୍ତି କମିଟି ଗଠନ କରାଗଲ । ଯାହାର ପ୍ରସ୍ତାବ ଅନୁଯାୟୀ ଜାପାନୀମାନଙ୍କ ହାତରୁ ବଳପୂର୍ବକ କ୍ଷମତା ଛଡ଼ାଇ ଆଣିବା ଥିଲା ମୂଳଲକ୍ଷ୍ୟ ।

ସେତେବେଳେ ମିଆସ ନିଜ ଦଳର ଜଙ୍ଗୀ କମ୍ରେଡ୍‌ମାନଙ୍କ ସହିତ ହ୍ୟାନୋଇଆଡ଼େ ମୁହାଁଇଛନ୍ତି । କିନ୍ତୁ ସେମାନେ ପହଞ୍ଚିବା ପୂର୍ବରୁ ସ୍ଥାନୀୟ କମ୍ରେଡ୍‌-ମାନେ କ୍ଷମତା ଦଖଲ କରି ସାରିଛନ୍ତି । ହୋ' ବିଦ୍ରୋହର ଉପଯୁକ୍ତ ତାପମାତ୍ରା ଅନୁଭବ କରି ସାଧାରଣ ଅଭ୍ୟୁତ୍ଥାନ ପାଇଁ ଆହ୍ୱାନ ଦେଲେ । ସେ ଆବେଦନରେ ଥିଲା :

"ଜାତୀୟ ମୁକ୍ତିକମିଟି ଅସ୍ଥାୟୀ ସରକାରର ନାମାନ୍ତର ମାତ୍ର । ଏହାର ଚାରିପଟେ ସମବେତ ହୁଅ । ଦେଖ, ଏହାର ପ୍ରତିଟି ଆଦେଶ ଯେପରି ପାଳିତ ହୁଏ । ଆଜି ମଧ୍ୟ ଆମ ଆଗରେ ରହିଛି ଦୀର୍ଘ ଏବଂ କଠୋର ସଂଗ୍ରାମର ଦିନ । ଜାପାନର ପରାଜୟରେ ଆମେ ମନକୁ ମନ ସ୍ୱାଧୀନ ହୋଇ ପାରିବା ନାହିଁ···।

"ଦେଶବାସୀ, ଜାଗିଉଠ । ନିଜର ଶକ୍ତିରେ ନିଜକୁ ମୁକ୍ତ କର । ପୃଥିବୀର ବିଭିନ୍ନ ଜାତି ସ୍ୱାଧୀନତାର ଐକାନ୍ତିକ ସଂଗ୍ରାମରେ ଲିପ୍ତ । ଆମେ କେବେ ପଛେଇ ଯିବା ନାହିଁ ।··· ଭିଏତନାମର ପତାକାତଳେ ଆଗକୁ ବଢ଼ି ଚାଲ···।"

ନ୍‌ଗୁଏନ୍‌-ଆଇ କୋକ୍ ନାମକୁ ଶେଷଥର ପାଇଁ ହୋ' ଏଥିରେ ବ୍ୟବହାର କରିଥିଲେ । ସାମରିକ ବିଦ୍ରୋହ ପାଇଁ ଏହି ଡାକରା ବିଦ୍ୟୁତ ବେଗରେ ଚାରିଆଡ଼େ ଖେଳିଗଲା । କୁଟୀର କୁଟୀରରେ ତାର ଅନୁରଣନ । ସତେ ଯେପରି ସମଗ୍ର ଚକିତ ଭିଏତନାମୀ ଛିଣ ଛିପରର ପ୍ରହଣୀ ତଳୁ କାନପାରି ରହିଥିଲା ଏହି ଡାକ ଶୁଣିବା ପାଇଁ ! ହୁ୍ୟ ଏବଂ ସାଇଗନରେ ପ୍ରବଳ ଜନରବ । ହ୍ୟାନୋଇରେ ମଧ୍ୟ ଅନୁରୂପ କୋଳାହଳ । ନ୍‌ଗୁଏନ ନାମର ଉଚ୍ଚାରଣରେ ବିଦ୍ୟୁତ ସ୍ପନ୍ଦନର ତୀବ୍ରତା । ପ୍ରତି ମୁଖରେ ବିଜୟୋଦ୍ଦୀପ୍ତ ସ୍ୱର, ଅଭିଯାନର ଜୟ ଜୟ କାର ।

ଜାପାନୀମାନେ ପରାଜିତ ଜାଣି ଫରାସୀ କର୍ତ୍ତୃପକ୍ଷ ଆଶାର ଜୁଆରରେ ଭାସିଗଲେ । ଇଣ୍ଡୋଚୀନରେ ଫରାସୀ ପ୍ରଭୁତ୍ୱର ପୁନଃ ପ୍ରତିଷ୍ଠା ସେମାନଙ୍କୁ ପାଗଳ କରିଦେଲା । ଜନ୍ ସାଣ୍ଟେନି ପ୍ରବଳ ଆଶା ଓ ଆତ୍ମବିଶ୍ୱାସ ନେଇ ହ୍ୟାନୋଇ ଅଭିମୁଖେ ଯାତ୍ରା କଲେ । କିନ୍ତୁ ମାର୍କିନ ସାମରିକ ମୁଖ୍ୟ ଜେନେରାଲ ଓ୍ୱେଡ଼ମିର ତାଙ୍କର ଏହି ଯାତ୍ରାପଥରେ ବାଧା ଦେଲେ । ଅଗଷ୍ଟ ୨୨ ପର୍ଯ୍ୟନ୍ତ ତାଙ୍କୁ ଅନୁମତି ମିଳିଲା ନାହିଁ । ସେତେବେଳେ ହ୍ୟାନୋଇରେ ବିଦ୍ରୋହର ନାହିଁ ନ ଥିବା ଜୁଆର । ଜାପାନୀମାନେ ନତି ସ୍ୱୀକାର କରିବା ପୂର୍ବରୁ ତାଙ୍କର ସର୍ବାଙ୍କୁ ନେଇ ସାଜିଥିବା ଅପେକ୍ଷାକୃତ ଦୁର୍ବଳ ରାଜବଂଶ ହାତରେ ଶାସନଭାର ଅର୍ପଣ କରି ଦେଇଥିଲେ । ସମ୍ରାଟ ବାଓଡାଇ ଶାସନ ପରିଚାଳନାରେ ଅତ୍ୟନ୍ତ ଅଜ୍ଞ ଓ ଅକ୍ଷମ ଥିଲେ । ସାଧାରଣ ଜନତା ଏହା ଭଲରୂପେ ଜାଣିଥିଲେ ବୋଲି ହଠାତ୍ ଏକ ଗଣ ଅଭ୍ୟୁତ୍‌ଥାନର ସମସ୍ତ ଉପସ୍ଥିତି ଦେଖି ବାହାରି ପଡ଼ିଲେ ।

ଅଗଷ୍ଟ ମାସ ୧୭ ତାରିଖ । ସାନ୍ତ୍ରେନ କୁନ୍‌ମିଙ୍ଗ ଗ୍ରୁଡ଼ ନ ଥାନ୍ତି । ସରକାରୀ କର୍ମଚାରୀମାନେ ସାଧାରଣ ଧର୍ମଘଟର ଡାକରା ଦେଲେ । ହାନୋଇ ବକ୍ଷରେ ସେଦିନ ପ୍ରବଳ ଝଡ଼ । ଶୁଭ୍ର ଆକାଶରେ ବର୍ଷଣ ମୁଖର ମେଘଖଣ୍ଡ ଫିଟି ପଡ଼ିଛି । ସହରର-ରାସ୍ତା ଘାଟରେ ହଜାର ହଜାର ନରନାରୀଙ୍କର ଯାତାୟାତ । ହାନୋଇ ଆଜି ଚେଇଁଛି । କେଉଁ ଯୁଗର କୁମ୍ଭକର୍ଣ୍ଣ-ନିଦ୍ରାର ଆଜି ଅବସାନ ହୋଇଛି । ବର୍ଷା ଛିଟାରେ ଭିଜି ଭିଜି ଚାଲିଛନ୍ତି ଧର୍ମଘଟକାରୀ । ଆଉ କୌଣସି ଆଡ଼େ ସେମାନଙ୍କର ନଜର ନାହିଁ । ଶେଷ ମୌସୁମୀର ବର୍ଷା ଯେପରି ଅତୃପ୍ତ କାମନାରେ ପାଗଳ ହୋଇ ଉଠିଛି । ସହରର ମ୍ୟୁନିସିପାଲ ହଲ ବାହାରେ ସମସ୍ତେ ଜମା ହେଲେ । ଗୋଡ଼ ରଖିବାକୁ ସ୍ଥାନ ନାହିଁ ସେଠାରେ । ଧର୍ମଘଟକାରୀଙ୍କୁ ବାଦଦେଲେ ଦେଖଣା-ହାରୀ, ଶ୍ରୋତା ମଧ୍ୟ କିଛିକମ୍ ନାହାନ୍ତି । କହିବାକୁ ଗଲେ ହାନୋଇର ଗୃହ କୋଣରେ ଆଜି କେହି ନାହାନ୍ତି । ବହୁ ଦିନରୁ ବନ୍ଦୀ ହୋଇ ଜେଲ ମଧ୍ୟରେ ଦିନ କାଟୁଥିବା କଏଦୀକୁ ଆଜି ମୁକ୍ତି ମିଳିଛି । ତାକୁ ସ୍ୱାଧୀନତା ମିଳିଛି ଚାରିଆଡ଼ ବୁଲି ଦେଖିବା ପାଇଁ । ସେହିମାନେ ଏକତ୍ରିତ ହୋଇଛନ୍ତି ଏଠାରେ । ସଭା ମଣ୍ଡପର ଚାରିକଡ଼େ ରାଷ୍ଟ୍ରୀୟ ପତାକା ସହିତ ସ୍ୱର୍ଣ୍ଣତାରକା ଖଚିତ ଲାଲପତାକା ଫର ଫର ଉଡ଼ୁଛି । ବହୁତ ଦୂରରୁ ଦିଶୁଛି ଭିଏତମିନର ଲାଲଝଣ୍ଡା । ପୂର୍ବ ଦିଗରେ ସିନ୍ଦୂରି ଫାଟିଲା ବେଳର ରଙ୍ଗ ତାର, ଜନ ସମୁଦ୍ର ମଝିରୁ ଅଙ୍କୁରିତ ହେଉଥିବା ବାଳରବି ପରି । ସମସ୍ତଙ୍କର ଦୃଷ୍ଟି କେବଳ ସେଇଆଡ଼େ । ସମସ୍ତଙ୍କୁ ସେ ବାନ୍ଧିଛି, କରିଛି ଆପଣାର ମନେକରି । ମାତ୍ର କେତେ ଶହ ଗଜ ଦୂରରେ 'ସିନଅର ରେସିଡେନ୍‌ସି'ରେ ବସିଛି ଟନ୍‌କିନ୍‌ର ସମ୍ବିଧାନ ପରିଷଦର ସଭା । ଉପସ୍ଥିତ ସଦସ୍ୟମାନଙ୍କ ମଧ୍ୟରେ ପ୍ରବଳ ତର୍କ ବିତର୍କର ସୂଚନା । ଯେଉଁମାନେ ଆସୀନ ସେ ସମସ୍ତେ ଧନ, ସମ୍ମାନ, ସାମାଜିକ ପ୍ରତିଷ୍ଠାର ଅଧିକାରୀ । କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନିଆଯାଇ ପାରିଲା ନାହିଁ । ବିହ୍ୱଳତା ଓ ଚରମ ବିଫଳତା ମଧ୍ୟରେ ଅଧିବେଶନ ସମାପ୍ତ ହେଲା ।

ବାହାର ଜନତା ମଧ୍ୟରେ ତତୋଽଧିକ ବିହ୍ୱଳତା । ଜାତୀୟ ନେତା-ମାନଙ୍କର ଅନିର୍ଦ୍ଦିଷ୍ଟ କାର୍ଯ୍ୟକଳାପ ଉପରେ ସେମାନଙ୍କର ଭରସା ରହିଲା ନାହିଁ । ଦ୍ୱିତୀୟ ପଟରେ ସେମାନଙ୍କର ଉତ୍ସାହ, ପ୍ରେରଣା ଅଫୁରନ୍ତ ଆନନ୍ଦ ଆଜି ସଠିକ ମାର୍ଗ ଖୋଜୁଛି ରୂପାୟିତ ହେବା ପାଇଁ । ସ୍ଥାନୀୟ ଯୋଜକବୃନ୍ଦ ନିଜ ହାତରେ ଟେକି ନେଲେ ସେହି ପରିସ୍ଥିତିକୁ । ଅଭ୍ୟୁତ୍‌ଥାନର ସଫଳତା ଦେଖିବାକୁ ହିଁ ପଡ଼ିବ । ଅଗଷ୍ଟ ୧୮ ତାରିଖରେ ପୁଣିଥରେ ସେହିପରି ଶୋଭାଯାତ୍ରା । ଧର୍ମଘଟ-କାରୀମାନଙ୍କର ଅପୂର୍ବ ସମାବେଶ । ଗଣ ବିଦ୍ରୋହ ପାଇଁ ପ୍ରସ୍ତୁତିର ଉନ୍ମାଦନ ସେ । ଡଉ.ପି ନେତୃବୃନ୍ଦଙ୍କର ଚନ୍ଦ୍ରାଚାର୍ଯ୍ୟ ପରିଷ୍କାର ହୋଇ ନାହିଁ । ପରସ୍ପର ମଧ୍ୟରେ

କେବଳ ପ୍ରଶ୍ନର ଉଜାଣି ବୋହୁବାରେ ଲାଗିଛି । କ'ଣ କରିବା, କେଉଁ ପଥରେ ଯିବା ? ନିର୍ଦ୍ଦିଷ୍ଟ ଉଦ୍‌ଘାଟନ ଏହି ଯାତ୍ରାପଥର ଅନ୍ତ କାହିଁ ? ସମସ୍ତଙ୍କ ମନରେ ସନ୍ଦେହର ଅବବାଦୀୟ ପ୍ରକୃତି । ହାତରେ ସମସ୍ତ ନାହିଁ । ତେଣୁ ଯାହା କରିବାକୁ ହେବ, ଅବଲମ୍ବେ ଏବଂ ଅତି ଚତୁରତାର ସହିତ ।

ଅଗଷ୍ଟ ୧୯ ତାରିଖର ସ୍ମରଣୀୟ ମୁହୂର୍ତ୍ତ । 'ପ୍ରାକ୍-ବିଦ୍ରୋହ'ର ଉମନ୍ତ୍ର ପ୍ରସ୍ତୁତ 'ଗଣ ବିପ୍ଳବରେ' ସାମିଲ ହୋଇ ଯାଇଛି । ପାର୍ଟିର ପ୍ରଚୁର ବାହିନୀ ସମସ୍ତଙ୍କୁ ଏକଜୁଟ କରିବାରେ ସମର୍ଥ ହୋଇ ପାରିଛି । ହାନୋଇର ରାସ୍ତାରେ ଆଜି ପୁଣି ଥରେ ଶୋଭାଯାତ୍ରା, ସଭା, ଧର୍ମଘଟର ଆୟୋଜନ ଚାଲିଛି । ଏଥର କେବଳ ସରକାରୀ କର୍ମଚାରୀ ନାହାନ୍ତି, ତାଙ୍କ ସହିତ ରହିଛନ୍ତି ଶ୍ରମିକ, କୃଷକ ଏପରିକି ସ୍ତ୍ରୀ ଲୋକମାନେ । କୁଲି, ମେହେନତୀ ମଜଦୁରଙ୍କ ସଂଖ୍ୟା ଅନ୍ୟ ତୁଳନାରେ ଅଧିକ । ସବଦା ଉତ୍କଟଭାବେ ଶୋଷିତ ଏହି ଦରିଦ୍ରତମ ଶ୍ରେଣୀ ଆଜି ବାହାରି ଆସିଛି ହାତରେ ଲାଲଝଣ୍ଡା ଧରି । କମ୍ୟୁନିଷ୍ଟ ପାର୍ଟିର ପତାକା ତଳେ, ଭିଏତମିନ୍‌ର ମହାନାମସ୍ତ ଲାଲଝଣ୍ଡା ତଳେ ସମସ୍ତେ ଏକଜୁଟ ହୋଇଛନ୍ତି । ଶୋଭାଯାତ୍ରା-କାରୀଙ୍କର ସଂଖ୍ୟା ଆଗ ଅପେକ୍ଷା ତେର ବେଶୀ । ବେଶୀ ମାତ୍ରାରେ ଶ୍ରମିକମାନେ ଏଥିରେ ଯୋଗ ଦେଇଛନ୍ତି । ଲାଲଝଣ୍ଡା ଛଡ଼ା କାହା ହାତରେ ଅନ୍ୟ କୌଣସି ପତାକା ମଧ୍ୟ ଦିଶୁନି । ଧର୍ମଘଟକାରୀଙ୍କୁ ଦେଖିଲେ ମନେ ହେଉଛି ସତେ ଯେପରି ଭିଏତନାମର ବସୁଧାରେ ଲାଲ୍-ବାହିନୀର ଗର୍ଜ୍ଜନ ସବୁ ଆରମ୍ଭ ହୋଇ-ଯାଇଛି । ସମଗ୍ର ଭିଏତନାମ ସେନାନଙ୍କର ।

ସେଦିନ ରାତି, ଭିଏତନାମ ପାଇଁ ଅତନ୍ଦ୍ର ନିଶୀଥର ରୋମାଞ୍ଚକର ମୁହୂର୍ତ୍ତ ପରି । ସଭା, ଶୋଭାଯାତ୍ରା ଶେଷକରି ସମସ୍ତେ ଶୋଇ ଯାଇଛନ୍ତି, ମାତ୍ର ମୁଷ୍ଟିମେୟ କେତେଜଣ ଦେଶପ୍ରେମୀ ଯୋଦ୍ଧାଙ୍କୁ ଗ୍ରାହି । ଆଉ ମାତ୍ର ଗୋଟିଏ ଦିନ ବାକି । ଭିଏତନାମରେ ହେବ ଇତିହାସର ଏକ ନବଯୁଗର ସୃଷ୍ଟି । ଉତ୍ତପ୍ତ ଆଗ୍ନେୟଗିରିର ବିସ୍ଫୋରଣରେ ଧ୍ୱଂସ ପାଇଯିବ ପୁରୁଣା ଦିନର କଳଙ୍କିତ ଇତିହାସର ସବୁ । ନୂଆ ମାଟି ଉପରେ ଜନ୍ମ ନେବ ନବୀନ ଭୂମିଜାତର ସବୁଜ କ୍ଷେତ । ମାନବ ଇତିହାସର ଦୁର୍ଗ ଉନ୍ମୋଚିତ ହେବ । ଅଭିନବ ସଭ୍ୟତାର ପରିପ୍ରକାଶ ଘଟିବ । ମୁକ୍ତ, ସ୍ୱାଧୀନ, ବନ୍ଧନହରା ଜୀବନର ଗୀତି ସୁର ମେଲିବ । କୋଉଏ ତାରିଖର ମଧ୍ୟରାତି । ଲେନିନ୍ ବାଦର ପରିଶୀଳିତମ ଶିକ୍ଷାରେ ପରିପୁଷ୍ଟ, ପରିଚାଳକ କମ୍ରେଡ୍ ହୋ' ଆଦେଶ ଦେଲେ ତାଙ୍କର ତରୁଣ ଜଙ୍ଗୀ ବିପ୍ଳବୀମାନଙ୍କୁ ଭିଏତମିନର ବିଦ୍ରୋହୀ ସେନାମାନଙ୍କୁ ଗଣ ଅଭ୍ୟୁତ୍ଥାନ ପାଇଁ । ଅର୍ଦ୍ଧନିଶାର ନୀରବତା ଭେଦକରି ଚାଲିଗଲେ ମୁକ୍ତିଫୌଜର ଲାଲ ସେନାଗଣ । ମାତ୍ର କିଛି

ସମସ୍ତ ପରେ, ହାତଛଣି ଦେଇପରି କେତୋଟି ସଂଘର୍ଷ ମଧ୍ୟରେ ଭିଏତନାମ ଦଖଲ କଲେ । ଫରାସୀ ଙ୍କ ଭୂମିରେ ବନ୍ଦୀ ହୋଇ ପଡ଼ିଲେ ଏହି ଘଟଣାରେ । ଦଶଜଣ ମାତ୍ର ମୃତ । ସମ୍ଭବ ହେଲ କପରି ? ଦକ୍ଷିଣରେ ମଧ୍ୟ ସେହି ଅବସ୍ଥା । ଅନ୍ଧାରରେ ଗୁଳି ଫୁଟିଲେ ମଧ୍ୟ ପ୍ରକୃତରେ ଥିଲ ଏହା ଆତ୍ମର ସ୍ଥାପନ ଏବଂ ରକ୍ତାକ୍ତ ।

କମ୍ୟୁନିଜମର ଜୟସ୍ତୁ ଘଟିଛି । ମାର୍କସବାଦ, ଲେନିନବାଦୀ କୌଶଳ ସଫଳ ପ୍ରମାଣିତ ହୋଇଛି । ପ୍ରସ୍ତରପଟ, ଡାକବାଜଯନ୍ତ୍ର, ଟେଲିଫୋନ, ହ୍ଲୋଗାନରେ ଗଗନ ପବନ ଫାଟି ପଡ଼ୁଛି । ଶରତ ସନ୍ଧ୍ୟାର ନରମ ଆକାଶକୁ ଉପହାସ କରି ଛୁଟି ଚାଲିଛି ପଦଯାତ୍ରୀ ଦଳ । ଗନ୍ତବ୍ୟ ସ୍ଥଳ ଅନତି ଦୂରରେ । ଭିଏତନାମର ସାଧାରଣ କୋଠାବାଡ଼ି, ସରକାରୀ ଅଫିସ, ଟାଉନହଲ, ସାମରିକ ସେଣ୍ଟର ସେମାନେ ମାଲିକ ଆଜି । ନିଜ ଘର ଆଜି ଫେରି ପାଇଛନ୍ତି ସେମାନେ । ଘରବାହୁଡ଼ା ପକ୍ଷୀପରି ଉଦାତ୍ତ ଚିତ୍ତରେ ସେମାନେ ଫେରୁଛନ୍ତି ନିଜ ନିଜ ବସାକୁ । ବାଓଡାଇ ସମର୍ଥକମାନେ ମଳିନ ହୋଇ ପଡ଼ିଛନ୍ତି । ସବୁଦିନିଆ ରାତିର କ୍ଷୀଣ ତାରା ପରି ସେମାନଙ୍କର ଅସ୍ତିତ୍ୱ ହଜି ହଜି ଯାଉଛି । ଏବଇ ଚନ୍ଦ୍ରମା ଭିଏତମିନର ଆଲୋକରେ ସାରା ଭିଏତନାମ ଆଲୋକିତ । ଅନ୍ୟ ଆଲୋକର ପ୍ରୟୋଜନ କାହିଁ !! ଗ୍ରାମସଂଘ ଭିଏତମିନ ସହିତ ଓତଃପ୍ରୋତଃ ଜଡ଼ିତ ହୋଇପଡ଼ିଛି । କିଶୋର ବୟସର ସ୍ୱପ୍ନପ୍ରବଣତା ନେଇ ସେ ଭିଏତମିନକୁ ଜାବୁଡ଼ି ଧରିଛି ଅନ୍ତର ଆଗ୍ରହ ମନେକରି । ଅଗଷ୍ଟ ବୋଲିଏର ଶେଷ ପ୍ରହରରେ ହୋ ଏବଂ ତାଙ୍କର ବନ୍ଧୁମାନେ ଭିଏତନାମ ଦଖଲ କରିସାରିଛନ୍ତି । ସମ୍ରାଟ ବାଓ ଡାଇ ରାଜନୀ ତ୍ୟାଗ କରି ହୋ'-ଚି-ମିନ ହାତରେ ଭିଏତନାମ ଟେକି ଦେଇଛି । ଦକ୍ଷିଣ ଦିଗରେ ଅଗଷ୍ଟ ୧୩ ତାରିଖ ଦିନ ସାଇଗନଠାରେ ଭିଏତନାମର ଅସ୍ଥାୟୀ କାର୍ଯ୍ୟନିର୍ବାହକ କମିଟିର ନେତୃତ୍ୱ ଦଖଲ କରି ସାରିଛି ଭିଏତମିନ । ଜାପାନ୍ର ଆତ୍ମସମର୍ପଣର ତିନିଦିନପରେ ଭିଏତନାମ ଭିଏତମିନ ହାତକୁ ଚାଲି ଆସିଛି । ଅଗଷ୍ଟ ୨୫ ତାରିଖ ମଧ୍ୟରାତ୍ରରେ ଭିଏତନାମରେ ଭିଏତମିନ, ବୈଧ୍ୟବଦ୍ଧ ଭାବେ କ୍ଷମତା ଦଖଲ କରି ସରକାର ଘୋଷଣା କଲ ।

ହୋ' କିନ୍ତୁ ସବୁବେଳେ ଅନ୍ତରାଳରେ ରହୁଥାଅନ୍ତି । କର୍ମଯୋଦ୍ଧା ସେ । ଯୁଦ୍ଧ ଶେଷ ରଣଭୂମିରେ ରହିବା ନିଷ୍ପ୍ରୟୋଜନ ଜାଣି ସେ ପଛକୁ ଫେରି ଯାଉଛନ୍ତି । କିନ୍ତୁ ଯେଉଁ ସହଯୋଦ୍ଧାମାନେ ତାଙ୍କର ନେତୃତ୍ୱରେ ବିଦେଶୀ ହାତରୁ ଭିଏତନାମ ଛଡ଼ାଇ ଆଣିଛନ୍ତି ସେମାନେ ତାଙ୍କୁ ଅନ୍ତର କରି ପାରିଲେ ନାହିଁ । ସ୍ୱାଧୀନ ହାନୋଇରେ ସେ ସମସ୍ତେ ଅଛି ଜମିଛନ୍ତି । ଯୁଦ୍ଧୋତ୍ତର

ପିତୃଭୂମିର ମୁଖଦର୍ଶନ ପାଇଁ । ବହୁ ବର୍ଷ ଲଢ଼ୁଥିବା ବାମପନ୍ଥୀ ନେତାମାନଙ୍କୁ ନେଇ କାମଚଳା ସରକାର ଗଢ଼ିବା ତାଙ୍କର ଇଚ୍ଛା । ତେଣୁ ହୋ' ଏଥିରେ ଅଂଶୀଦାର ହେବା ପାଇଁ ଚାହିଁଲେ ନାହିଁ । ଅପର ପକ୍ଷରେ ଉପନିବେଶବାଦୀ, ଫାସିଷ୍ଟବାଦୀଙ୍କର ପତନର ସାଙ୍ଗେ ସାଙ୍ଗେ ସାଙ୍ଗେ ସେ ଭିଏତମିନ ଶାସନକୁ ସେପରି ଦାୟିତ୍ୱହୀନ କରି ଛାଡ଼ିଦେବାକୁ ଚାହୁଁ ନ ଥିଲେ । କାରଣ ସବୁସମୟରେ ବିପଦର ଆଶଙ୍କା ପୂରି ରହିଥିଲା । ଗୋପନରେ ରହି ସେ ଶତ୍ରୁପକ୍ଷର ଗତିବିଧି ଲକ୍ଷ୍ୟ କରିବା ନିମନ୍ତେ ନେତୃତ୍ୱରୁ ଓହରି ଆସିଲେ । ହେଲେ ସ୍ୱାଧୀନ ଭିଏତନାମର ସମ୍ମାନ ବଜାୟ ରଖିବା, ମୁକ୍ତ ପିତୃଭୂମିର ଗୌରବ ଅପ୍ରତିହତ ରଖିବା ଥିଲା ତାଙ୍କର ଅନ୍ତିମ ଅଭିଳାଷ ।

ନୂତନ ସରକାର ଅତି ଦ୍ରୁତ ଗତିରେ ହାନୋଇରେ ଶାନ୍ତି ଫେରାଇ ଆଣିଲା । ପ୍ରଜାତନ୍ତ୍ରର ନାଲପତାକା ତଳେ ସାରା ସହର ଆଶ୍ୱସ୍ତିର ଦମ୍ ନେଉଛି । ପ୍ରଥମ ଥର ପାଇଁ ସହରବାସୀଙ୍କ ହାତରେ ଦେଶୀୟ ପତାକା । ଅଗଷ୍ଟ ୨୬ ତାରିଖରେ ହୋ' ହାନୋଇଠାରେ ପହଞ୍ଚିଲେ । ସେତେବେଳ ଯାଏ ସ୍ୱାଧୀନ ଭିଏତନାମଙ୍କର ଘୋଷଣାପତ୍ର ପ୍ରସ୍ତୁତ ହୋଇ ନାହିଁ କମ୍ବା ପାର୍ଟି କେନ୍ଦ୍ର କମିଟିର ସଭ୍ୟମାନଙ୍କର ମିଳିତ ବୈଠକ ବସିନାହିଁ । ପରିବର୍ତ୍ତିତ ପରିସ୍ଥିତିରେ ପାର୍ଟିର ଓ ସରକାରର ଭୂମିକା କ'ଣ ହେବା ଦରକାର, ତାହାର ଏକ ସମ୍ପୂର୍ଣ୍ଣ ବିବରଣୀ ପାଇଁ କେନ୍ଦ୍ର କମିଟି ବସିବାର ପ୍ରୟୋଜନ ପଡ଼ିଲା । ଆଭ୍ୟନ୍ତରୀଣ ଓ ବାହ୍ୟ ପରିସ୍ଥିତିର ସମୀକ୍ଷା କରିବା ନିମନ୍ତେ ହୋ' କେନ୍ଦ୍ର କମିଟିକୁ ଅନୁରୋଧ ଜଣାଇଲେ । ତାଙ୍କ ମତରେ ଅସ୍ଥାୟୀ ସରକାରକୁ ଜନସାଧାରଣଙ୍କ ମଧ୍ୟରେ ପରିଚିତ କରାଇବା ପାଇଁ ହାନୋଇ ଠାରେ ଏକ ବିରାଟ ଶୋଭାଯାତ୍ରା ହେବା ଉଚିତ ଏବଂ ତାହାର କାର୍ଯ୍ୟକ୍ରମ, ଲକ୍ଷ୍ୟ ଓ ଆଦର୍ଶ ଭିଏତନାମର ପ୍ରତି ଲୋକ ପାଖରେ ପହଞ୍ଚିବା ବାଞ୍ଛନୀୟ । ସେଥିପାଇଁ ସ୍ୱାଧୀନତାର ଘୋଷଣାପତ୍ର ଯଥାଶୀଘ୍ର ପ୍ରସ୍ତୁତ ହୋଇ ବଣ୍ଟାଯିବା ଉଚିତ୍ ।

ଅଗଷ୍ଟ ୨୯ ତାରିଖରେ ମନ୍ତ୍ରୀମଣ୍ଡଳର ନାମତାଲିକା ସାଧାରଣରେ ପ୍ରକାଶ ପାଇଲା । ଅଗ୍ରଭାଗରେ ଲେଖାଅଛି ରାଷ୍ଟ୍ରପତି ହୋ' ଚି ମିନ । ସାକ୍ଷାତକାର ପାଇଁ ସାମ୍ବାଦିକଙ୍କର ପ୍ରବଳ ଗହଳି । କିଏ ଏହି ଲୋକ ? ଏକଦା ଭିଏତନାମର ଶାସନମୁଖ୍ୟଙ୍କ ମନରେ ଭୟ ସଂଚାର କରିଥିବା କମ୍ୟୁନିଷ୍ଟ ନେତା ନୁଏନ ଅଇ କୋକ୍ ନୁହେଁତ !! ସାମ୍ବାଦିକମାନଙ୍କର କୌତୂହଳ ଏଡ଼ାଇ ହୋ' କହିଲେ "ମୁଁ ଜଣେ ବିପ୍ଳବୀ, ମୋର ଯେତେବେଳେ ଜନ୍ମ ସେତେବେଳେଠୁ ଏ ପିତୃଭୂମି ଦାସତ୍ୱର ଅନ୍ଧକାର ମଧ୍ୟରେ ସମ୍ପୂର୍ଣ୍ଣ ବୁଡ଼ି ରହିଥିଲା । ଦେଶକୁ ମୁକ୍ତ କରିବା ପାଇଁ ପ୍ରଥମ ଯୌବନରୁ ମୁଁ ସଗ୍ରାମ କରି ଆସିଛି । ତାହା ମୋର ଗୋଟିଏ ମାତ୍ର ଗୁଣ ।

ମୋ ଅଗ୍ରଗତକୁ ଆଖିରେ ରଖି ମୋର ସାଥୀମାନେ ମୋତେ ସରକାରର ମୁଖ୍ୟରୂପେ ମନୋନୀତ କରିଛନ୍ତି ।"

ହ୍ୱାନୋଇର ବା ଡିନ୍ ଚୌକରେ ପ୍ରବଳ ଲୋକାରଣ୍ୟ । ସେପ୍‌ଟେମ୍ବର ୨ ତାରିଖ । ଅସ୍ଥାୟୀ ବିପ୍ଳବୀ ସରକାରକୁ ବଧାଇ ଜଣାଇବା ପାଇଁ ଆନାମୀ ମାନେ ଛୁଟି ଆସିଛନ୍ତି ଛକ ଉପରକୁ । ବା ଡିନ୍ ସ୍କୋୟାରରେ ନୂତନ କରି ଏକ ସଭାମଞ୍ଚ ତିଆରି କରାଯାଇଛି । ସମ୍ପୂର୍ଣ୍ଣ ଅଭିନବ ଧରଣର । ଲାଲ ଝଣ୍ଡାରେ ଶୋଭିତ ସଭା ମଣ୍ଡପରେ ଆସୀନ ପ୍ରେସିଡେଣ୍ଟ ହୋ' ଚି ମିନ୍ । ଭିଏତନାମ ପ୍ରଥମ ପ୍ରଜାତନ୍ତ୍ରର ପ୍ରିୟତମ ଶାସନମୁଖ୍ୟ । ପଞ୍ଚାବନ ବୟସ୍କ ପୌଢ଼ ହୋ'-ଚି-ମିନଙ୍କର ବାଳ, ଦୀର୍ଘ ଶ୍ମଶ୍ରୁ ପାଣ୍ଡୁର ହୋଇ ଆସିଲାଣି । ଅଯତ୍ନ ବର୍ଦ୍ଧିତ କେଶଗୁଚ୍ଛ ଝୁଲି ପଡ଼ିଛି କାନ ଉପରକୁ । ଶରୀରର ବାହ୍ୟିକ ପରିପାଟୀ ପ୍ରତି କେତେବେଳେ ବି ଧ୍ୟାନ ନ ଥାଏ ତାଙ୍କର । ଧୀର ପବନରେ ଓଠ ତଳର ଅର୍ଦ୍ଧ ପକ୍ୱ ଦାଢ଼ୀ ଗୁଚ୍ଛକ ମୁହଁସାରା ଖେଳି ବୁଲୁଛି । ବା-ଡିନର ବୃହତ ଚକକୁ ଚାହିଁଲେ ସେ । କେତେ ଲୋକ ! ଜନତାର ଖର ନିଃଶ୍ୱାସ ସେ ଉତ୍ତମ ରୂପେ ବାରି ପାରୁଛନ୍ତି । ଏତେ କୌତୁହଳ, ଏତେ ସ୍ୱାଧୀନତା, ଆନନ୍ଦ, ମହୋତ୍ସବର ହସ ଲହରୀରେ ସେ ଭାସିଯିବେ କି ଆଜି !!

ଅସ୍ଥାୟୀ ବିପ୍ଳବୀ ସରକାର ତରଫରୁ ଶାସନ ମୁଖ୍ୟ ହିସାବରେ ଘୋଷଣା-ପତ୍ର ପଢ଼ିବାର ଦାୟିତ୍ୱ ତାଙ୍କର । ଭାବପ୍ରବଣତା, ଆବେଗ ଓ ସଙ୍କୁଚିତ କୋହରେ କଣ୍ଠ ରୁପି ହୋଇ ଯାଉଛି । ଆଖି କୋଣରେ ଲୁହ ବିନ୍ଦୁ ଶୀତ ସକାଳର ଶିଶିର ପରି ମୁକ୍ତା ପ୍ରାପ୍ତ କରୁଛନ୍ତି । ସେ ଧୀର ଅଥଚ ଗମ୍ଭୀର ସ୍ୱରରେ ଆରମ୍ଭ କଲେ—

"ଅଶୀବର୍ଷଠାରୁ ଅଧିକ କାଳଧରି ଫରାସୀ ଉପନିବେଶବାଦୀମାନେ ସ୍ୱାଧୀନତା, ସାମ୍ୟ, ମୈତ୍ରୀର ପତାକାର ଅପବ୍ୟବହାର କରି ଆମର ପିତୃଭୂମିକୁ ଲୁଣ୍ଠନ କରିଛନ୍ତି । ଆମ ନାଗରିକମାନଙ୍କୁ ଅସୀମ ଦୁଃଖ ଯନ୍ତ୍ରଣାରେ ପଦଦଳିତ କରିଛନ୍ତି । ମାନବତା ଓ ନ୍ୟାୟର ଆଇନଗତ ଆଦର୍ଶ ଲଙ୍ଘନ କରି ସେମାନେ ରାଜନୀତି କ୍ଷେତ୍ରରେ ଆମର ଦେଶବାସୀଙ୍କୁ ସମସ୍ତ ପ୍ରକାର ଗଣତାନ୍ତ୍ରିକ ଅଧିକାରରୁ ବଞ୍ଚିତ କରିଛନ୍ତି ।

"ସବୁପ୍ରକାର ଅମାନୁଷିକ ଆଇନ ସେମାନେ ଜାରି କରିଛନ୍ତି । ସ୍କୁଲଠାରୁ ଅଧିକ ଜେଲଖାନା ସେମାନେ ତିଆରି କରିଛନ୍ତି । ବିଦ୍ରୋହର ସମସ୍ତ ଚେଷ୍ଟାକୁ ରକ୍ତନଦୀର ବନ୍ୟାରେ ଡୁବାଇ ଦେଇଛନ୍ତି ସେମାନେ । ମଦ, ନିଶା, ଔଷଧ ମାଧ୍ୟମରେ ଆମର ସମୁଦାୟ ଜାତିଟାକୁ ଦୁର୍ବଳ କରିଦେଇଛନ୍ତି । ଅର୍ଥନୀତି କ୍ଷେତ୍ରରେ ସେମାନେ ଆମକୁ ଶୋଷି ଶୋଷି ଅସ୍ଥିକଙ୍କାଳ ସାର କରି ପକାଇଛନ୍ତି । ଆମର ଧାନବିଲ ଜମିବାଡ଼ି, ଘରଡ଼ିହ, ଖଣି, ଖାଦାନ, ବଣ ଜଙ୍ଗଲ ସବୁକୁ

ଶିଳ୍ପ ବିଧ୍ୱସ୍ତ କରିଛନ୍ତି । ଲଦି ଦେଇଛନ୍ତି ଆମ ଉପରେ ନୂଆ ଏ ଅନ୍ୟାନ୍ୟ ଟିକସ ଭାର । ଆମର ଜାତୀୟ ପୁଁଜିପତି ମାନଙ୍କୁ ସମୃଦ୍ଧିର ପଥରୁ ଘୋଷାଡ଼ି ଆଣିଛନ୍ତି । ଲକ୍ଷଲକ୍ଷ ସ୍ୱଦେଶବାସୀଙ୍କୁ ନିର୍ମମ ଭାବେ ହତ୍ୟା କରିଛନ୍ତି । ବ୍ୟାଙ୍କ ନୋଟ ଛାପା ଓ ରପ୍ତାନୀ ବାଣିଜ୍ୟ ଉପରେ କାୟମ ରଖିଛନ୍ତି ନିଜର ଏକଚାଟିଆ ଅଧିକାର । ଆମର ଶ୍ରମିକ ଓ କୃଷକ ଶ୍ରେଣୀ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଛନ୍ତି ।

"୧୯୪୦ର ସେପ୍ଟେମ୍ବର ଶରତକାଳରେ ଜାପାନୀ ଫାସିଷ୍ଟମାନେ ମିତ୍ରଶକ୍ତି ବିରୁଦ୍ଧରେ ଲଢ଼ାଇ କରିବାକୁ ନୂତନ ଘାଟି ନିର୍ମାଣ ପାଇଁ ଯେତେବେଳେ ଇଣ୍ଡୋଚୀନ ସୀମାନ୍ତ ଲଙ୍ଘନ କଲେ, ଫରାସୀ ସାମ୍ରାଜ୍ୟବାଦୀମାନେ ସେତେବେଳେ ନତଜାନୁ ହୋଇ ବଢ଼ାଇ ଦେଲେ ଆମଦେଶକୁ ତାଙ୍କ ହାତରେ ।"

"ସେହିଦିନଠାରୁ ଏହିପରି ଭାବେ ଆମ ଦେଶକୁ ଫରାସୀ ଓ ଜାପାନୀ ଦୁଇ ମୁଣ୍ଡଳାରେ ଯୋଡେଇ ଦେଲେ । ଦୁଃଖ ଓ ଯନ୍ତ୍ରଣା ବଢ଼ି ଚାଲିଲା । ଫଳରେ ଗତବର୍ଷ ଶେଷଠାରୁ ଏହି ବର୍ଷ ଆରମ୍ଭ ମଧ୍ୟରେ କୋୟାଙ୍ଗଟି ପ୍ରଦେଶଠାରୁ ଆରମ୍ଭ କରି ଉତ୍ତର ଭିଏତନାମରେ ପ୍ରାୟ କୋଡ଼ିଏ ଲକ୍ଷ ଅଧିବାସୀ ଅନାହାରରେ ପ୍ରାଣତ୍ୟାଗ କଲେ ।"

"ଏହି ବର୍ଷ ମାର୍ଚ୍ଚ ୯ ତାରିଖରେ ଜାପାନୀମାନେ ଫରାସୀବାହିନୀକୁ ନିରସ୍ତ୍ର କଲେ । ଫରାସୀ ଉପନିବେଶବାଦୀମାନେ ପଳାୟନ କଲେ ଏବଂ ଅଧିକ କେତେକ ଆତ୍ମସମର୍ପଣ କରିଥିଲେ । ଏହାରି ମଧ୍ୟରେ ଦେଖାଗଲା ସେମାନେ ଯେ କେବଳ ଆମକୁ ରକ୍ଷା କରିବା ଦିଗରେ ଅପାରଗ ତା ନୁହେଁ, ପାଞ୍ଚ ବର୍ଷ ମଧ୍ୟରେ ଦୁଇ ଦୁଇଥର ଆମ ଦେଶକୁ ଜାପାନୀଙ୍କ ନିକଟରେ ବିକ୍ରୀକରି ଦେଇଛନ୍ତି ।

"୯ ମାର୍ଚ୍ଚର ପୂର୍ବରୁ ଭିଏତମିନ ଲିଗ୍ ଅନେକବାର ଜାପାନୀମାନଙ୍କ ବିରୁଦ୍ଧରେ ଫରାସୀମାନଙ୍କ ସହିତ ସହଯୋଗିତାର ପ୍ରସ୍ତାବ ଆଣିଛୁ । ଏଇ ପ୍ରସ୍ତାବକୁ ସମ୍ମତି ଦେବା ପରିବର୍ତ୍ତେ ଫରାସୀ ଉପନିବେଶବାଦୀମାନେ ଭିଏତମିନ ବିରୁଦ୍ଧରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ତୀବ୍ରତର କରିଛନ୍ତି । ପରାଜିତ ହେବା ପରେ ପଳାୟନ କରିବା ଆଗରୁ ୟେନ ବେ ଏବଂ କାଓ ବାଙ୍ଗ ଜେଲରେ ଅଟକ ଥିବା ଆମର ବିପୁଳ ସଂଖ୍ୟକ ରାଜବନ୍ଦୀଙ୍କୁ ସେମାନେ ହତ୍ୟାକରି ଯାଇଛନ୍ତି ।

ଏ ସବୁ ସତ୍ତ୍ୱେ ଆମ ଦେଶବାସୀ ସବୁ ସମୟରେ ଫରାସୀମାନଙ୍କ ପ୍ରତି ସହନଶୀଳ ଓ ମାନବୋଚିତ ମନୋଭାବ ପୋଷଣ କରି ଆସିଛନ୍ତି । ଏପରିକି ୧୯୪୫ ମସିହା ମାର୍ଚ୍ଚ ମାସ ୯ ତାରିଖରେ ଜାପାନୀମାନଙ୍କର କ୍ଷମତା ଦଖଲ ପରେ ସେମାନେ ବହୁ ଫରାସୀଙ୍କୁ ସୀମାନ୍ତ ଅତିକ୍ରମ କରିଯିବା ପାଇଁ ସାହାଯ୍ୟ କରିଛନ୍ତି । ଅନେକଙ୍କୁ

ଜାପାନୀମାନଙ୍କ ଜେଲରୁ ମୁକ୍ତ କରିଛନ୍ତି । ବହୁ ଫରାସୀଙ୍କର ଧନ ଜୀବନ ଓ ସମ୍ପତ୍ତି ରକ୍ଷା କରିଛନ୍ତି ।

"୧୯୪୦ ମସିହା ହେମନ୍ତକାଳଠାରୁ ଆମ ଦେଶ ଆଉ ଫରାସୀ ଉପନିବେଶ ହୋଇ ରହି ନାହିଁ । ତା ହେଉଛି ଜାପାନୀ ମାନଙ୍କର ସମ୍ପତ୍ତି ।

"ମିତ୍ରଶକ୍ତିର ନିକଟରେ ଜାପାନର ଆତ୍ମସମର୍ପଣ ପରେ ଆମ ସ୍ୱଦେଶବାସୀ ଜାତୀୟ ସାର୍ବଭୌମତ୍ୱ ଫେରି ପାଇବା ପାଇଁ ଏବଂ ଭିଏତନାମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ପ୍ରତିଷ୍ଠା ପାଇଁ ଜାଗି ଉଠିଲେ ।

"ସତକଥା କହିବାକୁ ଗଲେ, ଫରାସୀମାନଙ୍କଠାରୁ ନୁହେ, ଜାପାନ ନିକଟରୁ ଆମ୍ଭେମାନେ ଆମ ସାର୍ବଭୌମତ୍ୱକୁ ଛଡ଼ାଇ ଆଣିଛୁ ।

"ଫରାସୀମାନେ ପଳାୟନ କରିଛନ୍ତି, ଜାପାନୀମାନେ କରିଛନ୍ତି ଆତ୍ମସମର୍ପଣ । ସମ୍ରାଟ ବାଓ ଡ଼ାଇ ଗାଦିତ୍ୟାଗ କରିଛନ୍ତି । ଶତାବ୍ଦୀ ବ୍ୟାପୀ ଯେଉଁ ଶୃଙ୍ଖଳ ଆମକୁ ବନ୍ଦୀ କରି ରଖିଥିଲା, ଆମର ଦେଶବାସୀ ତାକୁ ଛିନ୍ନ କରିଛନ୍ତି । ପିତୃଭୂମି ପାଇଁ ସେମାନେ ସ୍ୱାଧୀନତା ହାସଲ କରିଛନ୍ତି । ତା ସହିତ ଆମର ଜନସାଧାରଣ ରାଜତନ୍ତ୍ରର ଉଚ୍ଛେଦ ଘଟାଇଛନ୍ତି । ବହୁ ଶତାବ୍ଦୀ ଧରି ଏହି ବ୍ୟବସ୍ଥା ଆମଦେଶରେ ଚାଲି ଆସୁଥିଲା । ସେହି ସ୍ଥାନରେ ବର୍ତ୍ତମାନ ପ୍ରତିଷ୍ଠା ହୋଇଛି ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ।

"ଏହି କାରଣରୁ ସମସ୍ତ ଭିଏତନାମୀ ଜନସାଧାରଣଙ୍କର ପ୍ରତିନିଧି, ଆମର ଅସ୍ଥାୟୀ ନୂତନ ସରକାରର ସଦସ୍ୟମାନେ, ଘୋଷଣା କରୁଛୁ ଯେ ଆଜିଠାରୁ ଫ୍ରାନ୍ସ ସହିତ ସମସ୍ତ ପ୍ରକାର ଔପନିବେଶିକ ସଂବନ୍ଧ ଛିନ୍ନ କରୁଛୁ, ଭିଏତନାମ ପକ୍ଷରୁ ଫ୍ରାନସ ଯେଉଁ ସବୁ ଆନ୍ତର୍ଜାତିକ ସମ୍ପର୍କ, ସନ୍ଧି ପ୍ରତିଷ୍ଠା କରିଛି ସେ ସବୁକୁ ଆମେ ରଦ୍ଦ କରି ଘୋଷଣା କରୁଛୁ ଯେ ବେଆଇନ ଭାବେ ଫ୍ରାନ୍ସ ଯେଉଁ ପ୍ରକାର ବିଶେଷ ସୁବିଧା ସୁଯୋଗ ଉପଭୋଗ କରୁଥିଲା ତାହା ଆଜିଠାରୁ ସମାପ୍ତ ହେଲା ।

"ଫରାସୀ ଉପନିବେଶବାଦୀ ମାନଙ୍କର ସକଳ ଷଡ଼ଯନ୍ତ୍ରକୁ ପ୍ରତିରୋଧ କରିବା ପାଇଁ ଭିଏତନାମର ଜନସାଧାରଣ ଗୋଟିଏ ଲକ୍ଷ୍ୟ ପଥରେ ଦୃଢ଼ ପ୍ରତିଜ୍ଞ ।

ଆମ୍ଭମାନଙ୍କର ଦୃଢ଼ବୋଧ ହୋଇଛି ଯେ ମିତ୍ରଶକ୍ତିମାନେ, ଯେଉଁମାନେ କି ତେନେ ତେହେରାନ ଓ ସାନଫ୍ରାନସିସ୍କୋ ଅଧିବେଶନରେ ଜାତି ଜାତି ମଧ୍ୟରେ ସମାନ ଅଧିକାର ଦାବୀ କରିଥିଲେ, 'ସେମାନେ ସ୍ୱାଧୀନତା ପାଇଁ ଭିଏତନାମୀ ଜନତାର ଅଧିକାରକୁ ମାନିନେବା ପାଇଁ ଅରାଜି ହେବେ ନାହିଁ ।

ଯେଉଁ ଜାତି ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ଧରି ଫରାସୀ ପ୍ରଭୁତ୍ୱ ବିରୁଦ୍ଧରେ ଲଢ଼ାଇ କରିଛି, ଗତ କେତେ ବର୍ଷ ଧରି ଯେଉଁ ଜାତି ଫାସିଷ୍ଟ ମାନଙ୍କ ବିରୁଦ୍ଧରେ ମିତ୍ରଶକ୍ତିର ପକ୍ଷ ନେଇ ଦୃଢ଼ ଭାବେ ଠିଆ ହୋଇଛି, ସେ ଜାତି ମୁକ୍ତ ହେବ ହିଁ ହେବ । ତାର ଜନତା ନିଶ୍ଚୟ ସ୍ୱାଧୀନ ହେବେ ।

ସେହି କାରଣରୁ, ଆମ୍ଭେ ଭିଏତନାମ ସାଧାରଣତନ୍ତ୍ରର ଅସ୍ଥାୟୀ ସରକାରରେ ଥିବା ସଦସ୍ୟମାନେ, ସାରା ଦୁନିଆ ସମ୍ମୁଖରେ ଏହି ଘୋଷଣା କରୁଛୁ ଯେ—

"ସ୍ୱାଧୀନତା ଓ ମୁକ୍ତି ଉପଭୋଗ କରିବା ପାଇଁ ଭିଏତନାମର ହକ୍ ଅଧିକାର ରହିଛି । ସ୍ୱାଧୀନତା ଓ ମୁକ୍ତିକୁ ବଜାୟ ରଖିବା ପାଇଁ ଭିଏତନାମର ଜନସାଧାରଣ ସେମାନଙ୍କର ଦୈହିକ ଓ ମାନସିକ ସକଳ ଶକ୍ତିର ବିନିଯୋଗ କରିବେ ଏବଂ ସେଥିପାଇଁ ନିଜ ଜୀବନ ଓ ସମ୍ପତ୍ତି ଉତ୍ସର୍ଗ କରିବା ପାଇଁ ସେମାନେ ସଙ୍କଳ୍ପବଦ୍ଧ ।"

ଅତି ଦ୍ରୁତବେଗରେ ନୂତନ ସରକାର ତାର କାର୍ଯ୍ୟ କରି ଚାଲିଛି । ଦୋକାନ, ବଜାର, ଜନକଲ୍ୟାଣ ବ୍ୟବସ୍ଥାମାନ ଭିଏତନାମ ସରକାର ତରଫରୁ ଖୋଲିଗଲା । ସରକାରୀ ଦପ୍ତରରେ ବର୍ତ୍ତମାନ ଫରାସୀ ପରିବର୍ତ୍ତେ ସ୍ୱୟଂ ଭିଏତନାମୀ ।

ଭିଏତନାମରେ ଥିବା ଜେଲ ଫାଟକଗୁଡ଼ିକ ଆପେ ଆପେ ଖୋଲିଗଲା । ହଜାର ହଜାର ସଂଖ୍ୟାର ରାଜନୈତିକ ବନ୍ଦୀ ଜେଲ କବାଟ ଖୋଲି ବାହାରି ଆସିଲେ ରାଜ ରାସ୍ତାକୁ । ହାନୋଇ, ଭିନ୍, ସାଇଗନ, ସବୁଠି ସେହି ଅବସ୍ଥା । ପୋଲୋ-କଣ୍ଡୋର ଦ୍ୱୀପରେ ଥିବା ନିର୍ବାସିତ ବନ୍ଦୀମାନଙ୍କୁ ଉଦ୍ଧାର କରିବା ପାଇଁ ସ୍ୱତନ୍ତ୍ର ସମୁଦ୍ରଗାମୀ ନୌକା ପଠାଗଲା । ସମସ୍ତେ ଫେରିଲେ ସ୍ୱଗୃହକୁ । ମନରେ ନୂତନ ଆଶା । ସତେ ଯେପରି ପୁନର୍ଜନ୍ମ ମିଳିଛି ତାଙ୍କୁ ।

ଭିଏତନାମରେ ନୂଆ ଯୁଗ ଆରମ୍ଭ ହୋଇଛି । ପ୍ରଥମ କରି ଗଣତନ୍ତ୍ର ଭିଏତନାମରେ ଜନ୍ମଗ୍ରହଣ କରିଛି । ଏହି ଶୁଭଲଗ୍ନକୁ ଉପଭୋଗ କରିବା ପାଇଁ ସମଗ୍ର ଭିଏତନାମୀ ଜାତି ଆନନ୍ଦରେ ମୁଖର । ସେହି ସ୍ଥିତିକୁ ଚିରନ୍ତନ କରିବା ହେଉଛି ସବୁଠୁଁ ଶ୍ରେଷ୍ଠ କର୍ତ୍ତବ୍ୟ । ପ୍ରେସିଡେଣ୍ଟ ହୋ-ଚି-ମିନ୍ ଘୋର ଚିନ୍ତାରେ ମଗ୍ନ, ଭିଏତନାମର ଧରା ସ୍ୱର୍ଗକୁ ଅମର ରଖିବା ନିମନ୍ତେ ।



## ୨୪

# ନୂତନ ପରସ୍ଥିତି-ନୂତନ କୌଶଳ

ଭିଏତନାମ ସାଧାରଣତନ୍ତ୍ରର ସ୍ୱାଧୀନ ନିଶ୍ୱାସ ଆଜି ଅବାଧରେ ଖେଳି ବୁଲୁଛି, ଦକ୍ଷିଣରୁ ଉତ୍ତର ଯାଏ । ତାହିଁ ସୁଦୂର କୋମିଣ୍ଟାଙ୍ଗ ଶାସନାଧିକୃତ ଚୀନର ସୀମା ତ ପୁଣି କାହିଁ ଆଉ ପଟରେ ଥିବା ଦକ୍ଷିଣୀ କାମାଉ ଅଞ୍ଚଳ । ସମସ୍ତର ଗଢ଼ ସଢ଼ ଚାଲ ଦେଇ କ୍ଷିପ୍ର ଗତିରେ ଚାଲିଛି ବିପ୍ଳବୀ ନୂତନ ସରକାର । ସାମ୍ରାଜ୍ୟବାଦୀ ଓ ଉପନିବେଶବାଦୀମାନେ ଛାଡ଼ି ଯାଇଥିବା ଭିଏତନାମର ଧ୍ୱଂସାବଶେଷ ମଧ୍ୟରୁ କୋଟି ଲବଣ୍ୟ ଈଶ୍ୱର ଜନ୍ମ ଦେବାକୁ ହେବ । ଶୂନ୍ୟ ରାଜକୋଷ ମଧ୍ୟରୁ ସ୍ୱର୍ଣ୍ଣଭଣ୍ଡାରର ସୃଷ୍ଟି ହେବ । ଏହି ଦୃଢ଼ ଆଶା ନେଇ ଭିଏତମିନର ସକଳ ଶକ୍ତି ନିଯୁକ୍ତ ହୋଇଛି ନୂତନ ରାଷ୍ଟ୍ର ନିର୍ମାଣ କାର୍ଯ୍ୟରେ ।

ଶୀତର ପ୍ରଥମ ଦିନ । କେତୋଟି ଦିନ ମାତ୍ର ବିତିଛି ବିଦେଶୀମାନେ ଶାସନ କ୍ଷମତା ହସ୍ତାନ୍ତର କରିବା ପରେ । ସ୍ୱାଧୀନୋତ୍ତର ଭିଏତନାମର ବିପ୍ଳବୀ ପ୍ରାଣଟି ଉନ୍ମାଦନାରେ ଉଚ୍ଛୁଳି ହୋଇ ଉଠିବା କଥା । କିନ୍ତୁ ଅନ୍ତରର ଆବେଗ-ଟିକକୁ କିଏ ଯେପରି ଚୋରାଇ ନେଇଛି । ଯେଉଁଠି ଦେଖିବ ଦୈନ୍ୟ, ବ୍ୟାଧିର କରୁଣ ମୂର୍ଚ୍ଛନା । ମୁଆଡ଼େ ସ୍ୱପ୍ନିଳ ମୃତାହତ ଜୀବନର ବଞ୍ଚିତ ଆକାଂକ୍ଷା । ଶୀତ ସକାଳର ବାଳ କିରଣ କଳା ବାଦଲ ତଳେ ଲୁଚି ଯାଇଛି ଯେପରି !

ବିଦେଶୀମାନେ ଯିବା ଆଗରୁ ଭିଏତନାମ ରାଜକୋଷ ଶୂନ୍ୟ କରି ନାଇଛନ୍ତି । ଯାହା ଥିଲା ସେଥିରେ କଳାକନା ବୁଲିଛି । ସାଧାରଣ ଜନତାର ହାତେ ଓଳିଏ ଗୁଜୁରାଣ ମେଣ୍ଟାଇବା ପାଇଁ ସମ୍ବଳ ନାହିଁ । ଜାପାନୀ ଓ ଫରାସୀ ଉପନିବେଶବାଦୀମାନଙ୍କ ଦ୍ୱାରା ମିଳିତ ସୁସଂଗଠିତ କୃତ୍ରିମ ଅଭାବ ଅସମୟରେ ଦେଶବାସୀଙ୍କୁ ମୃତ୍ୟୁ ମୁଖରେ ପହଞ୍ଚାଇ ଦେଇଛି । ସର୍ବତ୍ର ଦୁର୍ଭିକ୍ଷର କରାଳ ଗ୍ରାସ । ଘରେ ନ ପଶୁଣୁ ଚାଲି ବାକିଲା ଚରି ଏ ପ୍ରକାର ଅପ୍ରତ୍ୟାଶିତ ସମସ୍ୟାକୁ ସାମନା କରିବା ପାଇଁ ନୂତନ ସରକାରର ସାମର୍ଥ୍ୟ ବା କାହିଁ ' ! ବସ୍ତୁପୂର୍ବରୁ ଉତ୍ପାଦନ କ୍ଷେତ୍ରରେ ଅଚଳ ଅବସ୍ଥା ଦେଖା ଦେଇଛି । ଶ୍ରମିକ ଓ ଉତ୍ପାଦନ-କାରୀମାନଙ୍କୁ ବହୁଳ ପରିମାଣରେ କାର୍ଯ୍ୟଚ୍ୟୁତ କରିବା ଯୋଗୁ ଅର୍ଥନୀତି ଭାଙ୍ଗି ପଡ଼ିଛି । ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥମାନଙ୍କର ଉତ୍ପାଦନ ଓ ଚାହିଦା ମଧ୍ୟରେ ନାହିଁ ନ ଥିବା ପାର୍ଥକ୍ୟ । ଉତ୍କଟ ଦରବୃଦ୍ଧି ଯୋଗୁଁ ବ୍ୟବସାୟ, ବଜାରରେ ମାନ୍ଦା

ଅବସ୍ଥା । ଅକାଳ ମରୁଡ଼ି ପାଇଁ ଧାନଫସଲ ଘୋର ବାଧା ପ୍ରାପ୍ତ । କୃଷିଜୀବୀ-ମାନଙ୍କ ହାତରେ ନିଜର ଜମି ବୋଲି କିଛି ନାହିଁ । ତେଣୁ ଉତ୍ପାଦନ ବୃଦ୍ଧି ପାଇଁ ସେମାନେ ବା ଆଗ୍ରହୀ ହେବେ କାହିଁକି ?

ଅଚଳ ଅର୍ଥନୀତିକୁ ଚାଲୁ କରିବା ଏତେ ସହଜ ନୁହେଁ । ସେଥିପାଇଁ ଦୀର୍ଘଦିନର ଯୋଜନାବଦ୍ଧ ପ୍ରସ୍ତୁତି ଆବଶ୍ୟକ । ଭିଏତନାମର ବର୍ତ୍ତମାନ ପରିସ୍ଥିତି ଯାହା, ସେଥିରେ ଦୀର୍ଘମିଆଦୀ ଯୋଜନା ପାଇଁ ଅପେକ୍ଷା କରାଯାଇ ନ ପାରେ । ହୋ'ଙ୍କ ଏକ ନୂତନ ବାଟ ବାଛିଲେ । ସାଧାରଣ ଜନତାକୁ ଉତ୍ପାଦନ କ୍ଷେତ୍ରରେ ଆଗ୍ରହୀ କରିବା ପାଇଁ ଫରାସୀ ସରକାର ଦ୍ୱାରା ପ୍ରଣୀତ ସମସ୍ତ ପ୍ରକାର ଆବଶ୍ୟକ ଟିକସ ହୋ ଉଠାଇ ଦେଲେ । ଶିଳ୍ପ ଉତ୍ପାଦନ ପାଇଁ ଶ୍ରମିକମାନଙ୍କର ମଜୁରୀ ହାର ବୃଦ୍ଧି କରାଗଲା । ସେମାନଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ନୂତନ ଶ୍ରମ ଆଇନ ପ୍ରଚଳନ ହେଲା । କୃଷି ଉତ୍ପାଦନ ବୃଦ୍ଧି ପାଇଁ କୃଷକମାନଙ୍କୁ ଆଧୁନିକ ଧରଣର ଯନ୍ତ୍ରପାତି ଯୋଗାଇ ଦିଆଗଲା । ଫରାସୀ ଉପନିବେଶବାଦୀମାନଙ୍କର ସାହାଯ୍ୟ ନେଇ ଯେଉଁ ଦେଶୀୟ ଜମିଦାର ଓ କୁଲକମାନେ ସାଧାରଣ ଭୂସମ୍ପତ୍ତି କରଗତ କରିଥିଲେ ତାହାକୁ ସରକାର ବାଜ୍ୟାପ୍ତ କରି ଭୂମିହୀନ ଦରିଦ୍ର କୃଷକ ପ୍ରଜାଙ୍କ ମଧ୍ୟରେ ବାଣ୍ଟି ଦେଲେ । ଏହି ଉତ୍ସାହ ଓ ପ୍ରେରଣା ପାଇ ଶ୍ରମିକର କଳକାରଖାନା ଚାଲିବା ସଙ୍ଗେ ସଙ୍ଗେ କୃଷିକ୍ଷେତ୍ରରେ ଆରମ୍ଭ ହୋଇଗଲା ଅଭିନବ କୃଷି ପ୍ରଣାଳୀ ।

ଦୁର୍ଭିକ୍ଷଜନିତ ଉତ୍କଟ ଖାଦ୍ୟାଭାବକୁ ଏଡ଼ାଇବା ନିମନ୍ତେ ସେ ସାଧାରଣ ଜନତାଙ୍କୁ ନିବେଦନ କଲେ ପ୍ରତି ଦଶ ଦିନରେ ଓଳିଏ ଉପବାସ କରିବା ପାଇଁ । ଏହି ଆତ୍ମଚେତନା ସେତେବେଳେ ଅନେକ ପରିମାଣରେ ସାହାଯ୍ୟ କରିଥିଲା ନିଶ୍ଚୟ ।

ସ୍ୱାଧୀନ ଭିଏତନାମ ସାଧାରଣତନ୍ତ୍ର ଘୋଷିତ ହେବାର ତିନି ସପ୍ତାହ ବିତିଛି । ବିପଦସଙ୍କୁଳ ଅବସ୍ଥା ମଧ୍ୟରୁ ଉଦ୍ଧାର ପାଇଁ ଜାତୀୟ ସ୍ତରରେ ବ୍ୟାପକ ପଦକ୍ଷେପମାନ ନିଆ ଯାଉଛି । ଶିଶୁ ସ୍ୱାଧୀନତାର କୋମଳ ଜୀବନଟିକୁ ରକ୍ଷା କରିବା ପାଇଁ ଅପରିସୀମ ଯତ୍ନ ଓ ସେବାର ଆଶ୍ରୟ ନିଆ ଯାଇଛି । ସମଗ୍ର ଦେଶବାସୀ ମନ ପ୍ରାଣ ହୃଦୟ ଅଜାଡ଼ି ଦେଇଛନ୍ତି ସେହି କାର୍ଯ୍ୟରେ । ଠିକ୍ ଏତିକିବେଳେ ଉତ୍ତର ପଟରୁ ଶୁଭିଲା ବୁଟ କମାଣର ଆବାଜ । ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ୨୦୦୦ କୋମିଂଟାଙ୍ଗ ସୈନ୍ୟ ଭିଏତନାମ ଆକ୍ରମଣ କରିଛନ୍ତି । ସେମାନଙ୍କ ପଛରେ ରହିଛି ଆମେରିକା ଯୁକ୍ତରାଷ୍ଟ୍ର ଓ ପଡ଼ୋଶୀ ଚିଆଙ୍ଗ-କାଇ-ସେକ୍‌ର ସାମରିକ ବଳ । ୧୯୪୫ ମସିହା ଜୁଲାଇ ମାସରେ ପଟସଡାମ୍ ସମ୍ମିଳନୀ ସରିଥାଏ । ଉପନିବେଶ ଜାତ, ବିଶେଷ କରି ଫରାସୀ ଉପନିବେଶ ଇଣ୍ଡୋଚୀନର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ

ଶାସନ ଦାୟୀ କରି ଷ୍ଟାଲିନ୍ ବିଶ୍ୱରାଜନୀତିର ଗତିକୁ ନୂତନ ଦିଗରେ ମୁହାଁଇ ଥାଆନ୍ତି । ବାଧ୍ୟ ହୋଇ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ମାନି ନେଇଥାଆନ୍ତି ଆମେରିକା ଯୁକ୍ତରାଷ୍ଟ୍ର ତରଫରୁ ଫ୍ରାଙ୍କଲିନ୍ ଡି ରୁଜଭେଲ୍ଟ ଏବଂ ଗ୍ରେଟବ୍ରିଟେନର ଉଇନଷ୍ଟନ ଚର୍ଚ୍ଚିଲ । ଫଳତଃ ମିତ୍ରଶକ୍ତିମାନଙ୍କର ମିଳିତ ଆନୁଷ୍ଠାନିକ ବୈଠକରେ ଉପନିବେଶ ରାଜ୍ୟଗୁଡ଼ିକର ସ୍ୱାଧୀନତା ନିମନ୍ତେ ଦେଶ ଏକ ଅନୁକୂଳ ପରିବେଶ ସୃଷ୍ଟି ହୋଇ-ଥାଏ । ସମ୍ମିଳନୀର ସର୍ତ୍ତ ଓ ବିଚାରଧାରାକୁ ଆଶ୍ରୟ କରି ଭିଏତନାମର ଅଗ୍ରଣୀ ନେତା କମ୍ରେଡ଼ ହୋ-ଚି-ମିନ୍ ମିତ୍ରଶକ୍ତିମାନଙ୍କ ଉପରେ ନିଜର ସମ୍ପୂର୍ଣ୍ଣ ଭରସା ଅକାଡ଼ି ଦେଇଥାଆନ୍ତି ।

କିନ୍ତୁ କୋମିଣ୍ଟାଙ୍ଗ ସୈନ୍ୟଙ୍କର ଅଯୌକ୍ତିକ ଆକ୍ରମଣ ତାଙ୍କ ଚିନ୍ତାରାଜ୍ୟରେ ଏକ ଅସମାହିତ ଦ୍ୱନ୍ଦ୍ୱ ସୃଷ୍ଟି କଲା । ସେ ଦେଖିଲେ ଗୋଟିଏ ପଟରେ ମିତ୍ରଶକ୍ତି-ମାନଙ୍କର ମଉଡ଼ମଣି ଗ୍ରେଟବ୍ରିଟେନ ଭିଏତନାମକୁ ସମର୍ଥନ କରିବା ନିମନ୍ତେ ଜାପାନୀ ସୈନ୍ୟମାନଙ୍କୁ ନିରସ୍ତ୍ର କରିବାକୁ କୋମିଣ୍ଟାଙ୍ଗ ସୈନ୍ୟ ପଠାଉଛୁ କହି ଭିଏତନାମ ଭିତରେ ବିଦେଶୀ ସୈନ୍ୟମାନଙ୍କର ଅବୈଧ ପ୍ରବେଶକୁ ଉତ୍ସାହିତ କରୁଛି । ଦକ୍ଷିଣ ପଟରୁ ଜେନେରାଲ ଡଗଲସ୍ ଗ୍ରେସିଙ୍କ ନେତୃତ୍ୱରେ ବ୍ରିଟିଶ ସେନାବାହିନୀ ଫରାସୀ ଅଧିକୃତ ଅଞ୍ଚଳରେ ନିଜର ଆସ୍ଥାନ ପ୍ରତିଷ୍ଠା ପାଇଁ ଧସଢ଼ପଙ୍କା କରୁଛି । ଏହି କାର୍ଯ୍ୟରେ ସେମାନଙ୍କୁ ସର୍ବପ୍ରକାର ସାହାଯ୍ୟ କରୁଛି ମାର୍କିନ ଯୁକ୍ତରାଷ୍ଟ୍ର । ସାମ୍ରାଜ୍ୟବାଦୀମାନଙ୍କର ଏତାଦୃଶ ମିଳିତ ଆକ୍ରମଣାତ୍ମକ ଅଭିଯାନକୁ ସାମନା କରିବା ପାଇଁ ଭିଏତନାମର ସମ୍ବଳ କିଛି ନାହିଁ । ଫଳରେ ଉତ୍ତର ପଟରୁ ଆମେରିକା ଯୁକ୍ତରାଷ୍ଟ୍ର କୋମିଣ୍ଟାଙ୍ଗ ସୈନ୍ୟର ପ୍ରବେଶପଥ ନେଇ ସୀମା ପାର ହେଲା ବେଳକୁ ଦକ୍ଷିଣରେ ବ୍ରିଟିଶ ସେନାବାହିନୀ ନିଜ ତରଫରୁ ଭାରତୀୟ ସୈନ୍ୟଙ୍କୁ ଏକତ୍ରିତ କରୁଛି । ପଞ୍ଚମୁଖେ ହରିପରି ସବୁ ସାମ୍ରାଜ୍ୟବାଦୀମାନଙ୍କ ଭୃଙ୍କରେ ଭିଏତନାମ । ସମସ୍ତେ ତାକୁ ଖଣ୍ଡ ଖଣ୍ଡ କରି ଆସ୍ୱାଦନ କରିବାକୁ ଚାହାଁନ୍ତି ।

ସେମାନେ ଭିଏତନାମର ସ୍ୱାଧୀନତା ଇଚ୍ଛା କରନ୍ତି ନାହିଁ । କେବଳ ଭିଏତନାମ କାହିଁକି, କୌଣସି ପରାଧୀନ ଜାତିର । ଭିଏତନାମର ଚାରିପଟରେ ରହିଛି ଆହୁରି ଅନେକ ଉପନିବେଶୀ ଶିବିର । ନୀଳ ମହାସାଗରର କୂଳେ କୂଳେ କେତେ ପରାଧୀନ ଜାତି ଭାରତ, ବର୍ମା, ସିଂହଳ, ମାଳୟ ଆଦି ବ୍ରିଟିଶ ଉପନିବେଶ-ମାନ । ସେମାନେ ମଧ୍ୟ ଚାହାଁନ୍ତି ସ୍ୱାଧୀନତା, ମୁକ୍ତି ଓ ସ୍ୱାଧିକାର । ଭିଏତନାମ ପରି ଗୋଟିଏ ପଡ଼ୋଶୀର ସ୍ୱାଧୀନତା ଆନ୍ଦୋଳନ ଯଦି ଫଳବତୀ ହୁଏ, ତେବେ ତାହାର ସୁଦୂରପ୍ରସାରୀ ପ୍ରଭାବ ପଡ଼ିବ ସେମାନଙ୍କ ଉପରେ । ଦେନ, ଦେଶ

ରାଷ୍ଟ୍ର. ରାଷ୍ଟ୍ର ମଧ୍ୟରେ ବିପ୍ଳବ ବିପ୍ଳବ, ଯୁଦ୍ଧର ଅଶାନ୍ତ ଘନଘଟା । ଉପନିବେଶବାଦୀ-ମାନେ ସନ୍ତ୍ରସ୍ତ ହେବେ । ସାତ ଦରିଆ ସେପାରିରୁ ଆସିଥିବା ବାଣିଜ୍ୟପୋତ ତାଙ୍କର ବିଦ୍ରୋହର ଉତ୍ତାଳ ତରଙ୍ଗରେ ବିଲୀନ ହୋଇଯିବ । ସେମାନେ ସ୍ୱୀକାର କରନ୍ତି ନାହିଁ ଏଇ ଅନାହୂତ ଭବିଷ୍ୟତକୁ । ଇତିହାସର ନିର୍ମମ ଧାରା ପ୍ରବାହକୁ । ତେଣୁ ଭିଏତନାମ ତାଙ୍କ ଆଖି ଆଗରେ ସ୍ୱାଧୀନ ହୋଇଯିବ କିପରି ?

ହଜାର ହଜାର ସଂଖ୍ୟାରେ ବର୍ମୀୟ, ଭାରତୀୟ ସୈନ୍ୟ ଆସି ହାଜର ହେଲେ ଭିଏତନାମ ମାଟିରେ, ବ୍ରିଟିଶ ରାଜତ୍ୱର ପ୍ରତିଷ୍ଠା ପାଇଁ । ସେମାନେ ଏ ଦେଶରେ ନୂଆ । ତେଣୁ ଫ୍ରାନ୍ସର ସହାୟତା ଲୋଡ଼ିଲେ । ଉଭୟ ଏକ ଧର୍ମରେ ଆସ୍ଥାବାନ । ପରସ୍ପର ସ୍ୱାର୍ଥ ପାଇଁ ବନ୍ଧୁତ୍ୱର ଦ୍ୱାର ଉନ୍ମୋଚିତ ହେଲା । ଫରାସୀ ସାହାଯ୍ୟର ପ୍ରତିଦାନରେ ବ୍ରିଟିଶ ସେନାବାହିନୀ ସ୍ୱାଧୀନ ବିପ୍ଳବୀ ସରକାରଙ୍କ ଦ୍ୱାରା ଅଭିଯୁକ୍ତ ଯୁଦ୍ଧବନ୍ଦୀମାନଙ୍କୁ ଖଲାସ କରି ଦେଲେ । ହଜାର ହଜାର ସଂଖ୍ୟାର ସୈନ୍ୟ ଜେଲରୁ ବାହାରି ସେନାବାହିନୀରେ ଯୋଗ ଦେଲେ । ପ୍ରାୟ ପାଞ୍ଚ ହଜାର ସରକ ଯୁଦ୍ଧବନ୍ଦୀଙ୍କୁ ନୂତନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରାଯାଇ ପୁଣି ମଇଦାନକୁ ପଠାଇ ଦିଆଗଲା । ଦକ୍ଷିଣ ପଟରେ ବ୍ରିଟିଶ ସାମରିକ ଶକ୍ତି ବର୍ତ୍ତମାନ ଆଉ ଏକା ନୁହେଁ । ସାଥୀରେ ଅଛନ୍ତି ଫରାସୀ ସୈନ୍ୟ ସାମନ୍ତ । ଯେଉଁ ଫରାସୀମାନେ ମାତ୍ର କିଛିଦିନ ତଳେ ଭିଏତନାମ ଇଲାକାରୁ ବିତାଡ଼ିତ ହୋଇଥିଲେ ସେମାନେ ପୁଣି ଫେରି ଆସିଲେ । ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ଚିଆଙ୍ଗ କାଇସେକ ହେଲେ ତାର ପୁନଃପ୍ରବେଶ ଦ୍ୱାରର ସୁଦକ୍ଷ କଳୁଆଲୀ । ଥରେ ଧକ୍କା ଖାଇ ପଛଯାଇଥିବା ଶତ୍ରୁ ଯଦି ବଳ ସଂଚୟ କରି ପୁଣି ଆକ୍ରମଣ କରେ ତାର ବେଦନା ବଡ଼ ମର୍ମାନ୍ତିକ ଏବଂ କଠୋର । ଠିକ୍ ସେହିପରି ଫରାସୀମାନେ ଅନ୍ୟ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିଙ୍କ ସହାୟତାରେ ଭିଏତନାମକୁ ସଂପୂର୍ଣ୍ଣ ନିଃଶେଷ କରିଦେବାକୁ ଚାହିଁଲେ । ଦେଶୀୟ ପ୍ରତିକ୍ରିୟାଶୀଳ, ସୁବିଧାବାଦୀ ଶକ୍ତିମାନଙ୍କ ସାହାଯ୍ୟରେ ଅସ୍ଥାୟୀ ଜନତା ସରକାରଙ୍କୁ ଗାଦିଚ୍ୟୁତ କରିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ତେଣୁ ସରକାରଙ୍କ ଦ୍ୱାରା ଅନୁସୃତ ପ୍ରଗତିଶୀଳ ପଦକ୍ଷେପ ଗୁଡ଼ିକ ଯେଉଁ ବ୍ୟକ୍ତିବିଶେଷ ବା ରାଜନୈତିକ ସଂସ୍ଥାମାନ କାର୍ଯ୍ୟକାରୀ କରୁଥିଲେ ସେମାନଙ୍କୁ ନିଧନ କରିବା ଥିଲା ସେମାନଙ୍କର ପ୍ରଥମ ଯୋଜନା । ଏହି ଉଦ୍ଦେଶ୍ୟରେ ସେପ୍ଟେମ୍ବର ୨୩ ତାରିଖ ଦିନ କ୍ଷମତା ଦଖଲ ପାଇଁ ଦକ୍ଷିଣ ପଟୁ ସେମାନେ ଏକତରଫା ଯୁଦ୍ଧ ଘୋଷଣା କଲେ । କିନ୍ତୁ ଦକ୍ଷିଣର ଦେଶପ୍ରେମୀ ଯୋଦ୍ଧା ସେମାନଙ୍କର ଏହି ଅବୈଧ ଆକ୍ରମଣକୁ ବାଧାଦେଲେ । ଜେନେରାଲ୍ ଗିଆପଙ୍କର ବିପ୍ଳବ ସିଦ୍ଧ ପାର୍ଟି କମ୍ରେଡ଼ଗଣ ଉପନିବେଶୀ ଯୁଦ୍ଧବାଦୀଙ୍କର ନୃଶଂସ କାଣ୍ଡକୁ ସାମନା କରିବା ପାଇଁ ଆଗେଇ

ଥିଲେ । ସେମାନେ ଜାଣିଥିଲେ ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ, ଯୁଦ୍ଧଖୋରମାନଙ୍କ ଆଖିରେ ଶତ୍ରୁ ହେଲେ ମଧ୍ୟ ଚୀନ, ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ, ସର୍ବୋପରି ସୋଭିଏତ ରାଷ୍ଟ୍ରସଙ୍ଘର ଗଣତନ୍ତ୍ରବାଦୀ, ମୁକ୍ତିକାମୀ ଜନତାର ବିପୁଳ ସମର୍ଥନ ସେମାନଙ୍କ ପଛରେ ଅଛି । ସେମାନଙ୍କର ପ୍ରତ୍ୟାକ୍ରମଣ ବିଶ୍ୱଜନତାର ସ୍ୱସ୍ତି ପାଇଁ ଅପେକ୍ଷମାନ ।

ଶୀତ ସରଣ । ମାସାଧିକ କାଳ ଲଢ଼େଇ ଚାଲିଲା । ଭିଏତନାମର ଦକ୍ଷିଣ ପ୍ରାନ୍ତସ୍ଥ; ସତେ ଯେପରି ବସୁଧା ତଳେ ଧସିହୋଇ ଯାଉଛି । ଗାଁ ଗଣ୍ଡା ବଣ ପଦାରେ ମୃତ୍ୟୁର ତାଣ୍ଡବଲୀଳା । କେତେ ଯୋଦ୍ଧା ଢଳି ପଡ଼ୁଛନ୍ତି ସବୁଦିନ ପାଇଁ । କେତେ ଦେହରୁ ଝରଣା ଭଳି ରକ୍ତ ବହି ଚାଲିଛି । ନରପିଶାଚମାନେ ଗାଁ ପରେ ଗାଁ ଉଜାଡ଼ି ଦେଇଛନ୍ତି । ସଦ୍ୟ ନିର୍ମିତ, ପୋଲ, ନଦୀବନ୍ଧ ଉପରୁ ଶେଷ ଇଟା ଖଣ୍ଡିକ ଖସି ଯାଉଛି । ସ୍ୱାଧୀନ ଭିଏତନାମର ହୃଷ୍ଟପୁଷ୍ଟ ଉଦ୍ଦାମ ଶିଶୁଟି ବିକଳାଙ୍ଗ ହୋଇଗଲା ଯେପରି ! ସବୁଠି ଅସହ୍ୟ ନୀରବତା, ବାହାରର ପୃଥିବୀ ଏତେ ଉଦାସୀନ ସତେ ! ଶତ୍ରୁର ରକ୍ତମଖା ହାତରେ ସେ ହାତ ତୋଳି ପାରୁଛି !! ହତ୍ୟାକାରୀର ଦୁନିଆରେ ସେ ଶାନ୍ତିରେ ନିଃଶ୍ୱାସ ମାରି ପାରୁଛି ତ !!

ଅପରୂପ ସୌନ୍ଦର୍ଯ୍ୟର ବିକୃତିକୁ ହୋ' ସହିପାରିଲେ ନାହିଁ ଆଉ । ଅତି ଆଗରେ ସଜନା କରିଥିବା ନୂଆ ସଂସାରଟି ତାଙ୍କର ଭୁଷୁଡ଼ି ପଡ଼ିଲା । ସେହି ରାତିରେ ସେ ଉଠାଇଲେ ଭିଏତନାମର ଅର୍ଦ୍ଧଶାୟିତ, ଅଭୁକ୍ତ, ଯୁଦ୍ଧତ୍ରସ୍ତ ଦୁଃସ୍ଥ ଜନତାକୁ, ଆବାଳ ବୃଦ୍ଧ ବନିତାଙ୍କୁ, ଅଗଣିତ ଲଢ଼ୁଆ ଦେଶପ୍ରେମୀଙ୍କୁ ।

"ତୁମମାନଙ୍କ ପାଇଁ ମୋର କର୍ତ୍ତବ୍ୟ ହେଉଛି ଜଣେ ପଥ ପ୍ରଦର୍ଶକ ପରି । ଯାବତୀୟ ଝଡ଼ ବାତ୍ୟା ମଧ୍ୟରେ ପିତୃଭୂମିର ନୌକାଟିକୁ ଠିକ୍ ବାଟରେ ଚଳାଇ ନେଇ ସାଧାରଣ ଜନତାକୁ ସୁଖଶାନ୍ତିର ଉପକୂଳରେ ପହଞ୍ଚାଇ ଦେବା ହିଁ ମୋର ମୁଖ୍ୟ ଦାୟିତ୍ୱ । ବିଦେଶୀ ଆକ୍ରମଣ ବିରୁଦ୍ଧରେ ପ୍ରବଳ ପ୍ରତିରୋଧ ଏବଂ ଜାତି ନିର୍ମାଣ କାର୍ଯ୍ୟରେ ଅଟଳ ସଙ୍କଳ୍ପ ହିଁ ତୁମମାନଙ୍କର ବ୍ରତ ହେଉ ।"

ସାମ୍ରାଜ୍ୟବାଦୀ ଆକ୍ରମଣରେ ବହୁମୁଖୀ ଯୋଜନାକୁ ସାମନା କରିବାକୁ ହେଲେ ଭିଏତନାମ ସ୍ୱାଧୀନ ସରକାରର ବୈପ୍ଳବିକ ଭୂମିକାକୁ ଅକ୍ଷୁର୍ଣ୍ଣ ରଖିବାକୁ ହେବ । କାରଣ ତାହାରି ମାଧ୍ୟମରେ ଭିଏତନାମର ସର୍ବାଙ୍ଗୀନ ମୁକ୍ତି ସମ୍ଭବ ବୋଲି ହୋ'ଙ୍କର ଅଟଳ ବିଶ୍ୱାସ । ସେତେବେଳେ ସୁଦ୍ଧା ଭିଏତନାମର ବିପ୍ଳବୀ ସରକାର ଜନତା ମଧ୍ୟରୁ ସାଧାରଣ ସ୍ୱୀକୃତି ପାଇ ନାହିଁ । ତେଣୁ ପାର୍ଟି କେନ୍ଦ୍ର କମିଟି ଖୁବ୍ କମ୍ ସମୟ ମଧ୍ୟରେ ଏକ ସାଧାରଣ ନିର୍ବାଚନ ପାଇଁ ପ୍ରସ୍ତାବ ଦେଲା । ପାଶ୍ଚାତ୍ୟ

ଶତ୍ରୁମାନଙ୍କର ପ୍ରବଳ ପରାକ୍ରମ ବିରୁଦ୍ଧରେ ଲଢ଼ିବାକୁ ଗଲେ ସମୁଦାୟ ଜାତି ଭେଦାଭେଦ ନିର୍ବିଶେଷରେ ଏକତାବଦ୍ଧ ହେବା ଅପରିହାର୍ଯ୍ୟ । ସାଧାରଣ ନିର୍ବାଚନ ହିଁ ଏଥିପାଇଁ ଏକ ସଫଳ ମାଧ୍ୟମ ।

ସ୍ୱାଧୀନତାର ମାତ୍ର ଚାରିଟି ମାସ ଯାଇଛି । ବିପ୍ଳବୀ ଭିଏତନାମ ସରକାର ସାରା ଦେଶରେ ସାଧାରଣ ନିର୍ବାଚନ ପାଇଁ ଆହ୍ୱାନ ଦେଲା । ୧୯୪୬ ମସିହା ଜାନୁଆରୀ ପାଞ୍ଚ ତାରିଖର ମଧ୍ୟ ରାତି ଭଙ୍ଗ କରି ହୋ' ଦେଶବାସୀଙ୍କ ଉଦ୍ଦେଶ୍ୟରେ ବେତାର ବାର୍ତ୍ତା ଦେଲେ—"ଆସନ୍ତା କାଲି ଆମ ଜାତି ଦେଖାଇ ଦେବ ଯେ ସେମାନେ କେତେଦୂର ଦୃଢ଼ ଏବଂ ଏକତାବଦ୍ଧ ।" ସାଧାରଣ ନିର୍ବାଚନର ଅନ୍ୟାନ୍ୟ ଇସ୍ତାହାର ବ୍ୟତୀତ ମୁଖ୍ୟ ସ୍ଲୋଗାନ ଥିଲା—

—ଏକତାବଦ୍ଧ ହୁଅ ।

—ଉପନିବେଶବାଦୀ ବିରୁଦ୍ଧରେ ମୁକ୍ତି ଅବ୍ୟାହତ ରଖ ।

—ସ୍ୱାଧୀନତା ସାବ୍ୟସ୍ତ କର ।

ଜାନୁଆରୀ ୬ ତାରିଖରେ ସାଧାରଣ ନିର୍ବାଚନ ସମାପ୍ତ ହେଲା । ଇତିହାସର ଆଦ୍ୟ ମୁହୂର୍ତ୍ତରୁ ଭିଏତନାମ ଜାତି କେବେ ନିର୍ବାଚନର ସମ୍ମୁଖୀନ ହୋଇ ନ ଥିଲା । ସାମନ୍ତବାଦୀ ଠାରୁ ଉପନିବେଶବାଦୀ ରାଜତ୍ୱ ମଧ୍ୟରେ ସେ ପ୍ରଥମ ଥର ପାଇଁ ସାଧାରଣ ନିର୍ବାଚନରେ ଅବତୀର୍ଣ୍ଣ ହୋଇଛି । ଇତିହାସର ପରିବର୍ତ୍ତିତ ଭୂମିକାରେ ଜାତୀୟ ସ୍ୱାଧୀନତାକୁ ବଜାୟ ରଖିବା ପାଇଁ ସେ ନିର୍ବାଚନର ସମ୍ମୁଖୀନ । ନିର୍ବାଚନକୁ ଭଣ୍ଡୁର କରିବା ପାଇଁ ଉତ୍ତର ଓ ଦକ୍ଷିଣ ଉଭୟ ପଟରୁ ସାମ୍ରାଜ୍ୟବାଦୀ ଶତ୍ରୁମାନେ କମ ଅସ୍ତ୍ର ପ୍ରୟୋଗ କରି ନାହାନ୍ତି !! କେବଳ ନାମ ବୋ ଠାରେ ଦୁଇଦଳ ମଧ୍ୟରେ ଲଢ଼ାଇ ଲାଗି ବୟାଳିଶ ଜଣ ଦେଶପ୍ରେମୀ ଯୋଦ୍ଧା ପ୍ରାଣ ହରାଇଛନ୍ତି । ଦଙ୍ଗା, ହଙ୍ଗାମ ମଧ୍ୟରେ ନିର୍ବାଚନ ଶେଷ ହୋଇଛି । ସ୍ୱାଧୀନ ବିପ୍ଳବୀ ସରକାର ଦୁଇଶହ ତିରିଶ ସ୍ଥାନ ଲାଭ କରି ଏକକ ସଂଖ୍ୟା ଗରିଷ୍ଠ ଦଳ-ଭାବେ ଜାତୀୟ ଆସେମ୍ବ୍ଲିକୁ ନିର୍ବାଚିତ ହୋଇଛି । ମାର୍ଚ୍ଚ ତିନି ତାରିଖ ଦିନ ସଂଖ୍ୟା ଗରିଷ୍ଠ ଦଳର ନେତା ତଥା ବିପ୍ଳବୀ ସରକାରର ସଭାପତି କମ୍ରେଡ଼ ହୋ' ଚି ମିନ ବିପ୍ଳବୀ ସରକାରର ସଭାପତି ଭାବେ ସରକାରୀ ସ୍ତରରେ ନିର୍ବାଚିତ ହେଲେ । ସାରା ଦେଶରେ ହୋ' ଏବଂ 'ଭିଏତମିନ'ର ରାଜନୈତିକ ପ୍ରତିଷ୍ଠା ଦୃଢ଼ ହେବାକୁ ଲାଗିଲା । ଜାତୀୟତାବାଦୀ ଦେଶଜ ଶକ୍ତିମାନେ ସ୍ୱାଧୀନତାର ସଫଳତା ପ୍ରତି କ୍ରମଶଃ ଆକୃଷ୍ଟ ହେଲେ । ଯେଉଁ ଜାତୀୟତାବାଦୀ, ଅଣକମ୍ୟୁନିଷ୍ଟ ତଥା ମୁକ୍ତିକାମୀ ଶକ୍ତି ଓ ଅନୁଷ୍ଠାନମାନ କୌଣସି କାରଣରୁ 'ଭିଏତମିନ୍' ସହିତ ନିଜକୁ ସାମିଲ କରି ପାରି ନ ଥିଲେ ସେମାନଙ୍କୁ ନେଇ ଆଉ ଏକ ଅଣରାଜନୈତିକ ଗଣ ଅନୁଷ୍ଠାନ

ଗଢ଼ା ହେଲା । ଯାହାର ନାମ 'ଲିନ୍ ଭିଏତ'। ଏଥିରେ ଯେଉଁମାନେ ସଭ୍ୟ ରହିଲେ ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଚିନ୍ତାଧାରା ନ ଥିଲା । କିନ୍ତୁ ସେମାନେ ଭିଏତନାମର ସ୍ୱାଧୀନତା ପାଇଁ ଆଶାୟୀ ଥିଲେ । ଶ୍ରମିକ, କୃଷକ, ଛାତ୍ର, ଅଗ୍ରଗାମୀ ଯୁବକ ମାନଙ୍କୁ ନେଇ ଗଠାଯାଇଥିବା ଏହି ବ୍ୟାପକ ଜାତୀୟତାବାଦୀ ମୁକ୍ତ ସାମ୍ମୁଖ୍ୟ 'ଭିଏତମିନ'ର ସହୋଦର ଅନୁଷ୍ଠାନ ହୋଇ ଆଗେଇ ଚାଲିଲା ଭିଏତନାମ ମାଟିରେ ।

ସାଧାରଣ ନିର୍ବାଚନର ପ୍ରାୟ ଦେଢ଼ମାସ ପରେ, ଅର୍ଥାତ୍ ଫେବୃୟାରୀ ମାସର ଶେଷ ସପ୍ତାହ ବେଳକୁ ଚିଆଙ୍ଗ କାଇ ସେକ୍‌ର ସୈନ୍ୟ ଉତ୍ତର ପଟରେ ଭିଏତମିନ ଠାରୁ ପ୍ରବଳ ଧକ୍କା ପାଇଲେ । ଏହାର ପ୍ରତିଶୋଧ ନେବା ପାଇଁ ମାର୍କିନ ଯୁଦ୍ଧବାଦୀ ମାନଙ୍କ ପ୍ରରୋଚନାରେ ଫେବୃୟାରୀ ୨୮ ତାରିଖରେ ଫରାସୀ ସେନା-ମୁଖ୍ୟଙ୍କ ସହିତ ସେମାନେ ଏକ ଜଘନ୍ୟ ସନ୍ଧିପତ୍ର ସ୍ୱାକ୍ଷର କଲେ । ଉତ୍ତର ପଟରେ ଚିଆଙ୍ଗ ସୈନ୍ୟ ଅଧିକୃତ ଭିଏତନାମର ଅଞ୍ଚଳକୁ ଫରାସୀ ଶାସନ ଅଧୀନରେ ଛାଡ଼ିଦେବା ପାଇଁ ଏହି ଚୁକ୍ତିରେ ନିର୍ଦ୍ଦେଶନାମା ରହିଲା । ଫଳରେ ଭିଏତନାମରେ ଉପନିବେଶବାଦୀ ମାନଙ୍କର ଅନୁପ୍ରବେଶ ଆଉ ସୀମିତ ଅଞ୍ଚଳ ମଧ୍ୟରେ ଆବଦ୍ଧ ରହିଲା ନାହିଁ । ୧୯୪୬ ପ୍ରଥମ ଭାଗ ବେଳକୁ ଭିଏତନାମ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ସଂପ୍ରସାରଣବାଦୀଙ୍କର ଅଭେଦ୍ୟ ଦୁର୍ଗରେ ପରିଣତ ହୋଇଗଲା । ଏକା ସାଙ୍ଗରେ ଏକାଧିକ ଶକ୍ତିଙ୍କର ସ୍ୱାର୍ଥବାଦୀ ଆକ୍ରମଣରେ ସମ୍ମୁଖୀନ ହେବା ପାଇଁ ସଦ୍ୟ ସ୍ୱାଧୀନ ଭିଏତନାମର ସାମରିକ ବା ଆର୍ଥିକ କ୍ଷମତା ନ ଥିଲା । ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ପାଲଟା ଲଢ଼ାଇ ପାଇଁ 'ଭିଏତମିନ' ଯେଉଁ ତରୁଣ କର୍ମୀମାନଙ୍କୁ ସାମରିକ ଶିକ୍ଷା ଦେଉଥିଲା ସେମାନଙ୍କ ପରିମାଣ ଶତ୍ରୁପକ୍ଷ ତୁଳନାରେ ଅତ୍ୟନ୍ତ ନଗଣ୍ୟ । ତେଣୁ ଏପରି ଏକ ଅପରିପକ୍ୱ, ଅସିଦ୍ଧ, ଅପ୍ରସ୍ତୁତ ସୈନ୍ୟଦଳ ନେଇ ସୁସଜ୍ଜିତ ସେନାବାହିନୀ ସହିତ ସମ୍ମୁଖ ରଣରେ ଉପସ୍ଥିତ ହେବା ନିର୍ବୋଧ ବାତୁଳତା ବ୍ୟତୀତ ଆଉ କିଛି ନୁହେଁ ।

ଏ ଏକ ଦାରୁଣ ସମସ୍ୟା । ଉତ୍କଟ ସମସ୍ୟା ବହୁଳ ମୁହୂର୍ତ୍ତ । ହୋ'ଙ୍କ ଆଗରେ ଦୁଇଟି ପଥ ଅତି ସ୍ପଷ୍ଟ ।

ପ୍ରଥମରେ ଉତ୍ତର ପଟରୁ ସଶସ୍ତ୍ର ବିଦ୍ରୋହ ଜରିଆରେ ଫରାସୀ ସୈନ୍ୟ-ବାହିନୀକୁ ବାଧା ଦେବା ଏବଂ ପ୍ରୟୋଜନ ହେଲେ ଫରାସୀ ସୈନ୍ୟମାନଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ ଯୋଗାଉ ଥିବା ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସାମରିକ ଅନୁପ୍ରବେଶକୁ ମଧ୍ୟ ଖୁବ୍ ଦୃଢ଼ତାର ସହିତ ବିରୋଧ କରିବା ।

ଦ୍ୱିତୀୟମାର୍ଗ ହେଉଛି ଆପୋଷ ଆଲୋଚନା ଭିତ୍ତିରେ ଫ୍ରାନ୍ସ ସହିତ ସାମୟିକ ବନ୍ଧୁତ୍ୱ ସ୍ଥାପନ କରିବା ଏବଂ ଚରୁଜିତାର ସହ ସାମ୍ରାଜ୍ୟବାଦୀ

ଉପନିବେଶବାଦୀ ମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ବୁଝାମଣାକୁ ବିଷାକ୍ତ କରି ସେମାନଙ୍କର ସ୍ୱାର୍ଥାନ୍ୱେଷୀ ଶିବିରକୁ ଫଟାଇଦେବା । ସେମାନଙ୍କ ସହିତ ସଶସ୍ତ୍ର ସଂଗ୍ରାମରେ ଓହ୍ଲାଇବା ପର୍ଯ୍ୟନ୍ତ ବ୍ୟବଧାନ ମଧ୍ୟରେ ନିଜ ସୈନ୍ୟବଳକୁ ଅନୁରୂପ ପ୍ରସ୍ତୁତ କରିବା, ଯେପରିକି ଶତ୍ରୁର ଅଜାଣତରେ ହଠାତ୍ ଏକ ସମୟରେ ସାରା ଦେଶରେ ସେମାନଙ୍କ ବିରୁଦ୍ଧରେ ସଙ୍ଗଠିତ ଗଣ ବିଦ୍ରୋହ ମୁଣ୍ଡ ଟେକି ପାରିବ ।

ହୋ'ଙ୍କର ଏହି ଦୁଇଟି ପ୍ରସ୍ତାବ ମଧ୍ୟରୁ ପାର୍ଟି ଦ୍ୱିତୀୟଟି ଗ୍ରହଣ କରିବାକୁ ବାଧ୍ୟ ହେଲା । ପରିବର୍ତ୍ତିତ ପରିସ୍ଥିତିକୁ ବୁଦ୍ଧି ନୀତି ନିର୍ଦ୍ଧାରଣ କରିବାହିଁ ରାଜନୈତିକ ଚତୁରତାର ଅନ୍ୟ ଏକ ବିଶିଷ୍ଟ ଦିଗ ।

ପୁରୁଣା ଶତ୍ରୁ ସହିତ ଏକା ଆସନରେ ବସି ଆଲୋଚନା କରିବା ହୋ'ଙ୍କ ମୁଖ ଲକ୍ଷ୍ୟ ନ ଥିଲା ସତ କିନ୍ତୁ ସେତେବେଳେ ତା ବ୍ୟତୀତ ଅନ୍ୟ ଉପାୟ କିଛି ନାହିଁ । ବନ୍ଧୁ ଦିନରୁ ସହିତ ଘୃଣା ଯେପରି ପଥ ଖୋଜୁଛି !! ଲେନିନ ମନେ ପଡ଼ନ୍ତି ପ୍ରତ୍ୟେକ ମୁହୂର୍ତ୍ତରେ । ପ୍ରତି ପଦ ପାତରେ । ମାର୍କସ୍‌ବାଦୀ ଶିକ୍ଷା, ଲେନିନ୍-ବାଦୀ କୌଶଳର ଉପଯୋଗ ପାଇଁ ଏଇତ ଉପଯୁକ୍ତ କ୍ଷେତ୍ର ! ମୂର୍ତ୍ତିମନ୍ତ ହୋଇ ଉଠିଲେ ସେ ତାଙ୍କ ହୃଦୟରେ ।

"ବିପ୍ଳବକୁ ସାହାଯ୍ୟ କରିବାକୁ ଯାଇ ଦସ୍ୟୁ ମାନଙ୍କ ସହିତ ସାଲିସ କରିବା ପ୍ରୟୋଜନ ହେଲେ ସେ ତାହା ଗ୍ରହଣ କରିବେ ।"

୧୯୪୬ ମସିହା ମାର୍ଚ୍ଚ ମାସ ୬ ତାରିଖ ଦିନ ହାନୋଇଠାରେ ଫ୍ରାନ୍ସର ସରକାରୀ ପ୍ରତିନିଧି ସାନ୍ତେନି ଓ ଭିଏତନାମ ସରକାରଙ୍କର ରାଷ୍ଟ୍ରପତି ହୋ'ଙ୍କ ମଧ୍ୟରେ ଏକ ପ୍ରାଥମିକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ଏହି ସନ୍ଧିପତ୍ରର ପ୍ରଥମ ଓ ମୁଖ୍ୟ ସର୍ତ୍ତ ଥିଲା "ଫରାସୀ ୟୁନିଅନ ଅଧୀନରେ ଥିବା ଇଣ୍ଡୋଚୀନ ରାଷ୍ଟ୍ରସଂଘର ଗୋଟିଏ ସ୍ୱାଧୀନ ଅଂଶ ଭାବେ ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ସ୍ୱାଧୀନ ସରକାର, ସ୍ୱାଧୀନ ଅର୍ଥନୀତି, ସ୍ୱାଧୀନ ପାର୍ଲାମେଣ୍ଟ, ସ୍ୱାଧୀନ ସେନାବାହିନୀକୁ ଫରାସୀ ସରକାର ସ୍ୱୀକାର କରିବ । ଏହା ବଦଳରେ ଫରାସୀମାନେ ଟନ୍‌କିନ୍ ଓ ଆନାମରେ ସେମାନଙ୍କର ଅବାଧ ପ୍ରବେଶ ଅବ୍ୟାହତ ରଖି ପାରିବେ ।" ଏହା-ଛଡ଼ା ଆର୍ଥିକ ଲଭାଂଶର ସେମାନେ ମୁଖ୍ୟ ଭାଗୁଆଳୀ ହୋଇ ରହିବେ । ବହୁ କଷ୍ଟ ଓ ପ୍ରୟାସ ବିନିମୟରେ ଏହି ଚୁକ୍ତି ସ୍ୱାକ୍ଷରିତ ହୋଇଥିଲେ ମଧ୍ୟ ହୋ' ଏଥିରେ ଆଦୌ ସନ୍ତୁଷ୍ଟ ନ ଥିଲେ । କାରଣ ଭିଏତନାମର ସ୍ୱାଧୀନତା ବିନିମୟରେ ସେ ଅନ୍ୟ କିଛି ଗ୍ରହଣ ନ ଥିଲେ । ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇ ସାରିବା ପରେ

ଯେତେବେଳେ ସାନ୍ତେନି ଗଭୀର ଆନନ୍ଦରେ କରମର୍ଦ୍ଦନ ପାଇଁ ହାତ ବଢ଼ାଇ ଦେଲେ ହୋ'ଙ୍କର ଶୁଷ୍କ, ନୀରସ, ଅନାଗ୍ରହୀ ଆଖିଯୋଡ଼ିକ ସାନ୍ତେନିଙ୍କ ମୁଖମଣ୍ଡଳ ଉପରେ ବୁଲିଗଲା ।

"ମୁଁ ଏଥିରେ ସୁଖୀ ନୁହେଁ, କାରଣ ଜିତାପଟ ହେଉଛି ତୁମର । ତୁମେ ଖୁବ୍ ଭଲ ଭାବରେ ଜାଣ ଯେ ମୁଁ ଏହାଠାରୁ ଅଧିକ କିଛି ଆଶା କରିଥିଲି । କିନ୍ତୁ ମୁଁ ବୁଝେ ଯେ ଗୋଟିଏ ଦିନରେ ସବୁକିଛି ମିଳିଯାଏ ନାହିଁ ।"

ସନ୍ଧିପତ୍ରରୁ କାଳିଦାଗ ଶୁଖି ନାହିଁ । ଫରାସୀ ସାମରିକବାହିନୀ ସନ୍ଧିପତ୍ରର ସର୍ତ୍ତାବଳୀ ଲଙ୍ଘନ କରି ଉତ୍ତର ସୀମାନ୍ତରୁ ଆକ୍ରମଣ ଆରମ୍ଭ କରିଦେଲେ । 'ଭିଏତମିନ' ତୁଳନାରେ ସେମାନଙ୍କର ସୈନ୍ୟ ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଲା । "ପାଞ୍ଚ ଦଶ ବର୍ଷ ମଧ୍ୟରେ ଭିଏତନାମକୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଅର୍ପଣ ଦାବୀକୁ ପାଳନ କରିବା ପରିବର୍ତ୍ତେ ଅଧିକ ସୈନ୍ୟ ମୁତୟନ କରାଗଲା । ହୋ' ଏହି ଘଟଣା-ବଳୀକୁ ନିଜ ଆଖିରେ ଦେଖୁଥିଲେ ମଧ୍ୟ ଆପତ୍ତି କରିବା ତାଙ୍କ ଶକ୍ତିର ବାହାରେ ଥିଲା । ହାନୋଇରେ ଅବସ୍ଥାପିତ ଫରାସୀ ପ୍ରତିନିଧିଙ୍କ ଉପରେ ତାଙ୍କର ବିଶ୍ୱାସ ରହିଲା ନାହିଁ । ତେଣୁ ପ୍ୟାରିସ ଯାଇ ସେଠିକାର ସାଧାରଣ ଜନତା, ନେତୃବୃନ୍ଦଙ୍କୁ ନିଜ ସପକ୍ଷରେ ପରିଚାଳିତ କରିବା ପାଇଁ ମନ ବଳାଇଲେ । ଅନ୍ୟ ପକ୍ଷରେ ୟୁରୋପର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଉପନିବେଶୀ ଜାତିଗୁଡ଼ିକର ସମସ୍ୟା ସମ୍ବନ୍ଧରେ ବାହାର ପୃଥିବୀର ପ୍ରତିକ୍ରିୟାକୁ ସେ ଜାଣିବାକୁ ଚାହୁଁଥିଲେ । ଫରାସୀ କମ୍ୟୁନିଷ୍ଟ ପାର୍ଟି, ଗଣତନ୍ତ୍ରପ୍ରେମୀ ଶକ୍ତି, ଶାନ୍ତି ଓ ମୁକ୍ତିକାମୀ ଜନତାକୁ ଏକତ୍ରିତ କରାଇ ସାମ୍ରାଜ୍ୟବାଦୀ ସରକାର ଉପରେ ରାଜନୈତିକ ଚାପ ପକାଇବା ଥିଲା ତାଙ୍କ ଯାତ୍ରାର ପ୍ରଧାନ ଲକ୍ଷ୍ୟ । ପ୍ୟାରିସରେ ଥିବା ଦିନଗୁଡ଼ିକର ଅଜସ୍ର ସ୍ମୃତି ଆଖି ଆଗରେ ଭାସି ଉଠିଲା । ସେ ସମସ୍ତେ ତାଙ୍କର ପୁରାତନ ବନ୍ଧୁ ପରି । ଭବିଷ୍ୟତ ଉଜ୍ଜ୍ୱଳ ଆଶା କରି ସେ ମଇ ମାସ ୩୧ ତାରିଖରେ ପ୍ୟାରିସ ଅଭିମୁଖେ ବିମାନ ଯାତ୍ରା କଲେ ।

ପହିଲା ଜୁନର ସନ୍ଧ୍ୟା । ହୋ'ଙ୍କର ବିମାନ ଭୂମଧ୍ୟସାଗର ଆକାଶରେ । ରେଡ଼ିଓରୁ ଶୁଣିଲେ ଫରାସୀ ଆଡ଼ମିରାଲ ଆରଗେନଲୁରଙ୍କ ନିର୍ଦ୍ଦେଶରେ ସାଇଗନରେ କୋଚିନ-ଚୀନ ପ୍ରଜାତନ୍ତ୍ର ପ୍ରତିଷ୍ଠା ହୋଇଛି । ମାର୍ଚ୍ଚ ଛ' ତାରିଖର ସର୍ତ୍ତାବଳୀରେ ଭିଏତନାମ ନୂତନ ପ୍ରଜାତନ୍ତ୍ର ପାଇଁ ଯେଉଁ ପ୍ରକାର ସ୍ୱତନ୍ତ୍ର ସୁବିଧାର ବ୍ୟବସ୍ଥା ହୋଇଥିଲା ଠିକ୍ ତାର ଅବିକଳ ପ୍ରତିରୂପ ଦେଖୁଛନ୍ତି କୋଚିନ୍-ଚୀନ ପ୍ରଜାତନ୍ତ୍ରରେ । ହୋ'ଙ୍କର ହାନୋଇ ଛାଡ଼ିବାର ମାତ୍ର ଗୋଟିଏ ଦିନ ପରେ ଯେ ଫରାସୀ କର୍ତ୍ତୃପକ୍ଷ ତାଙ୍କ ସହିତ ଏପରି ବିଶ୍ୱାସଘାତକତା କରିବେ, ସେ ଏହି

ଘଟଣା ସହିତ ନିଜକୁ ସାମିଲ କରି ପାରିଲେ ନାହିଁ । ତାଙ୍କ ଜଳ ଜଳ ହୋଇ ଉଠିଲା ସ୍ମୃତି ଆସିଥିବା ଭିଏତନାମ । ଏପରି ଉତ୍ତେଜିତ ମୁହୂର୍ତ୍ତରେ ସହକର୍ମୀ-ମାନେ ମାନସିକ ସ୍ଥିରତା ରକ୍ଷା କରି ପାରିବେ ତ !! ବିଶେଷ କରି ଭୋ ନ୍ଗୁଏନ୍ ଗିଆପଙ୍କ ଏବଂ ଫାନ ଭାନଡଙ୍ଗ୍‌ଙ୍କ ପରି ନିତ୍ୟ ବିଦ୍ରୋହୀ ତରୁଣ ଗୋଷ୍ଠୀ ! ତାଙ୍କର ମନେହେଲା ଫରାସୀ କର୍ତ୍ତୃପକ୍ଷ ତାଙ୍କୁ ଠକିବା ପାଇଁ ଏପରି ଏକ ଚାଲ ଖେଳିଛନ୍ତି । ଅନେକ ଦିନ ଧରି ତାଙ୍କର ବିମାନ ବାଟରେ ଅଟକି ଗଲା । କୋଚିନ୍ ଚୀନରେ ନିର୍ବାଚନ ପରେ ନୂତନ ସରକାର ଘୋଷିତ ହେବା ପର୍ଯ୍ୟନ୍ତ ସେ ପ୍ୟାରିସ ଯାଇ ପାରିଲେ ନାହିଁ ।

ଜୁନ୍ ୨୨ ତାରିଖ ସନ୍ଧ୍ୟାରେ ସାନ୍ତେନିଙ୍କ ସହିତ ସେ ପ୍ୟାରିସରେ ପହଞ୍ଚିଲେ । ଫରାସୀ ସରକାରୀ ସଂସ୍ଥା ତରଫରୁ ଅଭୂତପୂର୍ବ ଅଭିନନ୍ଦନ ପାଇଲେ ହୋ' । ବିମାନଘାଟିରେ ତାଙ୍କୁ ଭେଟିବା ପାଇଁ ପ୍ରବଳ ଜନସ୍ରୋତ । ସାମ୍ବାଦିକଙ୍କଠାରୁ ଆରମ୍ଭ କରି ଉଚ୍ଚପଦସ୍ଥ ସରକାରୀ ଅଫିସର ସାଏ ଘେରି ରହିଛନ୍ତି ତାଙ୍କୁ । ବହୁବର୍ଷ ପରେ ସେ ଦେଖିଲେ ପ୍ୟାରିସକୁ । ଏ ସେହି ପ୍ୟାରି । ମହାନଗରୀ ପ୍ୟାରି । ଏକଦା ଅତ୍ୟନ୍ତ ଆପଣାର ତାଙ୍କ ପାଇଁ । ଲକ୍ଷ ଲକ୍ଷ ଲୋକ ଦିନଦିନ ଏହାର ପଥଧାରରେ ଭିଡ଼ ଜମାନ୍ତି । କେତେ ମଜଦୁର ରାତିଦିନ ଖଟୁଥାନ୍ତି ଏହାର କଳ କାରଖାନାରେ । ପ୍ରଶସ୍ତ ରାଜପଥ ଦେଇ କେତେ ନରନାରୀ ଗର୍ବିତ ପଦକ୍ଷେପରେ ଚାଲିଯାଆନ୍ତି ଆଗକୁ ।

ଅନେକ ଦିନ ଧରି ସେ ରହିଲେ ସେଠାରେ । ଜୁନ୍‌ରୁ ଅଗଷ୍ଟ ମାସ ଶେଷ ପର୍ଯ୍ୟନ୍ତ । କେବଳ ପ୍ୟାରି ନୁହେଁ, ଯାତ୍ରା ପଥରେ ପଡ଼ିଲା ୟୁରୋପର ପ୍ରଧାନ ପ୍ରଧାନ ରାଜନୈତିକ କେନ୍ଦ୍ର । ସବୁ ସ୍ଥାନରେ ଭିଏତନାମ ମୁକ୍ତି ଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ନିମନ୍ତେ ସ୍ଥାନୀୟ ପ୍ରଗତିଶୀଳ, ଗଣତନ୍ତ୍ର ପ୍ରେମୀ, ବାମପନ୍ଥୀ ଶକ୍ତି-ମାନଙ୍କ ସହିତ ଆଲୋଚନାରେ ସମସ୍ତ କଟିଗଲା । ୟୁରୋପର ବିଭିନ୍ନ ପ୍ରାନ୍ତରେ ଥିବା ପ୍ରବାସୀ ଭିଏତନାମୀ ଜାତୀୟତାବାଦୀମାନଙ୍କ ସହିତ ସାକ୍ଷାତ ପାଇଁ ପର୍ଯ୍ୟାପ୍ତ ସୁଯୋଗ ମିଳିଲା ତାଙ୍କୁ ।

ଭିଏତନାମରେ ତାଙ୍କର ଦୀର୍ଘ ଅନୁପସ୍ଥିତିର ସୁଯୋଗ ନେଲେ ଉପନିବେଶ ବାଦୀ ଫରାସୀ ସୈନ୍ୟ ଏବଂ ସାମ୍ରାଜ୍ୟବାଦୀ ଦସ୍ୟୁ ମାର୍କିନ ଯୁକ୍ତରାଷ୍ଟ୍ର । ଏପ୍ରିଲ ମାସ ଦଶ ତାରିଖରୁ ଉତ୍ତର ଇଣ୍ଡୋଚୀନ ସୀମାନ୍ତ ଦାୟିତ୍ୱରେ ଥିବା ଫରାସୀ ସେନାଧ୍ୟକ୍ଷ ଜେନେରାଲ ଭାଲୁଇଙ୍କ ନେତୃତ୍ୱରେ ଫରାସୀ ସେନାବାହିନୀ ଗୋପନରେ ସାମରିକ ଘାଟୀ ସ୍ଥାପନ କରୁଥିଲେ । ଉତ୍ତର ଭିଏତନାମ ଏବଂ ମଧ୍ୟ ଭିଏତନାମର ଉତ୍ତର ପଟରେ ଜେନେରାଲ ଲେକଲେର ମଧ୍ୟ ଅନୁରୂପ ସାମରିକ ପଦକ୍ଷେପ ନେଲେ ।

ପ୍ୟାରିସରେ ଚାଲିଥିବା ଫ୍ରାଙ୍କୋ-ଭିଏତନାମ ବୁଝାମଣା ସମସ୍ତ ମଧ୍ୟରେ ସମଗ୍ର ଇଣ୍ଡୋଚୀନରେ ସମର ଶିବିର ପ୍ରତିଷ୍ଠା କରିବା ପାଇଁ ଏହାହିଁ ସୁବର୍ଣ୍ଣ ସୁଯୋଗ ! ହୋ' ଘରେ ନାହାନ୍ତି । ତାଙ୍କ ନିର୍ଦ୍ଦେଶ ବିନା ସେମାନଙ୍କୁ ବିରୋଧ କରିବ କିଏ ?

ସେମାନଙ୍କର ଏହି ସ୍ୱପ୍ନ କିନ୍ତୁ ସେଦିନ ଭାଜି ପଡ଼ିଥିଲା । କ୍ରମାଗତ ବିଦେଶୀ ଆକ୍ରମଣରେ ଆଶଙ୍କା କରି ଭିଏତନାମର ସରକାରୀ ପ୍ରତିନିଧି ଫାମ୍ ଭ୍ୟାନ ଡୁଙ୍ଗ ଫରାସୀ କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନାରେ ବସିବା ପାଇଁ ପ୍ରସ୍ତାବ ଦେଲେ । ୧୯୪୬ ମସିହା ଜୁଲାଇ ମାସ ଛ' ତାରିଖରେ ଫାଣ୍ଟେନ ବ୍ଲୁ ଠାରେ ଉଭୟ ପକ୍ଷର ମିଳିତ ବୈଠକ ବସିଲା । ଭିଏତନାମୀ ପ୍ରତିନିଧି ଦଳର ନେତୃତ୍ୱ ନେଲେ ହୋ'ଙ୍କର ସହକାରୀ ଫାମ୍ ଭ୍ୟାନ ଡୁଙ୍ଗ । ଏହି ଆଲୋଚନା ସମ୍ପୂର୍ଣ୍ଣ ବିଫଳ ହେଲା । କାରଣ ଫରାସୀ-ମାନେ ଇଣ୍ଡୋଚୀନରେ ସେମାନଙ୍କର କର୍ତ୍ତୃତ୍ୱ ପୁନଃପ୍ରତିଷ୍ଠା ଆଶା କରି ଭିଏତନାମ ସ୍ୱାଧୀନ ସରକାର ପାଇଁ କୌଣସି ପ୍ରକାର ସ୍ୱତନ୍ତ୍ର ସୁବିଧା ସୁଯୋଗର ପକ୍ଷପାତୀ ନ ଥିଲେ । ପାରସ୍ପରିକ ବୁଝାମଣାର ପଥ ସମାପ୍ତ ପ୍ରାୟ । ଫାମ୍ ଭ୍ୟାନ ଡୁଙ୍ଗ ଏବଂ କମ୍ରେଡ଼ ଗିଆପ ଏହି ବିଫଳତାରେ ମ୍ରିୟମାଣ ହୋଇପଡ଼ିଲେ । "ଶାନ୍ତି ପୂର୍ଣ୍ଣ ଉପାୟରେ ଭିଏତନାମ ସ୍ୱାଧୀନତାର ସୁରକ୍ଷା" ପ୍ରତି ସେମାନଙ୍କର ଆଉ ବିଶ୍ୱାସ ନାହିଁ । 'ଅସ୍ତ୍ରର ଜବାବ୍ ଅସ୍ତ୍ରରେ' ଏହାହିଁ ତାଙ୍କର ଆଦର୍ଶ । ହୋ' ବିଦେଶରେ ଥାଇ ସବୁ ଜାଣିଲେ । ବିଦେଶ ଛାଡ଼ିବା ପୂର୍ବରୁ ଦେଶବାସୀଙ୍କ ପାଇଁ ନୂତନ ସନ୍ଦେଶ ନେଇ ଫେରିବା ଲାଗି ସେ ଆଗ୍ରହୀ । ସେପ୍‌ଟେମ୍ବର ୧୪ ତାରିଖରେ ଫ୍ରାନ୍ସ ଓ ଭିଏତନାମ ମଧ୍ୟରେ ଆଉ ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ମାର୍ଚ୍ଚ ଚୁକ୍ତିକୁ ବଳବତ୍ତର କରିବା ପାଇଁ ୬ ତାରିଖରେ ଏହାର ଜନ୍ମ ।

ସେପ୍‌ଟେମ୍ବର ୧୯ ତାରିଖରେ ହୋ' ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ତାଙ୍କୁ ନେଇ ଦେଶରେ ତୁମୁଳ ବାଦାନୁବାଦ । କିନ୍ତୁ ହୋ' ନିଜ ମତରେ ପୂର୍ବବତ୍ ଦୃଢ଼ ଏବଂ ଅବିଚଳ । ଜାତୀୟତାବାଦୀ, କମ୍ୟୁନିଷ୍ଟ ବିରୋଧୀ ଅପପ୍ରଚାରରେ ଦବିଯିବା ବ୍ୟକ୍ତି ସେ ନୁହଁନ୍ତି । କାରଣ ସେ ନିଜେ ଭଲଭାବରେ ଜାଣନ୍ତି ଦେଶପ୍ରତି ସେ ବିଶ୍ୱାସ-ଘାତକତା କିମ୍ବା ବିଦ୍ରୋହାଚରଣ କରି ନାହାନ୍ତି । ଅନ୍ୟ ପକ୍ଷରେ ନିଜ ଦେଶର ମୁକ୍ତି, ସ୍ୱାଧୀନତା ପାଇଁ ସେ ଯେ କୌଣସି ମୂଲ୍ୟ ଦେବା ପାଇଁ ପ୍ରସ୍ତୁତ । ଦେଶବାସୀଙ୍କ ମଧ୍ୟରେ ଥିବା ରାଜନୈତିକ କନ୍ଦଳ, ବିଭିନ୍ନତା ଓ ତାଙ୍କ ପ୍ରତି ଥିବା ଅନ୍ୟମାନଙ୍କର ଭୁଲ ବୁଝାମଣାକୁ ଦୂର କରିବା ପାଇଁ ସେ ଅକ୍ଟୋବର ମାସ ୨୩ ତାରିଖ ଦିନ ଜାତି ଉଦ୍ଦେଶ୍ୟରେ ଏକ ବେତାର ବାର୍ତ୍ତା ଦେଲେ ।

"ସ୍ୱଦେଶବାସୀ ଭାଇମାନେ, ମୋ କାର୍ଯ୍ୟର ହିସାବକୁ ଗୋଟିଏ ଆପଣ-ମାନଙ୍କୁ ଦେଉଛି । ଫରାସୀ ସରକାର ଖୁବ୍ ସମ୍ମାନର ସହିତ ମୋତେ ଅଭ୍ୟର୍ଥନା

ଜଣାଇଛନ୍ତି । ଫରାସୀ ଜନସାଧାରଣ ଆମପ୍ରତି ଅକୃତ୍ରିମ ବନ୍ଧୁତ୍ୱଭାବାପନ୍ନ । ସେମାନେ ମଧ୍ୟ ଅତି ଆନ୍ତରିକ ବ୍ୟବହାର ପ୍ରଦର୍ଶନ କରିଛନ୍ତି । ଆପଣମାନଙ୍କ ତରଫରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇ ଦେଉଛି ।......

"ମୁଁ ପ୍ୟାରି ଯାଇଥିଲି ଭିଏତନାମ ସ୍ୱାଧୀନତା ଓ ଐକ୍ୟ ସାଧନ ପଥରେ ଥିବା ସମସ୍ୟାକୁ ସମାଧାନ କରିବା ପାଇଁ । କିନ୍ତୁ ଫ୍ରାନ୍ସରେ ବର୍ତ୍ତମାନ ଯେଉଁ ପରିସ୍ଥିତି ତାହା ଏହି ସମାଧାନର ଅନୁକୂଳ ନୁହେଁ । ଆମକୁ ଆହୁରି କିଛି ଦିନ ଅପେକ୍ଷା କରିବାକୁ ହେବ ।.........

ଫ୍ରାନ୍ସରେ ରହଣୀକାଳ ମଧ୍ୟରେ ମୁଁ ଓ ଭିଏତନାମ ପ୍ରତିନିଧିଗଣ ଭିଏତନାମ ସମସ୍ୟା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲୁ । ଅଗଣିତ ଫରାସୀଙ୍କୁ ଆମେ ଭିଏତନାମର ବନ୍ଧୁଭାବେ ପାଇଛୁ ।

"ଫ୍ରାନ୍ସର ଅଧିବାସୀମାନେ ଆମପ୍ରତି ଯଥେଷ୍ଟ ସହାନୁଭୂତିର ପରିଚୟ ଦେଇଛନ୍ତି । ଆମକୁ ତାର ପ୍ରତିଦାନ ଦେବାକୁ ହେବ । ଫରାସୀ ସଶସ୍ତ୍ର ବାହିନୀ ପ୍ରତି ଆମର ସୌଜନ୍ୟ ବୋଧ ରହିବ । ଫରାସୀମାନଙ୍କ ପ୍ରତି ଆମର ବ୍ୟବହାର ଆନ୍ତରିକ ହେବ । ବିଶ୍ୱବାସୀ ଜାଣନ୍ତୁ ଆମେ ଏକ ସଭ୍ୟ ଜାତି ।

"ନାମ ବୋ ଠାରେ ଭିଏତନାମୀ ଓ ଫରାସୀ ଉଭୟ ବାହିନୀଙ୍କୁ ଅସ୍ତ୍ର ସଂବରଣ କରିବାକୁ ହେବ । ବର୍ତ୍ତମାନ ପ୍ରତିହିଂସା ଠାରୁ ଦୂରରେ ରହିବା ଏକାନ୍ତ ଜରୁରୀ । ଯେଉଁମାନେ ଭୁଲ ପଥରେ ଯାଉଛନ୍ତି ସେମାନଙ୍କୁ ସହୃଦୟତା ଦେଖାଇବାକୁ ପଡ଼ିବ । ସମସ୍ତେ ହିଁ ଦେଶପ୍ରେମିକ । କିନ୍ତୁ ଏପରି ଗୋଟିଏ ଗୋଟିଏ ମୁହୂର୍ତ୍ତି ପହଞ୍ଚେ ଯେତେବେଳେ ଅଯଥା ଘୃଣାର ବଶବର୍ତ୍ତୀ ହୋଇ ବ୍ୟକ୍ତି ତାର ସଙ୍କୋଚ କର୍ତ୍ତବ୍ୟବୋଧକୁ ଅବହେଳା କରେ । ଦଳତ୍ୟାଗୀମାନେ ନିଶ୍ଚୟ ଫେରି ଆସିବେ । ସେମାନଙ୍କ ପ୍ରତି ହିଂସାତ୍ମକ ଆଚରଣ ଆଦୌ ବାଞ୍ଛନୀୟ ନୁହେଁ ।"

ସେପ୍ଟେମ୍ବର ୧୪ରେ ସ୍ୱାକ୍ଷରିତ ଚୁକ୍ତି ଅନୁଯାୟୀ କୋଚିନ୍-ଚୀନରେ ଉତ୍ତେଜନା କ୍ରମଶଃ ହ୍ରାସ ପାଇଲା । ଦକ୍ଷିଣ ପଟର ଭିଏତମିନ ନେତାମାନେ ବାଧ୍ୟ ହୋଇ ଚୁକ୍ତି ମାନି ନେଲେ । କାରଣ ସେମାନେ ଆଶା କରୁଥିଲେ ସମସ୍ତକ୍ରମେ ଗଣ ଭୋଟ ଜରିଆରେ ଭିଏତନାମ ତାଙ୍କ ଅଧୀନକୁ ଆସିବ ।

କିନ୍ତୁ ଭିତରେ ଭିତରେ ଫ୍ରାନ୍ସ ତରଫରୁ ଯୁଦ୍ଧ ପାଇଁ ଅବିରାମ ପ୍ରସ୍ତୁତି ଚାଲିଥିଲା । ନଭେମ୍ବର ୨୧ ତାରିଖରେ ଫରାସୀମାନେ ହାଇଫଙ୍ଗ ଆକ୍ରମଣ କଲେ । ତା ପୂର୍ବଦିନ ଅର୍ଥାତ ନଭେମ୍ବର କୋଡ଼ିଏ ତାରିଖ ଦିନ ଲାଙ୍ଗସନଠାରେ ଭିଏତମିନ ଓ ଫରାସୀ ସୈନ୍ୟ ମଧ୍ୟରେ ମୁହାଁମୁହିଁ ସଂଘର୍ଷ ହୋଇଯାଇଥିଲା । ଫରାସୀମାନେ

ନିଜର ବାଣିଜ୍ୟିକ ସୁବିଧା ପାଇଁ ହାଇଫଙ୍ଗ ବନ୍ଦରଠାରେ ବହିର୍ବାଣିଜ୍ୟ କାରବାରର ତଦାରଖ ନିମନ୍ତେ ଗୋଟିଏ ଶୁଳ୍କ ଦପ୍ତର ଖୋଲିଲେ । ଭିଏତନାମ ସରକାରଙ୍କ ନିକଟରୁ ଏଥିପାଇଁ କୌଣସି ସମ୍ମତି ଦିଆଯାଇ ନ ଥିଲା । ତେଣୁ ହୋ' ଏହି ଅବୈଧ ଷଡ଼ଯନ୍ତ୍ରରେ କ୍ଷୁବ୍ଧ ହୋଇ ଫରାସୀ ପ୍ରଧାନମନ୍ତ୍ରୀ ବିଦ୍ୟୁଲେଙ୍କ ନିକଟରେ ପ୍ରତିବାଦ ଜଣାଇଲେ । ତାଙ୍କ ଅଭିଯୋଗର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଫ୍ରାନ୍ସ ସବୁବେଳେ ଦ୍ୱିପାକ୍ଷିକ ରାଜିନାମାର ବିରୁଦ୍ଧାଚରଣ କରୁଛି ଏବଂ ଭିଏତନାମ ସାଧାରଣ ଜନତା ମଧ୍ୟରେ ଅନାବଶ୍ୟକ ଯୁଦ୍ଧ ଉତ୍ତେଜନା ସୃଷ୍ଟି କରୁଛି । କିନ୍ତୁ ପ୍ରଧାନମନ୍ତ୍ରୀ ହୋ'ଙ୍କର ଏହି ପ୍ରତିବାଦ ପ୍ରତି ବିଶେଷ ଧ୍ୟାନ ଦେଲେ ନାହିଁ । ପ୍ରକାରାନ୍ତରେ ସେ ହୋ'ଙ୍କୁ ଜଣାଇ ଦେଲେ ଯେ ଭିଏତନାମ ଯେତେବେଳେ ଇଣ୍ଡୋଚାଇନ ଫେଡ଼ରେସନ ଓ ଫରାସୀ ୟୁନିଅନ ମଧ୍ୟରେ ରହିବାକୁ ଅଙ୍ଗୀକାର କରିସାରିଛି, ସେତେବେଳେ ସଦସ୍ୟ ରାଷ୍ଟ୍ରଗୁଡ଼ିକର ବାଣିଜ୍ୟ ଓ ବହିର୍ଆଗତ ଜିନିଷପତ୍ର ଉପରେ ନଜର ରଖିବା ପାଇଁ ଫ୍ରାନସର ସମ୍ପୂର୍ଣ୍ଣ ଅଧିକାର ରହିଛି । କାରଣ ଅନେକ ସମୟରେ ଜାହାଜ ଭର୍ତ୍ତି ହୋଇ ବାହାରୁ ଅସ୍ତ୍ରଶସ୍ତ୍ର ମଧ୍ୟ ଆସିପାରେ ।

ବିଦ୍ୟୁଲେଙ୍କର ଏହି ଯୁକ୍ତିକୁ ବଳବତ୍ତର କରିଥିଲା ଆଉ ଏକ ପରବର୍ତ୍ତୀ ଘଟଣା । ନଭେମ୍ବର ଏକୋଇଶ ତାରିଖରେ ହାଇଫଙ୍ଗ ବନ୍ଦରରେ ଏକ ଚୀନା ବାଣିଜ୍ୟପୋତ ଅଟକିଲା । ସେଥିରେ ବେଆଇନ ଭାବେ ପେଟ୍ରୋଲ ଆସିଥିଲା । ଫରାସୀ ସାମରିକ ନିରାପତ୍ତା ବିଭାଗ ଜାହାଜ ଖାନତଲାସ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଉପସ୍ଥିତ ଭିଏତନାମୀ ରକ୍ଷୀଙ୍କ ତରଫରୁ ସେମାନଙ୍କୁ ପ୍ରବଳ ବାଧା ଦିଆଗଲା । ଦୁଇପକ୍ଷରୁ ପ୍ରବଳ ଗୁଳିଗୁଳା ବିନିମୟ ହୋଇଥିଲା । ପରମୁହୂର୍ତ୍ତଠାରୁ ବନ୍ଦର ଓ ସହରତଳି ଅଞ୍ଚଳ ମାନଙ୍କରେ ଠାଏ ଠାଏ ବ୍ୟାରିକେଡ଼ ମାନ ତିଆରି ହୋଇଗଲା । କିଛି ଦିନ ଏପରି ଅଶାନ୍ତ ପରିବେଶ ମଧ୍ୟରେ ଘଟିଲା ପରେ ଫ୍ରାଙ୍କୋ-ଭିଏତନାମ ଯୁକ୍ତ କମିଶନର ଚେଷ୍ଟା ଫଳରେ ଗୁଳି ବିନିମୟ ବନ୍ଦ ହେଲା ।

ସହରର ଦାୟିତ୍ୱରେ ଥିବା ଫରାସୀ ମେଜର କର୍ଣ୍ଣେଲ ଡେବିସ ଭିଏତନାମୀ ମାନଙ୍କୁ ଭୟଙ୍କର ଘୃଣା କରୁଥିଲେ । ଭିଏତନାମ ଓ ଫ୍ରାନ୍ସ ମଧ୍ୟରେ ଚାଲିଥିବା ବୁଝାମଣାର ସେ ପକ୍ଷପାତୀ ନୁହନ୍ତି । ସେ ଭାବନ୍ତି ଏହା ଫଳରେ ଫରାସୀ ସୈନ୍ୟ-ବଳର ମର୍ଯ୍ୟାଦା ହାନି ଘଟୁଛି । ନିଜ ଦେଶର ଅବଲୁପ୍ତ ମର୍ଯ୍ୟାଦା ଫେରାଇ ଆଣିବା ପାଇଁ ନିଜେ ବ୍ୟାରିକେଡ଼ ଗୁଡିକ ଭାଙ୍ଗିବା ଉଦ୍ଦେଶ୍ୟରେ ଶକ୍ତିଶାଳୀ ବୁଲଡୋଜର ମାନ ପଠାଇଲେ । ସେତେବେଳେ ଅପରାହ୍ନ । ଆକାଶର ସୂର୍ଯ୍ୟ ଉପରେ କଳା ମେଘର ଆଚ୍ଛାଦନ ଜମି ଉଠିଛି । ବାହାର ଦୁନିଆଟା ଅନ୍ଧାର ମଧ୍ୟରେ ବୁଡି ଯାଇଛି । ଘରେ ଘରେ ମହମବତୀର ରୋଷଣୀ । ବୁଲଡୋଜର ମାଡି ଚାଲିଲା,

ହାଇଫଙ୍ଗର ପ୍ରଧାନ ରାସ୍ତାରେ । କେତେ କେତେ ଠିଆ ହୋଇଥିବା ବସ୍ତି ଟଳି ପଡ଼ିଲା ତା'ର ଆଘାତରେ । ଅକାଶ ମଧ୍ୟାହ୍ନରେ ଗର୍ଜି ଉଠିଲା ଗୁଳି କମାଣର ବଜ୍ରଗମ୍ଭୀର ପ୍ରତିଧ୍ୱନି । ଅଧାଜଳା ମହମବତୀ ହାତରେ ଟଳି ପଡ଼ିଲେ ଅଗଣନ ଜନତା । କ୍ଷତ ବିକ୍ଷତ ମଣିଷ ଶରୀରରେ ହାଇଫଙ୍ଗ ରାସ୍ତାଘାଟ ବନ୍ଦ ହୋଇଯାଇଥିଲା ସେଦିନ ।

ସେହି ରାତିରେ ମାତ୍ର କେତେ ଘଣ୍ଟାର ବ୍ୟବଧାନ ପରେ ଭିଏତମିନ ଗରିଲା ଶିବିରରୁ ଚାଲିଲା ପାଲଟା ଆକ୍ରମଣ ଫରାସୀ ସାମରିକ ଘାଟିମାନଙ୍କ ଉପରେ । ପ୍ରକୃତି ସମ୍ବାଦ ଜଣାଇ ଦେଇଗଲା । ଫରାସୀ ସୈନ୍ୟମାନଙ୍କର ମୃତାହତ ସଂଖ୍ୟା ମଧ୍ୟ କିଛି କମ୍ ନୁହେଁ । ତା' ପରଦିନ କର୍ଣ୍ଣେଲ ଡେବିସ ଆଦେଶ ଦେଲେ ଇଉରୋପୀୟ ଅଧ୍ୟୁଷିତ ଅଞ୍ଚଳମାନଙ୍କରୁ ଭିଏତନାମୀମାନଙ୍କୁ ବଳପୂର୍ବକ ବାହାର କରିଦେବା ପାଇଁ । ନଭେମ୍ବର ୧୭ ତାରିଖରେ ଫରାସୀ ସୈନ୍ୟମାନେ ହାନୋଇ ଆକ୍ରମଣ କରିବା ପାଇଁ ଧମକ ଦେଲେ ଏବଂ ମାତ୍ର ଦୁଇଦିନ ପରେ ୧୯ ତାରିଖ ରାତିରେ ନିରୀହ ଜନତା ଉପରେ ଚାଲିଲା ପ୍ରଚଣ୍ଡ ଗୁଳିବର୍ଷଣ । ସମଗ୍ର ହାନୋଇ ଆକାଶକୁ ସେଦିନ ହତ୍ୟାର କଳା ବାଦଲ ଘୋଡ଼ି ଦେଇଥିଲା । ନୂତନ ରୂପରେ ସମସ୍ତ ବିଦ୍ରୋହର ପର୍ବ ଆରମ୍ଭ ହେଲା । ହୋ' ବହୁତ ଚେଷ୍ଟା କଲେ ଉଭୟ ପକ୍ଷକୁ ଯୁଦ୍ଧ ବିରତି ଘୋଷଣା କରିବା ପାଇଁ । ନଭେମ୍ବର ୧୬ ତାରିଖରୁ ସେ କ୍ରମାଗତ ଚିଠିପତ୍ର ଦ୍ୱାରା ଫରାସୀ କର୍ତ୍ତୃପକ୍ଷଙ୍କୁ ଉକ୍ତ ନାରକୀୟ ଘଟଣାବଳୀ ସମ୍ବନ୍ଧରେ ଅବହିତ ରଖି ଆସୁଥିଲେ । ତାଙ୍କର ଅନୁରୋଧରେ ନଭେମ୍ବର ୨୧ ତାରିଖ ଦିନ ହାନୋଇଠାରେ ଯୁଦ୍ଧ ବନ୍ଦ ଚୁକ୍ତି ସ୍ୱାକ୍ଷରିତ ହେଲା । ଜେନେରାଲ ମରଲିଏ ହାଇଫଙ୍ଗରେ ଚାଲିଥିବା ଦଙ୍ଗା ବନ୍ଦ ପାଇଁ ସରକାରୀ ନିର୍ଦ୍ଦେଶ ଦେଲେ ।

ଠିକ୍ ସେହିଦିନ ସନ୍ଧ୍ୟାରେ ସାଇଗନରେ ଅବସ୍ଥାପିତ ଅସ୍ଥାୟୀ ହାଇକମିଶନରଙ୍କ ପାଖରୁ ଡେବିସ ତାରବାର୍ତ୍ତା ପାଇଲେ ହାଇଫଙ୍ଗରେ ଥିବା ଭିଏତନାମୀ ସଶସ୍ତ୍ର ବାହିନୀଙ୍କୁ ବିତାଡ଼ନ କରିବା ପାଇଁ । ଫରାସୀ କର୍ତ୍ତୃପକ୍ଷମାନଙ୍କର ଏ ପ୍ରକାର ଦ୍ୱୈତ ଚରିତ୍ର ଯୋଗୁଁ ଯୁଦ୍ଧ ବିରତି ରାଜିନାମା ବାସ୍ତବତଃ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ନଭେମ୍ବର ୨୩ ତାରିଖରେ କର୍ଣ୍ଣେଲ ଡେବିସ ଅବିଳମ୍ବେ ଚୀନା ଇଲାକା ପାର ହୋଇଯିବା ପାଇଁ ଧମକ ଦେଲେ । ସମୟ ମାତ୍ର ତିନି ଘଣ୍ଟା । ଦାବୀ ପୂରଣ ନ ହୋଇ ପାରିଲେ ଭିଏତନାମୀ ବସତି ଉପରେ ନିର୍ବିଚାରରେ ଗୁଳିବର୍ଷଣ ଚାଲିବ । ପ୍ରକୃତରେ ତିନିଘଣ୍ଟା ଅତିବାହିତ ହେଲାପରେ ଫରାସୀ ସୈନ୍ୟବାହିନୀ ଜାଗତିଆର ହୋଇ ଉଠିଲେ । ଗୁଳି, କମାଣ, ବୋମା ବର୍ଷଣ

ଫଳରେ କ୍ଷୁଦ୍ର କ୍ଷୁଦ୍ର ବସତମାନ ନଷ୍ଟହୁଏ ହୋଇଗଲା । ଭିଏତମିନ ଗରିଲା ଏହାର ପାଲଟା ଜବାବ ଦେଲେ ସମ ପରିମାଣ ଗୁଳି ଗୁଳା ବିନିମୟରେ । ଭିଏତନାମ ପକ୍ଷରୁ ପ୍ରତିରୋଧର ଆଶଙ୍କା କରି କର୍ଣ୍ଣେଲ ନୌ ବାହିନୀ ଓ ଗୋଲନ୍ଦାଜ ବାହିନୀର ଆଶ୍ରୟ ନେଇଥିଲେ । ସେଦିନ ନିହତଙ୍କ ସଂଖ୍ୟା ଥିଲା ଛ' ହଜାର କିମ୍ବା ତା'ଠାରୁ ଅଧିକ । ଗତ୍ତର ଉଜାଣି ସୁଅରେ ମାର୍ଚ୍ଚ ଛ' ତାରିଖର ଶାନ୍ତି ଚୁକ୍ତି ପତ୍ରଟି କେଉଁଆଡ଼େମିଳେଇ ଗଲା !

ଯୁଦ୍ଧ କମିଲା ନାହିଁ । ଦିନକୁ ଦିନ ବଢ଼ି ଚାଲିଲା । ଉପନିବେଶବାଦୀମାନଙ୍କର ହିଂସାତ୍ମକ ଆକ୍ରମଣ ସାମନାରେ ଶାନ୍ତିପ୍ରସ୍ତାବ ନିରର୍ଥକ ମନେ ହେଲା । ଡିସେମ୍ବର ୯ ତାରିଖରୁ ସାରା ଦେଶରେ ସେମାନଙ୍କ ତରଫରୁ ଆଖିବୁଜା ଗୁଳି ବର୍ଷଣ ଚାଲିଲା । ସାଧାରଣ ଜନ ଜୀବନ ବିପନ୍ନ ଆଶଙ୍କା କରି ହୋ' ନିଜ ଦେଶବାସୀଙ୍କୁ ଜାତୀୟ ପ୍ରତିରୋଧ ପାଇଁ ଆହ୍ୱାନ ଦେଲେ—

"ସ୍ୱଦେଶବାସୀଗଣ,

"ଆମେ ଶାନ୍ତି ଚାହିଁଥିଲେ, ସେଥିପାଇଁ ଅତୀତରେ ଅନେକ କିଛି ତ୍ୟାଗ କରିଛେ । କିନ୍ତୁ ଆମେ ଯେତେ ବେଶୀ ଉଦାର ହୋଇ ଚାଲିଥିବା, ଫରାସୀ ଉପନିବେଶୀମାନେ ସେତେ ବେଶୀ ଆମକୁ ପଦଦଳିତ କରିବେ । କାରଣ ସେମାନେ ପୁଣିଥରେ ଆମ ଦେଶକୁ ଅଧିକାର କରିବାପାଇଁ ଚାହାନ୍ତି ।

"ନାଁ, ଦେଶର ସ୍ୱାଧୀନତାକୁ ହରାଇବା ଅପେକ୍ଷା ତା' ପାଇଁ ସବୁକିଛି ତ୍ୟାଗ କରିବା ଶ୍ରେୟ ।

"ସ୍ୱଦେଶବାସୀଗଣ, ଜାଗି ଉଠ ।

"ସ୍ତ୍ରୀ ଏବଂ ପୁରୁଷ, ବୃଦ୍ଧ ଏବଂ ଯୁବକ, ଆଦର୍ଶ, ଧର୍ମ, ରାଜନୈତିକ ମତବାଦ, ଜାତୀୟତା ନିର୍ବିଶେଷରେ ପ୍ରତ୍ୟେକ ଭିଏତନାମୀ ପିତୃଭୂମିର ସୁରକ୍ଷା ପାଇଁ ଫରାସୀ ଉପନିବେଶବାଦୀମାନଙ୍କ ବିରୁଦ୍ଧରେ ଏକତ୍ରିତ ହୁଅ ।

"ଆମର ଯାହା ହାତରେ ରାଇଫଲ ଅଛି, ଆମେ ତାର ବ୍ୟବହାର କରିବା । ଯାହାର ଖଣ୍ଡା ଅଛି ସେ ତା' ବ୍ୟବହାର କରୁ । ଯା' ହାତରେ ରାଇଫଲ ନାହିଁ ବା ଖଣ୍ଡା ନାହିଁ ସେ ଉଠାଇ ନେଉ କୁଠାର ଏପରିକି ଲଠି ମଧ୍ୟ"।...

ତାର ପରଦିନ ବିଶ୍ୱବାସୀଙ୍କୁ ନିଜ ଜାତିର ଏହି ପ୍ରତିରୋଧୀ ସଂଗ୍ରାମର ସପକ୍ଷରେ ନେବାପାଇଁ ହୋ' ଆଉ ଏକ ଆବେଦନ ଜଣାଇଲେ । ଏହା ମୁଖ୍ୟତଃ ଫ୍ରାନ୍ସର ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

"ଫ୍ରାନ୍ସର ଜନସାଧାରଣ,

"ଆମେ ଆପଣମାନଙ୍କର ବନ୍ଧୁପର । ଫରାସୀ ସୈନ୍ୟଙ୍କ ମଧ୍ୟରେ ଅନେକ ଆପଣଙ୍କ ନିକଟରେ ରହି କାର୍ଯ୍ୟ କରିବାକୁ ସ୍ପୃହୁଛୁଁ । କାରଣ ଆମେ ଏବଂ ଆପଣମାନେ ସେହି ଗୋଟିଏ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ଆଦର୍ଶରେ ଆସ୍ଥାବାନ୍ ।

"ମିତ୍ର ଦେଶର ଜନସାଧାରଣ, ଫରାସୀ ଉପନିବେଶବାଦୀମାନେ ଆମ ଉପରେ ଆକ୍ରମଣାତ୍ମକ ଯୁଦ୍ଧ ଚଳାଇ ରଖିଛନ୍ତି ।...ଏଥିରେ ଆପଣମାନଙ୍କର ହସ୍ତକ୍ଷେପ ପାଇଁ ଭିଏତନାମର ଜନତା ଆକୁଳ ନିବେଦନ କରୁଛି ।"

ଫ୍ରାନ୍ସ କର୍ତ୍ତୃପକ୍ଷଙ୍କର ଦୂରଦୃଷ୍ଟିର ଅଭାବ ଯୋଗୁଁ ଯେଉଁ ଯୁଦ୍ଧ ଆରମ୍ଭ ହୋଇଗଲା ତାର ଅଶୁଭପରିସମାପ୍ତି ଆଉ ଘଟିଲା ନାହିଁ । ବହୁ ରକ୍ତପାତ, ହତ୍ୟା, ବିଭୀଷିକାର ଅସହ୍ୟ ଜ୍ୱାଳା ମଧ୍ୟରେ ମୁକ୍ତି ଆନ୍ଦୋଳନର ନୌକାଟି କୂଳ ଅଭିମୁଖେ ଛୁଟି ଚାଲିଲା ।



## ୧୭

## ବିଶ୍ୱ ସାମ୍ରାଜ୍ୟବାଦୀ ଶିବିର ବିରୁଦ୍ଧରେ ଜାତୀୟ ପ୍ରତିରୋଧ

କମ୍ରେଡ଼ ହୋ-ଚି-ମିନ୍ ଦେଶବ୍ୟାପୀ ସଙ୍ଗ୍ରାମକ ଯୁଦ୍ଧର ଡାକରା ଦେଇଛନ୍ତି । ନବଲବ୍ଧ ସ୍ୱାଧୀନ ସରକାରକୁ ଆସନ୍ନ ଯୁଦ୍ଧର ବିଭୀଷିକା ଘେରି ରହିଛି । ଅତୀତରେ ହୋଇଥିବା ସମସ୍ତ ପ୍ରକାର ଆପୋଷ ଆଲୋଚନା ବ୍ୟର୍ଥ ପ୍ରମାଣିତ ହୋଇ ଯାଇଛି । ଯୁଦ୍ଧ ବିହୀନ ଶାନ୍ତିର ସମ୍ଭାବନା କ୍ଷୀଣ ପ୍ରାୟ । ଶତ୍ରୁ-ପକ୍ଷର ସାମରିକ ବଳ ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ସଚେତନ । ଶତ୍ରୁ ଆଜି ଏକା ନୁହେଁ । ସାଥିରେ ଅନେକ ସହଯୋଗୀ ବନ୍ଧୁ ଅଛନ୍ତି । ହୋ' ଏହି ଆଶଙ୍କିତ ପଦପାତକୁ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରି ରହିଛନ୍ତି ।

ବିଜୁଳି ବେଗରେ ଶତ୍ରୁସେନା ସୀମାନ୍ତ ଅଞ୍ଚଳ ଦଖଲ କରି ଚାଲିଛନ୍ତି । ଖୁବ୍ କ୍ଷିପ୍ର ସେମାନଙ୍କର ଗତି । ମନେହେଉଛି ମାତ୍ର ଅଳ୍ପକେତେ ଦିନ ଭିତରେ ସାରା ଭିଏତନାମ ସେମାନଙ୍କ ଦଖଲକୁ ଆସିଯିବ ।

୧୯୪୬ ଶେଷ ହେବାକୁ ଯାଉଛି । ବଡ଼ କରୁଣ ତାର ବିଦାୟୀ ମୁହୂର୍ତ୍ତ । ନବବର୍ଷର ଆନନ୍ଦମୁଖର ଦିନ ସହିତ ସେ ତାଳ ଦେଇ ଚାଲି ପାରିବ ନାହିଁ । ବିଂଶ ଶତାବ୍ଦୀର ପିଚ୍ଛିଳ ମୋଡ଼ରେ ସେ ଅଟକି ଯାଉଛି ।

ଡିସେମ୍ବର ୨୨ ତାରିଖ ଦିନ ପାର୍ଟିକେନ୍ଦ୍ର କମିଟିର ବୈଠକ ବସିଛି । ଶତ୍ରୁପକ୍ଷର ମୁକାବିଲା କରିବା ନିମନ୍ତେ ନୀତି ନିର୍ଦ୍ଧାରକ ବୈଠକ ସେ । ଭିଏତନାମ କମ୍ୟୁନିଷ୍ଟ ପାର୍ଟିର ସର୍ବବାଦୀ ସମ୍ମତ ନେତା ତଥା ଅସ୍ଥାୟୀ ବିପ୍ଳବୀ ସରକାର ସଭାପତି କମ୍ରେଡ଼ ହୋ' ଦେଶବ୍ୟାପୀ ସଂଗ୍ରାମର ପ୍ରସ୍ତାବ ଦେଇଛନ୍ତି । ପରିବର୍ତ୍ତିତ ପରିସ୍ଥିତିରେ ସମଗ୍ର ଜାତିର ସହଯୋଗ ବିନା ବିଜୟର ଅନ୍ୟ କୌଣସି ପଥ ସେ ଦେଖିପାରୁ ନାହାନ୍ତି । ସେ ସାଧାରଣ ଜନତାର ପ୍ରିୟତମ ନେତା । ଜନତାର ସହଯୋଗ ହିଁ ତାଙ୍କର ସମ୍ବଳ । ଗଣଶକ୍ତି ଉପରେ ସେ ସବୁଦିନେ ଆସ୍ଥାବାନ୍ । ଆଜି ସେହି-ମାନଙ୍କ ହାତରେ ସେ ଭିଏତନାମର ଭାଗ୍ୟକୁ ଟେକି ଦେବାକୁ ଚାହାନ୍ତି । ବୈଠକ ଶେଷରେ 'ଜନତାର ପ୍ରତିରୋଧ' ଶୀର୍ଷକ ଏକ ଐତିହାସିକ ଦଲିଲ ପାର୍ଟି ତରଫରୁ ପ୍ରକାଶ ପାଇଲା । ଭିଏତନାମରେ ବିଧିବଦ୍ଧଭାବେ ଏକ 'ପ୍ରତିରୋଧୀ ଯୁଦ୍ଧ ମେଣ୍ଟ'

ଗଢ଼ିବାର ପଥ ସୁଗମ ହୋଇଗଲା । ତା'କୁ କାର୍ଯ୍ୟକାରୀ କରାଇବା ପାଇଁ ୧୯୪୭ର ନବ ପ୍ରଭାତ ଯେପରି ଅପେକ୍ଷମାନ ।

କମ୍ରେଡ୍ ଟ୍ରୁଙ୍ଗ-ଚିନ୍ ସେତେବେଳେ ପାର୍ଟିର ସାଧାରଣ ସମ୍ପାଦକ । ସାଧାରଣ ଜନତା ନିକଟରେ ପ୍ରତିରୋଧର ଆଭିମୁଖ୍ୟ, ଗତି, ନୀତି ଓ ବାସ୍ତବତାକୁ ସ୍ପଷ୍ଟ କରି ଦେବାର ଦାୟିତ୍ୱ ତାଙ୍କ ଉପରେ । ଏହି ଉଦ୍ଦେଶ୍ୟରେ ସେ ୧୯୪୭ ପ୍ରଥମ ଭାଗରେ 'ପ୍ରତିରୋଧୀ ସଂଗ୍ରାମ ବିଜୟୀ ହେବ' ନାମରେ ଗୋଟିଏ ପ୍ରସ୍ତାବ ଲେଖିଲେ । ଏହି ପୁସ୍ତକରେ ସର୍ବାତ୍ମକ ଯୁଦ୍ଧର ପ୍ରତ୍ୟେକ ବିଷୟବସ୍ତୁକୁ ଖୁବ୍ ପ୍ରାଞ୍ଜଳଭାବରେ ଉପସ୍ଥାପିତ କରିଥିଲେ ।

ଯୁଦ୍ଧ ଯେ କେବଳ ଅସ୍ତ୍ରଦ୍ୱାରା ସମ୍ଭବ ହୋ' ଏହା ବିଶ୍ୱାସ କରନ୍ତି ନାହିଁ । ଶତ୍ରୁର ଯେ କୌଣସି ପ୍ରକାରର ପରାଜୟକୁ ସେ ସଫଳ ଯୁଦ୍ଧର ନାମାନ୍ତର ବୋଲି ମନେକରନ୍ତି । ଭିଏତନାମର ତତ୍କାଳୀନ ଅବସ୍ଥା ଯାହା ଅସ୍ତ୍ର ବଳରେ ଶତ୍ରୁ-ସେନାମାନଙ୍କୁ ସାମନା କରି ହୁଅନ୍ତା କିପରି ??

ଭିଏତନାମ ଜନତା ଓ ସେନାବାହିନୀ ମଧ୍ୟରେ ବିଭେଦ ସୃଷ୍ଟି କରିବା ପାଇଁ ବିରୋଧୀ ମେଣ୍ଟ ତରଫରୁ ପ୍ରବଳ ଉଦ୍ୟମ ଚାଲିଛି । ଏହି ଉଦ୍ୟମର ଅଗ୍ରଣୀ ସାଜିଛି ମାର୍କିନ୍ ଯୁକ୍ତରାଷ୍ଟ୍ର । ନୂତନଭାବେ ଭିଏତନାମରେ ପ୍ରବେଶ କରିଥିବା ଏହି ସାମ୍ରାଜ୍ୟଖୋର ଶକ୍ତିଟି ଏ ଘରେ ମାଉସୀ ସେ ଘରେ ପିଉସୀ ହେବାର କାର୍ଯ୍ୟ ଅବ୍ୟାହତ ରଖିଛି । ନିକଟ ଭବିଷ୍ୟତରେ ସେ ହେବ ଭିଏତନାମ ସାମ୍ରାଜ୍ୟର ସମ୍ରାଟ । ଏହି ଲୋଭ ତାକୁ ଫରାସୀମାନଙ୍କ ସହିତ ଛିଡ଼ା ଦେଇଛି । ମିଳିତଭାବରେ ସେମାନେ ଭିଏତନାମ ଆକ୍ରମଣ କରିଛନ୍ତି ।

ଯୁଦ୍ଧ ଅନିବାର୍ଯ୍ୟ । ତାକୁ ଏଡ଼ାଇଦେବା ବା ଅବହେଳା କରିବାର ସମୟ ଆଉ ନାହିଁ । ଅପର ପକ୍ଷରେ ଯେନ୍‌ତେନ୍ ପ୍ରକାରେଣ ତାକୁ ସାମନା କରିବା ଓ ପରାସ୍ତ କରିବା ହିଁ ଜରୁରୀ ହୋଇ ପଡ଼ିଛି । ଭିଏତନାମର ଜନତା ଏହି ଗୁରୁ-ଦାୟିତ୍ୱର ସମ୍ମୁଖୀନ ।

ସମଗ୍ର ଭିଏତନାମୀ ଜାତିକୁ ଐକ୍ୟବଦ୍ଧ କରିବା ପାଇଁ ହୋ' ନିଜ ତରଫରୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଏକ ହୃଦୟସ୍ପର୍ଶୀ ଆବେଦନ ଜଣାଇଲେ ଯେଉଁଥିରେ ସେ ଭିଏତନାମ ଜନତାର ଦେଶଭକ୍ତି, ଜାତିପ୍ରେମ ଓ କର୍ତ୍ତବ୍ୟ ନିଷ୍ଠାକୁ ଆହ୍ୱାନ କରିଥିଲେ ।

ଜନତାକୁ ସେ ସ୍ପଷ୍ଟରୂପେ ଜଣାଇଦେଲେ ଯେ ଏ ଯୁଦ୍ଧ ଦିନେ ଦୁଇଦିନରେ ନୁହେଁ ଆଗାମୀ ସହସ୍ର ଦିନର । ଅପରିମିତ ତାର ସୀମା । ଏଥିପାଇଁ ଏକ ଦୀର୍ଘ

ମିଥ୍ୟା ଯୋଜନା ଓ ବ୍ୟାପକ ପ୍ରସ୍ତୁତିର ଆବଶ୍ୟକତା ରହିଛି । ସେ ପ୍ରସ୍ତୁତି ମୁଖ୍ୟତଃ ତିନୋଟି ସ୍ତର ଦେଇ ହେବା ଉଚିତ୍—

— ସଂଗ୍ରାମକୁ ଆତ୍ମନିର୍ଭରଶୀଳ ଏବଂ ସର୍ବାତ୍ମକ କରିବାକୁ ହେଲେ ଦୁର୍ଭିକ୍ଷ, ବନ୍ୟା ଆଦି ପ୍ରାକୃତିକ ବିପଦର ସ୍ଥାୟୀ ପ୍ରତିକାର କରିବାକୁ ହେବ ।

—ରଣ କ୍ଷେତ୍ରରେ ହେଉ ବା ପ୍ରସ୍ତୁତି ପର୍ବରେ ହେଉ ସାମ୍ରାଜ୍ୟବାଦୀ ଶତ୍ରୁକୁ ସାମନା କରିବା ପାଇଁ ସଚେତ ଏବଂ ଶିକ୍ଷିତ ସେନାଙ୍କର ପ୍ରୟୋଜନୀୟତା ରହିଛି । ଶିକ୍ଷା ନ ହେଲେ ଅର୍ଥନୀତିର କୌଣସି କ୍ଷେତ୍ରରେ ଉନ୍ନତି ଘଟି ପାରିବ ନାହିଁ କିମ୍ବା ଈପ୍ସିତ ରାଜନୈତିକ ଲକ୍ଷ୍ୟ ସାଧନ ହୋଇ ପାରିବ ନାହିଁ ।

—ଶତ୍ରୁ ସୈନ୍ୟ ବିରୁଦ୍ଧରେ ସାଧାରଣ ଆକ୍ରମଣ ଆକ୍ରମଣକାରୀମାନଙ୍କୁ ବ୍ୟକ୍ତିବିଶେଷ ହେଉ ବା ସାମୂହିକଭାବେ ହେଉ ସମୂଳେ ନିପାତ କରିବା ହିଁ ଲକ୍ଷ୍ୟ ହେବା ଉଚିତ୍ ।

ଏହି ମାର୍ଗରେ ଭିଏତନାମର ସାଧାରଣ ଜନତାଙ୍କୁ ପରିଚାଳିତ କରିବା ପାଇଁ ସେ ସ୍ୱତନ୍ତ୍ର ଟ୍ରେନିଂ କେନ୍ଦ୍ରମାନ ପ୍ରତିଷ୍ଠା କରାଇଲେ । ଆଗପରି ସାମରିକ ଶିକ୍ଷା ଜନଜୀବନଠାରୁ ବିଚ୍ଛିନ୍ନ ରହିଲା ନାହିଁ । ସମୁଦାୟ ଜାତି ଆଜି ସାମରିକ ଗ୍ରହଣୀ ତଳେ । ସେ ସମସ୍ତେ ପିତୃଭୂମିର ସୁରକ୍ଷା ପାଇଁ ଲଢୁଆ ସୈନିକ । ଅନ୍ତିମ ବିଜୟରେ ଆଶାବାନ୍ ହୋ-ଚି-ମିନ୍ ସେମାନଙ୍କର ସେନାପତି । ଭିଏତନାମ ସହରାଞ୍ଚଳରେ ଥିବା ସାମରିକ କେନ୍ଦ୍ରମାନଙ୍କରୁ ସୁଦକ୍ଷ ସୈନ୍ୟମାନଙ୍କୁ ଡକାଇ ଆଣି ଗ୍ରାମାଞ୍ଚଳରେ ମୁତୟନ କରାଗଲା । ଆତ୍ମରକ୍ଷା ପାଇଁ ଗ୍ରାମବାସୀଙ୍କୁ ପ୍ରାଥମିକ ସମର ଶିକ୍ଷାଦେବା ଥିଲା ଏହାର ଉଦ୍ଦେଶ୍ୟ ।

ପ୍ରସ୍ତୁତିର ଅଧ୍ୟାୟ ମଧ୍ୟରେ ୧୯୪୭ ମେଲଣି ଯେଇଛି । ତା' ବଦଳରେ ଆସିଛି ୧୯୪୮ ମସିହା ହୋ'ଙ୍କର ଅନୁସୃତ ମାର୍ଗରେ ଭିଏତନାମର ଜନତା ଅଳ୍ପବହୁତେ ସଂଗ୍ରାମ ସଚେତନ ହୋଇ ଉଠିଛନ୍ତି । ଯୁଦ୍ଧର ତପ୍ତ ବାୟୁ ସମଗ୍ର ଭୂଖଣ୍ଡକୁ ଚହଁାଇ ରଖିଛି । ମୌସୁମୀର ଆଗମନରେ ତା'ର କୌଣସି ପରିବର୍ତ୍ତନ ନାହିଁ ଯେପରି । ଏ ମୌସୁମୀ କାହା ପାଇଁ ? ଏ ଆଷାଢ଼ର ଧାରାପାତ କାହା ଉଦ୍ଦେଶ୍ୟରେ ? କିଏ ଉପଭୋଗ କରିବ ସ୍ୱାକୁ ? ସମସ୍ତ କାହିଁ ? ପ୍ରତି ଘଣ୍ଟାରେ ତ ଯୁଦ୍ଧର ବଜ୍ରଗମ୍ଭୀର ଆହ୍ୱାନ ।

ସାରା ଦେଶରେ ନାହିଁ ନ ଥିବା ଦୁର୍ଭିକ୍ଷ । କେବଳ ଏହି ଗୋଟିଏ ବର୍ଷ ନୁହେଁ, କ୍ରମାଗତ ୨/୩ ବର୍ଷ ଧରି ଏପରି ଅବସ୍ଥା ସୃଷ୍ଟି ହୋଇଛି । ଯୁଦ୍ଧକାଳୀନ ଅର୍ଥନୀତି ପରିପୁଷ୍ଟ ହେବା ପରିବର୍ତ୍ତେ ଆହୁରି ଦୁର୍ବଳ ହୋଇ ପଡ଼ୁଛି । ଜରାଗ୍ରସ୍ତ

ସାମାଜିକ ବ୍ୟବସ୍ଥା, ଉଗ୍ରପ୍ରାପ୍ତ ଅର୍ଥନୀତିକୁ ନେଇ ମୁକ୍ତି ଆନ୍ଦୋଳନ ପରି ଏକ ଦୀର୍ଘ ମିଆଦୀ ଯୁଦ୍ଧର କଳ୍ପନା କରାଯାଇ ନ ପାରେ । ଯେ କୌଣସି ଯୁଦ୍ଧର ନିମ୍ନତମ ଆବଶ୍ୟକତା ହେଲା ବିପୁଳ ପରିମାଣର ଅସ୍ତ୍ର ଯୋଗାଣ, ଉତ୍ତମ ଖାଦ୍ୟ ଏବଂ ବସ୍ତ୍ର । ସବୁ ସମୟରେ ଜରୁରୀକାଳୀନ ଅବସ୍ଥାକୁ ଏଡ଼ାଇବା ପାଇଁ ରାଜକୋଷରେ ଖାଦ୍ୟ ଏବଂ ଅସ୍ତ୍ର ମହଜୁଦ ଥିବା ଆବଶ୍ୟକ । ନଚେତ୍ ଶତ୍ରୁପକ୍ଷ ଏହି ଚରମ ଦୁର୍ବଳତାର ସୁଯୋଗ ନେବା ପାଇଁ ପଛାଇବେ ନାହିଁ ।

ପ୍ରକୃତରେ ଭିଏତନାମ ଏକ ଦରିଦ୍ର ଦେଶ । କୃଷି ପ୍ରଧାନ ତାର ଅର୍ଥନୀତି ସାମ୍ରାଜ୍ୟବାଦୀ ବେପାରୀମାନଙ୍କ ହାତରେ ବନ୍ଦୀ । ଆଧୁନିକ ରଣକୌଶଳ ସମ୍ବନ୍ଧରେ ସେନାବାହିନୀ ସମ୍ପୂର୍ଣ୍ଣ ଅଜ୍ଞ । ଉପନିବେଶୀ ଦାସତ୍ୱ ଯୋଗୁଁ ଶିକ୍ଷା ସ୍ୱାସ୍ଥ୍ୟର ମାନ ଖୁବ୍ ନିମ୍ନସ୍ତରର । ଶତକଡ଼ା ୯୦ ଭାଗ ଲୋକ ନିରକ୍ଷର । ଯେଉଁମାନେ ସାକ୍ଷର ସେମାନଙ୍କ ମଧ୍ୟରୁ ଅଧିକାଂଶ ଉପନିବେଶୀ ପ୍ରଭୁମାନଙ୍କର ବେତନପ୍ରାପ୍ତ କର୍ମଚାରୀ । ନିର୍ଦ୍ଦିଷ୍ଟ ଅଞ୍ଚଳ ମାନଙ୍କରେ ଗଢ଼ିଉଠିଥିବା ଶିଳ୍ପୋଦ୍ୟୋଗ ମାନ ଶତ୍ରୁପକ୍ଷର ଦଖଲରେ ରହିଛି । ଗାଁ ଗହଳରେ ଖାଦ୍ୟ ବସ୍ତ୍ରର ଦାରୁଣ ଅଭାବ । ସାଧାରଣ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଛି ସେମାନଙ୍କର । ସବୁ ଦିଗରୁ ସର୍ବସ୍ୱାନ୍ତ ହୋଇ ସେମାନେ ମୃତପ୍ରାୟ ବଞ୍ଚିଛନ୍ତି । ସେମାନଙ୍କୁ ଜୀବଦାନ କରିବା ସହଜ ବ୍ୟାପାର ନୁହେଁ । ଏ ମୃତଜାତିକୁ ଉଠାଇ ରଣ ମଇଦାନକୁ ଆଣିବା ତ ଆହୁରି ଦୁଷ୍କର ।

ନିକଟ ଅତୀତରେ ଭିଏତନାମ୍ ରେ ସେମାନେ ବିଜୟୀ ହୋଇଛନ୍ତି । ହୋ'ଙ୍କ ମନରାଜ୍ୟରେ ଅହରହ ସେହି ଦ୍ୱନ୍ଦ୍ୱ । ଦୁର୍ଭିକ୍ଷ, ମହାମାରୀ, ଖାଦ୍ୟାଭାବ, ଅସ୍ତ୍ରାଭାବ ଯଦି ଅନୁର୍ବରୀସ୍ତୃ ସୃଷ୍ଟିକରେ ତେବେ 'ଭିଏତନାମ୍' ସମ୍ଭବ ହେଲା କିପରି ? ଏହା ବ୍ୟତୀତ ନିଷ୍ପତ୍ତି ଆହୁରି କିଛି କୁହୁକ ରହିଛି !! ତାହା ହେଲା ଦେଶପ୍ରେମର ଅଫୁରନ୍ତ ଉଦ୍‌ଗୀରଣ । ଦେଶପ୍ରେମର ଶକ୍ତି ଅସୀମ । ସେ ମରଣଜୟୀ, କାଳଜୟୀ, ସର୍ବାତ୍ମକ ପ୍ରତିରୋଧ ପାଇଁ ସେ ସର୍ବାଙ୍ଗୀନ ଜାଗୃତିର ଆହ୍ୱାନ ଦେଲେ । ପ୍ରତି-କ୍ଷେତ୍ରରେ ଚାଲିଲା ପ୍ରତିଯୋଗିତା । ଶ୍ରମିକ, କୃଷକ, ବଣିକ, ଛାତ୍ର, ଅଧ୍ୟାପକ, ମହିଳା, ଶିଶୁ ପ୍ରତ୍ୟେକ ନିଜ ନିଜ କର୍ତ୍ତବ୍ୟବୋଧ ପଥରେ ଦୃଢ଼ ହେଲେ । ସମଗ୍ର ଜାତି ଚେଇଁ ଉଠିଲା । ଉନ୍ମାଦନାରେ ପାଗଳ ହୋଇ ଉଠିଲା । ଭିଏତନାମ ସମସ୍ତ ଅଭାବକୁ ଦୂର କରି ଶତ୍ରୁର ସହ ଯୁଦ୍ଧର ସମ୍ମୁଖୀନ ହେବା ପାଇଁ ସେ ପ୍ରତିଜ୍ଞାବଦ୍ଧ ।

ଅସ୍ତ୍ରଶସ୍ତ୍ରର ଅଭାବ ରହିଲା ନାହିଁ । କଳକାରଖାନାରେ କାମକରୁଥିବା ଶ୍ରମିକମାନେ ନିଜ ହାତରେ ଅସ୍ତ୍ର ତିଆରି କଲେ । ପ୍ରାକୃତିକ ବିପର୍ଯ୍ୟୟକୁ ଦୂରୀ-କରଣ କରିବା ପାଇଁ ପାଞ୍ଚବର୍ଷିଆ କାର୍ଯ୍ୟକ୍ରମ ହାତକୁ ନିଆଗଲା । ଶ୍ରମବିଭାଜନ

କ୍ଷେତ୍ରରେ ଆଗପରି ଆଉ ମୌଳିକ ତାରତମ୍ୟ ନାହିଁ । ଯେ କୃଷକ ସେ ଆଜି ଶ୍ରମିକ, ଯେ ଶ୍ରମିକ ସେ ଆଜି ସୈନିକ । ଭିଏତନାମର ସ୍ୱାଧୀନତା ପାଇଁ ଯୁଦ୍ଧ ଅବଶ୍ୟମ୍ଭାବୀ ସେହି ଯୁଦ୍ଧର ମୁକାବିଲା ପାଇଁ ସମଗ୍ର ଭିଏତନାମ ପ୍ରସ୍ତୁତ । ଏହି ମର୍ମରେ ହୋ' ଜାତି ପାଇଁ ଏକ ନୂତନ ଡାକରା ଦେଲେ "ସମସ୍ତେ ଯୁଦ୍ଧ ପାଇଁ ଏବଂ ଯୁଦ୍ଧ ବିଜୟ ପାଇଁ" । ଆବାଳବୃଦ୍ଧବନିତାଙ୍କ କଣ୍ଠରେ ସେହି ଗୋଟିଏ ମାତ୍ର ସ୍ୱର ।

"ପ୍ରତ୍ୟେକ ଏବଂ ପ୍ରତ୍ୟେକ ଧୂଳିକଣା
ଅନ୍ୟକୁ ଜାଗ୍ରତ କରୁ,
ପ୍ରତି ଦିନ ଆମେ ନିଶ୍ଚୟ ଜିତିବୁ
ଶତ୍ରୁର ପରାଜୟ ଅବଶ୍ୟମ୍ଭାବୀ ।

ଜାତୀୟତାର ଏହି ନବୀନତମ ପ୍ରଶ୍ନରେ ବାର୍ତ୍ତାବହ ହେଲ ଶ୍ରମିକଶ୍ରେଣୀ । କୃଷକମାନେ କୃଷି ଉତ୍ପାଦନ ବ୍ୟତୀତ ସାମରିକ ଦୀକ୍ଷାରେ ଦୀକ୍ଷିତ ହେଲେ । ଆଗ ଅପେକ୍ଷା ଉତ୍ପାଦନର ପରିମାଣ ବଢ଼ିଲା, ତା ସାଙ୍ଗକୁ ସଞ୍ଚୟ ମଧ୍ୟ । ଯୁଦ୍ଧ କ୍ଷେତ୍ରରେ ଥିବା ସୈନ୍ୟମାନଙ୍କର ବୃହତ୍ତା ମୁତାବକ ଜନବଳ ଏବଂ ଯୁଦ୍ଧ ସାମଗ୍ରୀର ଅଭାବ ରହିଲ ନାହିଁ । ସେମାନଙ୍କୁ ଯୁଦ୍ଧକାଳୀନ ଭିତ୍ତିରେ ଠିକ୍ ମାର୍ଗରେ ପରିଚାଳିତ କରିବା ପାଇଁ ହୋ' ନିଜେ ଦାୟିତ୍ୱ ଗ୍ରହଣ କରିଥିଲେ । ବଡ଼ କଠୋର ଓ ନିଷ୍ଠୁର ସେ ଜୀବନ ! ସେନାବାହିନୀ ଓ ସାଧାରଣ ଜନତାର ଜୀବନରୁ ଭୋଗ ବିଳାସ ଦୂରେଇ ଗଲ । ସେ ସ୍ଥାନରେ ରୂପନେଲା ଅସୀମ ତ୍ୟାଗ, ପ୍ରଗାଢ଼ ଦେଶ ଭକ୍ତି ଏବଂ ଦୃଢ଼ କର୍ତ୍ତବ୍ୟ ନିଷ୍ଠା । ପଲ୍ଲୀ ଅଞ୍ଚଳରେ ପଦବ୍ରଜରେ ବୁଲି ବୁଲି ହୋ' ବୃଦ୍ଧ, ପରଦାନସୀନ ମହିଳା, ଯୁବକ, କିଶୋର, ଶିଶୁ, ସଂଖ୍ୟାଲଘୁ ସମ୍ପ୍ରଦାୟ, ବୁଦ୍ଧିଜୀବୀ, ଲେଖକ, କଳାକାର ମାନଙ୍କୁ ବିନୀତ ନିବେଦନ ଜଣାଇଲେ ଜାତି ଜାତୀୟତାର ଧାରା ପ୍ରବାହରେ ମିଶିଯିବା ପାଇଁ । ଅନ୍ତର୍ନିହିତ ଶକ୍ତି, ଧର୍ମଗ୍ରନ୍ଥ ସମ୍ବନ୍ଧରେ ସେ ସଚେତ କରାଇଲେ ସେମାନଙ୍କୁ । ସମାଜର ପୁନର୍ଗଠନରେ ସେମାନଙ୍କର ଭୂମିକା ଯେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଏହି ବିଶ୍ୱାସ ସେମାନଙ୍କର ହେଲ । ଭିଏତନାମର ସ୍ୱାଧୀନତା, ମୁକ୍ତି ସେମାନଙ୍କୁ ଗ୍ରହିଁବସିଛି । ସେମାନଙ୍କ ବିନା ସହଯୋଗରେ ତା'ର ସ୍ଥିତି ଅସମ୍ଭବ ।

ପ୍ରେରଣା, ଉତ୍ସାହ, ଉଦ୍ଦୀପନାର ଅସରନ୍ତି ଭଣ୍ଡାର ହୋ' । କେତେ ଶୀଘ୍ର ସେ ହୃଦୟ ଜିଣି ପାରନ୍ତି !! ଦେଶବ୍ରତୀ ଅଭିଯାନର ସ୍ରୋତ ବର୍ଷାଧୂଆ ଝରଣା ପରି ମାଡ଼ି ଚାଲିଛି ଆଗକୁ । ଅନିର୍ଦ୍ଦିଷ୍ଟ ତାର ସଙ୍ଗମ ସ୍ଥଳ ! ଗାଁ ଗଣ୍ଡା, ପୁରପଲ୍ଲୀ, ଗଳି ଉପଗଳିରେ ସେ ପହଞ୍ଚିଛି । ତାରି କୂଳରେ ଠିଆ ହୋଇଛନ୍ତି କେତେ

ନୂତନ ନୂତନ ତୃଣଲତା । ବିପ୍ଳବର ମରୁଉଦ୍ୟାନକୁ ପୂର୍ଣ୍ଣ କରି ସେମାନେ ସୃଷ୍ଟି କରିବେ ଅଭିନବ ଆଉ ଏକ ଅରଣ୍ୟ । ମୁକ୍ତ ଓ ସ୍ୱାଧୀନ ଜନତାର । ହୋ' ଏହି ସୃଷ୍ଟିର ନିପୁଣ ବିଜ୍ଞାଣୀ । ବୈପ୍ଳବିକ ଦୁଃସାହସିକତା ଓ ବୀରତ୍ୱ ମଧ୍ୟରୁ ସେ ନୂତନ ଜୀବନ ସଂଗ୍ରହ କରୁଛନ୍ତି ।

ସଂଗଠନ ଆଗେଇ ଚାଲିଛି । ଜନବଳ ଦିନକୁ ଦିନ ବଢ଼ୁଛି । ଶିକ୍ଷାର ପ୍ରସାର ଫଳରେ ନିରକ୍ଷରଙ୍କ ସଂଖ୍ୟା କ୍ରମଶଃ ହ୍ରାସ ପାଉଛି । ସାଙ୍ଗଠନିକ ଦକ୍ଷତା, ପରିଚାଳନାର ସ୍ତର ବେଳକୁ ବେଳ ମାର୍ଜିତ ହେଉଛି । କିନ୍ତୁ ଶତ୍ରୁପକ୍ଷ ତୁଳନାରେ ଏ ସବୁ ପ୍ରସ୍ତୁତ କିଛି ନୁହେଁ ।

ପ୍ରତ୍ୟକ୍ଷ ଯୁଦ୍ଧ ପାଇଁ ଲୋଡ଼ା ଅଭିନବ ରଣ କୌଶଳ, ସୁଚତୁର ସାମରିକ ପ୍ରୟୋଗ । ଭିଏତନାମର ସାମରିକ ବାହିନୀ ସେହି ଦୃଷ୍ଟିରୁ ଅପରିପକ୍ୱ । ତ୍ୟାଗ, ନିଷ୍ଠା, ବୀରତ୍ୱର ଅଭାବ ନ ଥିଲେ ମଧ୍ୟ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର, ସମର ପ୍ରଣାଳୀ ଏବଂ ସୁଦକ୍ଷ ସେନାପତିଙ୍କର ଅଭାବ ଥିଲା ନିଶ୍ଚୟ ।

ଶତ୍ରୁସେନାର ସାମର୍ଥ୍ୟ ବିଷୟରେ କାହାର କୌଣସି ସନ୍ଦେହ ନ ଥିଲା । ସେମାନେ ସାରା ବିଶ୍ୱରେ ଜଣାଶୁଣା । ସେମାନଙ୍କର ନୌବଳ, ଆକାଶ ବାହିନୀ ଏବଂ ସାମରିକ ଶକ୍ତି ପୃଥିବୀରେ ଅଦ୍ୱିତୀୟ । ଅନ୍ୟପକ୍ଷରେ ସେମାନଙ୍କୁ ସାହାଯ୍ୟ କରୁଛନ୍ତି ଆଉ ଦୁଇଟି ପ୍ରତିଷ୍ଠା ସମ୍ପନ୍ନ ସାମରିକ ବାହିନୀ—ବ୍ରିଟିଶ ବାହିନୀ ଏବଂ ଯୁକ୍ତରାଷ୍ଟ୍ର ସେନା ବାହିନୀ । ବିଶେଷକରି ମାର୍କିନ ଯୁକ୍ତରାଷ୍ଟ୍ରର ଅତ୍ୟାଧୁନିକ ସମର କୌଶଳ ସେମାନଙ୍କ ପଛରେ ରହିଛି ।

ଯୁଦ୍ଧର ପ୍ରଥମାବସ୍ଥାରେ ଭିଏତନାମର ସାମରିକ ଶକ୍ତି କହିଲେ କିଛି ନାହିଁ । ଶତ୍ରୁପକ୍ଷର ଯୁଦ୍ଧ ଜାହାଜ ବିରୁଦ୍ଧରେ ଲଢ଼ିବା ପାଇଁ ଥିଲା କେବଳ ହାତ ତିଆରି ଧନୁଶର, ବର୍ଚ୍ଛା ଏବଂ ଲଠି । କିନ୍ତୁ ମାର୍କସବାଦୀ ଲେନିନ୍‌ବାଦୀ ପ୍ରୟୋଗରେ ସେମାନେ ଏତେ ଦୃଢ଼ ଥିଲେ ଯେ ଅତୀତ କିମ୍ବା ବର୍ତ୍ତମାନର ପରାଜୟରେ ଭାଙ୍ଗି ପଡ଼ୁ ନ ଥିଲେ । ଏ ଅନୁପମ ବିଜୟ ପଥରେ ଏହାକୁ ସାମରିକ ପରାଜୟ ଭାବି ଦ୍ୱିଗୁଣ ଉତ୍ସାହରେ ଲାଗି ପଡ଼ୁଥିଲେ । ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସ୍ୱାଧୀନତା ଏବଂ ମୁକ୍ତି ପରି ଏକ ଅବିନାଶୀ ସତ୍ୟକୁ ହାସଲ କରିବା ପାଇଁ ଯେଉଁ ଯୁଦ୍ଧର ଆହ୍ୱାନ ଆସିଛି ତାହାକୁ ସେମାନେ ଅପରିମିତ ସାହସ ଓ ବୀରତ୍ୱର ସହ ସାମନା କରିବେ ଯେହେତୁ ସେମାନଙ୍କର ଆଦର୍ଶ ଓ ଲକ୍ଷ୍ୟ ନିର୍ଭୁଲ ଏବଂ ନ୍ୟାୟସଙ୍ଗତ । ସେମାନେ ଏଥିରେ ବିଜୟୀ ହେବେ ହିଁ ହେବେ । ଏହି ନ୍ୟାୟସଙ୍ଗତ ଦାବୀ ସାବ୍ୟସ୍ତ କରିବା ପାଇଁ ଭିଏତନାମୀ ଜନତା ଏକତାବଦ୍ଧ । ବିଶ୍ୱର ମୁକ୍ତିକାମୀ ଗଣତନ୍ତ୍ରପ୍ରେମୀ ଜନତା ସେମାନଙ୍କ ସ୍ୱାର୍ଥ ପଛରେ ଦଣ୍ଡାୟମାନ ଏପରିକି, ଫ୍ରାନ୍ସର ଜନତା ମଧ୍ୟ ।

ଜନତାର ଐକ୍ୟବଦ୍ଧ ଶକ୍ତିକୁ ଅବାଧ ଏବଂ ଅଖଣ୍ଡ ରଖିବା ପାଇଁ ହୋ' ନୂତନ କୌଶଳର ଆଶ୍ରୟ ନେଲେ । କାରଣ ତାଙ୍କର ଧାରଣା ହେଲା, ଗଣ-ଆନ୍ଦୋଳନ ଆତଙ୍କଗ୍ରସ୍ତ ହୋଇ, ପ୍ରେରଣା ନ ପାଇ ମଝିବାଟରେ ଯଦି ଧ୍ୱଂସ ଯାଏ ତେବେ ଲକ୍ଷ୍ୟ ପଥରେ ପହଞ୍ଚ ହେବ ନାହିଁ । ଭିଏତନାମର ମୁକ୍ତି ଆନ୍ଦୋଳନ ଅଙ୍କୁର ପଛକୁ ଚାଲିଯିବ । ତେଣୁ ସେ ଦଳ ମଧ୍ୟରେ ଥିବା ନ ଥିବା ଦେଶଭକ୍ତ ତରୁଣ ମାନଙ୍କୁ ଆହ୍ୱାନ କଲେ ବନାଦ୍ୱିଧାରେ ସରକାରଙ୍କ ପକ୍ଷରେ ସେମାନଙ୍କର ସମର୍ଥନ ଜ୍ଞାପନ କରିବା ପାଇଁ । ସରକାରୀ ନୀତିନିୟମ, ଅର୍ଥନୈତିକ କାର୍ଯ୍ୟକ୍ରମ, ମୁକ୍ତି ଆନ୍ଦୋଳନ ପାଇଁ ସବଂବିଧ ପ୍ରସ୍ତୁତିକୁ ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ କରିବା ମଧ୍ୟରେ ସ୍ୱାଧୀନତା ପ୍ରାପ୍ତିକୁ ସେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ଏଥିପାଇଁ 'ଭିଏତମିନ' ପରି ଏକ ନତୁଆ ରାଜନୈତିକ ଦଳକୁ ସୁସ୍ଥ, ସବଳ ଓ ଦୃଢ଼ କରି ଗଢ଼ିବା ଅପରିହାର୍ଯ୍ୟ ହୋଇ ପଡ଼ିଲା । କାରଣ ସଂଗ୍ରାମୀ ଦଳ ବ୍ୟତିରେକ ସଂଗ୍ରାମୀ ଜନତା ଆଗେଇ ପାରେନା । ସଂଗ୍ରାମୀ ଜନତାର ପ୍ରତ୍ୟକ୍ଷ ସହଯୋଗ ବିନା କୌଣସି ମୁକ୍ତି ଆନ୍ଦୋଳନ କୌଣସି କାଳରେ ବା ସ୍ଥାନରେ ସଫଳ ହୋଇ ପାରିନାହିଁ ।

ସମ୍ପୂର୍ଣ୍ଣ ମୁକ୍ତି ହାସଲ ପାଇଁ ଭିଏତନାମରେ ଯେତେବେଳେ ଏକ ଉତ୍ତପ୍ତ ପରିବେଶ ସୃଷ୍ଟି ହୋଇଛି ! ପ୍ରଥମ ଥର ପାଇଁ ଭିଏତନାମ ମାଟିର ନିରୀହ ଜନତା ସରକାରୀ ନୀତିକୁ କାର୍ଯ୍ୟକାରୀ କରିବା ମାଧ୍ୟମରେ ମୁକ୍ତି ବିପ୍ଳବରେ ସାମିଲ ହେବାକୁ ଆରମ୍ଭ କରିଛନ୍ତି । ସେମାନେ ଏହାକୁ ମନେକରିଛନ୍ତି ଅନ୍ତିମ ସଂଗ୍ରାମ । ଏହା ହିଁ ତାଙ୍କ ରାଜ୍ୟ ନିର୍ମାଣର ଶେଷ ପର୍ଯ୍ୟାୟ । କିନ୍ତୁ 'ଏକତା' ହାସଲ କରିବା ଯେତେ ସହଜ ମନେହୁଏ ବାସ୍ତବ କାର୍ଯ୍ୟକ୍ଷେତ୍ରରେ ତାହା ସମ୍ଭବ ହୋଇପାରେ ନାହିଁ । କିଛିଦିନ ପରେ ଜଣାପଡ଼ିଲା ଯେ ପ୍ରଥମାବସ୍ଥାରୁ ଭାବବିହ୍ୱଳ ହୋଇ ଯେଉଁମାନେ ପ୍ରତିରୋଧୀ ସଂଗ୍ରାମରେ ଯୋଗ ଦେଇଥିଲେ ସେମାନଙ୍କ ମନ ରାଜ୍ୟରେ ବିରାଟ ଏକ ଦ୍ୱନ୍ଦ୍ୱ ଦେଖା ଦେଇଛି । ଏହି ଦ୍ୱନ୍ଦ୍ୱ ବା ଆଦର୍ଶଗତ ଭିନ୍ନତା ଯେ ସାଧାରଣ ଜନତା ମଧ୍ୟରୁ ପ୍ରକାଶ ପାଇଥିଲା ତା' ନୁହେଁ, ଭିଏତନାମର ତତ୍କାଳୀନ ବିରୋଧୀ ଦଳ ବା ଯେଉଁମାନେ 'ଭିଏତମିନ'ର ଅନୁସୃତ ମାର୍ଗକୁ ଅନୁସରଣ କରି ପାରୁ ନ ଥିଲେ ସେମାନଙ୍କ ମଧ୍ୟରେ ପ୍ରଥମେ ଏହି ଦ୍ୱିଧା ବିଭକ୍ତ ଚିନ୍ତାଧାରା ପ୍ରବେଶ କରିଥିଲା । କ୍ରମଶଃ ସେମାନେ ଅନ୍ୟମାନଙ୍କର ସରଳତା ଓ ଅଜ୍ଞାନତାର ସୁଯୋଗ ନେଇ ବିପ୍ଳବର ପଥକୁ କଣ୍ଟକିତ କରିଦେଲେ । ''ବର୍ତ୍ତମାନ ଗଣ ଅଭ୍ୟୁଦୟର ସମସ୍ତ ଅନୁକୂଳ ନୁହେଁ'' କହି ପାର୍ଟିଠାରୁ ଦୂରେଇ ଗଲେ । ଆଉ କେତେକ ସେଣ୍ଟ ମଧ୍ୟରେ ରହି ସରକାରୀ ନୀତିକୁ ଦକ୍ଷିଣପନ୍ଥୀ ବା ବାମପନ୍ଥୀ ନାମ ଦେଇ ଅନାବଶ୍ୟକ

ଦ୍ୱନ୍ଦ୍ୱ ସୃଷ୍ଟି କଲେ । ଫଳରେ ଦେଖାଗଲା ଆଦର୍ଶଗତ ବିରୋଧିତାରୁ ରୂପ ନେଉଛି ବିକଟ ଆଞ୍ଚଳିକବାଦ, ଧର୍ମାନ୍ଧତା, ସାଂପ୍ରଦାୟିକତା ତଥା ଉଗ୍ର ଗୋଷ୍ଠୀବାଦ ।

ଏପରି ଅବସ୍ଥାରେ ସରକାରୀ ନୀତି କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ପାର୍ଟି କ୍ୟାଡ଼ରମାନଙ୍କର ନୈତିକ ଏବଂ ତାତ୍ତ୍ୱିକ ସ୍ତର ଏତେ ନିମ୍ନ ସ୍ତରର ଥିଲା ଯେ ସେମାନେ ସଙ୍କଟ ମୁହୂର୍ତ୍ତକୁ ସାମନା କରି ପାରିଲେ ନାହିଁ । ଗ୍ରାମାଞ୍ଚଳ ସାମରିକ ଶାଖାମାନଙ୍କ ଦାୟିତ୍ୱରେ ଥିବା ନେତାଙ୍କର କାର୍ଯ୍ୟପ୍ରଣାଳୀରେ ଅକ୍ଷମଣୀୟ ବିଚ୍ୟୁତିମାନ ଘଟିଲା । ବୃଥା ଅହଂକାର, ହୀନମନ୍ୟତା, ଆତ୍ମକେନ୍ଦ୍ରିମା ଏବଂ ପ୍ରଭୁତ୍ୱର ଶୀକାର ହୋଇ ସେମାନେ ସହକର୍ମୀମାନଙ୍କ ସହିତ ଉତ୍ତମ ସମ୍ପର୍କ ରଖି ପାରିଲେ ନାହିଁ । ସାଧାରଣ ଜନତା ସହିତ ଯୋଗ ଯୋଗ ଛିନ୍ନ ହୋଇଗଲା । ଅମଲାତାନ୍ତ୍ରିକ ଉପାୟରେ ସେମାନେ ସରକାରୀ ମାର୍ଗକୁ ପରିଚାଳିତ କରିବା ଶ୍ରେୟ ମଣିଲେ । ଫଳରେ ବିପ୍ଳବର ଦୀର୍ଘମିଆଦୀ ଯୋଜନା ପାଇଁ ଯେଉଁ ପ୍ରସ୍ତୁତି ଚାଲିଥିଲା, ତାହା କ୍ରମଶଃ ଶିଥିଳ ହୋଇ ପଡ଼ିଲା । ଫଳେ ଦେଖାଗଲା ବୈପ୍ଳବିକ ଆନ୍ଦୋଳନର କୂଳଲଙ୍ଘି ଜୁଆର ଜନଜୀବନଠାରୁ କାହିଁ କେତେ ଦୂରରେ ।

କମ୍ରେଡ଼ ହୋ' ବିପ୍ଳବୀ ସରକାରର ସଭାପତି ତଥା ଭିଏତନାମ ଜନତାର ଅପ୍ରତିଦ୍ୱନ୍ଦ୍ୱୀ କର୍ଣ୍ଣଧାର । ଏହି ଦାରୁଣ ବିପର୍ଯ୍ୟୟ ମଧ୍ୟରୁ ସାରା ଦେଶକୁ ରକ୍ଷା କରିବା ଏବଂ ତା ସହିତ ମୁକ୍ତି ସଂଗ୍ରାମର ଦାବାନଳକୁ ପୂର୍ବବତ ଜଳାଇ ରଖିବାର ଗୁରୁ ଦାୟିତ୍ୱ ତାଙ୍କର । ପାର୍ଟି ଏବଂ ପାର୍ଟିର ସଭ୍ୟମାନଙ୍କୁ ସେ ସବୁବେଳେ ଏକ ଏବଂ ଅଭିନ୍ନ ଦୃଷ୍ଟିରେ ଦେଖି ଆସିଛନ୍ତି । ଗୋଟିଏ ବିନା ଅପରଟି ସ୍ଥିତି ଅସମ୍ଭବ । ତାଙ୍କରି ନିର୍ଦ୍ଦେଶରେ ପାର୍ଟି କେନ୍ଦ୍ର କମିଟିର ଜରୁରୀ ବୈଠକ ଡକାଗଲା । ପାର୍ଟିର ସଭ୍ୟ, ନେତା ଏବଂ ସାଧାରଣ ଜନତାର ଦୃଢ଼ ନୈତିକ ବଳ ବଜାୟ ରଖିବା ସଙ୍ଗେ ସଙ୍ଗେ ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିବା ଥିଲା ଏହି ଜରୁରୀ ବୈଠକର ମୁଖ୍ୟ ଉଦ୍ଦେଶ୍ୟ । ୧୯୪୭ ମାର୍ଚ୍ଚ ମାସରେ ସେ ପାକ୍-ବୋ ଏବଂ ଟୁଙ୍ଗ-ବୋଠାରେ ଥିବା କମ୍ରେଡ଼ମାନଙ୍କୁ ଚିଠିଦ୍ୱାରା ଜଣାଇଲେ ଯେ ଆମ ଦେଶର ସ୍ୱାଧୀନତା, ଏକତା ଫେରାଇ ଆଣିବା ନିମନ୍ତେ ପ୍ରଥମେ ଏ ମାଟିରୁ ଫରାସୀ ଉପନିବେଶୀମାନଙ୍କୁ ବିତାଡ଼ନ କରିବାକୁ ହେବ । ଏହା ଆମର ଗୋଟିଏ ମାତ୍ର ଲକ୍ଷ୍ୟ । ଏହି ପଥରେ ସ୍ଥିର ଅବିଚଳ ରହି ଆମର ସମସ୍ତ ନୈତିକ ଏବଂ ସାମରିକ ଶକ୍ତି ନିର୍ନିଯୁକ୍ତ ହେଉ । ପାର୍ଟି କମ୍ରେଡ଼ମାନଙ୍କ ମଧ୍ୟରେ ନୂତନଭାବେ ଆତ୍ମପ୍ରକାଶ କରୁଥିବା ସଙ୍କୀର୍ଣ୍ଣତା, ଗୋଷ୍ଠୀବାଦ, ଅମଲାତାନ୍ତ୍ରିକତା, ହୀନମନ୍ୟତା, ସ୍ୱାର୍ଥପରତା, ବିଶୃଙ୍ଖଳା, ଲୌକିକତା ଆଦି ଦଳବିରୋଧୀ ପ୍ରବୃତ୍ତିଗୁଡ଼ିକୁ କଠୋର ସମାଲୋଚନା କରି

ସେମାନଙ୍କୁ କୁପଥରୁ ଫେରାଇ ଆଣିବା ନିମନ୍ତେ ବହୁ ଚେଷ୍ଟା ପ୍ରୟୋଗ କରିଛନ୍ତି । ୧୯୪୭ ମସିହା ଅକ୍ଟୋବର ମାସରେ କମ୍ରେଡ଼ ହୋ' ପାର୍ଟି ଏବଂ ପାର୍ଟି ବାହାରେ ଥିବା ଦେଶବତ୍ସଳ ଶକ୍ତିମାନଙ୍କୁ ପୁନର୍ବାର ଐକ୍ୟବଦ୍ଧ କରିବା ଉଦ୍ଦେଶ୍ୟ ନେଇ ଆଉ ଏକ ପ୍ରବନ୍ଧ ପୁସ୍ତକ ପ୍ରକାଶ କଲେ । ଯେଉଁଥିରେ କମ୍ୟୁନିଷ୍ଟ ତଥା ମୁକ୍ତିକାମୀ ବୈପ୍ଳବିକ ଦଳ ଗଠନ ନିମନ୍ତେ ଅତ୍ୟାବଶ୍ୟକ ବାରଟି ମୌଳିକ ଆଦର୍ଶ ସନ୍ନିବେଶିତ ହୋଇଥିଲା । ଏହି ପୁସ୍ତକ ପରବର୍ତ୍ତୀ ସମୟରେ ପାର୍ଟି ସଭ୍ୟମାନଙ୍କ ଜୀବନରେ ଧର୍ମପୁସ୍ତକରୂପେ କାର୍ଯ୍ୟ କରିଛି । ପୁସ୍ତକ ପ୍ରକାଶ ପାଇବା ପରେ ପରେ ପାର୍ଟି କେନ୍ଦ୍ର କମିଟିର ସିଦ୍ଧାନ୍ତ ଅନୁଯାୟୀ ପାର୍ଟି ତାଲିକାଭୁକ୍ତ ସଭ୍ୟମାନେ ଏହାର ପନ୍ଥାଙ୍କ ଅନୁସରଣ କରିବା ପାଇଁ ବାଧ୍ୟ ହୋଇଥିଲେ । ଏହି ପୁସ୍ତକର ନାମ ଥିଲା "ଚାଲ ଆମର କାର୍ଯ୍ୟଶୈଳୀ ପରିବର୍ତ୍ତନ କରିବା" । ପ୍ରଭାତରୁ ଉଠିବା ମାତ୍ରେ ପାର୍ଟିର ସଭ୍ୟମାନେ ଏହାକୁ କିଛି ସମୟ ପଢ଼ୁଥିଲେ । ଦୈନନ୍ଦିନ ଜୀବନର ଏ ଥିଲା ମୁଖ୍ୟ ଅଂଶ ବିଶେଷ । ପାର୍ଟିର କିଶୋର ଓ ଯୁବ ସଭ୍ୟମାନଙ୍କର ପ୍ରାଥମିକ ଶିକ୍ଷକ ଭାବେ ଏ ପୁସ୍ତକଟିର ଅବଦାନ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

କମ୍ରେଡ଼ ହୋ' ସର୍ବଦା କହନ୍ତି "ନଦୀ ଧାର ତା'ର ଉତ୍ପତ୍ତିସ୍ଥାନରୁ ଜଳ ସଂଗ୍ରହ କରେ, ଯଦି କେବେ ତାର ସଂଯୋଗ ସୂତ୍ରକୁ କାଟି ଦିଆଯାଏ, ତେବେ ସେ ଅଳ୍ପଦିନରେ ଶୁଖିଯିବ । ଗଛର ଚେର ନିଶ୍ଚୟ ଅଛି । ତାକୁ ଉପାଡ଼ି ଦେଲେ ସେ ମଧ୍ୟ ମରିଯିବ । ଠିକ୍ ସେହିପରି ବିପ୍ଳବୀମାନେ ଉନ୍ନତ ନୈତିକ ଗୁଣର ଅଧିକାରୀ ହେବା ଉଚିତ୍ । ଯାହା ବ୍ୟତିରେକ ସେ ଯେତେ ପ୍ରଭାବଶାଳୀ ବା ପ୍ରତିଭାବାନ୍ ହେଲେ ମଧ୍ୟ ସାଧାରଣ ଜନତାକୁ ନେତୃତ୍ୱ ଦେଇ ପାରିବ ନାହିଁ । ତାଙ୍କ ମତରେ ବୈପ୍ଳବିକ ପ୍ରକୃତି ଏକ ନୂତନ ସୋପାନର ନୈତିକତା । ଏ ଏକ ମହାନ୍ ପ୍ରବୃତ୍ତି ଯାହା କି କେବେ ବ୍ୟକ୍ତିଗତ ସମ୍ମାନକୁ ଅପେକ୍ଷା କରେ ନାହିଁ । ସାଧାରଣ ସ୍ୱାର୍ଥ, ପାର୍ଟିର ମଙ୍ଗଳ ଏବଂ ଜାତି ତଥା ସମୁଦାୟ ମଣିଷ ଜାତିର କଲ୍ୟାଣ ନିମନ୍ତେ ଉତ୍ସର୍ଗୀକୃତ" ।

ପୁସ୍ତକ ମାଧ୍ୟମରେ ସେ ପାର୍ଟି ସଭ୍ୟମାନଙ୍କୁ ଅତ୍ୟାବଶ୍ୟକ ସର୍ବନିମ୍ନ ପାଞ୍ଚଟି ଗୁଣର ଅଧିକାରୀ ହେବା ପାଇଁ ନିବେଦନ କରିଥିଲେ । ତାହା ହେଲା— ବୈପ୍ଳବିକ ନୈତିକତା, ମାନବିକତା, ଆନୁଗତ୍ୟ, ଇଚ୍ଛାଶକ୍ତି, ସାହସ ଏବଂ ସାଧୁତା । ଏହି ପଞ୍ଚମହାଗୁଣକୁ ଅଭ୍ୟସ୍ତ କରିବା ପାଇଁ ପାର୍ଟି ସଭ୍ୟମାନେ ଯଥାସମ୍ଭବ ଚେଷ୍ଟା ଚଳାଇଛନ୍ତି । ଶତ୍ରୁ ସହିତ ପ୍ରତ୍ୟକ୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହେବାର ବହୁ ପୂର୍ବରୁ ଭିଏତନାମରେ ଗୋଟିଏ ଦଳ ଅଖଣ୍ଡ, ଅବିଭାଜ୍ୟ, ଅଭେଦ୍ୟ ହୋଇ ଗଢ଼ି ଉଠିବା ଉଚିତ୍ । ସମଗ୍ର ଭିଏତନାମ ଗୋଟିଏ ଲକ୍ଷ୍ୟ ପଛରେ ଐକ୍ୟବଦ୍ଧ ହୋଇ ଦଣ୍ଡାୟମାନ ହେବା ଅପରିହାର୍ଯ୍ୟ । ଏଥିପାଇଁ ଜନବଳର ପ୍ରୟୋଜନ

ସେତିକି ତା'ଠାରୁ ଅଧିକ ପ୍ରୟୋଜନ ସେହି ଜନତାର ଦୃଢ଼ ଐକାନ୍ତିକତା ଏବଂ ଆଦର୍ଶଗତ ଅଭିନ୍ନତା । ହୋ' ପ୍ରଭୃତି ମୁକ୍ତି ବାହିନୀ ଏହି ସଂଗ୍ରାମରେ ଏକାନ୍ତ ଭାବରେ ସଭ୍ୟମାନଙ୍କର ଚରିତ୍ର ଗଠନ ଦିଗରେ । ୧୯୪୮ ମସିହା ନବବର୍ଷ ପହିଲା ଦିନରେ ସେ ଆଉ ଥରେ ସ୍ମରଣ କରାଇ ଦେଲେ ପାର୍ଟିର ସଭ୍ୟମାନଙ୍କୁ—

"ଜାତି, ଧର୍ମ, ବର୍ଣ୍ଣ ଭେଦରେ ଆମର କମ୍ରେଡ୍‌ମାନେ ପୃଥକ ହେଲେ ମଧ୍ୟ ଗୋଟିଏ ବସ୍ତୁର, ଗୋଟିଏ ପଥର ସେମାନେ ପଥିକ । ଏକ ପ୍ରକାର ସୁଖ ଦୁଃଖର ସେମାନେ ଭାଗୀଦାର । ସେମାନେ ଏକତ୍ର ବଞ୍ଚନ୍ତି, ମରିବେ ମଧ୍ୟ ସେହିପରି । ସେଥିପାଇଁ ଅତି ବିଶ୍ୱାସର ସହିତ ସେମାନେ ଏକତାବଦ୍ଧ ହେବା ପ୍ରୟୋଜନ । ଆମର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସଙ୍ଗଠନ ଯଥେଷ୍ଟ ନୁହେଁ, ସେଥିପାଇଁ ଶୃଙ୍ଖଳାରେ ସଚ୍ଚୋଟତା ରହିବା ଆବଶ୍ୟକ ।

'ଆଦର୍ଶଗତ ଐକ୍ୟ ପ୍ରାପ୍ତି ନିମନ୍ତେ ଆମ ଆଗରେ ଦୁଇଟି ପଥ ଅତ୍ୟନ୍ତ ସ୍ପଷ୍ଟ – ସମାଲୋଚନା ଏବଂ ଆତ୍ମସମାଲୋଚନା । ନିମ୍ନତମ ସୋପାନରୁ ଆରମ୍ଭ କରି ଉର୍ଦ୍ଧ୍ୱ ସ୍ତରରେ ଥିବା ପ୍ରତ୍ୟେକ ସଭ୍ୟ ଏକତା ରକ୍ଷା ଲାଗି ଏ ଦୁଇଟି ମାର୍ଗ ଅନୁସରଣ କରିବା ଉଚିତ୍ ।" ଏହି ମର୍ମରେ ସେ ଆହୁରି ମଧ୍ୟ କହିଥିଲେ ଯେ,

"ଆମ ପାର୍ଟିରେ ଅନେକ ଲୋକ ଅଛନ୍ତି, କିନ୍ତୁ କାର୍ଯ୍ୟକ୍ଷେତ୍ରରେ ସେମାନେ ଏକ ଏବଂ ଅଭିନ୍ନ । ଏହା କେବଳ ଶୃଙ୍ଖଳା ଯୋଗୁଁ ସମ୍ଭବ ହୋଇ ପାରୁଛି । ଆମ ଶୃଙ୍ଖଳା ଲୌହ ପରି ଦୃଢ଼, କଠୋର ଏବଂ ସଚେତନ ମଧ୍ୟ । ଆମେ ସମସ୍ତେ ପାର୍ଟିର ଏହି ଲୌହ ଶୃଙ୍ଖଳାକୁ ବଜାୟ ରଖିବା ଦିଗରେ କଠୋର ସାଧନା କରିବା ଉଚିତ ।"

କମ୍ରେଡ୍ ହୋ'ଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଏବଂ ପାର୍ଟି କେନ୍ଦ୍ରକମିଟିର ସୁପରିକଳ୍ପନା ଯୋଗୁଁ ୧୯୪୯ ଶେଷ ସୁଦ୍ଧା 'ଭିଏତମିନ୍' ଏକ ସୁଦୃଢ଼ ଗଣ ସଂଗଠନ ରୂପେ ଠିଆ ହୋଇପାରିଲା । ସହରଠାରୁ ଆରମ୍ଭ କରି ଆଭ୍ୟନ୍ତରୀଣ ଅଞ୍ଚଳ ମାନଙ୍କରେ ଥିବା ପାର୍ଟି ଶାଖାମାନ ଅନୁରୂପ ଯୋଗ୍ୟତା ହାସଲ ଦିଗରେ ସମର୍ଥ ହୋଇ ପାରିଥିଲେ । ଶତ୍ରୁ ଶିବିର ବିରୋଧରେ ପ୍ରତିରୋଧୀ ଯୋଜନା ଏବଂ ଜାତି ଗଠନର ମୁଖ୍ୟ କାର୍ଯ୍ୟକ୍ରମ ଗୁଡ଼ିକ ଦିନକୁ ଦିନ ବଳବତ୍ତର ହେବାକୁ ଲାଗିଲା ।

ପାର୍ଟି ଗଠନ ପାଇଁ କମ୍ରେଡ୍ ହୋ' ଯେତେବେଳେ ଗୁରୁତ୍ୱ ଆରୋପ କରିଥିଲେ ସେତେବେଳେ ସାମରିକ ଦିଗ ଯେ ସମ୍ପୂର୍ଣ୍ଣ ଅନ୍ଧକାରାଚ୍ଛନ୍ନ ଥିଲା ତା ନୁହେଁ, କିନ୍ତୁ ହୋ' ସାମରିକ ଶକ୍ତିକୁ ଆହୁରି ଅଧିକ ବଳଶାଳୀ ଓ ଉନ୍ନତ କରିବା ଲାଗି ହିଁ ବିପ୍ଳବୀ ମାନଙ୍କର ବ୍ୟକ୍ତିଗତ ଜୀବନକୁ ସଂଗ୍ରାମସିଦ୍ଧ କରି ଗଢ଼ିବା ପାଇଁ

ଅଜସ୍ର ଯତ୍ନ ଅଜାଡ଼ି ଦେଇଥିଲେ । କ୍ରମଶଃ ସଭ୍ୟମାନଙ୍କର ନୈତିକ ସ୍ତର ମାର୍ଜିତ ହେବା ଦେଖି ସେ ସାମରିକ ଶକ୍ତି ବୃଦ୍ଧି ପାଇଁ ମନ ଫେରାଇଲେ । ଗଣ ମୁକ୍ତିର ଦିନ ପାଖେଇ ଆସୁଥାଏ । ପାର୍ଟି କେନ୍ଦ୍ର କମିଟିର ନିଷ୍ପତ୍ତି ଅନୁଯାୟୀ ସାମରିକ ବାହିନୀକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଗଲା :—ନିୟମିତ ସେନା, ଆଞ୍ଚଳିକ ସେନା ଏବଂ ଗରିଲା ବାହିନୀ । ଗଣ ମୁକ୍ତି ସାମ୍ମୁଖ୍ୟରେ ଯୋଗଦେଇ ଥିବା ସମସ୍ତ ଯୋଦ୍ଧାମାନେ ନିଜ ନିଜର ସାମର୍ଥ୍ୟ ଓ ଯୋଗ୍ୟତା ଅନୁଯାୟୀ ଏଥିରେ ସ୍ଥାନ ପାଇଲେ । ସଭାପତି ହୋ' ସବୁଠାରୁ ବେଶୀ ଯୋର ଦେଉଥିଲେ ଗ୍ରାମ୍ୟ ସେନା ଏବଂ ଗରିଲା ବାହିନୀର ଭୂମିକା ଉପରେ । ତାଙ୍କ ମତରେ, "ଗ୍ରାମ୍ୟ ସେନା ବାହିନୀ, ଆତ୍ମରକ୍ଷାକାରୀ ଦଳ ଏବଂ ଗରିଲା ମାନେ ସମୁଦାୟ ଜାତିର ଶକ୍ତି । ସେମାନେ ପିତୃଭୂମିର ଅପରାଜେୟ ଲୌହ ପ୍ରାଚୀର ପରି । ଶତ୍ରୁ ଯେତେ ଦୁର୍ଦ୍ଧର୍ଷ, ଭୟଙ୍କର ହୋଇଥିଲେ ମଧ୍ୟ ଏହି ପ୍ରାଚୀର ଦେହରେ ଧକ୍କା ଖାଇଲା ମାତ୍ରେ ମିଳାଇଯିବ ।"

ଜନମୁକ୍ତିର ବିଜୟ ଉପରୋକ୍ତ ତିନି ସାମରିକ ବାହିନୀର କୌଶଳ ଏବଂ ଦକ୍ଷତା ଉପରେ ନିର୍ଭର କରେ । ସାମରିକ ବାହିନୀ ସର୍ବଦା ଗଣତନ୍ତ୍ର ଉପରେ ଆସ୍ଥା ସ୍ଥାପନ କରିବା ବାଞ୍ଛନୀୟ । ଜନତା ସହିତ ସେମାନଙ୍କର ନିବିଡ଼ ସମ୍ପର୍କ ଅପ୍ରତିହତ ରହିବା ଉଚିତ । ଶତ୍ରୁପକ୍ଷର ତିନୋଟି ମୁଖ୍ୟ ଶକ୍ତି ବା ସମ୍ବଳ ବିରୁଦ୍ଧରେ ଗଣ ସଂଗ୍ରାମ ସାମ୍ମୁଖ୍ୟ ଲଢ଼ାଇ କରିବା ଉଚିତ—ସାମରିକ ବଳ, ଅର୍ଥନୈତିକ ଏବଂ ରାଜନୈତିକ ବଳ । ଏହି ତିନି ଦିଗରୁ ଯଦି ସେନା-ବାହିନୀ ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ପାରିବ ତେବେ ଶତ୍ରୁକୁ ସାମନା କରିବା ସେତିକି ସହଜ ଏବଂ ସୁଗମ ହୋଇ ଉଠିବ ।

ପାର୍ଟି ଗଠନ ଦିଗରେ ହୋ' ସବୁବେଳେ ରାଜନୈତିକ ଦିଗକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ସେ କୁହନ୍ତି ରାଜନୈତିକ ଶିକ୍ଷା ଏବଂ ତାତ୍ତ୍ୱିକ ଦୀକ୍ଷା ଗ୍ରହଣ କରି ପାରିଲେ ଯେ କୌଣସି ସେନା ବାହିନୀ 'ଗଣସେନା'ରେ ପରିଣତ ହୋଇ ପାରିବ । ଭିଏତନାମର ଆର୍ଥିକ ପରିସ୍ଥିତି ଯାହା ସେତେବେଳେ କେବଳ ସାମରିକ ବଳ ଉପରେ ନିର୍ଭର କରି ସଂଗ୍ରାମ କରି ହୋଇ ନ ଥାନ୍ତା । ତେଣୁ ସେ ଭିଏତନାମର ସେନାବାହିନୀକୁ ବାସ୍ତବ 'ଜନତା ସେନା' ରୂପରେ ଦେଖିବାକୁ ଚାହୁଁ ଥିଲେ । ଜନଗଣର ଅକୃତ୍ରିମ ସହଯୋଗ, ଶ୍ରଦ୍ଧା ଏବଂ ବିଶ୍ୱାସ ବଳରେ ଶତ୍ରୁ ସହିତ ଲଢ଼ିବା ଥିଲା ତାଙ୍କର ଏକକ ବାସନା । ତେଣୁ ସେ ସଭାସମିତି ବା ଆଲୋଚନା ପ୍ରସଙ୍ଗରେ ସୂଚାଇ ଦେଇଥିଲେ ଯେ, "ସେନାବାହିନୀ ଜନତା ମଧ୍ୟରୁ ଜନ୍ମ ଏବଂ ଜନତା ପାଇଁ ସେ ସଂଗ୍ରାମ କରେ । ସେନାବାହିନୀ ଓ ଜନତାର ସମ୍ପର୍କ ମୀନ ଓ ଜଳର ସମ୍ପର୍କ ପରି । ତେଣୁ ସେନାବାହିନୀ ସବୁବେଳେ ଗଣ ଜୀବନ ଓ ଗଣସମ୍ପତ୍ତିର ସୁରକ୍ଷା

ପାଇଁ ଚେଷ୍ଟା କରିବ । ଲୋକଙ୍କଠାରୁ ସେ କିଛି ଗ୍ରହଣ କରିବା ଉଚିତ୍ ନୁହେଁ । ଏପରିକି ଗୁଆ ଖଣ୍ଡେ ବା ପୁଡ଼ା ଟିଏ ମଧ୍ୟ ନୁହେଁ । ଯେଉଁଠାରେ ଆନ୍ଧି ବା ବାହିଁକି ସ୍ଥାନୀୟ ଜନତାକୁ ସାହାଯ୍ୟ କରିବା ସେନାବାହିନୀର ପରମ କର୍ତ୍ତବ୍ୟ । କୋଠରୀ ବା ସମବାୟ କାର୍ଯ୍ୟକ୍ରମରେ ବ୍ୟକ୍ତିବିଶେଷଙ୍କୁ ଉତ୍ସାହ ଦେବା ତାର ଧର୍ମ । ଯୁଦ୍ଧ କ୍ଷେତ୍ରରେ ଆମ ସେନାବାହିନୀ ଅପରିସୀମ ସାହସ, ଅନନୁମେୟ ବିଚକ୍ଷଣତା ଏବଂ ସ୍ୱଚ୍ଛଳତା ପ୍ରଦର୍ଶନ କରିବା ବାଞ୍ଛନୀୟ । ଶତ୍ରୁ ଠାରୁ ଛଡ଼ାଇ ନେଇଥିବା ଅସ୍ତ୍ରରେ ତାକୁ ନିହତ କରିବା ପାଇଁ ଯୋଦ୍ଧାମାନେ ପରସ୍ପରକୁ ଯଥୋଚିତ ପ୍ରେରଣା ଓ ଉତ୍ସାହ ଯୋଗାଇବା ଉଚିତ । ଏହା ଫଳରେ ଶତ୍ରୁ ନିର୍ବଳ ହେବା ସଙ୍ଗେ ସଙ୍ଗେ ଆମର ଶକ୍ତି ଉତ୍ତରୋତ୍ତର ବୃଦ୍ଧି ପାଇବ ।"

ହୋ' ଯେ କେବଳ ପାର୍ଟି କେନ୍ଦ୍ର ଅଫିସରେ ବସି ଏହି ଉପଦେଶମାନ ଦେଉଥିଲେ ତାହା ନୁହେଁ, ଅନେକ ଥର ସେ ବିଭିନ୍ନ ସ୍ଥାନକୁ ଯାଇ ସେନାବାହିନୀର ଶାଖା ଉପଶାଖାମାନ ପରିଦର୍ଶନ କରୁଥିଲେ । ସେମାନଙ୍କ ଦ୍ୱାରା ଆହୂତ ସମ୍ମିଳନୀ ବା ବୈଠକ ମାନଙ୍କରେ ଭାଗ ନେଇ ସେମାନଙ୍କୁ ଉତ୍ସାହିତ କରୁଥିଲେ । ଯେତେବେଳେ ନିଜେ ଉପସ୍ଥିତ ହୋଇ ପାରୁ ନ ଥିଲେ, ଚିଠି ଦ୍ୱାରା ଦୂରସ୍ଥ କମ୍ରେଡ଼ ଓ ସୈନିକମାନଙ୍କୁ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଥିଲେ । ପ୍ରୟୋଜନ ହେଲେ ଅସୁବିଧା ସମୟରେ ନିଜେ ରହି ସେମାନଙ୍କର ଭୁଲ ଭ୍ରାନ୍ତି ସୁଧାରି ପାରୁଥିଲେ । ଯେତେବେଳେ ବିଜୟର ବାର୍ତ୍ତା ପହଞ୍ଚେ ହୋ' କମ୍ରେଡ଼ ମାନଙ୍କୁ ଦୁଇପଦ ଲେଖି ଦିଅନ୍ତି, ଅଯଥା ଆତ୍ମବଡ଼ିମାର ଶିକାର ନ ହେବା ପାଇଁ । କିନ୍ତୁ ବିଜୟର ମାତ୍ରାକୁ ଅଧିକରୁ ଅଧିକ କରିବା ପାଇଁ ସେ ସବୁବେଳେ ଯୋଦ୍ଧା ମାନଙ୍କୁ ସଚେତନ କରି ଆସନ୍ତି ।

ସୈନ୍ୟବାହିନୀରେ ଯୋଗ ଦେଇଥିବା ଦେଶପ୍ରେମୀ ଯୋଦ୍ଧାମାନଙ୍କର ଧନଜୀବନର ସୁରକ୍ଷା ପାଇଁ ହୋ' ସବୁବେଳେ ଚିନ୍ତିତ ଥାଆନ୍ତି । ସେ 'ସେନା-ବାହିନୀ'ର ସୁଖ ସୁବିଧା ନିମନ୍ତେ ସାଧାରଣ ଜନତା ଦ୍ୱାରା ସେନାବାହିନୀର ସେବାର୍ଥେ ବିପୁଳ ଚାନ୍ଦା ଅଭିଯାନ ଶୁରୁ କରିଥିଲେ । ଏଥିରୁ ସଂଗୃହୀତ ଅର୍ଥରେ ସେ ସୈନିକ ମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧାମାନ କରିପାରୁଥିଲେ । ଯୁଦ୍ଧରେ ବିକଳାଙ୍ଗ ହୋଇପଡ଼ିଥିବା ଅକ୍ଷମ ସୈନିକ ଏବଂ ଶହୀଦ ମାନଙ୍କର ଥଇଥାନ, ଭରଣ ପୋଷଣ ପାଇଁ ସେ ନିୟମିତ ଅର୍ଥାଗମର ବ୍ୟବସ୍ଥା କରିଥିଲେ । ସରକାରୀ ସ୍ତରରେ ଥିବା ଭାରପ୍ରାପ୍ତ ଅଫିସରମାନଙ୍କ ଜରିଆରେ ସାହାସ୍ଥନ ପରିବାର ପାଇଁ ସମସ୍ତ ପ୍ରକାର ସୁଖ ସୁବିଧା ପ୍ରତି ଦୃଷ୍ଟି ଦେଇଥିଲେ । ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତିବିଶେଷଙ୍କୁ ଦୈନନ୍ଦିନ ଜୀବନରେ ସାହାଯ୍ୟ କରିବା ପାଇଁ ସେ ସାଧାରଣ ଜନତାକୁ ନିବେଦନ କରିଥିଲେ ।

ହୋ'ଙ୍କର ଏତାଦୃଶ ମହାନୁଭବ ଉଦାର, ଆତ୍ମୀୟତା ଓ ଗଣପ୍ରେମକୁ ଅନୁଭବ କରି ଶହ ଶହ ସଂଖ୍ୟାର ଭିଏତନାମୀ ସେନାବାହିନୀରେ ଯୋଗଦେଲେ । 'ପ୍ରତିରୋଧୀ ସାମ୍ମୁଖ୍ୟ'ର ପରିବାର ଦିନକୁ ଦିନ ବଢ଼ି ଚାଲିଲା ।

ସତ୍ତ୍ୱପରି ହୋ'ଙ୍କ ସରକାର ପ୍ରତି ଦେଶସାରା ବିପୁଳ ଜନସମର୍ଥନ ପ୍ରକାଶ ପାଇଛି । ହୋ' ସ୍ପଷ୍ଟ ଭାବେ ଘୋଷଣା କରିଥିଲେ, ତାଙ୍କର ସରକାର ଜନତା ଦ୍ୱାରା ନିର୍ବାଚିତ ଏବଂ ଜନତାର ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ସେ ତାଙ୍କର ମଧ୍ୟରେ ହିଁ ରହିବ । ସରକାରୀ କଳକୁ ଗଣମୁଖୀ କରାଇବା ଉଦ୍ଦେଶ୍ୟରେ ସେ ଜନତାର ପ୍ରତିନିଧିଙ୍କୁ ଡାକିଲେ । କୃଷକ, ବୁଦ୍ଧିଜୀବୀ, ଶ୍ରମିକ, ଛାତ୍ର, ସୈନିକ, ବ୍ୟବସାୟୀ ଆଦି ସବୁ ଶ୍ରେଣୀର ବ୍ୟକ୍ତି ସମାନୁପାତିକ ସ୍ଥାନ ମିଳିଲା । ଶାସନ ବ୍ୟବସ୍ଥାରେ ରହିଯାଇଥିବା ପାରମ୍ପରିକ ଅମଲାତାନ୍ତ୍ରିକତା, ଦୁର୍ନୀତି, ପ୍ରିୟାପ୍ରୀତି ଶୋଷଣ, ସ୍ୱାର୍ଥପରତା ଆଦି ଦୁରାରୋଗ୍ୟ ସରକାରୀ ବ୍ୟାଧି ଗୁଡ଼ିକୁ ଦୂର କରିବା ଉଦ୍ଦେଶ୍ୟରେ ଜନପ୍ରତିନିଧିମାନେ ଆପ୍ରାଣ ଚେଷ୍ଟା ଚଳାଇଲେ । ଶିଳ୍ପ, କୃଷି ବାଣିଜ୍ୟ, ସଂସ୍କୃତି ଓ ସାକ୍ଷରତାର ମାନବୃଦ୍ଧି ପାଇଁ ଗୁରୁତ୍ୱ ଆରୋପ କରାଗଲା । ଏତୋପରି ସାମୂହିକ କଲ୍ୟାଣ ପାଇଁ ବିପ୍ଳବୀ ସରକାର ତାର ସମସ୍ତ ଶକ୍ତି ସାମର୍ଥ୍ୟ ଅଜାଡ଼ି ଦେଲା । ବୈପ୍ଳବିକ ଚେତନାବୋଧର ଉତ୍ସଗତ, ଜନପ୍ରତିନିଧି ମାନଙ୍କର କଠୋର ଶ୍ରମ ବିନିମୟରେ ଭିଏତନାମ ସାଂସ୍କୃତିକ ଜୀବନକୁ ସରସ, ସୁନ୍ଦର ଓ ସୁଶାଣିତ କରି ଗଢ଼ି ତୋଳିଲା ।

୧୯୪୯ ମସିହା ଅକ୍ଟୋବର ମାସ । ସାମୁଦ୍ରିକ ଶୀତଳ ପବନରେ ସାରା ଭିଏତନାମ ବିଚରଣ କରୁଛି । 'ଜନଯୁଦ୍ଧ'ର ପ୍ରଥମ ପ୍ରସ୍ତୁତ ପର୍ଯ୍ୟାୟ ଶେଷ ପ୍ରାୟ । ସମ୍ବାଦ ଆସିଛି, ପଡ଼ୋଶୀ କୋମିଣ୍ଟାଙ୍ଗ-ଶାସିତ-ଚୀନ ସୀମାନ୍ତରୁ ଯୁଦ୍ଧ ସରିଛି । ଝୁକୁଭଳା ରକ୍ତ ସ୍ରୋତରେ ସର୍ବହରା ଶ୍ରେଣୀ, ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ସଂଗ୍ରାମ କରି ଆଜି ତାର ନ୍ୟାଯ୍ୟଦାବୀ ହାସଲ କରିଛି । ସାମନ୍ତବାଦୀ ବୁର୍ଜୁଆ ଦାସ ଶାସନରୁ ଚୀନ ସବୁଦିନ ପାଇଁ ମୁକ୍ତି ପାଇଛି । ଧନତନ୍ତ୍ରର ଚରମ ସଙ୍କଟରୁ ସର୍ବହରା ମେହେନତି ଜାତି ତାର ପ୍ରାପ୍ୟ ଫଳ, ଫଳକୁ ଛଡ଼ାଇ ଆଣିଛି । ନିର୍ଲଜ୍ଜ ଶୋଷକ ସମାଜ ବ୍ୟବସ୍ଥାର ଚରମ ବିପର୍ଯ୍ୟୟ ଘଟିଛି । ସାମନ୍ତବାଦୀ ସାମରିକ ଶ୍ରେଣୀର ମୂଳବୀଜ ଲକ୍ଷ ଲକ୍ଷ ଶହୀଦର ତାଜା ରକ୍ତରେ ବୁଡ଼ି ଯାଇଛି । ସର୍ବହରା ଶ୍ରମିକ ଶ୍ରେଣୀର ନୂତନ ଦୁନିଆ ରୂପ ନେଇଛି ଇତିହାସର ପୃଷ୍ଠାରେ । ପୁରାତନ ଦିନର କଳଙ୍କି ଲଗା ଜୀର୍ଣ୍ଣ ପୃଷ୍ଠା ବିପ୍ଳବର ଘୂର୍ଣ୍ଣିବାତ୍ୟାରେ ମିଳାଇ ଯାଇଅଛି କେଉଁଆଡ଼େ । ତା ବଦଳରେ ଜନ୍ମ ନେଇଛି ନୂତନ ଇତିହାସର କୋହିତ ପୃଷ୍ଠା । ସମାଜବାଦୀ ଦୁନିଆର ମଧ୍ୟମଣି ସୋଭିଏତ ଗଣତନ୍ତ୍ରସଂଘର ପ୍ରତ୍ୟକ୍ଷ ସାହାଯ୍ୟ, ସହୃଦୟତା ଫଳରେ ଚୀନରେ ପ୍ରତିଷ୍ଠିତ ହୋଇଛି ଶ୍ରମିକ ଶ୍ରେଣୀର ପ୍ରଜାତନ୍ତ୍ର ।

ଭିଏତନାମର ସୀମାନ୍ତରରେ ବିଶ୍ୱର ସଂଖ୍ୟାଗରିଷ୍ଠ ପ୍ରଜାତନ୍ତ୍ରର ପଦ-ସ୍ଥରଣ ହୋ'ଙ୍କୁ ଅନେକ ଆଶ୍ୱାସନା ଦେଇଥିଲା ନିଶ୍ଚୟ । ହେଲେ ସେତେବେଳର ପୃଥିବୀରେ ସୋଭିଏତ ୟୁନିଅନ ଓ ଚୀନକୁ ଛାଡ଼ିଦେଲେ ତାଙ୍କର ବନ୍ଧୁ କିଏ ?

ଚୀନ ପ୍ରଜାତନ୍ତ୍ରର ଶୁଭଜନ୍ମ ପରେ ପରେ ବିଶ୍ୱଶକ୍ତି ଶିବିର ଦୁଇ ପ୍ରଧାନ ଦଳରେ ବିଭକ୍ତ ହୋଇଛି । ସମାଜବାଦୀ ଶିବିର ଏବଂ ପୁଂଜିବାଦୀ ଶିବିର । ସମାଜ-ବାଦୀ ଶିବିରର ନେତୃତ୍ୱ ନେଇଛି ସୋଭିଏତ ରାଷ୍ଟ୍ରସଂଘ । ମହାମନା ଷ୍ଟାଲିନ ବିଶ୍ୱର ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ରମାନଙ୍କୁ ପୁଂଜିବାଦୀ ଶିବିର ବିରୁଦ୍ଧରେ ଐକ୍ୟବଦ୍ଧ କରିବା କାର୍ଯ୍ୟରେ ସମ୍ୟକ ସମର୍ଥ ହୋଇ ପାରିଛନ୍ତି । ବିଶ୍ୱ ମହାଯୁଦ୍ଧ ପରେପରେ ୟୁରୋପର ଅନେକ ଛୋଟ ବଡ଼ ରାଷ୍ଟ୍ର ସମାଜବାଦୀ ଶିବିର ସହିତ ସାମିଲ ହୋଇଛନ୍ତି । ମହାସମରର ଭୟଙ୍କରତା, ଧନତନ୍ତ୍ରୀ ଶାସନ ବ୍ୟବସ୍ଥାର ବିକଟ ରୂପ, ସାମରିକ ପ୍ରଭୁତ୍ୱର ଅସହନୀୟ ଭୟାବହତା ସେମାନଙ୍କର ଅନ୍ଧପୁଟୁଳି ଖୋଲି ଦେଇଛି । ହଙ୍ଗେରୀ, ବୁଲଗେରିଆ, ଚେକୋସ୍ଲୋଭାକିଆ, ରୁମାନିଆ ଆଦି ଯୁଦ୍ଧଗ୍ରସ୍ତ ୟୁରୋପୀୟ ଭୂଖଣ୍ଡମାନ ମୁହାଁଇଛନ୍ତି ସବହାରା ଶାସନ ବ୍ୟବସ୍ଥା ପାଇଁ । ମାର୍କସ-ବାଦୀ, ଲେନିନବାଦୀ ଅର୍ଥନୀତିର ଦିଗଦର୍ଶନ ପୃଥିବୀର ଅର୍ଦ୍ଧାଧିକ ଜନତାକୁ ଆକୃଷ୍ଟ କରିପାରିଛି ।

ହୋ' ଏପରି ଏକ ଶୁଭ ମୁହୂର୍ତ୍ତ ଦେଖି ଚୀନ ସହିତ ବନ୍ଧୁତ୍ୱ ପାଇଁ ହସ୍ତ ପ୍ରସାରଣ କଲେ । ବହୁଦିନର ଈପ୍‌ସିତ ବାସନା ତାଙ୍କର ବାସ୍ତବ ରୂପ ନେବାକୁ ଯାଉଛି । ସେ ଜଣେ ବିଶ୍ୱବାଦୀ କମ୍ୟୁନିଷ୍ଟ । ବିଶ୍ୱ ବୈପ୍ଳବିକ ଆନ୍ଦୋଳନ ସହିତ ନିଜକୁ ସାମିଲ କରିବା ପାଇଁ ସେ ପାର୍ଟିକୁ ଅନେକବାର ନିର୍ଦ୍ଦେଶ ଦେଇ-ଛନ୍ତି । ତାଙ୍କର ଯୋଗୁଁ ଭିଏତନାମ କମ୍ୟୁନିଷ୍ଟ ପାର୍ଟି ଆନ୍ତର୍ଜାତୀୟ ବୈପ୍ଳବିକ ପ୍ରବାହରେ ମୁଖ୍ୟ ଜଳାଧାରର କାମ କରି ଚାଲିଛି । ଆନ୍ତର୍ଜାତିକ ସଂହତିକୁ ଶକ୍ତିଶାଳୀ କରିବା ପାଇଁ ସେ ପାର୍ଟିର କେନ୍ଦ୍ର କମିଟିକୁ ପରାମର୍ଶ ଦେଲେ "ଭିଏତନାମର ଜନତା ଫରାସୀ ଶ୍ରମିକ ଶ୍ରେଣୀ ସହିତ ଏକଜୁଟ ହେବା ଉଚିତ । ସୋଭିଏତ ୟୁନିଅନ, ଚୀନ ଏବଂ ପୃଥିବୀର ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ର ସହିତ ଏହାର ନିବିଡ଼ ସମ୍ପର୍କ ସ୍ଥାପିତ ହେବା ବିଧେୟ । ଉପନିବେଶୀ ଶାସନାଧୀନ ଜନତା ଏବଂ ଶାନ୍ତିକାମୀ ଜନଗଣରେ ସହୃଦୟତା ସହଯୋଗ ସେହିପରି ଜରୁରୀ" । ୧୯୫୦ ମସିହା ଜାନୁୟାରୀ ମାସରେ ହୋ' ନବ ପ୍ରତିଷ୍ଠିତ ଚୀନ ପ୍ରଜାତନ୍ତ୍ରର ବନ୍ଧୁତ୍ୱ ଲାଭ ଆଶାରେ ସରକାରୀ ସ୍ତରରୁ ଚିଠି ଲେଖିଲେ । ଉତ୍ତରର ପ୍ରତିଦାନରେ ଚୀନ ଗଣପ୍ରଜାତନ୍ତ୍ର ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ବିପ୍ଳବୀ ସରକାରଙ୍କୁ ଅବିଳମ୍ବେ ସ୍ୱୀକୃତି ଦେଲା । ତାର ମାତ୍ର ପନ୍ଦର ଦିନ ପରେ ପୃଥିବୀର ପ୍ରଥମ

ସମାଜବାଦୀ ରାଷ୍ଟ୍ର ସୋଭିଏତ ୟୁନିଅନ ଭିଏତନାମରେ ଥିବା ହୋ'-ଚି-ମିନ୍ ସରକାର ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କଲେ । ପରେ ପରେ ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ର ଭିଏତନାମ ସହିତ ସରକାରୀ ଯୋଗସୂତ୍ର ରଖିବା ପାଇଁ ଇଚ୍ଛା ଜଣାଇ ଦେଲେ ।

ଉପନିବେଶୀ ଶାସକ ଓ ସାମ୍ରାଜ୍ୟବାଦୀ ସାମରିକ ଶକ୍ତି ସହିତ ସମ୍ମୁଖ ଲଢ଼େଇ ପାଇଁ 'ଭିଏତମିନ' ଅନୁରୂପ ବଳ ସଂଗ୍ରହ କରି ପାରିଛି । ବିଶ୍ୱ ମୁକ୍ତି ବିପ୍ଳବରେ ସେ ଆଉ ଏକା ନୁହେଁ । ବାହାର ଦୁନିଆ ତାକୁ ଅକୁଣ୍ଠ ସାହାଯ୍ୟ ଦେବାପାଇଁ ହାତ ବଢ଼ାଇ ଦେଲାଣି । ଅର୍ଥନୀତି ଦିଗରୁ ଭିଏତନାମକୁ ବଳଶାଳୀ କରିବା ପାଇଁ ସୋଭିଏତ ୟୁନିଅନର ଭାରୀଶିଳ୍ପଯନ୍ତ୍ରପାତି, ଉତ୍ପାଦନକାରୀ ଅତ୍ୟାଧୁନିକ କଳକବଜା ନିୟମିତ ସରବରାହ ହେବାରେ ଲାଗିଛି । ସାମରିକ ବାହିନୀର ଖାଦ୍ୟାଭାବ, ଔଷଧ ଓ ଚିକିତ୍ସା ସମସ୍ୟା ଦୂରୀକରଣ ନିମନ୍ତେ ସୋଭିଏତ ୟୁନିଅନରୁ ଚୀନ ମାଧ୍ୟମରେ ଜିନିଷପତ୍ର ପ୍ରେରଣ କରାଯାଉଛି । ଶତ୍ରୁ ସହିତ ଲଢ଼ାଇ କରିବା ପାଇଁ ଆବଶ୍ୟକୀୟ ଯନ୍ତ୍ରପାତି ଚୀନ ସହଜ ଓ ବିନା ବ୍ୟୟରେ ଯୋଗାଇ ଦେଉଛି । ବାହାର ରାଷ୍ଟ୍ରରୁ ଏତେ ସାହାଯ୍ୟ ପାଇ ଭିଏତନାମର ଅର୍ଥନୀତି ଶକ୍ତିଶାଳୀ ହେବା ସଙ୍ଗେ ସଙ୍ଗେ ସେନାବାହିନୀ ଆଧୁନିକ ରଣକୌଶଳରେ ପାରଙ୍ଗମ ହୋଇ ଉଠିଛନ୍ତି । ସୀମାନ୍ତ ରକ୍ଷୀମାନେ ଅଗ୍ରୁନିକ ଆକ୍ରମଣ ପାଇଁ ସଜାଗ ରହିଛନ୍ତି ।

୧୯୫୦ ମସିହା ସେପ୍ଟେମ୍ବର ମାସରେ କମ୍ରେଡ୍ ହୋ' ସୀମାନ୍ତ ଅଞ୍ଚଳମାନଙ୍କରେ ଯୁଦ୍ଧ ଆରମ୍ଭ କରିଦେବା ପାଇଁ ସିଦ୍ଧାନ୍ତ କଲେ । ଭିଏତବାକ୍ ଅଞ୍ଚଳରେ ମୁତୟନ ହୋଇଥିବା ରାଷ୍ଟ୍ରୀୟ ସେନା ତଥା ଗରିଲା ବାହିନୀ ଖୁବ୍ ଶକ୍ତିଶାଳୀ ଥିଆନ୍ତି । ସେମାନଙ୍କର ଦକ୍ଷତା ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ହୋ' ଯୁଦ୍ଧାଭିଯାନ ଆରମ୍ଭ କରିଦେବା ପାଇଁ ନିର୍ଦ୍ଦେଶ ଦେଲେ । ଯୁଦ୍ଧ ଭୂମିରେ ଥିବା କମ୍ରେଡ୍‌ମାନଙ୍କୁ ହୋ' ଶେଷଥର ପାଇଁ ଆହ୍ୱାନ ଦେଲେ, "ଶତ୍ରୁକୁ ସମୂଳେ ବିନାଶ କରିବା ପାଇଁ ପରସ୍ପରକୁ ଉତ୍ସାହିତ କର, ବିଜୟ ସମ୍ବନ୍ଧରେ ଦୃଢ଼ ରୁହ" । ଏହି ବାଣୀ ପ୍ରଚାର କରିବା ପାଇଁ ସେ ମାଇଲ ପରେ ମାଇଲ ପଦବ୍ରଜରେ ବୁଲୁଛନ୍ତି । ପ୍ରାକ୍ ଶୀତର ମଧ୍ୟାହ୍ନ ଖରାରେ ମୁଣ୍ଡ ତାତି ଯାଉଛି । ସାରା ଶରୀରରୁ ସ୍ୱେଦବିନ୍ଦୁ ନିଗିଡ଼ି ପଡ଼ୁଛି ପଲ ପଲ ହୋଇ । ସେଥିପ୍ରତି ତାଙ୍କର ଖାତିର ନାହିଁ । ଏ ଜଙ୍ଗଲରୁ ସେ ଜଙ୍ଗଲ, ଏ ଘାଟୀରୁ ସେ ଘାଟୀ, ଏ ପାହାଡ଼ରୁ ସେ ପାହାଡ଼ ହୋଇ ସେ ବୁଲୁଛନ୍ତି ଭିଏତନାମର ସୀମାନ୍ତ ଅଞ୍ଚଳ । ପ୍ରତି ସ୍ଥାନରେ କିଛି କିଛି ସମୟ ଅତିବାହିତ କରି ନିଜେ ସେଥିରେ ଭାଗ ନେଉଛନ୍ତି । ଉତ୍ସାହିତ କରୁଛନ୍ତି ସବୁ ଯୋଦ୍ଧାମାନଙ୍କୁ ।

ସାମ୍ରାଜ୍ୟବାଦୀ ଶକ୍ତି ତଥା ଉପନିବେଶୀ ସାମରିକ ବାହିନୀର ଦାରୁଣ ପରାଜୟ ଘଟିଛି । ସୀମାନ୍ତ ଅଞ୍ଚଳରେ 'ପ୍ରତିରୋଧୀ ଗଣ ସାମ୍ମୁଖ୍ୟ' ନିଜର ପ୍ରତିପତ୍ତି ବିସ୍ତାର କରିଛି । ପ୍ରଥମ ଥର ଧାର୍ଯ୍ୟ ଭିଏତବାକ୍ ଜବନରେ ପ୍ରବଳ ପରାକ୍ରମୀ ପଶ୍ଚିମା ସାମ୍ରାଜ୍ୟବାଦୀ ହାତରୁ ବଳ ପ୍ରୟୋଗ କରି ଭିଏତନାମ ଛଡ଼ାଇ ଅଣାଯାଇଛି । ସୀମା ତୀରରେ ନିମୁକ୍ତ ଶତ୍ରୁ ସେନା ବାହିନୀ ଛତ୍ରଭଙ୍ଗ ହୋଇ ପଳାୟନ କରିଛନ୍ତି । ଶତ୍ରୁ ଶିବିରର ଦକ୍ଷତା ବିଶ୍ୱବିଦିତ ଥିଲେ ମଧ୍ୟ ସେମାନେ ଭିଏତନାମର ଜନବଳ ନିକଟରେ ନତ ସ୍ୱୀକାର କରିଛନ୍ତି ।

ସୀମାନ୍ତ ଜୟର ଗୌରବମୟ ବାର୍ତ୍ତାକୁ ଲୋକଙ୍କ ପାଖରେ ପହଞ୍ଚାଇ ସେମାନଙ୍କର ମନୋବଳକୁ ଦୃଢ଼ କରିବାକୁ ହୋ' ୧୯୫୧ ଜାନୁୟାରୀ ମାସରେ ପାର୍ଟିର ଦ୍ୱିତୀୟ ଜାତୀୟ ସମ୍ମିଳନୀ ଡକାଇଲେ । ଭିଏତବାକ୍ ସାମରିକ ଘାଟୀ ପାଖାପାଖି ସ୍ଥାନରେ ଏହି ସମ୍ମିଳନୀ ବସିବାର ସ୍ଥିର ହେଲା । ଦେଶର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧିମାନେ ଯୋଗ ଦେଇଥିଲେ । ସଦ୍ୟମୁକ୍ତ ଫେଡରାଲ ସୈନିକ ଓ ସମବେତ ପ୍ରତିନିଧିମାନଙ୍କର ବିଜୟଦୃପ୍ତ ମୁଖମଣ୍ଡଳ ଆଡ଼େ ଚାହିଁ ହୋ' ଘୋଷଣା କଲେ—''ଆମର ଏହି ସମ୍ମିଳନୀ ପ୍ରତିରୋଧର ଏକ ପ୍ରକାଶ୍ୟ ସମାବେଶ । ଏହାର ରାଜନୈତିକ କର୍ତ୍ତବ୍ୟ ହେଉଛି ଏହି ପ୍ରତିରୋଧକୁ ଅନ୍ତିମ ବିଜୟରେ ପହଞ୍ଚାଇବା ଏବଂ ଭିଏତନାମ ଶ୍ରମିକ ଦଳ ଗଠନ କରିବା'' ।

ସମ୍ମିଳନୀରେ ରାଜନୈତିକ ପ୍ରସ୍ତାବ ଆଗତ କରିଥିଲେ କମ୍ରେଡ୍ ହୋ-ଚି-ମିନ୍ । ସେ କହିଲେ ଯେ, ''ପ୍ରକୃତରେ ଆମ୍ଭେମାନେ ସବୁବେଳେ ସାମରିକ ଦିଗ ଏବଂ ବର୍ତ୍ତମାନର ଘଟଣାବଳୀ ପ୍ରତି କେବଳ ଗୁରୁତ୍ୱ ଦେଉ । ସେତେବେଳେ ଆମ ଶତ୍ରୁ ସେନାନୀ ଉଡ଼ାଜାହାଜ ଓ ମେସିନଗନ୍ ସହିତ ହାତତିଆରି ତୀର ବର୍ଚ୍ଛାଦ୍ୱାରା ଲଢ଼ାଇ କରୁଥିଲେ । କିନ୍ତୁ ଆମର ପାର୍ଟି ମାର୍କସ୍‌ବାଦ, ଲେନିନ୍‌ବାଦର ନୀତି ଅନୁସରଣ କରେ । ଆମେ କେବଳ ବର୍ତ୍ତମାନ ନେଇ ସନ୍ତୁଷ୍ଟ ରହି ପାରିବା ନାହିଁ । ଆମକୁ ଭବିଷ୍ୟତ ଆଡ଼େ ଚାହିଁବାକୁ ପଡ଼ିବ । ଜାତି ଏବଂ ଜନତାର ନୈତିକ ବଳ ଉପରେ ଆମର ଅଖଣ୍ଡ ବିଶ୍ୱାସ ରହିଛି । ସେଥିପାଇଁ ଆମେ ଗ୍ରାମ ପରେ ଗ୍ରାମ ଦେଇ ହତାଶବାଦୀ ମୁହଁଖୋରମାନଙ୍କୁ ସାମନା କରି ପାରିଲେ.........।''

ପାର୍ଟି ସଭ୍ୟ ଓ ଯୋଦ୍ଧାମାନଙ୍କ ମଧ୍ୟରେ ଥିବା ଦୋଷ, ଦୁର୍ବଳତା ସୁଧାରିବା ଦିଗରେ ସମ୍ମିଳନୀ ଅନେକ ସାହାଯ୍ୟ କରିଛି । କେତେକଙ୍କ ମଧ୍ୟରେ କ୍ଷୀଣ ହତାଶାର ଅଙ୍କୁର ମୁଣ୍ଡଟେକି ଥିଲା । ଆଉ କେତେକ ବିଜୟର ଆନନ୍ଦରେ ଆତ୍ମାଭିମାନୀ ହୋଇ ପଡ଼ିଥିଲେ । ଏ ଦୁଇ ତରଫର ସଭ୍ୟମାନଙ୍କୁ ସଠିକ ମାର୍ଗରେ ନେଇ ସଂଶୋଧନ କରିବାର ଦାୟିତ୍ୱ ରହିଲା ପାର୍ଟି କେନ୍ଦ୍ର କମିଟି ଉପରେ ।

ପାର୍ଟି ସମ୍ମିଳନୀ ବସିବା ସମୟକୁ ଇଣ୍ଡୋଚୀନରେ ମାର୍କିନ ଯୁକ୍ତରାଷ୍ଟ୍ର ଦୃଢ଼ ଅଡ୍ଡା ଜମାଇ ସାରିଥାଏ । ଦ୍ୱିତୀୟ ପୃଥିବୀ ସମରର ପରେ ନାତ୍ସି ଜର୍ମାନୀର ପରାଜୟ ହେଲା ସତ, ତା ବଦଳରେ ଆହୁରି ଉତ୍କଟ, ଆହୁରି ପରାକ୍ରମୀ ହୋଇ ଜନ୍ମ ନେଲା ଫାସିଷ୍ଟ ସଂପ୍ରସାରଣବାଦୀ ମାର୍କିନ୍ ଯୁକ୍ତରାଷ୍ଟ୍ର ।

ପ୍ରତିରୋଧୀ ସଂଗ୍ରାମର ପ୍ରଥମ ଦିନରୁ ଗ୍ରେଟ୍ ବ୍ରିଟେନ ଏବଂ ମାର୍କିନ ଯୁକ୍ତରାଷ୍ଟ୍ର ଫରାସୀ ଉପନିବେଶବାଦୀଙ୍କୁ ସାହାଯ୍ୟ କରି ଆସିଛନ୍ତି । କିନ୍ତୁ ୧୯୫୦ ମସିହା ପରଠାରୁ ଆମେରିକା ଯୁକ୍ତରାଷ୍ଟ୍ର ଗୋପନରେ ନ ରହି ପ୍ରକାଶ୍ୟଭାବେ ଭିଏତନାମ ରାଜନୀତିରେ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଦୁଇଟି ମୁଖ୍ୟ କାରଣରୁ ଯୁକ୍ତରାଷ୍ଟ୍ର ଆମେରିକା ଇଣ୍ଡୋଚୀନ ବା ଏସିଆ ମହାଦେଶର ଅଶାନ୍ତ ଅଞ୍ଚଳ ମଧ୍ୟରେ ପ୍ରବେଶ କରିଛି । ପ୍ରଥମତଃ ଦ୍ୱିତୀୟ ମହାସମରରେ ମାର୍କିନ ଯୁକ୍ତରାଷ୍ଟ୍ର ଯୁଦ୍ଧନ ପୃଥ ସାଜି ବିଶ୍ୱ ରାଜନୀତିରେ ଅପ୍ରତିଦ୍ୱନ୍ଦ୍ୱୀ ରାଷ୍ଟ୍ରରୂପେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲଭ କରିଛି । ଉଗ୍ର ପୁଞ୍ଜିବାଦୀ ଅର୍ଥନୀତି, ଅତ୍ୟାଧୁନିକ ରଣକୌଶଳ ତଥା ବୈଜ୍ଞାନିକ ପ୍ରଯୁକ୍ତି ବିଦ୍ୟାରେ ଦୁନିଆର ଅନ୍ୟ ସମସ୍ତ ରାଷ୍ଟ୍ରଙ୍କୁ ଟପି ଯାଇଛି । କୁବେରପୁରୀର ଐଶ୍ୱର୍ଯ୍ୟ ବଳରେ ନିଜ ସୀମା ପାର ହୋଇ ବିଦେଶୀ ରାଷ୍ଟ୍ର ଦଖଲ ପାଇଁ ନିଜକୁ ତିଆରି କରି ସାରିଛି । ଫ୍ରାନ୍ସ, ପର୍ତ୍ତୁଗାଲ, ଗ୍ରେଟ୍‌ବ୍ରିଟେନ ପରି ଉପନିବେଶମାନ ସୃଷ୍ଟି କରି ବିଶ୍ୱ ଅର୍ଥନୀତିକୁ ନିଜ ହାତମୁଠାରେ ରଖିବା ପାଇଁ ଚେଷ୍ଟା ଚଳାଇଛି ।

ଦ୍ୱିତୀୟରେ, ଚୀନରେ କୋମିଣ୍ଟାଙ୍ଗ ସରକାର ପତନ ଘଟିଲା ପରେ ଅଣକମ୍ୟୁନିଷ୍ଟ ଶକ୍ତି ତଥା ସାମ୍ରାଜ୍ୟଲିପ୍ସୁ ଶକ୍ତିବୃନ୍ଦ ଏସିଆ ମହାଦେଶରେ ନିଜର ପ୍ରତିଷ୍ଠା ହରାଇବାରେ ଲାଗିଛନ୍ତି । ଚୀନ ବିପ୍ଳବର ଐତିହାସିକ ସଫଳତା ଏସିଆ ମହାଦେଶରେ କମ୍ୟୁନିଜମ୍‌ର ପରିପ୍ରସାର ପାଇଁ ନୂତନ ପରିବେଶ ସୃଷ୍ଟି କରି ସାରିଛି । କମ୍ରେଡ଼ ମାଓ ସେ ତୁଂଙ୍କ ଦ୍ରୁତ ଅର୍ଥନୈତିକ ଯୋଜନା, ସାମାଜିକ ପରିବର୍ତ୍ତନ, ସାଂସ୍କୃତିକ ଅଭ୍ୟୁଦୟ, ଇଣ୍ଡୋଚୀନ ତଥା ବର୍ମା, ମାଳୟ, ଫିଲିପାଇନସ, ଶ୍ୟାମ ଏପରିକି ଭାରତବର୍ଷର ମୁକ୍ତି ସଗ୍ରାମ ପାଇଁ ଅଭିନବ କୌଶଳ ଆଣି ଦେଇଛି । ପୁଞ୍ଜିବାଦୀ ଦୁନିଆର ପ୍ରତିପତ୍ତି କ୍ରମଶଃ ମଳିନ ହୋଇ ଆସୁଛି । ଆମେରିକା ଯୁକ୍ତରାଷ୍ଟ୍ର ନିଜର ଧନତନ୍ତ୍ରୀ ସ୍ଥିତି ଓ ସାମ୍ରାଜ୍ୟବାଦୀ ଶାସନ ବ୍ୟବସ୍ଥାକୁ ବଞ୍ଚାଇ ରଖିବା ନିମନ୍ତେ ସାମ୍ୟବାଦର ଗତିପଥକୁ ରୋଧ କରିବା ନିହାତି ସ୍ୱାଭାବିକ । ୧୯୪୩ ମସିହାଠାରୁ ତତ୍‌କାଳୀନ ରାଷ୍ଟ୍ରପତି ଫ୍ରାଙ୍କଲିନ୍ ଡ଼ି ରୁଜଭେଲ୍ଟ ଇଣ୍ଡୋଚୀନ ଉପରେ ଆଖି ପକାଇଛନ୍ତି । ସେ ଜାଣନ୍ତି ଯେ ଇଉରୋପୀୟ ସାମ୍ରାଜ୍ୟର ସବୁଠୁଁ ଦୁର୍ବଳତମ

ଚୀନ୍ ହେଉଛି ଇଣ୍ଡୋଚୀନ । ତାକୁ କୌଣସି ପ୍ରକାରେ କରଗତ କରିପାରି ଥିଲେ ସମଗ୍ର ଏସିଆ ଭୂଖଣ୍ଡରେ ପ୍ରଭୁତ୍ୱ ଜାହିର କରିବାର ପଥ ଅତ୍ୟନ୍ତ ସୁଗମ ହୋଇଯିବ । ତେଣୁ ସେ ୧୯୪୩ ମାର୍ଚ୍ଚ ମାସରେ ବ୍ରିଟିଶ ପରରାଷ୍ଟ୍ର ସଚିବ ଆନ୍ଥୋନି ଏଡ଼େନଙ୍କ ପାଖକୁ ଚିଠି ଲେଖି ଇଣ୍ଡୋଚୀନକୁ ଆନ୍ତର୍ଜାତିକ ବ୍ୟବସ୍ଥାପକ ସମିତି ଅଧୀନରେ ରଖିବା ପାଇଁ ପରାମର୍ଶ ଦେଲେ । ସେତେବେଳେ ବିଶ୍ୱ ରାଜନୀତିର ଭାଗ୍ୟ ନିୟାମକ ହେଉଛି ଯୁକ୍ତରାଷ୍ଟ୍ର ଆମେରିକା । ଏହାପରେ ସ୍ୱତଃ ଫ୍ରାନ୍ସକୁ ଭିଏତନାମ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଆସି ଯୁକ୍ତରାଷ୍ଟ୍ର ନିଜେ ସେଥିରେ ସାମିଲ ହୋଇ ଯାଇଛି । ୧୯୪୦ ମସିହାରେ ଚୀନରେ ଚିଆଙ୍ଗ କାଇ ସେକ୍ ସେନାବାହିନୀର ପରାଜୟ ପରେ ଯୁକ୍ତରାଷ୍ଟ୍ର ଏସିଆ ମହାଦେଶରେ ଆଉ ଏକ ସ୍ଥାନ ଖୋଜି ବୁଲୁଛି ଶୁକ୍ର ଚଲାଇବା ପାଇଁ । ୧୯୫୦ ମସିହାରେ ଅନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସହାୟତାରେ ସେ କୋରିଆ ଆକ୍ରମଣ କଲା । କିନ୍ତୁ ମାଓ-ସେ-ତୁଙ୍ଗଙ୍କ ନେତୃତ୍ୱରେ ଚୀନର ସ୍ୱେଚ୍ଛାସେବୀ ବାହିନୀ ସେମାନଙ୍କର ଯୁଦ୍ଧଖୋର କ୍ଷୁଧାକୁ ଅଚିରେ ଭାଙ୍ଗି ଦେଇଥିଲେ । ସମ୍ପ୍ରତି ଧର୍ମପନ୍ତ୍ରି ମାର୍କିନ ଦସ୍ୟୁ ଭିଏତନାମରେ ନିଜର ବିପୁଳ ସୈନ୍ୟବଳ ଠୁଳ କରିଛି । ଅଦୂର ଭବିଷ୍ୟତରେ ଭିଏତନାମ ଶାସନ-ଗାଦିରୁ ଫରାସୀମାନଙ୍କୁ ତଡ଼ି ନିଜ ଆସ୍ଥାନ ଦୃଢ଼ କରିବା ତାର ଲକ୍ଷ୍ୟ । ହୋ' ଏବଂ ପାର୍ଟି କେନ୍ଦ୍ର କମିଟି ତାର ଏହି ଅପକୌଶଳ ସମ୍ବନ୍ଧରେ ସଚେତନ । ରାଜନୈତିକ ବିବରଣୀ ପାଠ କଲାବେଳେ ହୋ' ଦୃଢ଼ତାର ସହିତ ଘୋଷଣା କଲେ ଯେ "ଫରାସୀ ଉପନିବେଶବାଦୀ ମାନଙ୍କୁ ସମୂଳେ ଧ୍ୱଂସ କର । ମାର୍କିନ ଯୁକ୍ତରାଷ୍ଟ୍ରର ଅନୁପ୍ରବେଶକାରୀମାନଙ୍କୁ ପରାସ୍ତ କର । ଏକତା ଏବଂ ସମ୍ପୂର୍ଣ୍ଣ ମୁକ୍ତି ହାସଲ କର, ବିଶ୍ୱଶାନ୍ତିକୁ ରକ୍ଷା କର ।"

ନୂତନ ଆନ୍ତର୍ଜାତିକ ରାଜନୈତିକ ପରିସ୍ଥିତି ଏବଂ ଦାୟିତ୍ୱ ସମ୍ବନ୍ଧରେ ଏକ ସୁଦୀର୍ଘ ବିବରଣୀ ଦେଇ କମ୍ରେଡ଼ ହୋ' କହିଥିଲେ ଯେ, "ଆମ ଜନସାଧାରଣ ଅତୀବ ଦେଶପ୍ରେମୀ । ଏହା ଆମ ଜାତିର ମୂଲ୍ୟବାନ ପରମ୍ପରା । ଯେତେବେଳେ ଆମ ପିତୃଭୂମି ଆକ୍ରମଣର ସମ୍ମୁଖୀନ ହୋଇଛି, ସେତେବେଳେ ଏହି ଦେଶପ୍ରେମର ଉତ୍ତାଳ ତରଙ୍ଗ ସକଳ ବାଧାବିଘ୍ନକୁ ଭସାଇ ନେଇଛି । ଆକ୍ରମଣକାରୀ ବିଶ୍ୱାସଘାତକ ମାନଙ୍କୁ ନିଜର ଅତଳ ବକ୍ଷରେ ଚାପି ଦେଇଛି" ।

ସମ୍ମିଳନୀ ଫେବ୍ରୁୟାରୀ ମାସ ଏଗାର ତାରିଖରୁ ଉଣେଇଶ ତାରିଖ ପର୍ଯ୍ୟନ୍ତ ଚାଲିଲା । ଦୁଇଶହ ଅଠାନବେ ଜଣ ପ୍ରତିନିଧି ଏବଂ ଦକ୍ଷିଣ, ଉତ୍ତର, କେନ୍ଦ୍ର ଭିଏତନାମ ତଥା ବିଦେଶୀ ରାଷ୍ଟ୍ରର ପ୍ରତିନିଧିତ୍ୱ କରୁଥିବା ତେପନ ଜଣ ପରାମର୍ଶଦାତା ସଭ୍ୟ ଏଥିରେ ଯୋଗ ଦେଇଥିଲେ । କମ୍ରେଡ଼ ଟନ ଡୁକ୍ ଥାଙ୍ଗ ଏହି ସମ୍ମିଳନୀର

ସ୍ୱାଗତ ଭାଷଣ ଦେଇଥିଲେ । କମ୍ରେଡ୍ ହୋ-ଚି-ମିନ୍ ରାଜନୈତିକ ବିବରଣୀ ମାଧ୍ୟମରେ ଆଗତ କରିଥିଲେ ବିଗତ କୋଡ଼ିଏ ବର୍ଷର ରାଜନୈତିକ ଇତିହାସ, ମୁକ୍ତି ଆନ୍ଦୋଳନର କ୍ରମବର୍ଦ୍ଧମାନ ଧାରା ଏବଂ ବିଶ୍ୱ ବୈପ୍ଳବିକ ପ୍ରକ୍ରିୟାର ମୁଖ୍ୟ ଅବଦାନ ସମ୍ବନ୍ଧରେ ପ୍ରଧାନ ଘଟଣାବଳୀ ସମୂହ । ତା ପରେ ପାର୍ଟିର ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଇସ୍ତାହାର ଗ୍ରହଣ କରାଯାଇଥିଲା । ଏହି ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀ ପାର୍ଟିର ନୂତନ ନାମକରଣ କରାଗଲା "ଭିଏତନାମ ଶ୍ରମିକ ଦଳ ।" ସର୍ବସମ୍ମତ କ୍ରମେ କମ୍ରେଡ୍ ହୋ-ଚି-ମିନ୍ ଏଥର ସଭାପତି ଏବଂ କମ୍ରେଡ୍ ଟ୍ରୁଙ୍ଗ ଚିନ୍ ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ ।

ପାର୍ଟିର ରାଜନୈତିକ ପ୍ରସ୍ତାବାବଳୀ ମଧ୍ୟରୁ ଗୋଟିଏ ମୁଖ୍ୟ ପ୍ରସ୍ତାବ ଥିଲା ଜାତୀୟ ଗଣତାନ୍ତ୍ରିକ ଆନ୍ଦୋଳନର ଧାରାକୁ ଯେତେଶୀଘ୍ର ସମ୍ଭବ ସମାଜବାଦୀ ଆନ୍ଦୋଳନର ସ୍ରୋତରେ ସାମିଲ କରାଇବା । ଏଥିପାଇଁ କମ୍ରେଡ୍ ହୋ'ଙ୍କର ନିର୍ଦ୍ଦିଷ୍ଟ ପରାମର୍ଶ ଥିଲା ସହୋଦର ରାଷ୍ଟ୍ର ଓ ପ୍ରଗତିଶୀଳ ଜନତା ସହିତ ନିବିଡ଼ ସମ୍ପର୍କ ପ୍ରତିଷ୍ଠା କରିବା ଏବଂ କାମ୍ବୋଡ଼ିଆ, ଲାଓସର ଜାତୀୟ ମୁକ୍ତି ପାଇଁ ଚାଲିଥିବା ପ୍ରତିରୋଧୀ ସଂଗ୍ରାମକୁ ଯଥାସମ୍ଭବ ସାହାଯ୍ୟ ପ୍ରଦାନ କରିବା । ଏହି କାର୍ଯ୍ୟକୁ ସୁଗମ ଓ ସଫଳ କରିବା ପାଇଁ କାମ୍ବୋଡ଼ିଆ, ଖେମର ଓ ଲାଓସର ଜନତା ମଧ୍ୟରେ ଏକ ମିଳିତ ଯୁକ୍ତ ସାମୁଖ୍ୟ ଗଠନ କରିବାର ପ୍ରସ୍ତାବ ସେ ଦେଲେ । ସମଦର୍ଶୀ ପନ୍ଥୀ ସହୋଦର ସଦସ୍ୟଙ୍କର ମିଳିତ ଅଭିଯାନ ଶତ୍ରୁପକ୍ଷର ଆକ୍ରମଣ, ହସ୍ତକ୍ଷେପ ଓ ବଳପ୍ରୟୋଗ ବିରୁଦ୍ଧରେ ବିଜୟୀ ହୋଇ ପାରିବ ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ । ପାର୍ଟି କଂଗ୍ରେସର ଦ୍ୱିତୀୟ ସମ୍ମିଳନୀ ସରିଲା । ଶ୍ରମିକ ଦଳକୁ ନୂତନ ଉଦ୍ଦୀପନା, ଉତ୍ସାହ ଦେଇ ଗଢ଼ିବାର ଗୁରୁ ଦାୟିତ୍ୱ ବହନ କରି ପ୍ରତିନିଧିମାନେ ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ କଲେ ।

ପରବର୍ତ୍ତୀ ମାସରେ, ୧୯୫୧ ମସିହା ମାର୍ଚ୍ଚ ତିନି ତାରିଖ ଦିନ 'ଭିଏତମିନ୍' ଏବଂ 'ଲିନଭିଏତ'ର ମିଳିତ ବୈଠକ ବସିଲା । ଜାତୀୟ ଏକତାକୁ ଅଖଣ୍ଡ ରଖି ପ୍ରତିରୋଧୀ ସାମ୍ମୁଖ୍ୟକୁ ଆହୁରି ବଳଶାଳୀ କରିବା ଥିଲା ଏହି ବୈଠକର ପ୍ରଧାନ ଲକ୍ଷ୍ୟ । ଭିଏତନାମରେ ବିଭିନ୍ନ ଶ୍ରେଣୀକୁ ନେଇ ଦଳ, ଉପଦଳ ଗଢ଼ା ହୋଇଥିଲେ ମଧ୍ୟ ସମାଜ ବ୍ୟବସ୍ଥାର ଦୁଇ ମୁଖ୍ୟ ଖୁଣ୍ଟିଆଲି ଶ୍ରମିକଶ୍ରେଣୀ ଓ କୃଷକ ଶ୍ରେଣୀ- ମଧ୍ୟରେ ବ୍ୟାପକ ଗଣ ସାମ୍ମୁଖ୍ୟ କେବେ ମୁଣ୍ଡ ଟେକି ପାରି ନ ଥିଲା । ଏହି ଦୁଇ ଶ୍ରେଣୀକୁ ମିଶାଇ ଗୋଟିଏ ଦଳରେ ପରିଣତ କରିବା ପାଇଁ ସିଦ୍ଧାନ୍ତ ନିଆଗଲା । ଶ୍ରମିକଶ୍ରେଣୀର ନେତୃତ୍ୱରେ ମିଳିତ ସାମ୍ମୁଖ୍ୟ ଫରାସୀ ବିରୋଧୀ ପ୍ରତିରୋଧୀ ମେଣ୍ଟ ସହିତ ନିଜକୁ ସାମିଲ କଲା । ଫଳରେ ଭିଏତନାମରେ ଆଉ କୌଣସି

ଶ୍ରେଣୀ ବିଭାଗ ରହିଲା ନାହିଁ । ଆବାଳବୃଦ୍ଧବନିତା ବ୍ୟାପକ ଜାତୀୟ ଗଣ ସ୍ରୋତରେ ମିଳାଇ ଗଲେ ।

ଶତ୍ରୁପକ୍ଷ ଦେଖିଲେ ଭିଏତନାମ ସର୍ବାତ୍ମକ ପ୍ରଗତି ପଥରେ ଅଗ୍ରେଇ ଚାଲିଛି । ସୀମାନ୍ତ ଅଞ୍ଚଳରେ ଲଢ଼େଇ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ଅର୍ଥନୀତି, ଉତ୍ପାଦନ, ଶିଳ୍ପ, କୃଷି ଓ ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ଲାଭ କରୁଛି । ତାର ଏହି ଦ୍ରୁତ ଧାବମାନ ଗତିକୁ ରୋକିବା ପାଇଁ ଫରାସୀମାନେ ସତତ ଚେଷ୍ଟା ଚଳାଇଛନ୍ତି । ହେଲେ ବିଜୟର ସମ୍ଭାବନା ସୁଦୂର ପରାହତ । କାରଣ ଭିଏତନାମକୁ ସେମାନଙ୍କର ପ୍ରଭାବ ଲୋପ ପାଇଛି । ସେ ସ୍ଥାନରେ ଅସିଛି ମାର୍କିନ ଦସ୍ୟୁ ଆମେରିକା ଯୁକ୍ତରାଷ୍ଟ୍ର ।

ଇନ୍ଦୋଚୀନ ଭୂଖଣ୍ଡ, ବିଶେଷକରି ଏସିଆ ମହାଦେଶ ମଧ୍ୟରେ ଯୁକ୍ତରାଷ୍ଟ୍ରର ଅନୁପ୍ରବେଶ ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରାଯାଉ ।

୧.୯୫୦ ମସିହା ଅକ୍ଟୋବର ମାସରେ ଭିଏତବୋକ୍‌ଠାରେ ହୋଇଥିବା ସୀମାନ୍ତ ଯୁଦ୍ଧରେ ଫ୍ରାନ୍‌ସର ସେନାବାହିନୀ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ । ସେତେବେଳେ ତାଙ୍କୁ କାଓବାଙ୍ଗ, ଲାଙ୍ଗସନ, ଲାଓକାଇ, ଥାଇ-ନୁଏନ ଏବଂ ହୋଆ ବିନ୍ ଆଦି ପାଞ୍ଚୋଟି ପ୍ରଦେଶ ହରାଇବାକୁ ପଡ଼ିଥିଲା । ଏହି ସମୟରେ ଏତେଗୁଡ଼ିଏ ଉପନିବେଶ ହରାଇ ଥିବାରୁ ସ୍ୱାଭାବିକତଃ ଭିଏତନାମରେ ଫ୍ରାନ୍‌ସର ଅର୍ଥନୈତିକ ମାନଦଣ୍ଡ ଦୋହଲି ପଡ଼ିଥିଲା । ରାଗ ଏବଂ ପ୍ରତିଶୋଧର ବଶବର୍ତ୍ତୀ ହୋଇ ସେମାନେ ସମ୍ପୂର୍ଣ୍ଣ ଯୁଦ୍ଧର ଡାକରା ଦେଲେ । ଜେନେରାଲ ଡି ଲଟର ଡି ଟାସଗ୍ନି ଭିଏତନାମରେ ଫରାସୀ ସେନାଧ୍ୟକ୍ଷରୂପେ ନିଯୁକ୍ତି ପାଇଲେ । ସେତେବେଳେ ସେମାନେ ବିତାଡ଼ିତ ବାଓଡାଇର ସଖୀକୃଣେଇ ସରକାରକୁ ଭିଏତନାମର ବିପ୍ଲବୀ ସରକାର ସହିତ ଲଢ଼ାଇ କରିଦେବା ପାଇଁ ଚାହିଁଲେ । ବାଓଡାଇ କିଛି ସମୟ ପାଇଁ କମ୍ରେଡ୍ ହୋ'ଙ୍କର ରାଜନୈତିକ ପରାମର୍ଶଦାତାଭାବେ କାର୍ଯ୍ୟ କରିଥିଲେ । ସେ ଉପନିବେଶବାଦୀଙ୍କର ଖଳଚକ୍ରାନ୍ତର ଶିକାର ହେଲେ ଏବଂ ହୋ-ଚି-ମିନଙ୍କ ସହିତ ଥିବା ତାଙ୍କର ବୁଝାମଣାକୁ ସରକାରୀଭାବେ ରଦ୍ଦ କରିଦେଲେ । ହ୍ୱେଙ୍କଠାରେ ଆଉ ନିଜକୁ ଭିଏତନାମ ସାମ୍ରାଜ୍ୟର ସମ୍ରାଟ ଘୋଷଣା କଲେ । ସାଇଗନଠାରେ ସମ୍ରାଟଙ୍କ ତରଫରୁ ସମାନ୍ତରାଳ ପ୍ରତିଦ୍ୱନ୍ଦ୍ୱୀ ସରକାର ଗଠନ କରାଗଲା । ଏହି ସରକାରକୁ ନ୍ୟାୟସଙ୍ଗତ କରିବା ନିମନ୍ତେ ଫରାସୀମାନେ ସ୍ୱତନ୍ତ୍ର ରୂପରେ ନିଯୁକ୍ତ କଲେ । ଭିଏତନାମ ସାମ୍ରାଜ୍ୟର ପୁରାତନ ରାଜଧାନୀ ହ୍ୟୁ, ହାଇଫଙ୍ଗ, ହାନୋଇ ଏବଂ ଲୋହିତ ନଦୀ ଡେଲ୍ଟା ଭୂମିରୁ ବିପ୍ଲବୀ ସରକାରର ସୈନ୍ୟବଳକୁ ହଟାଇ ସେଠାରେ ନିଜର ସାମରିକ ବାହିନୀ ମୂତୟନ କଲେ । ବାଓଡାଇଙ୍କ ଆଗମନ ଫଳରେ କେତେକ ରାଜଭକ୍ତ ପ୍ରଜା

ତାଙ୍କ ଶାସନ ପ୍ରତି ଅନୁଗତ୍ୟ ସ୍ୱୀକାର କରି ଭିଏତନାମର ଫରାସୀ ସରକାରଠାରୁ ସମର୍ଥନ ଉଦ୍ଧାରି ଆଣିଲେ । ଫଳରେ ଭିଏତନାମ ମଧ୍ୟରେ ଏକ ବିରାଟ ପ୍ରାଚୀର ଦଣ୍ଡାୟମାନ ହେଲା । ଭିଏତନାମୀ ଲଢ଼ିଲେ ଭିଏତନାମର ବିରୁଦ୍ଧରେ । ଭାଇ ଭାଇ ମଧ୍ୟରେ ଚାଲିଲା ନିତ୍ୟ କଳହ ଏବଂ ଦ୍ୱନ୍ଦ୍ୱ । 'ଭାଗ ଭାଗ କରି ଶାସନ କରିବା ନୀତିରେ' ଫରାସୀ ଉପନିବେଶବାଦୀମାନେ ଭିଏତନାମକୁ କବଳିତ କରିବାକୁ ଚାହିଁଲେ । କିନ୍ତୁ ସେତେବେଳେ ତାଙ୍କର ନିଜ ସାମର୍ଥ୍ୟ ଉପରୁ ଭରସା ତୁଟି ଯାଇଥିଲା । ଇଣ୍ଡୋଚୀନ ଉପନିବେଶରେ ସାମ୍ରାଜ୍ୟ କାୟମ ରଖିବା ପାଇଁ ଆବଶ୍ୟକୀୟ ପରିମାଣ ସୈନିକ ଶକ୍ତି ତାର ନ ଥିଲା । ତେଣୁ ସେ ତାର ମାର୍କିନ ମୁନିବଙ୍କର ଶରଣାପନ୍ନ ହେଲା । ଯୁକ୍ତରାଷ୍ଟ୍ର ଏହି ସୁଯୋଗ ପାଇଁ ବହୁତ ଦିନରୁ ଅପେକ୍ଷା କରି ରହିଥିଲା । ନିମନ୍ତ୍ରଣକୁ ସାଦରେ ଗ୍ରହଣ କରି ସେ ତତ୍କାଳୀନ ବିଶ୍ୱବିଦିତ କୂଟନୀତିଜ୍ଞ ଡୋନାଲଡ଼୍ ହିଟ୍‌ଙ୍କୁ ବାଓଡ଼ାଇ ସରକାରର ରାଷ୍ଟ୍ରଦୂତ କରି ପଠାଇଲା । ଡୋନାଲଡ଼୍‌ଙ୍କ ସହିତ ଯୁକ୍ତରାଷ୍ଟ୍ର ଆମେରିକାର ସେନାମୁଖ୍ୟ ଜେନେରାଲ ମଧ୍ୟ ଭିଏତନାମ ଆସିଲେ । ଫରାସୀ ଉପନିବେଶ ଭିଏତନାମରେ ମାର୍କିନ ଯୁକ୍ତରାଷ୍ଟ୍ରର ପ୍ରବେଶ ଏହିପରି ।

ଯୁଦ୍ଧର ପ୍ରଥମ ପର୍ବରେ ଆମେରିକୀୟମାନେ ଫ୍ରାନ୍ସକୁ ଅସ୍ତ୍ର ଓ ଅର୍ଥ ସାହାଯ୍ୟ ଦେଇଥିଲେ । ସେତେବେଳେ ଭିଏତନାମ ଯୁଦ୍ଧରେ ଫ୍ରାନ୍ସ ତରଫରୁ ବ୍ୟବହୃତ ସମୁଦାୟ ଅସ୍ତ୍ରଶସ୍ତ୍ର, ରନ୍ଧାଖାଦ୍ୟ, ଯୁଦ୍ଧସାମଗ୍ରୀ, ପୋଷାକ ପରିଚ୍ଛଦର ଶତକଡ଼ା ୮୦ ଭାଗ ଆସୁଥିଲା ଓ୍ୱାଶିଂଟନରୁ । ଏହି ପରିମାଣ ୧୯୫୦ ମସିହା ପରେ ଆହୁରି ବୃଦ୍ଧି ପାଇଛି କାରଣ ସେତେବେଳଠାରୁ ମାର୍କିନ ଯୁକ୍ତରାଷ୍ଟ୍ର କୋରିଆ ଯୁଦ୍ଧରେ ପରାଜିତ ହୋଇ ଇଣ୍ଡୋଚୀନକୁ ଶେଷ ଆଶ୍ରା କରି ପଡ଼ିରହିଛି । ସେହିଦିନରୁ ଆମେରିକାର ସାହାଯ୍ୟ ଉଡ଼ାଜାହାଜ, ନୌକା, ଟ୍ରକ୍, ନାପାମ୍ ବମ ଆକାରରେ ଫରାସୀ ଯୁଦ୍ଧପାଣ୍ଠିକୁ ଆସିଛି । ସମୟକ୍ରମେ ଫରାସୀ ଯୁଦ୍ଧବାହିନୀରୁ ଦେଶୀୟ ପ୍ରଭାବ ଲୋପ ପାଇ ବିଦେଶୀ ମାର୍କିନ ପ୍ରଭାବ ଶକ୍ତିଶାଳୀ ହୋଇ ଉଠିଛି ।

ମାର୍କିନ ଯୁକ୍ତରାଷ୍ଟ୍ର ଏକ ସୁଧଖୋର ଜାତି । ସେ ଯେ ବିନା ସ୍ୱାର୍ଥରେ ଏତେଗୁଡ଼ିଏ ସାହାଯ୍ୟ ଫ୍ରାନ୍ସକୁ ଦେଇଥିଲା ତା' ନୁହେଁ । ଯେତେ ସାହାଯ୍ୟ ଋଣ ରୂପରେ ଆସୁଥିଲା, ତାର ସୁଧହାର ଥିଲା ଅପେକ୍ଷାକୃତ ଅଧିକ । ଯୁଦ୍ଧ ଚାଲିଥିବା ସୀମାନ୍ତ ଅଞ୍ଚଳମାନଙ୍କରେ ମାର୍କିନ ଯୁଦ୍ଧ ସାମଗ୍ରୀର ଚାହିଦା ଥିଲା ଖୁବ୍ ବେଶୀ । ଆମେରିକା ଯୁକ୍ତରାଷ୍ଟ୍ରର ପେଟ୍ରୋଲିୟମ ତେଲ କମ୍ପାନୀ, ଫ୍ଲୋରେଡ଼ ଫସ୍‌ଫେଟ୍, ରବର କମ୍ପାନୀ ଏବଂ ଅନ୍ୟାନ୍ୟ ବଡ଼ ବଡ଼ ବ୍ୟବସାୟୀ ପ୍ରତିଷ୍ଠାନମାନ ଭିଏତନାମ ବଜାରକୁ କବଳିତ କରିସାରିଛନ୍ତି । କାରଣ ପ୍ରଥମରୁ ଅଳ୍ପମୂଲ୍ୟରେ ଆକର୍ଷଣୀୟ ଦ୍ରବ୍ୟପଦାର୍ଥ ଯୋଗାଇ ସେମାନେ ଖାଉଟିମାନଙ୍କର ମନ କିଣି ସାରିଥିଲେ ।

କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ଯେ ଦୁଇ ଧର ବୁଲିଥିବା ଫରାସୀ ହାତ କଳାଇରେ ଅଛି ଚେତନ ନାହିଁ । ଭିତ ଜମିଛି ମାର୍କିନ ଛପ୍ପଣୀ ଦ୍ୱାରରେ । ଫରାସୀ ଶାସକଗୋଷ୍ଠୀ ଏଥିରେ ଆତଙ୍କିତ ହୋଇ ପଡ଼ିଲେ ସତ, ହେଲେ ବେଳକୁ ସମସ୍ତ ଗଣ୍ଡି ଗଳିଣି । ଫ୍ରାନ୍ସର ପ୍ରତିକ୍ରିୟାଶୀଳ ଶିବିରର ମୁଖପତ୍ର 'ଲେ ମନଡେ'ର ପ୍ରଥମ ପୃଷ୍ଠାରେ ଦିନେ ଦେଖାଗଲା, "ଫରାସୀ ପୁଞ୍ଜିବାଦୀ ଶାସନ ବ୍ୟବସ୍ଥା ଆଜି ମାର୍କିନ ପୁଞ୍ଜିବାଦକୁ ବାଟ ଛାଡ଼ି ଦେଉଛି" ।

ଭିଏତନାମରେ ଆଜି ମାର୍କିନ ଯୁକ୍ତରାଷ୍ଟ୍ର । ତା'ପାଇଁ ଫରାସୀ ଓ ଭିଏତନାମୀ ଉଭୟ ସମାନ । ପ୍ରକାର ଭେଦରେ ଉଭୟଙ୍କର ଚରିତ୍ର ଭିନ୍ନ । କିନ୍ତୁ ଭିଏତନାମୀ ଜନତା ନିଜ ଦେଶରେ ଅନ୍ୟ କୌଣସି ବିଦେଶୀକୁ ବାଟ ଛାଡ଼ିବାକୁ ରାଜି ନାହାନ୍ତି । ଶତ୍ରୁ ଶିବିର ତୁଳନାରେ ସେ ଅଧିକ ବଳଶାଳୀ । ସାଥିରେ ରହିଛି ପଡ଼ୋଶୀ ଚୀନର ସତ୍ତର କୋଟି ଜନତାର ଅକୁଣ୍ଠିତ ସାହାଯ୍ୟ ।

୧୯୫୮ ମସିହା ପରଠାରୁ 'ପ୍ରତିରୋଧ ଶିବିରର ଶକ୍ତି' ସବୁଦିଗରୁ ବୃଦ୍ଧି ପାଉଛି । ସାମରିକ କ୍ଷେତ୍ରରେ ଅଭୂତପୂର୍ବ ସଫଳତା ଲାଭ କରୁଛି । ପ୍ରଧାନ ପ୍ରଧାନ ଘାଟିମାନଙ୍କୁ ଶତ୍ରୁ କବଳରୁ ରକ୍ଷା କରିପାରୁଛି । ସାମରିକ କ୍ଷେତ୍ରରେ ଅଧିକ ରଣ କୌଶଳ ପାରମ୍ପରିକ ସମରନୀତିକୁ ଅତିକ୍ରମ କରି ନୂତନ ରେକର୍ଡ଼ ସୃଷ୍ଟି କରୁଛି । ଶତ୍ରୁପକ୍ଷର ସ୍ୱପ୍ନରାଜ୍ୟ ଭବିଷ୍ୟତ ପାଇଁ ଅନିଶ୍ଚୟତା ସ୍ରୋତ ସଞ୍ଚାର କରୁଛି । ଉପନିବେଶବାଦୀ ଆକ୍ରମଣକାରୀମାନେ ଏକାଧିକବାର ପରାସ୍ତ ହୋଇ ସୀମାନ୍ତ ଅଞ୍ଚଳରେ ସୈନ୍ୟ ସମାବେଶ କରୁଛନ୍ତି । ସୀମାନ୍ତ ପ୍ରଦେଶମାନଙ୍କରେ ଯୁଦ୍ଧର ଘନଘଟା ସର୍ବଦା ଲାଗି ରହିଛି ।

୧୯୫୨ ମସିହାରେ ପାର୍ଟି କେନ୍ଦ୍ର କମିଟିର ବୈଠକ ବସିଲା । ପାର୍ଟି, ସେନାବାହିନୀ ଏବଂ ଗଣତନ୍ତ୍ରିକ କାର୍ଯ୍ୟକ୍ରମକୁ ନୂତନ ଓ ବାସ୍ତବ ରୂପ ଦେବା ପାଇଁ କମ୍ରେଡ଼ମାନେ ଦାବି କଲେ । ପରିବର୍ତ୍ତିତ ପରିସ୍ଥିତିକୁ ବୁଝି ସେନାବାହିନୀର ସାମର୍ଥ୍ୟ ସଙ୍ଗେ ସଙ୍ଗେ ପାର୍ଟିର ସବଳ ନେତୃତ୍ୱକୁ ଅପ୍ରତିହତ ରଖିବା ଥିଲା ଏହି ବୈଠକର ମୁଖ୍ୟ ଆଲୋଚ୍ୟ ବିଷୟ । ସେତେବେଳେ କୃଷକ ଶ୍ରେଣୀ ଥିଲା ସମାଜର ସବୁଠୁଁ ସଂଖ୍ୟାଗରିଷ୍ଠ ଶ୍ରେଣୀ । ସେମାନଙ୍କୁ ପାର୍ଟି ପ୍ରତି ଅନୁରକ୍ତ କରାଇ ସେମାନଙ୍କର ଦେଶପ୍ରୀତିକୁ ଜାତୀୟ ଗଣତାନ୍ତ୍ରିକ ବିପ୍ଳବରେ ବିନିଯୋଗ କରାଇବା ଥିଲା ମୂଳ ଉଦ୍ଦେଶ୍ୟ । କମ୍ରେଡ଼ ହୋ' ଏହି ବିଶାଳ ଜନଶକ୍ତିକୁ ପ୍ରତିରୋଧ ସଂଗ୍ରାମର ମୁଖ୍ୟ ଜଳୁଆଳୀ କରିବା ପାଇଁ ବୁଝିଲେ । ତେଣୁ ପାର୍ଟି କେନ୍ଦ୍ର କମିଟିର ସୁପାରିଶ ଅନୁଯାୟୀ କମ୍ରେଡ଼ ହୋ' ଘୋଷଣା କଲେ, "କୃଷକ ଶ୍ରେଣୀ ଜାତିର ଏକ ବିରାଟ ଅଂଶ, ସେ ଶ୍ରମିକ ଶ୍ରେଣୀର ଅନୁଗତ ସହକର୍ମୀ । ପ୍ରତିରୋଧ ଏବଂ

ଜାତିଗଠନକୁ ସଫଳ କରାଇବାକୁ ହେଲେ, ପ୍ରକୃତ ମୁକ୍ତି ଏବଂ ଏକତା ହାସଲ କରିବାକୁ ହେଲେ କୃଷକ ଶ୍ରେଣୀ ଉପରେ ବିଶ୍ୱାସ ସ୍ଥାପନ କରିବାକୁ ପଡ଼ିବ ”।

କୃଷକ ଶ୍ରେଣୀକୁ ହାତରେ ରଖିବା ପାଇଁ ପାର୍ଟି କେନ୍ଦ୍ର କମିଟି ଏବଂ କମ୍ରେଡ୍ ହୋ’ ଭୂ-କର, ଜଳକର, କୃଷି ଟିକସ ହାର କମାଇ ଦେବା ପାଇଁ ସରକାର ଉପରେ ଚାପ ପକାଇଲେ। ଜମିଦାରମାନଙ୍କର ଶୋଷଣ ହ୍ରାସ ପାଇଲା। କୃଷକ ଶ୍ରେଣୀ ଉତ୍ପାଦନ କ୍ଷେତ୍ରରେ ନିଜ ମାଲିକାନା ଜାହିର କଲେ । ତେଣୁ ସରକାରୀ ନୀତି, କର୍ମପନ୍ଥା ପ୍ରତି ସେମାନଙ୍କର ଆନୁଗତ୍ୟ ବୃଦ୍ଧି ପାଇଲା। ପ୍ରତ୍ୟକ୍ଷ ପ୍ରତିରୋଧରେ ଭାଗ ନ ନେଲେ ମଧ୍ୟ ଅନ୍ତରାଳରେ ରହି ସେମାନେ ସେନାବାହିନୀକୁ ସାହାଯ୍ୟ କଲେ, ୧୯୫୩ ମସିହା ଡିସେମ୍ବର ମାସରେ ପ୍ରେସିଡେଣ୍ଟ ହୋ'ଙ୍କ ଅଧ୍ୟକ୍ଷତାରେ ଜାତୀୟ ଆସେମ୍ବ୍ଲି ଭୂସଂସ୍କାର ଆଇନ ପ୍ରଣୟନ କରିବାକୁ ବାଧ୍ୟ ହେଲା। କାରଣ ଶ୍ରମିକ ଶ୍ରେଣୀ ସହିତ କୃଷକ ଶ୍ରେଣୀର ସହଯୋଗର ଆବଶ୍ୟକତା ଜରୁରୀ ହୋଇ ଉଠିଲା। କମ୍ରେଡ୍ ହୋ’ ଜାତୀୟ ପରିଷଦର ସଭା ମଞ୍ଚ ଉପରୁ ଘୋଷଣା କଲେ “ସାମନ୍ତବାଦୀ ଯୁଆଳି ମଧ୍ୟରୁ କୃଷକ ଶ୍ରେଣୀକୁ ମୁକ୍ତ କରିବାର ସମୟ ଆସି ପହଞ୍ଚିଛି। ବିଜୟ ଲାଭ ପଥରେ ପ୍ରତିରୋଧୀ ସଂଗ୍ରାମକୁ ଶାଣିତ କରିବା ପାଇଁ କୃଷକ ଶ୍ରେଣୀ ପରି ସମାଜର ଏକ ବିରାଟ ଅଂଶ ବିଶେଷକୁ ଶକ୍ତିଶାଳୀ କରିବା ଅପରିହାର୍ଯ୍ୟ”। ଭୂସଂସ୍କାର ଆଇନକୁ ଗ୍ରାମାଞ୍ଚଳରେ ଜନପ୍ରିୟ କରାଇବା ଉଦ୍ଦେଶ୍ୟରେ ହୋ’ କୃଷକ ସମାଜର ବିଭିନ୍ନ ଶ୍ରେଣୀ ସହିତ ଭିନ୍ନ ଭିନ୍ନ ଦିଗରୁ ସମ୍ପର୍କ ପ୍ରତିଷ୍ଠା କରିବାକୁ ଚାହିଁଲେ।

ସାମନ୍ତବାଦୀ ଶୋଷଣର ଅବସାନ ଘଟାଇବା ପାଇଁ ସେ ସମଗ୍ର କୃଷକ ସମାଜକୁ ନିବେଦନ ଜଣାଇଲେ। ତାଙ୍କ ମତରେ ଜାତିର ଉତ୍ପାଦନ ବଢ଼ାଇ ପ୍ରତିରୋଧୀ ସାମ୍ମୁଖ୍ୟକୁ ଆତ୍ମନିର୍ଭରଶୀଳ କରିବାକୁ ହେଲେ କୃଷକ ଶ୍ରେଣୀ ସହିତ ନିବିଡ଼ ସମ୍ପର୍କ ପ୍ରତିଷ୍ଠା କରିବାକୁ ହେବ। କିନ୍ତୁ କୃଷକ ସମାଜ ମଧ୍ୟରେ ଥିବା ସୂକ୍ଷ୍ମ ଶ୍ରେଣୀଗତ ପାର୍ଥକ୍ୟକୁ ସବୁବେଳେ ଦୃଷ୍ଟିପଥରେ ରଖିବାକୁ ପଡ଼ିବ । କାରଣ କୃଷକଶ୍ରେଣୀ ମଧ୍ୟରେ ବିଭିନ୍ନ ଶ୍ରେଣୀର ସ୍ୱାର୍ଥ ଏକ ନୁହେଁ । ସେମାନଙ୍କ ମଧ୍ୟରେ ପାରସ୍ପରିକ ସ୍ୱାର୍ଥ ଭିନ୍ନତା ଥିବା ସତ୍ତ୍ୱେ ସେମାନେ ଯେ ପ୍ରତିରୋଧୀ ସଂଗ୍ରାମର ଅବିଚ୍ଛେଦ୍ୟ ଅଙ୍ଗ ଏହି ସତ୍ୟକୁ ଉପସ୍ଥାପିତ କଲେ ହୋ’-ଚି-ମିନ୍। ଦରିଦ୍ର, ମଧ୍ୟବିତ୍ତ ଏବଂ ସମ୍ପତ୍ତିବାନ କୃଷକମାନଙ୍କ ସହିତ ସାମ୍ମୁଖ୍ୟର କି ପ୍ରକାର ସମ୍ପର୍କ ରହିବ ସେ ବିଷୟରେ ସରକାରୀ ନିଷ୍ପତ୍ତି ନିଆଗଲା। କମ୍ରେଡ୍ ହୋ’ ହେଲେ ଏହି ସିଦ୍ଧାନ୍ତର ପୁରୋଧା । ଦରିଦ୍ର ଭୂମିହୀନ କୃଷକ ପ୍ରତିରୋଧୀ ସାମ୍ମୁଖ୍ୟର ଏକାନ୍ତ ବିଶ୍ୱସ୍ତ। କିନ୍ତୁ ସମସ୍ତ କ୍ରମେ ମଧ୍ୟବିତ୍ତ କୃଷକ ଓ ଧନୀକୃଷକମାନଙ୍କ ସହିତ ନିବିଡ଼ତା ରକ୍ଷାକର

ସାମନ୍ତବାଦୀଶ୍ରେଣୀ ସ୍ୱାର୍ଥ ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରଖିବାକୁ ହେବ । ତେବେ ଜାତୀୟ ପ୍ରତିରୋଧର ପଥ ଆହୁରି ପରିଷ୍କାର ହୋଇଯିବ ।

ଦେଖାଗଲା ୧୯୫୩ ମସିହା ମଧ୍ୟରେ ଭିଏତନାମର ଯୁଦ୍ଧଗ୍ରସ୍ତ ବାୟୁମଣ୍ଡଳ ଆହୁରି ଉତ୍ତପ୍ତ ହୋଇଯାଇଛି । ସେହି ଉତ୍ତପ୍ତ ବାଲୁକାପ୍ରାନ୍ତରକୁ ଅତିକ୍ରମ କରିବା ପାଇଁ ଭିଏତନାମରେ ଆବଶ୍ୟକୀୟ ପରିବେଶ ସୃଷ୍ଟି ହୋଇ ସାରିଛି । ଜାତୀୟ ପ୍ରତିରୋଧର ସ୍ତର ଯେପରି ବ୍ୟାପକ, ସୁଦୂରପ୍ରସାରୀ ଓ ବିକାଶମୁଖୀ ହେବା କଥା ସେ ଦିଗରେ ମଧ୍ୟ ଉଲ୍ଲେଖଯୋଗ୍ୟ ସଫଳତା ମିଳି ପାରିଛି ।

୧୯୫୩ର ବସନ୍ତ ସମୟ । ଶୀତ ଶେଷର ବସନ୍ତ । ଭାରତ ମହାସାଗରର ଉପକୂଳରୁ ଭାସି ଆସୁଛି ମନ୍ଦ ମଧୁର ବାୟୁ ହିଲ୍ଲୋଳ । ଭିଏତନାମ ହସୁଛି । ପ୍ରଶାନ୍ତ ଗମ୍ଭୀର ତାର ହସ । ଆଉ କେତେ ଦିନ ପରେ ଭିଏତନାମରେ ଚିର ବସନ୍ତର ରାଜ୍ୟ ପ୍ରତିଷ୍ଠା ହେବ । ସୀମାନ୍ତଅଞ୍ଚଳମାନଙ୍କରେ ଜାତୀୟ ପ୍ରତିରୋଧ ସୈନ୍ୟ ଗୋଟିଏ ପରେ ଗୋଟିଏ କରି ଘାଟୀ ଦଖଲ କରି ଚାଲିଛନ୍ତି । ନମଦର୍ଭିନାନ ବିଜୟର ଆନନ୍ଦରେ ପୁରପଲ୍ଲୀ ଉଚ୍ଛୁଳି ପଡ଼ୁଛି । ଶସ୍ୟଶ୍ୟାମଳା ଉତ୍ତର ଟିଙ୍କୋଣ ଭୂମିରେ ଫରାସୀ ସୈନ୍ୟବାହିନୀ ଚରମ ପରାଜୟର ସମ୍ମୁଖୀନ ହୋଇଛନ୍ତି । ହଜାର ହଜାର ସୈନ୍ୟ ପ୍ରାଣବଳି ଦେଇଛନ୍ତି ସେଠାରେ । ମାର୍କିନ ନାପାମ ବମର ମହାପରାକ୍ରମୀ ତେଜସ୍କ୍ରି ସ୍ୱଶବ ବୃଥା ପ୍ରମାଣିତ ହୋଇଛି । ସର୍ବୋପରି ଇଣ୍ଡୋଚୀନ ମୁକ୍ତ ଭୂମିରେ ଫ୍ରାନ୍ସ ତଥା ତାର ସମରସଙ୍ଗୀ ମାର୍କିନ ଯୁକ୍ତରାଷ୍ଟ୍ର ପକ୍ଷାଘାତ ରୋଗୀ ପରି ଅଚଳ ହୋଇ ପଡ଼ିଛନ୍ତି ।

କେତୋଟି ମାତ୍ର ଦିନରେ ୩୯୦,୫୦୦ ଆକ୍ରମଣକାରୀ ସୈନ୍ୟ ଭିଏତମିନ ଗରିଲା ବାହିନୀ ହାତରେ ବନ୍ଦୀ ହୋଇଛନ୍ତି । ଅଧିକାଂଶ ସେଥିରୁ ମୃତ । ୨ କୋଟି ଡଲାର ମାର୍କିନ ରାଜସ୍ୱ ଯୁଦ୍ଧାଗ୍ନିରେ ଭସ୍ମୀଭୂତ ହୋଇ ଯାଇଛି । ମିଳିତ ଜାତିସଙ୍ଘରେ ଯୁକ୍ତରାଷ୍ଟ୍ରର ଗୌରବମୟ ଐତିହ୍ୟ ଉପରେ ଆଞ୍ଚ ଲାଗିଛି । ସ୍ୱାଧୀନତାକାମୀ, ଗୋଷ୍ଠୀନିରପେକ୍ଷ ରାଷ୍ଟ୍ରମାନଙ୍କ ପାଖରେ ସେ ଅତ୍ୟନ୍ତ ଲଜ୍ଜିତବୋଧ କରୁଛି । କାରଣ ସେ ପରାଜିତ ଶିବିରର ଅଧିନାୟକ ।

ଗତ ଅଗଷ୍ଟ-ସେପ୍ଟେମ୍ବର ମାସରେ ଇଟାଲୀ କମ୍ୟୁନିଷ୍ଟ ପାର୍ଟି ଏବଂ ଫରାସୀ କମ୍ୟୁନିଷ୍ଟ ପାର୍ଟିର ବଳିଷ୍ଠ ନେତୃତ୍ୱରେ କୃଷକ ମଜଦୁର ଶ୍ରେଣୀ ନିଜ ସ୍ୱାର୍ଥ ଦାବୀକୁ ଦାବ୍ୟସ୍ତ କରିବା ପାଇଁ ଉଭୟ ଦେଶରେ ଅଖଣ୍ଡ ଧର୍ମଘଟର ଡାକରା ଦେଇଛନ୍ତି । ସେମାନଙ୍କୁ ସମର୍ଥନ ଜଣାଇ ବିଶ୍ୱ ମେହେନତି ଜନତା ନିଜ ନିଜ ଦେଶରେ ଅନୁରୂପ ଶ୍ରମିକ ଆନ୍ଦୋଳନ ପାଇଁ ସଜାଗ ହୋଇ ରହିଛନ୍ତି । ବିଶ୍ୱବ୍ୟାପୀ ଏହି ସଫଳତା ପଡ଼ୋଶୀ ତଥା ଦୂରପ୍ରାଚ୍ୟରେ ଥିବା ପରାଧୀନ ଉପନିବେଶ ଜାତିଗୁଡ଼ିକୁ

ମୁକ୍ତି ବିପ୍ଳବ ପଥରେ ଇନ୍ଧନ ଯୋଗାଇଛି । ଫଳରେ ମାଳୟ, ଫିଲିପାଇନ, ଉତ୍ତର ଆଫ୍ରିକା, କେନ୍ଦ୍ର ଆଫ୍ରିକା ଏବଂ ଗୁଇନାରେ ସ୍ୱାଧୀନତା ଆନ୍ଦୋଳନରେ ନିଆଁ ଅତି ପ୍ରବଳଭାବରେ ଜଳି ଉଠିଛି । ଏହାର ତାତି କେବଳ ଭିଏତନାମ କାହିଁକି ସମଗ୍ର ବିଶ୍ୱକୁ ବ୍ୟାପି ଯାଇଛି ।

ସେଥିପାଇଁ ଅକ୍ଟୋବର ମାସରେ ପୃଥିବୀର ୭୯ ଦେଶରୁ ପ୍ରାୟ ଆଠ କୋଟିରୁ ଅଧିକ ଶ୍ରମଜୀବୀ ବିଶ୍ୱ ଶ୍ରମିକ କଂଗ୍ରେସର ତୃତୀୟ ଅଧିବେଶନରେ ମିଳିତ ହୋଇଛନ୍ତି । ଜାତି, ଦେଶ, ଶ୍ରେଣୀ ନିର୍ବିଶେଷରେ ସେମାନେ ଗୋଟିଏ ସ୍ୱର ଉଠାଇଛନ୍ତି—

"ଏହି ବର୍ଷ ଡିସେମ୍ବର ମାସ ୧୯ ତାରିଖଟି ଭିଏତନାମରେ ଆକ୍ରମଣକାରୀ ମୁକ୍ତିର ଶେଷତିଥି ଏବଂ ବୀର ଭିଏତନାମୀ ଜନତା ସହିତ ବିଶ୍ୱ ଶାନ୍ତିକାମୀ ଶ୍ରମଜୀବୀ ମଣିଷର ଅପୂର୍ବ ସଂହତି ଦିବସ" ।

କୋଟି ଶ୍ରମିକ ଅନ୍ତରର ଏହି ଦରଦୀ ରକ୍ତମଖା ବାଣୀ ଭିଏତନାମରେ ପହଞ୍ଚିଛି । ଭିଏତନାମର ରକ୍ତରଞ୍ଜିତ ସୀମାନ୍ତରେ ଲଢ଼ୁଆ ଜଓ୍ୱାନ ଏହି ଆଗ୍ନେୟ ଶପଥକୁ ଆଶୀର୍ବାଦର ପୁଷ୍ପଗୁଚ୍ଛ ଭଳି ଟେକି ନେଇଛି ନିଜ ହାତରେ । କେତେ ଅନ୍ତରର ଶୁଭ କାମନା ତା ପଛରେ !! କେତେ ନୟନର ସଞ୍ଚିତ ଅଶ୍ରୁ ବାରି ଅଛି ତା ପାଇଁ !! ବିଶ୍ୱ ମହୋଦଧି କୂଳରୁ ବିଜୟଦୀପ୍ତ ଆଲିଙ୍ଗନ ତା ପାଇଁ ଅପେକ୍ଷା କରିଛି । ମୁକ୍ତିର ପ୍ରଳୟ ଗର୍ଭରେ ଝାମ୍ପିଦେବା ପାଇଁ ତାର ଜନ୍ମ !!



୯୭

# ଡିଏନ୍ ବିଏନ୍ ଫୁ

ବିଂଶ ଶତାବ୍ଦୀର ପଞ୍ଚ ଦଶକ । ସମୟର ଉଜାଣି ଯମୁନା ପଛକୁ ଫେରୁଛି । ସମ୍ମୁଖରେ ଜନବିରଳ ପଥ । ଅନ୍ଧାରି ଆକାଶରୁ ଘନ ବିଷାଦ ଖଣ୍ଡ ଛିଣ୍ଡି ପଡ଼ୁଛି । ବାହାରେ ନିସ୍ତବ୍ଧ ରାତି । ପ୍ରଭାତ ଆସିବା ପାଇଁ ଅନେକ ଡେରି । ନୂତନ ପ୍ରଭାତ ଆସିବ । ବିଗତ ଦିନ ପରି ମସୀମଖା ପୁରାତନ ସେ ନୁହେଁ । ଇତିହାସର ଉଦର ଚିରି ସେ ନୂତନ ଜନ୍ମ ନେବ । ନିଜେ ରଚନା କରିବ ଅଭିନବ, ଅସ୍ଥାୟୁ, ଆଗାମୀ କାଳର କାବ୍ୟ । ସେ କାବ୍ୟ ହେବ, ଆହୁରି ଚଳମାନ, ଆହୁରି ଜୀବନ୍ତ ଓ ଛନ୍ଦମୟୀ ।

ଏ କାହାଣୀ ୧୯୫୪ ମସିହାର । ବିଶ୍ୱ ପରିବାରରେ ବିସର୍ଜନର ସଙ୍କଟ କାଳ । ଏ ଦୁନିଆ କେଉଁ ଆଡ଼େ, କେଉଁ ବାଟେ ଯିବ ? ଜନଗଣର ସ୍ୱାଧିକାର ବିରୁଦ୍ଧରେ ନିତ୍ୟ ଦଣ୍ଡାୟମାନ ରାଜତନ୍ତ୍ରୀ, ପ୍ରତିକ୍ରିୟାଶୀଳ, ସମରବାଦୀ ସୁଂବେଗ ସହିତ ନାଁ ଉପନିବେଶବାଦୀ, ସାମ୍ରାଜ୍ୟଲିପ୍ସୁ ଶାସନତନ୍ତ୍ରକୁ ନିୟନ୍ତ୍ରିତ କରି ସର୍ବହରା ଶ୍ରେଣୀ ସଂଗ୍ରାମର ଭିତ୍ତିପ୍ରସ୍ତର ସ୍ଥାପନ କରିଥିବା ନିପୀଡ଼ିତ, ନିର୍ଯ୍ୟାତିତ ଶ୍ରମଜୀବୀ ମଣିଷର ସହିତ ! ଏହି ପ୍ରଶ୍ନର ଉତ୍ତାଳ ଊର୍ମି ଆଜି ସାରା ପୃଥିବୀକୁ ଟଳମଳ କରୁଛି । ତଥାପି ସେ ନୀରବ ! ନିରୁତ୍ତର ! ନିୟମତାନ୍ତ୍ରିକତା ର ମୋହ ତୁଟିବା ପାଇଁ କେତେ ବିଳମ୍ବ ସତେ !!

ଏ ପୃଥିବୀ, ଏ ଆକାଶ କଥା କହି ପାରେନା । ହେଲେ ଏ ମଣିଷ, ଏ ସମାଜ ବଡ଼ ପ୍ରଗଲ୍‌ଭ । ବଡ଼ ମର୍ମାନ୍ତକ ତାର ଇଚ୍ଛାଶକ୍ତି । ତାର ବିପ୍ଳବ ହିଁ ଇତିହାସ । ତାର ନିଷ୍ପତ୍ତି ହିଁ ଇତିହାସର ଧାରା ପ୍ରବାହ ।

ପୃଥିବୀ ଦୁଇଭାଗରେ ବିଭକ୍ତ ହୋଇଛି । ମଣିଷ ସମାଜର ସ୍ୱାର୍ଥକାମୀ ସିଦ୍ଧାନ୍ତ ଅନୁଯାୟୀ ଗୋଟିଏ ପଟରେ ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ତାର ଅନ୍ୟାନ୍ୟ ଚୋଳଜଣ ସଙ୍ଗୀ । ସେମାନଙ୍କ ମଧ୍ୟରେ ଅନ୍ୟତମ ଫରାସୀ ଓ ଇଂରେଜମାନେ । ସେମାନେ ଅତୀତର । ଶତାବ୍ଦୀର ପ୍ରଥମ ପୁରୁଷ ସେମାନେ । ବର୍ତ୍ତମାନ ସେମାନେ ଗତ ଇତିହାସର ଛିନ୍ନପୃଷ୍ଠା । ବିଗତ ପଚିଶ ବର୍ଷ ଧରି ସେମାନେ ଏହି ଦୁନିଆରେ ଆତଯାତ ହୋଇଛନ୍ତି । ସେମାନଙ୍କୁ ଇତିହାସ ଆଜି ଚାହେଁନା । ସେମାନେ ପୁରାତନ

ଚୂର୍ଣ୍ଣ ପରାଜିତ । ପରନ୍ତୁ ସେ ନିଜମାନଙ୍କୁ ଶାନ୍ତିପ୍ରେମୀ ବହୁରୂପୀ ତା' ବୋଲିରେ ଧ୍ୟାନ ଦଏନା । ଗତ କୋରିଆ ଯୁଦ୍ଧରେ ମାର୍କିନ ଯୁକ୍ତରାଷ୍ଟ୍ର ହାରି ଯାଇଛି । ତାର ପ୍ରଭୂତ ଧନବଳ ଓ ଜନବଳ ଧ୍ୱଂସସ୍ତୁପରେ ପରିଣତ ହୋଇଛି । ସେଇ ଦେଶ-ଗୁଡ଼ିକ ତା'ର ଇସାରାରେ ଚାଲି ଆସୁଥିଲେ ସେମାନଙ୍କର ଦର୍ପ ଚୂନା ହୋଇ-ଯାଇଛି । ସେ ସମସ୍ତେ ଦନ୍ତହୀନ ବ୍ୟାଘ୍ରପରି ସମର ଭୂମିରେ ଗର୍ଜନ ଛାଡ଼ୁଛନ୍ତି । ପ୍ରତିଶୋଧର ଅଗ୍ନିଦାହରେ ସର୍ବାଙ୍ଗ ଶରୀର ଜଳି ଉଠୁଛି । ନିଜ କ୍ଷମତାର ସୀମା ଅତିକ୍ରମ କରିବାକୁ ଯାଇ ମାର୍କିନଦସ୍ୟୁ ଉଦ୍‌ବେଳକରେ ଧରା ପଡ଼ୁଛି । ଏସିଆ ମହାଦେଶ ତାର ଲୁଣ୍ଠନର ସାମଗ୍ରୀ । ସେ ତାକୁ ଖଣ୍ଡ ଖଣ୍ଡ କରି ଦେବାକୁ ଚାହେଁ ।

ଗଣ ପ୍ରଜାତନ୍ତ୍ରୀ ଚୀନକୁ ଜାତିସଂଘରେ ସ୍ଥାନ ମିଳନାହିଁ । ମାର୍କିନ ଯୁକ୍ତରାଷ୍ଟ୍ର ଭେଟୋ ପ୍ରୟୋଗ କରି ତାର ପ୍ରବେଶ ପଥରୋଧ କରିଛି । ମୁକ୍ତ ଡମ୍ବରର ପରିପ୍ରଚାରକ ପଥରେ ବିରାଟ ଏକ ପ୍ରସ୍ତର ଖଣ୍ଡ ଲଦି ଦେଇଛି ସେ । ଜାପାନୀ ଶକ୍ତିକୁ ପୁନରୁଜ୍ଜୀବିତ କରିବା ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର ପକ୍ଷରୁ ଅଜସ୍ର ଅର୍ଥ ଯୋଗାଣ ଚାଲିଛି । ଦ୍ୱିତୀୟ ମହାସମରରେ ପରାଜିତ ଜାପାନ ଏସିଆ ମହାଦେଶର ସାମ୍ରାଜ୍ୟବାଦୀ ରଥଚକ୍ରକୁ ପଛରୁ ଭିଡ଼ି ଧରୁଛି ।

କୋରିଆ ଯୁଦ୍ଧର ପ୍ରତିଶୋଧ ନିଆହେବ ଭିଏତନାମରେ । ଏହି ଆଶାରେ ମାର୍କିନ ଯୁଦ୍ଧବାଦୀମାନେ ବଳୀୟାନ । ବାଓଡାଇ ସରକାରକୁ ସାହାଯ୍ୟ କରିବା ଛଳରେ ସେମାନେ ଭିଏତନାମ ମଧ୍ୟରେ ପ୍ରବେଶ କରିଛନ୍ତି । ସୀମାନ୍ତ ତଥା ଅଭ୍ୟନ୍ତରର ଘାଟୀମାନଙ୍କରେ ସୈନ୍ୟ ସମାବେଶ କରିବା ପାଇଁ ଫରାସୀମାନଙ୍କ ତରଫରୁ ସରକାରୀ ପ୍ରବେଶପତ୍ର ନେଇଛନ୍ତି ସେମାନେ । ଫରାସୀମାନେ ଭଲକୁ ଜାଣନ୍ତି, ଭିଏତନାମରୁ ସେମାନଙ୍କର ଦିନକାଳ ସରି ଆସୁଛି । ପୁଞ୍ଜିବାଦୀ ପ୍ରତିଯୋଗିତାରେ ସେମାନେ ମାର୍କିନ ଯୁକ୍ତରାଷ୍ଟ୍ରର ବହୁ ପଛରେ ପଡ଼ିଛନ୍ତି । କିନ୍ତୁ ଇଣ୍ଡୋଚୀନକୁ କରଛଡ଼ା କରିବାର ନୁହେଁ । କାରଣ ଉପନିବେଶ ଶାସନର ଶ୍ରେଷ୍ଠ ଅଂଶ ଏହି ଇଣ୍ଡୋଚୀନ । ପ୍ରାଚ୍ୟର ସୁନ୍ଦରୀ, ଏସିଆ ମହାଦେଶର କୁବେରପୁରୀ ।

ଜେନେରାଲ ଭୋ ୟୁଏନ ଗିଆପ ବର୍ତ୍ତମାନ ଭିଏତନାମ ଶ୍ରମିକଦଳ କେନ୍ଦ୍ର ରାଜନୈତିକ ପଲିଟବ୍ୟୁରୋର ଗଣ୍ୟମାନ୍ୟ ସଦସ୍ୟ । ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ଉପସଭାପତି ତଥା ବିପ୍ଳବୀ ସରକାରର ପ୍ରତିରକ୍ଷା ବିଭାଗ ମନ୍ତ୍ରୀ, ଭିଏତନାମ ଜାତୀୟ ପ୍ରତିରୋଧ ସାମ୍ମୁଖ୍ୟର ସୁଦକ୍ଷ ସେନାପତି ।

୧୯୫୪ ମସିହା ଫେବୃୟାରୀ ମାସ ସୁଦ୍ଧା ଯେଉଁ ଘଟଣାସବୁ ଘଟିଯାଇଛି ସେଥିରୁ ସହଜରେ ଅନୁମେୟ ଯେ ଭିଏତନାମ ଯୁଦ୍ଧରେ ଫରାସୀମାନଙ୍କର ପରାଜୟ

ଅବଶ୍ୟମ୍ଭାବୀ । ଭିଏତନାମ ଗଣ ବାହିନୀ ନିକଟରେ ସେମାନଙ୍କର ସୈନ୍ୟମାନେ ଅକାମୀ ହୋଇ ପଡ଼ିଛନ୍ତି । ଗୋଟିଏ ପରେ ଗୋଟିଏ କରି ସୀମାନ୍ତ ପ୍ରଦେଶ ସୁଦ୍ଧିକୁ ହରାଇବାରେ ଲାଗିଛନ୍ତି । ଆପୋଷ ଆଲୋଚନା ମାଧ୍ୟମରେ ସନ୍ଧି ଚୁକ୍ତି ବ୍ୟତୀତ ଅନ୍ୟ ଉପାୟ କିଛି ଦିଶୁ ନାହିଁ । ହୋ'-ଚି-ମିନଙ୍କ ନିକଟକୁ ଏହି ବାର୍ତ୍ତା ପଠାଇ ଦିଆଗଲା । କିନ୍ତୁ ଆମେରିକା ଯୁକ୍ତରାଷ୍ଟ୍ର ଏ ପ୍ରକାର ଶାନ୍ତିପୂର୍ଣ୍ଣ ସମାଧାନର ପକ୍ଷପାତୀ ନ ଥିଲା । କୋରିଆର ଦୁଃଖଦାୟକ ଅତୀତର ଅଭିଜ୍ଞତାରେ ଠିଆ ହୋଇଥିଲେ ମଧ୍ୟ ନିଜର ଆଧୁନିକ ସମରସଜ୍ଜା ଉପରେ ତାର ଗଭୀର ବିଶ୍ୱାସ । ଉଡ଼ାଜାହାଜ ବୋମା, ପରମାଣୁ ବୋମା ଓ ନୀପାମ୍‌ର ସର୍ବଗ୍ରାସୀ ଶକ୍ତି ତୁଳନାରେ ଭିଏତନାମ କେଉଁ ଛାର !!

ଶାନ୍ତି ଚୁକ୍ତିର ପ୍ରସ୍ତାବ ଭସାଇରେ ରହିଗଲା । ୧୯୫୩ ମସିହା ମଝାମଝିରେ ଯୁକ୍ତରାଷ୍ଟ୍ର ଆମେରିକାର ପରାମର୍ଶ ଅନୁଯାୟୀ ସେନାଧ୍ୟକ୍ଷ ମିଃ ନାଭାରେ ଫରାସୀ ସୈନ୍ୟ ବାହିନୀର ଦାୟିତ୍ୱ ନେଲେ । ଆସନ୍ତା ଅଠର ମାସ ମଧ୍ୟରେ ମାର୍କିନ ଫ୍ରାନ୍ସ ମିଳିତ ଯୁଦ୍ଧ ମେଣ୍ଟର ଯୋଜନା ଅନୁଯାୟୀ ସମଗ୍ର ଇଣ୍ଡୋଚୀନକୁ ବଳପୂର୍ବକ ଦଖଲ କରିବା ହେଲା ଏହି ଅଭିଯାନର ଲକ୍ଷ୍ୟ । ନାଭାର ଯୋଜନାର ପ୍ରକୃତ ବିଧାତା ହେଉଛି ମାର୍କିନ ଯୁକ୍ତରାଷ୍ଟ୍ର । ଇଣ୍ଡୋଚୀନ ଦଖଲ କାର୍ଯ୍ୟରେ ନାଭାର ଯୁଦ୍ଧ ଯୋଜନାକୁ ଫଳପ୍ରଦ କରିବାକୁ ଯୁକ୍ତରାଷ୍ଟ୍ରର ସର୍ବୋଚ୍ଚ ନେତୃତ୍ୱ ମନପ୍ରାଣ ଅଜାଡ଼ି ଦେଲେ । ଇଣ୍ଡୋଚୀନ ପାଇଁ ସ୍ୱତନ୍ତ୍ର ରଣ କୌଶଳ ଅବଲମ୍ବନ କରିବାକୁ ସେମାନେ ଚାହିଁଲେ । କାରଣ ଭିଏତନାମ ପକ୍ଷରୁ ଯେଉଁମାନେ ଯୁଦ୍ଧ ପରିଚାଳନା କରୁଥିଲେ ସେମାନେ ଦୁର୍ଦ୍ଧର୍ଷ ଗରିଲା । ଆଧୁନିକ ରଣନୀତି ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ଅନ୍ଧାର ଗିରିପଥରୁ ସେମାନେ ଏପରି ପାଲଟା ଆକ୍ରମଣ କରିପାରନ୍ତି ଯାହାକୁ ସାମନା କରିବା ପାଇଁ ବିଶ୍ୱର ସର୍ବଶକ୍ତିମାନ ସେନାବାହିନୀ ଅସମର୍ଥ !

ନାଭାରଙ୍କ ସୈନ୍ୟବାହିନୀ ପ୍ରଥମେ ଡାକ୍ ବୋ ଫିକୋଲ୍ଡେମି ଅଞ୍ଚଳରେ ଛାଉଣୀ ପ୍ରତିଷ୍ଠା କଲେ । ଭିଏତନାମର ଦକ୍ଷିଣ କେନ୍ଦ୍ର ଅଞ୍ଚଳକୁ ବ୍ୟାପି ବିଏନ୍ ଫି ଧିଏନ ଘାଟି ମାନଙ୍କରେ ଅଜସ୍ର ଫରାସୀ ସୈନ୍ୟ ମୁତୟନ କରାଗଲା । ପ୍ରାୟ ୫୦୦୦ ବଛା ବଛା ସୈନିକଙ୍କୁ ନାଭାରେ ନାମ ବୋ ଠାରେ ଏକତ୍ରିତ କରାଗଲା । ସେମାନଙ୍କର ଯୋଜନା ହେଲା ଏକା ଥରକେ ଭିଏତନାମକୁ ଚାରିପଟରୁ ଅକ୍ରମଣ କରି ପ୍ରତିରୋଧୀ ସାମର୍ଥ୍ୟକୁ ବଳାତ୍ ଚୁର୍ଣ୍ଣ କରି ପକାଇବା । କିନ୍ତୁ ସୌଭାଗ୍ୟର କଥା ଭିଏତନାମର ପ୍ରାକୃତିକ ସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ ଧରଣର । ସୁଉଚ୍ଚ ପାହାଡ଼ ପର୍ବତରେ ଘେରା ତାର ସୀମାନ୍ତ ଅଞ୍ଚଳ । ସରହଦ କୂଳେ କୂଳେ ଘନ ମାଳଜଙ୍ଗଲର ପ୍ରାଚୀର । ଅଗମ୍ୟ ଗିରିସଙ୍କଟ ମଧ୍ୟରେ ତାହାର ଅବସ୍ଥିତି । ପଶ୍ଚିମା ସମତଳ ଭୂମିରୁ

ଅମଦାଙ୍କ ହୋଇଥିବା ଯେତିକି ସାମନ୍ତ ତାର କଣ୍ଟକିତ ଅରଣ୍ୟ ପଥକୁ ପାଶେହେବେ କିପରି !

ବହୁତ ପୂର୍ବରୁ ସେନାପତି ଜମ୍ପେତ୍ତ ଗିଅପଙ୍କ ନିର୍ଦ୍ଦେଶରେ ହଜାର ହଜାର ଗରିଲା ଯୁଦ୍ଧପୂର୍ଣ୍ଣ ଘାଟି ଯୁକ୍ତ କରି ରହିଛନ୍ତି । ଅଦୃଶ୍ୟ ବସ୍ତୁ ପରି ଆଚ୍ଛାଦନ କରିଛନ୍ତି ସାରା ଭିଏତନାମକୁ । ହାତରେ ଶର, ବର୍ଚ୍ଛା, ଧନୁଶରଠାରୁ ଆରମ୍ଭ କରି ପଡ଼ୋଶୀ ରାଷ୍ଟ୍ରରୁ ଆସିଥିବା ଯୁଦ୍ଧ କମାଣ ସର୍ବଦା ଉଦ୍ୟତ ଅବସ୍ଥାରେ । ପିତୃଭୂମିର ରକ୍ଷା ପର୍ଯ୍ୟନ୍ତ ସେ ତାର ପ୍ରତ୍ୟେକ ଅଣୁ ପରମାଣୁକୁ ଶ୍ୟେନ ଦୃଷ୍ଟିରେ ଜଗି ରହିଛି । ବିପ୍ଳବର ଚକ୍ରନେମୀରେ ସଦ୍ୟହ୍ନାତ ଗରିଲା ବୁଝି ବସିଛି ସେହି ଐତିହାସିକ ମୁହୂର୍ତ୍ତିକୁ ।

ମାର୍ଚ୍ଚ ମାସ ୧୪ ତାରିଖରେ ନାଭାରେଙ୍କ ସେନାବାହିନୀ 'ଭିଏତମିନ୍' ଠାରୁ ପ୍ରବଳ ଧକ୍କା ପାଇଲେ । ବାକ-ବୋ, ଭନ ଟି ଏନ ଥିଏନ ଏବଂ ନାମ ବୋ ଠାରେ ସେମାନେ ପରାସ୍ତ ହୋଇଛନ୍ତି । ନାଭାର ଯୁଦ୍ଧ ଯୋଜନାର କ୍ରମ ଗତି ପରାଜୟ ଫରାସୀ ଶାସନ ମୁଖ୍ୟଙ୍କୁ ବିଚଳିତ କରିଦେଲା । ଭିଏତନାମ ବିଜୟର କ୍ଷୀଣ ଆଲୋକ ଛଟା ଆଖି ଆଗରୁ ଅପସରି ଯାଉଛି ।

ମାର୍ଚ୍ଚ ମାସ ୨୦ ତାରିଖ ଦିନ ଫରାସୀ ସାମରିକ ମୁଖ୍ୟ ଜେନେରାଲ ପାଲ ଏଲି ଆମେରିକା ଠାରୁ ଅଧିକ ସାହାଯ୍ୟ ଆଶାରେ ଓ୍ୱାଶିଂଟନ ଯାତ୍ରାକଲେ । ଦୂର ପ୍ରାଚ୍ୟରେ ସେମାନଙ୍କର ରାଜନୀତି ଅତି ସଙ୍କଟପୂର୍ଣ୍ଣ କ୍ଷଣରେ ପହଞ୍ଚିଛି । ତତ୍କାଳୀନ ପ୍ରେସିଡେଣ୍ଟ ଆଇଜେନ୍ ହୋର ପର ରାଷ୍ଟ୍ରମନ୍ତ୍ରୀ ଡଲେସ୍, ଓ ସିନେଟର ରେଡ଼ଫୋର୍ଡ଼, ଜେନେରାଲ ଅଲିଙ୍କର ତୋଫାନୀ ଗସ୍ତକୁ ସମର୍ଥନ ଜଣାଇ ଯଥାଶୀଘ୍ର ମାର୍କିନ ଯୁକ୍ତରାଷ୍ଟ୍ର ଇଣ୍ଡୋଚୀନ ସଂଗ୍ରାମରେ ଅଧିକ ବଳ ପ୍ରୟୋଗ କରିବ ବୋଲି ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତିର ଏକମାତ୍ର ସର୍ତ୍ତ ଥିଲା ଇଣ୍ଡୋଚୀନ ଦଖଲ ପରେ ଶାସନ କ୍ଷମତା କେବଳ ଫରାସୀ କର୍ତ୍ତୃତ୍ୱାଧୀନ ନ ରହି ଯୁକ୍ତରାଷ୍ଟ୍ର ବସ୍ତ୍ରାଧୀନକୁ ଆସିବ ।

୧୯୫୪ ମସିହା ଏପ୍ରିଲ ମାସ ୩ ତାରିଖ । ଓ୍ୱାଶିଂଟନ ସହରରେ ଗୁପ୍ତ ବୈଠକ ବସିଛି । କଂଗ୍ରେସ ଦୁଇଗୃହର ସଭ୍ୟ, ବୈଦେଶିକ ମନ୍ତ୍ରୀ ଜନ ଫଷ୍ଟର ଡଲେସଙ୍କ ସମେତ ମାତ୍ର ୧୭ ଜଣ ସଦସ୍ୟ ସେଠାରେ ଉପସ୍ଥିତ । ଡଲେସଙ୍କ କୁଶଳୀ ପ୍ରରୋଚନାରେ ଏକ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହୋଇଗଲା । ଏହି ପ୍ରସ୍ତାବ ଅନୁଯାୟୀ କଂଗ୍ରେସର ଦୁଇଗୃହ ମିଳିତ ଭାବେ ପ୍ରେସିଡେଣ୍ଟ ଆଇଜେନ ହୋରଙ୍କୁ ଇଣ୍ଡୋଚୀନ ଯୁଦ୍ଧରେ ଫରାସୀ ସେନାବାହିନୀଙ୍କୁ ଅଧିକରୁ ଅଧିକ ନୌସେନା ଓ ବାୟୁସେନା ଯୋଗାଇବା ନିମନ୍ତେ ଅନୁରୋଧ କରିବ ।

ସେ ସମସ୍ତଙ୍କୁ ନାଭାରେ ଅନ୍ୟ ସ୍ଥାନମାନଙ୍କରେ ପଛଘୁଞ୍ଚା ଦେଇ ଉତ୍ତର-ପଶ୍ଚିମ ଅଞ୍ଚଳର ଡିଏନ୍-ବିଏନ୍-ଫୁଠାରେ ସୈନ୍ୟ ସମାବେଶ କରିଥାନ୍ତି । ଡିଏନ୍-ବିଏନ୍-ଫୁ' ଭିଏତନାମର ଏକ ବିଶାଳ ଉପତ୍ୟକା । ପାଖକୁ ଲାଗି 'ଉତ୍ତର ଲାଓସ' । ଏକ ସାଙ୍ଗରେ ଦୁଇଟି ବଡ଼ ବଡ଼ ଘାଟି ଦଖଲ କରିବା ପାଇଁ ସେମାନେ ଲାଳାୟିତ । ଡିଏନ-ବିଏନ୍ ଫୁ ଅପେକ୍ଷାକୃତ ନିରାପଦ ଅଞ୍ଚଳ । ଅଗତ୍ୟା ନାଭାରେଙ୍କ ଆଦେଶରେ ୧୪,୦୦୦ ସଶକ୍ତ ଫ୍ରାନସର ପ୍ରସିଦ୍ଧ ପାରାଚ୍ୟୁଟ ବାହିନୀ ସେଠାରେ ଅବତରଣ କରି ଥାଆନ୍ତି । ତିନି ସପ୍ତାହ ହୋଇ ଗଲାଣି । ସେମାନେ ଡିଏନ୍-ବିଏନ୍-ଫୁ ଅବରୋଧ ପାଇଁ ମସୁଧା ତିଆରି କରୁଛନ୍ତି । ଅପେକ୍ଷା କରିଛନ୍ତି ଯୁକ୍ତରାଷ୍ଟ୍ରର ସାମରିକ ସାହାଯ୍ୟ ଦାନକୁ ।

ଏପ୍ରିଲ ୧୫ ତାରିଖ ଦିନ ବୈଠକର ସିଦ୍ଧାନ୍ତ ସର୍ବସମ୍ମୁଖରେ ଉପସ୍ଥାପିତ କଲେ ସିନେଟର ରେଡ଼ଫୋର୍ଡ । କଂଗ୍ରେସ ଘୋଷଣା କରିଛି ଯେ ଇଣ୍ଡୋଚୀନ ଯୁଦ୍ଧରେ ଫରାସୀ ଉପନିବେଶବାଦୀ ବା ମାର୍କିନ ସମରବାଦୀମାନଙ୍କର ପରାଜୟ ଦକ୍ଷିଣପୂର୍ବ ଏସିଆର ସାମ୍ରାଜ୍ୟବାଦୀ କ୍ଷମତା ଲାଭର ଚକ୍ରାନ୍ତକୁ ଦୁର୍ବଳ କରିଦେବ । ଅର୍ଥବଳରେ ପୃଥିବୀର ବିଭିନ୍ନ ଦେଶର ରାଷ୍ଟ୍ରକ୍ଷମତା ଦଖଲ ପାଇଁ ଯେଉଁ ଭୟଙ୍କର ଯୋଜନା ରହିଛି ତାହା ଏହାଦ୍ୱାରା ନିଶ୍ଚୟ ବାଧାପ୍ରାପ୍ତ ହେବ ।

ତେଣୁ ଯେନତେନ ପ୍ରକାରେଣ ଇଣ୍ଡୋଚୀନ ଦଖଲ କରିବା ହିଁ ମାର୍କିନ ଯୁକ୍ତରାଷ୍ଟ୍ରର ରାଜନୈତିକ ରଣକୌଶଳର ଏକ ସଫଳ ନିର୍ଦ୍ଦେଶନାମା । ରେଡଫୋର୍ଡଙ୍କ ନିର୍ଦ୍ଦେଶରେ ସେହିଦିନ ୫୦୦ ଲଢ଼ୁଆ ବିମାନ ଡିଏନ୍-ବିଏନ୍-ଫୁ ଅଭିମୁଖେ ଯାତ୍ରା କଲେ । ଫିଲିପାଇନସ, ଦକ୍ଷିଣ ଚୀନ ସାଗର ସାମରିକ ଘାଟୀ-ମାନଙ୍କରେ ଥିବା ମାର୍କିନ ଯୁଦ୍ଧ ଜାହାଜଗୁଡ଼ିକୁ ଡିଏନ୍-ବିଏନ୍-ଫୁ ରକ୍ଷା କରିବା କାର୍ଯ୍ୟରେ ବିନିଯୋଗ କରିବା ନିମନ୍ତେ କଂଗ୍ରେସ ତରଫରୁ ସ୍ୱତନ୍ତ୍ର ଆଦେଶ ଆସିଲା ।

ପରଦିନ ଅର୍ଥାତ୍ ଏପ୍ରିଲ ୧୬ ତାରିଖରେ ସିନେଟର ଶର୍ଡ଼ ଜନସାଧାରଣଙ୍କ ଅବଗତି ନିମନ୍ତେ ସମ୍ବାଦପତ୍ର ସମ୍ପାଦକମାନଙ୍କ ସମ୍ମିଳନୀରେ ପ୍ରକାଶ କଲେ ଯେ ଆଖି ଆଗରେ ଘଟି ଯାଉଥିବା ଇଣ୍ଡୋଚୀନରେ ସାମ୍ରାଜ୍ୟବାଦୀମାନଙ୍କର ଦାରୁଣ ବିପର୍ଯ୍ୟୟର ଯଦି ମାର୍କିନ ଯୁକ୍ତରାଷ୍ଟ୍ର କୌଣସି ଦିଗରୁ ସମ୍ମୁଖୀନ ହୋଇ ନ ପାରେ ତେବେ ନିକଟ ଭବିଷ୍ୟତରେ ତାକୁ ଏଥିପାଇଁ ବିଷମ ପରିଣତି ଭୋଗକରିବାକୁ ପଡ଼ିବ । ଇଣ୍ଡୋଚୀନ ଯୁଦ୍ଧକୁ ନିଜ ସପକ୍ଷରେ ପରିଚାଳିତ କରିବା ପାଇଁ ନିକ୍ସନଙ୍କର ଥିଲା ଏହା ଏକ ସୁଚିନ୍ତିତ ଚାଲ୍ ।

ପରେ ପରେ 'ନାଟୋ' (ଉତ୍ତର ଆଟଲାଣ୍ଟିକ ଚୁକ୍ତିସଙ୍ଗଠନ) ସମ୍ମିଳନୀରେ ଯୋଗଦେବା ପାଇଁ ଡଲେସ୍ ପ୍ୟାରିସ ଚାଲିଗଲେ । ସେହିଠାରେ ସେ ଭେଟିଲେ

ଇଣ୍ଡୋଚୀନ ଯୁଦ୍ଧସମର୍ଥନକାରୀ ଫରାସୀ ନେତୃବୃନ୍ଦଙ୍କୁ । ନାଭେରଙ୍କଠାରୁ ଆସିଥିବା ଟେଲିଗ୍ରାମ ନିବେଦନ ଯେ ପାଇଲେ ସେମାନଙ୍କ ନିକଟରୁ । 'ନାଟୋ' ସମ୍ମିଳନୀରେ ସମବେତ ସଦସ୍ୟଙ୍କ ଦୃଷ୍ଟି ଅଜି ନିବଦ୍ଧ ଭିଏତନାମ ଉପରେ । ଡିଏନ୍‌-ବିଏନ୍‌ ଫୁ ତାର କେନ୍ଦ୍ରସ୍ଥଳ । ଅଧିକାଂଶ ସଭ୍ୟଙ୍କର ସୁପାରିଶ ଯେ ଆକାଶରୁ ଲଗାତାର ବୋମାମାଡ଼ କେବଳ ଡିଏନ୍‌-ବିଏନ୍‌-ଫୁକୁ ରକ୍ଷା କରି ପାରିବ । ଏଥିପାଇଁ ଆମେରିକାର ସାହାଯ୍ୟ ଅନିବାର୍ଯ୍ୟ ।

ପରେ ପରେ ମାର୍କିନ ଯୁଦ୍ଧ ଜାହାଜ ବୋଝାଇ ହୋଇ ଆସିଲା ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର, ଖାଦ୍ୟ, ବସ୍ତ୍ର ଏବଂ ଯୁଦ୍ଧ ସାମଗ୍ରୀ । ଯୁକ୍ତରାଷ୍ଟ୍ର ଆମେରିକାର ବିତ୍ତଶାଳୀ ରାଜକୋଷ ଅଜାଡ଼ି ହୋଇ ପଡ଼ିଲା ଡିଏନ୍‌-ବିଏନ୍‌-ଫୁର ପାହାଡ଼ୀ ଉପତ୍ୟକାରେ ।

କେତେମାସ ପୂର୍ବରୁ, ୧୯୫୩ ମସିହା ନଭେମ୍ବର ୨୬ ତାରିଖ ଦିନ କମ୍ରେଡ଼ ହୋ-ଚି-ମିନ ଜଣେ ସ୍ୱିଡେନବାସୀ ସାମ୍ବାଦିକଙ୍କର କେତୋଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ଉତ୍ତର ଦେଇ ଇଣ୍ଡୋଚୀନ ଯୁଦ୍ଧର ଅବସାନ ଘଟାଇବା ନିମନ୍ତେ ଫ୍ରାନ୍ସ ସହିତ ସନ୍ଧିଚୁକ୍ତି ସ୍ୱାକ୍ଷର ପାଇଁ ସେ କିପରି ବ୍ୟାକୁଳ ଥିଲେ, ତାର ଏକ ସଂକ୍ଷିପ୍ତ ଟିପ୍ପଣୀ ଦେଇଥାନ୍ତି । ବିଦେଶୀ ସାମ୍ବାଦିକଙ୍କ ସହିତ ସାକ୍ଷାତକାରରେ ସେ ଯେଉଁ କେତୋଟି ଉପାଦେୟ ବିଷୟ ଉପସ୍ଥାପିତ କରିଥିଲେ ତାହା ହେଲା—ସ୍ୱାଧୀନତା, ଶାନ୍ତି ଓ ଜାତୀୟ ଐକ୍ୟ ପ୍ରତିଷ୍ଠା ପାଇଁ ଭିଏତନାମ ଜନତାର ସ୍ୱାଧିକାର ବିରୁଦ୍ଧରେ ଫ୍ରାନ୍ସ ଓ ତାର ସହଯୋଗୀ ବନ୍ଧୁ ମାର୍କିନ ଯୁକ୍ତରାଷ୍ଟ୍ର ଯଦି ଅନ୍ୟାୟୋଚିତ ଆକ୍ରମଣ ଜାରି ରଖେ ତେବେ ଭିଏତନାମର ଦେଶପ୍ରେମୀ ଯୋଦ୍ଧା ଚୂଡ଼ାନ୍ତ ବିଜୟ ପଥରେ ସେମାନଙ୍କର ସଂଗ୍ରାମ ଅବ୍ୟାହତ ରଖିବେ । ଭିଏତନାମ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରର ବିପ୍ଲବୀ ସରକାର ଶତ୍ରୁ ପକ୍ଷର ଯେ କୌଣସି ପରିସ୍ଥିତିକୁ ମୁକାବିଲା କରିବା ପାଇଁ ପ୍ରସ୍ତୁତ । ମାର୍କିନ ସାମ୍ରାଜ୍ୟବାଦୀମାନେ ଫରାସୀ ଉପନିବେଶବାଦୀଙ୍କୁ ମତାଇ ଯେ ପ୍ରକାର ଭୟଙ୍କର ଆକ୍ରମଣାତ୍ମକ ଯୁଦ୍ଧର ଆହ୍ୱାନ ଦେଉଛନ୍ତି, ଭିଏତନାମର ବୀର ଗରିଲା ବାହିନୀ ସମ୍ମୁଖ ରଣାଙ୍ଗନରେ ତାର ପ୍ରତ୍ୟୁତ୍ତର ଦେବେ ।

୧୯୫୩ ମସିହା ଡିସେମ୍ବର ମାସରେ ପାର୍ଟି କେନ୍ଦ୍ର କମିଟିର ଯୁଦ୍ଧକାଳୀନ ବୈଠକ ବସିଲା । ଡିଏନ-ବିଏନ ଫୁ ହେଉଛି ଏହାର ପ୍ରଧାନ ଆଲୋଚ୍ୟ ବିଷୟ । ପ୍ରେସିଡେଣ୍ଟ ହୋ' ନିଜେ ଏହି ସଭାର ସଭାପତି ଆସନରେ । ପାଖରେ ସହଯୋଦ୍ଧା ତରୁଣ ସେନାପତି କମ୍ରେଡ଼ ଭୋ ନ୍‌ଗୁଏନ ଗିଆପ । ଯାହାଙ୍କ ଉପରେ ଭିଏତନାମର ଆସନ୍ନ କାଲିକୁ ଛାଡ଼ି ଦିଆଯାଇଛି । ଜୀବନ ଓ ମରଣ ଦ୍ୱନ୍ଦ୍ୱମାନ ଆହ୍ୱାନରେ କମ୍ରେଡ଼ଗଣ ଏକଜୁଟ ହୋଇଛନ୍ତି । ହର୍ଷ ବିଷାଦର

କୌଣସି 'ପ୍ରଚଳିତ ପରିପ୍ରକାଶ' ନାହିଁ ସେମାନଙ୍କଠାରେ । ସମସ୍ତେ ଅନ୍ତର୍ଯାମୀ । ନିଷ୍ଠୁର କର୍ତ୍ତବ୍ୟବୋଧର ତାଡ଼ନାରେ ବ୍ୟସ୍ତ, ବିବ୍ରତ ତାଙ୍କର ହୃଦୟ । କମ୍ରେଡ଼ ହୋ'ଙ୍କ ସ୍ୱହସ୍ତ ଲିଖିତ ଚିଠି ତାଙ୍କୁ ଡକାଇ ଆଣିଛି ଏତେ ଦୂରକୁ କୌଣସି ଜରୁରୀ ସମସ୍ୟାର ସମାଧାନ କରିବା ପାଇଁ । ହୋ' ବିଶେଷ କିଛି କହିଲେ ନାହିଁ । ତାଙ୍କ ତରଫରୁ ପଞ୍ଚ ଅନୁଶାସନ ପାଠ କଲେ କମ୍ରେଡ଼ ଜିଆପ—କର୍ମତତ୍ପରତା, ଉଦ୍ଭାବ, ଶୃଙ୍ଖଳା, ନମନୀୟତା ଏବଂ ସର୍ବୋପରି ମୂଳରେ ବିଜୟର ନିଶ୍ଚିତତା ।

ପାର୍ଟିର ସର୍ବସମ୍ମତ ନିଷ୍ପତ୍ତି ଓ ଅନୁମୋଦନ କ୍ରମେ କମ୍ରେଡ଼ ଭୋ ନ୍ଗୁଏନ ଗିଆପ ଡିଏନ୍-ବିଏନ୍ ଫୁର ଦାୟିତ୍ୱ ବହନ କଲେ । ଭିଏତନାମ ଜାତୀୟ ପ୍ରତିରୋଧ ବାହିନୀର ସେ ଅପ୍ରତିଦ୍ୱନ୍ଦ୍ୱୀ ସେନାପତି । ତାଙ୍କର ନିର୍ଦ୍ଦେଶମାତ୍ରେ ପ୍ରତିରୋଧ ସାମ୍ମୁଖ୍ୟର ଲକ୍ଷ ଲକ୍ଷ ଗରିଲା ଆମରଣ ପରିଚାଳିତ ହେବେ । ସେ ବର୍ତ୍ତମାନ ସୀମାନ୍ତ ଯାତ୍ରାପଥର ଅଧିନାୟକ । ପାର୍ଟିର ସଙ୍କେତ ନିଷ୍ପତ୍ତିକୁ ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ କରିବାର ସକଳ ଦାୟିତ୍ୱ ତାଙ୍କର । ଭିଏତନାମର ଚଳନ୍ତି ଅଚଳନ୍ତି ସମସ୍ତ ଶକ୍ତିକୁ ଚୂଡ଼ାନ୍ତ ବିଜୟ ସଂଗ୍ରାମରେ ସାମିଲ କରିବାର ଗୁରୁଭାର ତାଙ୍କ ଉପରେ ନ୍ୟସ୍ତ ।

ପାର୍ଟି କେନ୍ଦ୍ରକମିଟିରେ ଡିଏନ-ବିଏନ ଫୁ ପାଇଁ ଅଭିନବ ରଣକୌଶଳ ପ୍ରୟୋଗ ସମ୍ବନ୍ଧରେ ସମସ୍ୟା ଦେଖା ଦେଇଛି । ଶତ୍ରୁପକ୍ଷ ତୁଳନାରେ ଭିଏତନାମର ମୁକ୍ତି ପ୍ରସ୍ତୁତି ନିହାତି ମାମୁଲି, ଆଦିମ ଏବଂ ଅଜ୍ଞ । ପ୍ରଥମ ଥର ପାଇଁ ବିଶ୍ୱର ଦୁଇଟି ପରାକ୍ରମଶାଳୀ ସେନାବାହିନୀ ମିଳିତ ଭାବେ ଅତ୍ୟାଧୁନିକ ବୈଜ୍ଞାନିକ ପ୍ରଣାଳୀର ସାମରିକ ପ୍ରୟୋଗ କରିବେ ଏହିଠାରେ । ଦୁଇ ଦୁଇଟି ବିଶ୍ୱଯୁଦ୍ଧରେ ପରୀକ୍ଷିତ ନୂତନ କୌଶଳର ପ୍ରତିଦ୍ୱନ୍ଦ୍ୱିତା ଚାଲିବ ଡିଏନ-ବିଏନ ଫୁ ଘାଟିରେ । ଏହାକୁ ସଫଳତାର ସହିତ ମୁହାଁଇବା ପାଇଁ ଉପାୟ କ'ଣ ?

ଭିଏତନାମ ଏକ ବିଦେଶୀ ଉପନିବେଶ । ଶିକ୍ଷା, ସଂସ୍କୃତି, ଅର୍ଥନୀତି, ସମାଜ, ବ୍ୟବସ୍ଥା, ରାଜନୈତିକ ସ୍ୱାଧୀନତା ସବୁଦିଗରୁ ଏହା ଏକ ଅନୁନ୍ନତ ଅଞ୍ଚଳ । ଆଦିମ ଜଙ୍ଗଲି ସଭ୍ୟତା ମଧ୍ୟରେ ଦାସବୃତ୍ତି କରି ଏହାର ଅଧିବାସୀମାନେ ଜୀବନ ନିର୍ବାହ କରନ୍ତି । ସେମାନେ ବିଜ୍ଞାନ ଜାଣନ୍ତି ନାହିଁ । ସେମାନେ ଜାଣନ୍ତି ନାହିଁ ଆଧୁନିକତା କାହାକୁ କୁହାଯାଏ । କିନ୍ତୁ ସେମାନଙ୍କର ଶକ୍ତି ଅଦମ୍ୟ, କାରଣ ସେମାନେ ଶୋଷିତ, ନିର୍ଯ୍ୟାତିତ । ଅଦମତା ସେମାନଙ୍କୁ ଭୟଙ୍କର କରି ଗଢ଼ିଛି । ସେହି ବଣ ମଣିଷ ଚାହୁଁଛି ମୁକ୍ତି ! ତାହା କିପରି ସମ୍ଭବ ? ଅର୍ଥ, ଅସ୍ତ୍ର, କୌଶଳ, ଶିକ୍ଷା—ସବୁଥିରୁ ବଞ୍ଚିତ ହୋଇ ସେ କେବଳ ସଙ୍କଳ୍ପ ନେଇ ଲଢ଼ିବ କିପରି !!

•

ଜେନେରାଲ ଗିଆପ ଏହାର ଉତ୍ତର ଦେଇଛନ୍ତି ଅନେକ ଆଗରୁ । ତାଙ୍କର ମାନସ ସନ୍ତାନ ରୂପେ ଜନ୍ମ ନେଇଛି ଭିଏତନାମର ବିଶାଳ ଗରିଲାବାହିନୀ । ଯେଉଁମାନେ ନିଜର ଶ୍ରମ, ଶାରୀରିକ ଶକ୍ତି, ବିଚକ୍ଷଣତା, ଦୁଃସାହସିକତା ଓ ବୀରତ୍ୱକୁ ଆଶ୍ରୟ କରି ଏ ଯାଏ ଲଢ଼ୁଛନ୍ତି, ଯେଉଁମାନଙ୍କର ଅନ୍ୟ କୌଣସି ସାମରିକ ବଳ ନାହିଁ, ଯେଉଁମାନଙ୍କର ଆଧୁନିକ ରଣ କୌଶଳ ଅବଲମ୍ବନ କରିବାର ସମ୍ବଳ ମଧ୍ୟ ନାହିଁ, ସେମାନେ ହେଉଛନ୍ତି ଭିଏତନାମର ଅଧିବାସୀ । ବଣ, ପର୍ବତ ଗୁମ୍ଫାରେ ଯୁଗ ଯୁଗ ଧରି କାଳ କାଟୁଥିବା କ୍ରୀତଦାସ ମଣିଷ । ସେମାନଙ୍କର ସଂଖ୍ୟା ଅପରି-ସୀମ । ସେ ସମସ୍ତଙ୍କୁ କମ୍ରେଡ୍ ଗିଆପ ମିଶାଇଛନ୍ତି ଜାତୀୟ ପ୍ରତିରୋଧ ମେଣ୍ଟରେ । ‘ଗରିଲା ବାହିନୀ’ର ଆଉ ଅନ୍ୟ ଏକ ବିଶିଷ୍ଟ ଦିଗ ହେଉଛି, ସେମାନେ ଭୟହୀନ । ଶତ୍ରୁକୁ ଅତର୍କିତ ଆକ୍ରମଣ କରିବାରେ ଖୁବ୍ ଧୁରନ୍ଧର । ଘନଜଙ୍ଗଲ ମଧ୍ୟରୁ ଲକ୍ଷ ଲକ୍ଷ ସଂଖ୍ୟାରେ ବାହାରି ସେମାନେ ଶତ୍ରୁ ଶିବିରକୁ ଜନସମୁଦ୍ର ମଧ୍ୟରେ ବୁଡ଼ାଇ ଦିଅନ୍ତି । ନିଆଁ, ପାଣି, ପବନ, ସେମାନଙ୍କ ପାଇଁ ସବୁ ସମାନ । ସହଜରେ ସେମାନେ ପଛଘୁଞ୍ଚା ଦିଅନ୍ତି ନାହିଁ । ଶତ୍ରୁକୁ ଆକ୍ରମଣ କଲାବେଳେ କୌଣସି ପ୍ରକାର ବିପଦକୁ ଖାତିର ନ କରି ସେମାନେ ମାଡ଼ି ଚାଲନ୍ତି ଠିକ ବୁଲଡୋଜର ପରି । ଶତ୍ରୁସେନାର ଟ୍ୟାଙ୍କଠାରୁ ଆହୁରି ତୀବ୍ର ସେମାନଙ୍କର ଗତି ।

ବୈଠକ ସରିବାର ପରମୁହୂର୍ତ୍ତରେ ସେନାପତି ଗିଆପ ଆହ୍ୱାନ ଦେଲେ ସାରା ଭିଏତନାମକୁ । ‘ଭିଏତମିନ୍’ ଚେଇଁ ଉଠିଲା । ଭିଏତନାମ ଶ୍ରମିକ ଦଳରୁ ପ୍ରତ୍ୟୁତ୍ତର ଆସିଲା ଖୁବ୍ ଶୀଘ୍ର । କଲକାରଖାନା, କ୍ଷେତ ଖମାରରେ କାମକରୁଥିବା ଶ୍ରମଜୀବୀ ମେହେନତୀ ଜନତା ଦା, ହାତୁଡ଼ି ଉଠାଇ ବଧାଇ ଜଣାଇଲେ ଏହି ଆହ୍ୱାନକୁ । ସ୍କୁଲ-କଲେଜରେ ପାଠପଢ଼ୁଥିବା କିଶୋର, ଯୁବକ ଗୁଡ଼ିଏ ଶିକ୍ଷାନୁଷ୍ଠାନ ଛାଡ଼ି ବାହାରି ଆସିଲେ ସଂଗ୍ରାମର ମଇଦାନକୁ ।

ଘରେ ଘରେ ପଡ଼ିଲା ତାଟି କବାଟ । ହୋ’-ଚି-ମିନ୍ ଡାକରା ଦେଇଛି “ସମସ୍ତେ ଯୁଦ୍ଧ ପାଇଁ—ସମସ୍ତେ ବିଜୟ ପାଇଁ” । ଦୁଇ ଲକ୍ଷ ସାଧାରଣ ନାଗରିକ, ମହିଳା, ଶିଶୁ, ବୃଦ୍ଧ ନିଜ ଜୀବନକୁ ପାଣିଛଡ଼ାଇ ସମର୍ପଣ କଲେ ଯୁଦ୍ଧବେଦୀର ହୋମାଗ୍ନି ତଳେ । ଡିଏନ୍-ବିଏନ୍ ଫୁର ମୂଲ୍ୟବାନ୍ ପ୍ରାଣଟିକୁ ରଖିବା ପାଇଁ ସେମାନେ ସଂକଳ୍ପବଦ୍ଧ । ପରିବାର, ପିତା, ମାତା, ସ୍ତ୍ରୀ-ସହୋଦର, ପିଲା, ଛୁଆ କିଛି ମନେ ପଡ଼ୁନାହିଁ ଆଜି । ସେ ଆଜି ଚିର ବନ୍ଧନହୀନ । ଭିଏତନାମର ମୁକ୍ତ ବସୁଧାକୁ ଚିରନ୍ତନ କରିବା ପାଇଁ ସେ ପିଣ୍ଟି ପଡ଼ିଛି ।

ଦିନ ରାତି ଲାଗି ମାଟିତଳେ ରାସ୍ତା ଖୋଳା ଚାଲିଲା । ଶତ୍ରୁ ବିଛାଇ ଥିବା ସମସ୍ତ ବୋମା ଓ ମେସିନଗନ୍‌କୁ ଶକ୍ତିହୀନ କରିଦେବା ପାଇଁ ପାହାଡ଼ ଓ ପର୍ବତ

ଭୂମି ଦେଇ ସୁଡ଼ଙ୍ଗ ପଥ ନିର୍ମିତ ହେଲା । ନଈ ଦ୍ୱାରା ଅବରୁଦ୍ଧ ହୋଇଥିବା ଘାଟୀ ମାନଙ୍କରେ ପ୍ରବେଶ କରିବା ପାଇଁ ମାଟି ତଳେ ତଳେ ପ୍ରବେଶ ଦ୍ୱାର ତିଆରି ହେଲା । ମାଓ ଖ୍ରି କିମ୍ ଦିନରେ ଏ ଭଳି ସବୁ ସମ୍ଭବ ହୋଇ ପାରୁଥାଏ । କାରଣ ଲକ୍ଷ ଲକ୍ଷ ସଂଖ୍ୟାର ସ୍ତ୍ରୀ ପୁରୁଷ ଦିବାନିଶି ବିଶ୍ରାମହୀନ ପରିଶ୍ରମ କରି ଚାଲିଥାନ୍ତି । ଶତ୍ରୁ ସେନାର ଦୃଷ୍ଟି ଏଡ଼ାଇବା ପାଇଁ ପେଟ୍ରୋଲ ଚାଳିତ ଯାନ ବ୍ୟବହାର କରାଗଲା ନାହିଁ । ସେତେବେଳେ ଆର୍ଥିକ ବଳ ମଧ୍ୟ ସ୍ୱଚ୍ଛଳ ନ ଥିଲା । ରାଜକୋଷ କେବଳ ଖାଦ୍ୟ ଓ ବସ୍ତ୍ର ପାଇଁ ଉଦ୍ଦିଷ୍ଟ ଥାଏ । ବିପୁଳ ସଂଖ୍ୟାର ଗରିଲା-ମାନଙ୍କୁ କାମ ଯୋଗାଇବା ପାଇଁ ଶଗଡ଼ଗାଡ଼ି, ଘୋଡ଼ାଗାଡ଼ି, ବଳଦଗାଡ଼ି, ମଇଁଷି ଗାଡ଼ି, ଛୋଟ ଛୋଟ ନୌକା ଓ ସାଇକେଲର ପ୍ରୟୋଜନ ପଡ଼ିଲା । ଏମାନଙ୍କର ବହୁଳତା ଯୋଗୁଁ ଖାଦ୍ୟ, ବସ୍ତ୍ର ଓ ଅସ୍ତ୍ର ଯୋଗାଣରେ କୌଣସି ସମସ୍ୟା ରହିଲା ନାହିଁ । ବାଉଁଶ ଓ ନଡ଼ାରେ ଏପରି ଏକ ପ୍ରକାର ଗାଡ଼ି ତିଆରି ହେଲା ଯାହାକି ଦୁଇଟି କାମ ପାଇଁ ବ୍ୟବହୃତ ହୋଇ ପାରୁଥିଲା । ଯୁଦ୍ଧ ସାମଗ୍ରୀ ପରିବହନ ବ୍ୟତୀତ ଆବଶ୍ୟକ ସମୟରେ ତାକୁ ଭାଙ୍ଗିଦେଲେ ସେଥିରେ ଏକ ମୂଲ୍ୟ ଅସ୍ତ୍ର ତିଆରି ହୋଇ ପାରେ, ଯାହାକି ଦରକାର ବେଳେ ବହୁ କାମରେ ଆସିଛି । କଳକାରଖାନାରେ କାମ କରୁଥିବା ଶ୍ରମିକ ଓ କାରିଗରମାନେ ନିଜ ବୁଦ୍ଧି ଖଟାଇ ଅନେକ ଛୋଟ ଛୋଟ ଗାଡ଼ି ଓ ଯନ୍ତ୍ର ତିଆରି କରିପାରୁଥିଲେ । ହାତଟଣା ସାଇକେଲ ହେଉଛି ସେମାନଙ୍କର ଆଉ ଏକ କୃତିତ୍ୱ ।

ହଜାର ହଜାର କିଲୋମିଟର ଲମ୍ବା ରାସ୍ତା ସାଙ୍ଗେ ସାଙ୍ଗେ ତିଆରି ହୋଇ ଯାଉଥିଲା । ଯୁଦ୍ଧ କ୍ଷେତ୍ରରେ ରନ୍ଧା ଖାଦ୍ୟ, ବସ୍ତ୍ର ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଯୁଦ୍ଧ ସାମଗ୍ରୀ ପହଞ୍ଚାଇ ଦେବା ନିମନ୍ତେ ଯାନବାହନ ଓ ଲୋକବଳ ସବୁବେଳେ ମହଜୁଦ ରହୁଥିଲା । ପାହାଡ଼ ଓ ଗଛ ଉପରେ ଚଢ଼ି ଅସ୍ତ୍ର ଚାଳନା କରିବା ପାଇଁ ସ୍ୱତନ୍ତ୍ର 'ଯୁଦ୍ଧ ୟୁନିଟ୍' ତିଆରି ହୋଇଥିଲା । ସାହସୀ ଜଙ୍ଗୀ କିଶୋର-ମାନଙ୍କୁ ନେଇ 'ମରଣ ଯାତ୍ରୀଦଳ' ଗଢ଼ା ହେଲା । ଏମାନେ ସବୁବେଳେ ପ୍ରସ୍ତୁତ ରହୁଥିଲେ ଯେ କୌଣସି ପ୍ରକାର ଅଚାନକ ଆକ୍ରମଣର ସମ୍ମୁଖୀନ ହେବା ପାଇଁ ।

ମହିଳାମାନେ ଡିଏନ୍-ବିଏନ୍ ଫୁ ଯୁଦ୍ଧରେ ପ୍ରଥମ ଥର ପାଇଁ ଅସ୍ତ୍ର ଧାରଣ କଲେ । ପୂର୍ବରୁ ସେମାନେ ପରାଧୀନ ଥିଲେ ବା ଉତ୍ପାଦନ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ସାମରିକ ବିଭାଗରେ ସେମାନଙ୍କୁ ଭର୍ତ୍ତି କରାଯାଉ ନ ଥିଲା । କିନ୍ତୁ ଡିଏନ୍ ବିଏନ୍ ଫୁର ଐତିହାସିକ ରଣନୀତିର ପ୍ରୟୋଗ ଫଳରେ ସେମାନେ ସେନା ଶିବିରରେ ସ୍ଥାନ ପାଇଲେ । ଗୁପ୍ତଚର, ସମ୍ବାଦ ସରବରାହକାରୀ, ଧାଈ, ସେବିକା ଏପରିକି ପଛରୁ ରହି ଗୁଳି ମାରିବା କାର୍ଯ୍ୟରେ ସେମାନଙ୍କୁ ନିଯୁକ୍ତ କରାଗଲା ।

ଡେଲ୍ଟାଗଲ୍ ଯୁଦ୍ଧ କ୍ଷେତ୍ରରେ ସେମାନଙ୍କର ଆନୁଗତ୍ୟ, ଦୁଃସାହସ, ଦୃଢ଼ପଣ, ସାହାସ ଓ କଷ୍ଟସହିଷ୍ଣୁତା ବିପ୍ଳବ ନିଷ୍ଠା ସିଦ୍ଧ ଅନ୍ୟ ଯୋଦ୍ଧାମାନଙ୍କ ତୁଳନାରେ କୌଣସି ଗୁଣରେ କମ୍ ନୁହେଁ ।

ଯାନବାହନ ଚାଳକ ହିସାବରେ ମହିଳାମାନଙ୍କ ଦକ୍ଷତା ଅତ୍ୟନ୍ତ ଉଲ୍ଲେଖ-ଯୋଗ୍ୟ । ସେମାନେ ସ୍ୱଭାବତଃ ଦୃଢ଼ ଏବଂ ଅନୁରକ୍ତ । ଦିବା ରାତ୍ର ଶାରୀରିକ ପରିଶ୍ରମ ପାଇଁ ସେମାନେ କେବେ କ୍ଳାନ୍ତିବୋଧ କରନ୍ତି ନାହିଁ । ବିନିଦ୍ର ରଜନୀର ଅପଲକ ନୟନ ପାତରେ କ୍ଲାନ୍ତିର ଅବସାନ ଘଟେ । ସେନା ଛାଉଣୀର ଦ୍ୱାରରକ୍ଷୀ ଭାବେ ସେମାନଙ୍କର ଭୂମିକା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଯେତେବେଳେ ସାରା ଭିଏତନାମ ଡିଏନ୍-ବିଏନ୍ ଫୁରେ ଜମାଟ ବାନ୍ଧିଛି, ଜନବିରଳ ଗାଁ ବସତିକୁ ଜଗି ବସିଛି ଆନାମୀ ମହିଳା । କାନ୍ଧରେ ହାତ ତିଆରି ଧନୁଶର ପକାଇ ସେ ଶତ୍ରୁର ଅନୁପ୍ରବେଶକୁ ରୋଧ କରିଛି । ବଡ଼ ବଡ଼ ସହର ଓ ଗ୍ରାମାଂଚଳରେ ଶତ୍ରୁମାନେ ବଳପୂର୍ବକ ପଶି ଅଯଥା ଭସ୍ମ ସତ୍କାର କରାଇ ପାରନ୍ତି ଆଶଙ୍କାରେ ସେ ସେମାନଙ୍କୁ ଛାଡ଼ି ଦେଉ ନାହିଁ । ଭିଏତନାମ ଆଜି ତାର ଶରଣ-ପ୍ରାର୍ଥୀ । ସେ ତାର ରକ୍ଷାକର୍ତ୍ତ୍ରୀ ।

ମୁକ୍ତି ଆନ୍ଦୋଳନରେ ନାନ୍ଦୀକାରୀ ପଥିକ, ଭିଏତନାମ ଗରିଲା ବାହିନୀ ନିର୍ଦ୍ଦିଷ୍ଟ କୌଣସି ଅଞ୍ଚଳ ମଧ୍ୟରେ ସୀମାବଦ୍ଧ ନ ରହି ସାରା ଦେଶକୁ ବ୍ୟାପି ଯାଇଛି । ଯେଉଁଠାରେ କେବେ କେ ଯୁଦ୍ଧ ଆଶଙ୍କା କରାଯାଇ ନାହିଁ, ସେ ସ୍ଥାନ ମାନଙ୍କରେ ପ୍ରଥମ ଥର ପାଇଁ ଗରିଲାମାନେ ନିଯୁକ୍ତ ହୋଇଛନ୍ତି । କଳକାରଖାନା କ୍ଷେତବାଡ଼ି, ଜନବସତି, ହାଟ, ବଜାର, ସ୍କୁଲ, କଲେଜ, ସେବାସଂସ୍ଥା, ଚିକିତ୍ସାଳୟ ସବୁଠିଁ ସେମାନଙ୍କର ଅବାଧ ପ୍ରବେଶ ।

ଜେନେରାଲ ଗିଆପଙ୍କ ଡାକରାରେ ଡିଏନ୍-ବିଏନ୍ ଫୁର ବିଜୟ ପାଇଁ ସାରା ଭିଏତନାମ ଅଖଣ୍ଡ ଯୁଦ୍ଧଭୂମିରେ ପରିଣତ ହୋଇଛି । ଗାଁରେ ଗାଁରେ ଗଢି ଉଠିଛି ଜାତୀୟ ପ୍ରତିରୋଧର ଶାଖା ପ୍ରଶାଖାମାନ । ପ୍ରତି ଜନପଦରେ ଠିଆ ହୋଇଛି ଗରିଲା ବାହିନୀର ଅଲଂଘ୍ୟ ପ୍ରାଚୀର । ପ୍ରତି କୋଠ ଖମାରରେ ମୂଳ ଲଗୁଥିବା କୃଷୀ ହାତରେ ଆଜି 'ଭିଏତମିନ୍'ର ଲାଲଝଣ୍ଡା । ପ୍ରତି ଶିଶୁ କଣ୍ଠରେ ସଂଗ୍ରାମ ସଙ୍ଗୀତର ଦୃପ୍ତ ଉଦ୍ଧ୍ୱନି । ମନେ ହେଉଛି ଭିଏତନାମର ରାସ୍ତାଘାଟ, ନଦୀନାଳ, ହାଟବଜାରକୁ ଅବରୁଦ୍ଧ କରି ଠିଆ ହୋଇଛି ଡିଏନ୍-ବିଏନ ଫୁ ପ୍ରତିରୋଧ ବାହିନୀର ଯୁଦ୍ଧ ଅଟ୍ଟାଳିକା । ସେ ଦୁର୍ଗର ପ୍ରତିଟି ବାସିନ୍ଦା ଗ୍ରାମବାହିନୀର ଲଢ଼ୁଆ ସୈନିକ । କି କୃଷୀ, କି ମଜଦୂର, କି ମହିଳା, କି ଶିଶୁ, କି କର୍ମଚାରୀ ସମସ୍ତେ ଗଣବାହିନୀର ତାଲିକାଭୁକ୍ତ ଶୃଙ୍ଖଳାବଦ୍ଧ କର୍ମୀ ।

ଦୀର୍ଘ ପଞ୍ଚାବନ ଦିନ ଧରି ଯୁଦ୍ଧ ଚାଲିଲା । ଅପ୍ରତିହତ ଗତିର ଗତି । ଊନ-କୋଡ଼ି ଘଣ୍ଟାର ଅବିରାମ ସଂଗ୍ରାମ ପରେ ଡିଏନ୍-ବିଏନ୍ ଫୁରେ ଜେନେରାଲ ଗିଆପ ଜାତୀୟ ପ୍ରତିରୋଧ ସାମ୍ମୁଖ୍ୟର ରକ୍ତପତାକା ଉତ୍ତୋଳନ କଲେ । ଶତ୍ରୁ ପକ୍ଷର ୧୬,୨୦୦ ସୈନ୍ୟବଳ ସହ, ପ୍ରଭୂତ ଯୁଦ୍ଧ ସାମଗ୍ରୀ, ଅସ୍ତ୍ରଶସ୍ତ୍ର, ଗୁଳିଗୋଳା, ବୋମା ଆଦି ଅତ୍ୟାଧୁନିକ ଯନ୍ତ୍ରପାତି ସମ୍ପୂର୍ଣ୍ଣ ଲୋପ ପାଇଲା ଏହି ଯୁଦ୍ଧରେ । ଫରାସୀ ସେନାବାହିନୀ ତରଫରୁ ଯୁଦ୍ଧ ପରିଚାଳନା କରୁଥିବା ଜେନେରାଲ ଡି କାଷ୍ଟ୍ରିଜ ମେ ୭ ତାରିଖ ଦିନ ସଦଳବଳେ ଆତ୍ମସମର୍ପଣ କଲେ । ଫରାସୀ ୟୁନିଅନର ଶ୍ୱେତ ପତାକା ଅର୍ଦ୍ଧନମିତ ଅବସ୍ଥାରେ ସ୍ୱାଗତ ଜଣାଇଲା ଜେନେରାଲ ଗିଆପଙ୍କର ଊର୍ଦ୍ଧ୍ୱଗାମୀ ରକ୍ତ ଝଣ୍ଡାକୁ ।

ସେଦିନ ମଇ ମାସ ୭ ତାରିଖ । ମାର୍ଚ୍ଚ ତିନି ତାରିଖରୁ ଯୁଦ୍ଧ ଆରମ୍ଭ ହୋଇଥିଲା । ଆମେରିକାର ୬୨ଟି ବୋମାଯାନ ସମ୍ପୂର୍ଣ୍ଣ ନଷ୍ଟ ହୋଇଛି । ଆଉ କେତେକ ଜଖମ ଅବସ୍ଥାରେ ପଡ଼ିଛନ୍ତି ଯୁଦ୍ଧ ଭୂମିରେ । ବିଧ୍ୱସ୍ତ ଶତ୍ରୁ ଘାଣ୍ଟିରୁ ଉଦ୍ଧାର କରାଯାଉଛି ଛାଡ଼ି ଯାଇଥିବା ଯୁଦ୍ଧସାମଗ୍ରୀ ସବୁ । ଡିଏନ୍-ବିଏନ୍-ଫୁ ସହିତ ଲାଇ-ଚାଉ ଘାଟି ଉଦ୍ଧାର ପାଇଛି । ସେମାନେ ମିଳିତଭାବେ ପ୍ରସ୍ତୁତ ହେଉଛନ୍ତି ଲୋହିତ ନଦୀର ତ୍ରିକୋଣଭୂମିକୁ ଶତ୍ରୁ ହାତରୁ ଛଡ଼ାଇ ଆଣିବା ପାଇଁ ।

ସେ ଏକ ମାହେନ୍ଦ୍ରବେଳା । ଇତିହାସର ଶୁଭଲଗ୍ନ । ଭିଏତନାମର ଧରଣୀକୁ ଋତୁରାଜ ବସନ୍ତ ବିଦାୟ ନେବା ପାଇଁ ଅପେକ୍ଷା କରିଛି । କୃଷ୍ଣଚୂଡ଼ାର ସାତରଙ୍ଗ ଅଜାଡ଼ି ହୋଇ ପଡ଼ୁଛି ଜନଗହଳି ରାସ୍ତା ଧାରରେ । ସେ ସମସ୍ତେ ଫେରିଛନ୍ତି ଏବେ ଯୁଦ୍ଧଭୂମିରୁ, ଶତ୍ରୁକୁ ପରାସ୍ତ କରି ଲଲାଟରେ ବିଜୟର ଟୀକା ପିନ୍ଧି । ସେମାନେ ଭିଏତନାମୀ, ଉପନିବେଶୀ ମଣିଷ । ପେଶାଦାର ଯୁଦ୍ଧବ୍ୟବସାୟୀ, ହସ୍ତକ୍ଷେପବାଦୀ ଆକ୍ରମଣକାରୀମାନଙ୍କ ସହିତ ଲଢ଼ି ଲଢ଼ି କ୍ଳାନ୍ତ, ଅବସନ୍ନ ଅବସ୍ଥାରେ ଆସିଛନ୍ତି । ସେମାନଙ୍କର ବିଶ୍ରାମ ଲୋଡ଼ା, ଆଶ୍ରୟ ପ୍ରୟୋଜନ । ସେ ବିଶ୍ରାମ ଯୁଦ୍ଧର ଏବଂ ସେ ଆଶ୍ରୟ ଶାନ୍ତିର । ସେମାନେ ଦଳିତ, ପୀଡ଼ିତ ଜନତା । ସେମାନଙ୍କର ବିପ୍ଳବ ସ୍ୱାଧୀନତା, ଶାନ୍ତି ଓ ସ୍ୱାଧିକାର ପାଇଁ । ସେମାନଙ୍କର ସଂଗ୍ରାମ ସାମ୍ରାଜ୍ୟବାଦ, ଉପନିବେଶବାଦ ଓ ସାମରିକ ବଳର ବିରୁଦ୍ଧରେ ।

ସେମାନଙ୍କର ସଂଗ୍ରାମ ବିଜୟୀ ହୋଇଛି । ଡିଏନ୍-ବିଏନ୍-ଫୁ ଶତ୍ରୁ ହାତରୁ ଉଦ୍ଧାର ପାଇଛି । ଯୁକ୍ତରାଷ୍ଟ୍ର ଆମେରିକାର ଉଗ୍ର ସାମରିକ କୌଶଳ ବ୍ୟର୍ଥ ପ୍ରମାଣିତ ହୋଇଛି । ଶତ୍ରୁର ସମସ୍ତ ଶକ୍ତି ହତ୍ୟା, ବିଭୀଷିକା, ମୃତ୍ୟୁର ଧମନୀତଳ ଶୋଣିତ ପ୍ରବାହରେ ଉଜାଡ଼ି ହୋଇ ଯାଇଛି ।

ଡିଏନ୍ ବିଏନ୍-ଫୁ ଇତିହାସର ଏକକ ଧାରା, ସ୍ୱତନ୍ତ୍ର ଅଧ୍ୟାୟ । ଗରିଲା ରଣକୌଶଳ ବିଶ୍ୱର ସଙ୍ଗଠିତ ପ୍ରତିରୋଧୀ ଶକ୍ତିକୁ ନୂତନ ଜୀବନ୍ୟାସ ଦେଇଛି । ଜେନେରାଲ ଗିଆପ ପୃଥିବୀ ଜନତାର ମୁକ୍ତି ଆନ୍ଦୋଳନରେ ଅପ୍ରତିଦ୍ୱନ୍ଦ୍ୱୀ ସେନାଧ୍ୟକ୍ଷର ସମ୍ମାନ ଲାଭ କରିଛନ୍ତି ।

ସେଦିନ ରାତି ପାହିଛି । ଭିଏତନାମ ପୁଣି ଜାଗ୍ରତ । ପୂର୍ବବତ୍ ସବୁଠି ଗହଳି ଜମିଛି । ବେତାରବାର୍ତ୍ତାରେ ମୁକ୍ତି ଆନ୍ଦୋଳନରେ ସୂତ୍ରଧର କମ୍ରେଡ ହୋ-ଚି ମିନ୍ ବେତାରବାର୍ତ୍ତାରେ ଦେଶବାସୀଙ୍କୁ ବୈପ୍ଳବିକ ରକ୍ତାଭିବାଦନ ଜଣାଇଲେ ।

“ଆମ ସେନାବାହିନୀ ଡିଏନ୍-ବିଏନ୍-ଫୁ ମୁକ୍ତ କରିଛନ୍ତି । ଯେଉଁ ଦେଶପ୍ରେମୀ ଯୋଦ୍ଧା, ନାଗରିକ, ଶ୍ରମିକ, କୃଷକ, ସ୍ୱେଚ୍ଛାସେବୀ, ଯୁବବାହିନୀ, ସ୍ଥାନୀୟ ଜନତା ଓ ମହିଳା ଅତି ଦକ୍ଷତାର ସହିତ ନିଜ କର୍ତ୍ତବ୍ୟ ପାଳନ କରିଛନ୍ତି, ସେ ସମସ୍ତଙ୍କୁ ମୁଁ ଏବଂ ମୋର ସରକାର ଗଭୀର ଶ୍ରଦ୍ଧା ଜ୍ଞାପନ କରୁଛୁ ।

“ଏ ବିଜୟ ଆଜି ସବୁଠି ପ୍ରତିଧ୍ୱନିତ । କିନ୍ତୁ ଏହା ଆରମ୍ଭ ମାତ୍ର । ଅଯଥା ଗୌରବ ଓ ଗର୍ବପ୍ରବଣତାର ବଶବର୍ତ୍ତୀ ହୋଇ ଆମେ ଶତ୍ରୁକୁ ଛୋଟ ମନେ କରିବା ଉଚିତ୍ ହେବ ନାହିଁ । ଶାନ୍ତି, ସ୍ୱାଧୀନତା, ଗଣତନ୍ତ୍ର ଓ ଜାତୀୟ ଐକ୍ୟ ଲାଭ ପାଇଁ ଆମେ ଏକ ଦୃଢ଼ ଏବଂ ଅବିଚଳ ସଂଗ୍ରାମର ଡାକରା ଦେଉଛୁ । ସାମରିକ ଦିଗରୁ ହେଉ ବା ରାଜନୈତିକ ଦିଗରୁ ହେଉ, ସମ୍ପୂର୍ଣ୍ଣ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଆମକୁ ଏ ଯୁଦ୍ଧ ଚଳାଇ ରଖିବାକୁ ପଡ଼ିବ ।

“ଯେଉଁ ଯୋଦ୍ଧା, ଦେଶପ୍ରେମୀ, ସ୍ୱେଚ୍ଛାସେବୀ, ସାଧାରଣ ନାଗରିକ, ଯୁବବାହିନୀ ଏବଂ ସ୍ଥାନୀୟ ଜନତା ବିଶେଷ କୃତିତ୍ୱର ପରିଚୟ ଦେଇଛନ୍ତି ସେମାନଙ୍କୁ ମୁଁ ଓ ମୋର ସରକାର ସ୍ୱତନ୍ତ୍ର ପୁରସ୍କାରମାନ ଦେବୁ ।

“ଆନ୍ତରିକ ଅଭିବାଦନ ସହ । ଆମ୍ଭେମାନେ ନିଶ୍ଚୟ ବିଜୟୀ ହେବା ।”



## ୨୮

# ଜେନେଭା ଶାନ୍ତି ସମ୍ମିଳନୀ

ଡିଏନ୍-ବିଏନ୍-ଫୁଠାରେ ପ୍ରତିରୋଧୀ ସାମ୍ମୁଖ୍ୟରେ ବିଜୟ ବିଶ୍ୱସାମ୍ରାଜ୍ୟବାଦୀ ଶିବିରରେ ମହା ଆତଙ୍କ ସୃଷ୍ଟି କରିଛି । ସେମାନଙ୍କର ମିଳିତ ଅନ୍ତ୍ୟାଧୁନିକ ସମର-କୌଶଳ ଜେନେରାଲ ଗିଆପଙ୍କ ଦୁର୍ଦ୍ଧର୍ଷ ଗରିଲା ବାହିନୀ ନିକଟରେ ପରାଜୟ ସ୍ୱୀକାର କରିଛି । ଦକ୍ଷିଣ-ପୂର୍ବ ଏସିଆରେ ଉପନିବେଶୀ ଶାସନ କାଏମ ରଖିବାର ଯେଉଁ ସ୍ୱପ୍ନ ସେମାନଙ୍କୁ ସାତ ଦରିଆ ସେପାରିରୁ ଟାଣି ଆଣିଥିଲା, ତାହା ଆଜି ଘନ ନୈରାଶ୍ୟରେ ପରିଣତ ହୋଇଛି । ଭିଏତନାମର ମାଟିରୁ ସେମାନଙ୍କର ପାଦ ଦେଲକୁ ଦେଲ ଖସିବାରେ ଲାଗିଛି । ହୁଏତ ଆଉ କିଛିଦିନ ପରେ ସେମାନେ ସମଗ୍ର ଇଣ୍ଡୋଚୀନ୍‌ରୁ ବିଦାୟ ନେବାକୁ ବାଧ୍ୟ ହେବେ ।

ଅପର ପକ୍ଷରେ ହୋ' ଏବଂ ତାଙ୍କ ବିପ୍ଳବୀ ସରକାର ଆଜି ମଧ୍ୟ ଆଲୋଚନା ମାଧ୍ୟମରେ ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ବ୍ୟଗ୍ର । ଭିଏତନାମରେ ସେମାନଙ୍କର କ୍ରମାଗତ ବିଜୟ ପରେ ବି ସେମାନେ ଆଜି ଯୁଦ୍ଧ ଚାହାନ୍ତି ନାହିଁ । କିନ୍ତୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଓ ଐକ୍ୟ ପ୍ରତିଷ୍ଠା ସେମାନଙ୍କର ଏକମାତ୍ର ଦାବୀ । ତା' ପୂର୍ବରୁ ସେମାନେ ଯୁଦ୍ଧ ଭୂମିରୁ ଓହ୍ଲାଇବେ ନାହିଁ । ଆବଶ୍ୟକ ପଡ଼ିଲେ ଅନିର୍ଦ୍ଦିଷ୍ଟ କାଳ ପାଇଁ ସଂଗ୍ରାମ ଚାଲି ପାରେ । କାରଣ ସେମାନେ ଜାଣନ୍ତି ଜନତାର ମୁକ୍ତି ବିପ୍ଳବ ଦିନେ ନା ଦିନେ ବିଜୟୀ ହେବ, ସାମ୍ରାଜ୍ୟବାଦୀମାନଙ୍କର ଅବାଞ୍ଛିତ ଯୁଦ୍ଧ ପ୍ରୟାସ ମାଟିରେ ମିଶିଯିବ । ନିକଟ ଅତୀତରେ ଡିଏନ-ବିଏନ୍-ଫୁ ତାହା ପ୍ରମାଣ କରିଛି ।

ସାମ୍ରାଜ୍ୟବାଦୀ ଶିବିରର ଅଧିନାୟକ ମାର୍କିନ ଯୁକ୍ତରାଷ୍ଟ୍ର, ଡିଏନ୍-ବିଏନ୍-ଫୁ ପରଠାରୁ ଅତୀବ ମର୍ମାହତ । ତାର ସମସ୍ତ ଅପକୌଶଳ ଆଜି ସର୍ବସମ୍ମୁଖରେ ଧରାପଡ଼ି ଯାଇଛି । 'ନାଟୋ', 'ସିଆଟୋ' ଜରିଆରେ ସମାଜବାଦୀରାଷ୍ଟ୍ର, ଉପନିବେଶୀ ରାଜ୍ୟ ତଥା ନବ ସ୍ୱାଧୀନ ଦେଶଗୁଡ଼ିକୁ ଛନ୍ଦିବା ପାଇଁ ଯେଉଁ ଜାଲ ବିଛାଇ ଥିଲା, ସେଥିରେ ସେ ନିଜେ ପଡ଼ିଯାଇଛି । ସତ୍ୱୃଦିନ ପାଇଁ ସେ ଜାଲ କାଟି ବାହାରି ଆସିଛନ୍ତି ଦକ୍ଷିଣ ପୂର୍ବ ଏସିଆରେ ବଡ଼ ବଡ଼ ରାଷ୍ଟ୍ରଗୁଡ଼ିକ । ସେମାନଙ୍କର ମୁକ୍ତି ଆନ୍ଦୋଳନର ସଫଳତା ଆଜି ବିଶ୍ୱର ଅନ୍ୟପ୍ରାନ୍ତରେ ଚାଲିଥିବା ମୁକ୍ତି ବିପ୍ଳବକୁ ପ୍ରେରଣା ଦେଉଛି ।

ସ୍ୱାଧୀନ ସମାଜବାଦୀ ପୃଥିବୀର ଏ ପ୍ରକାର ଛିଦ୍ରଗତକୁ ଦେଖି ମାର୍କିନ ସରକାର ଅସ୍ଥିର ହୋଇ ଉଠିଛି । 'ନାଟୋ', 'ସିଆଟୋ' ପରି ବ୍ୟୟବହୁଳ ସାମରିକ ମେଣ୍ଟର ଶକ୍ତି ଉପରେ ତାର ଆଉ ବିଶ୍ୱାସ ରହୁନାହିଁ । ସେମାନଙ୍କୁ ନିଶ୍ଚିନ୍ତ କରାଇବା ସଙ୍ଗେ ସଙ୍ଗେ ଇଣ୍ଡୋଚୀନରେ ଉପନିବେଶୀ ଶାସନକୁ ବଳବତ୍ତର କରିବା ହିଁ ବର୍ତ୍ତମାନ ଏକମାତ୍ର ପନ୍ଥା । ସାମରିକ ବଳ ପ୍ରୟୋଗ ଦ୍ୱାରା ଇଣ୍ଡୋଚୀନର ଫରାସୀ ଉପନିବେଶଗୁଡ଼ିକୁ ନିଜ ସାମ୍ରାଜ୍ୟଭୁକ୍ତ କରିବା ଆଗପରି ଆଉ ସେତେ ସହଜ ଜଣାପଡ଼ୁ ନାହିଁ । କାରଣ ଫରାସୀମାନଙ୍କ ତରଫରୁ ବାଧା, ପ୍ରତିବନ୍ଧକ ନ ଥିଲେ ମଧ୍ୟ ବିପ୍ଳବୀ ସରକାର ତଥା ଜାତୀୟ ପ୍ରତିରୋଧୀ ମେଣ୍ଟ ମାର୍କିନ ଅନୁପ୍ରବେଶକୁ ଯଥାସାଧ୍ୟ ବିରୋଧ କରିବ ।

ତେଣୁ ଇଣ୍ଡୋଚୀନ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର ପକ୍ଷରୁ ପ୍ରଥମ ପ୍ରସ୍ତାବ ଆସିଲା । ଫରାସୀମାନେ ବହୁ ପୂର୍ବରୁ ଏଥିପାଇଁ ପ୍ରସ୍ତୁତ ଥିଲେ ମଧ୍ୟ ବସ୍ତୁତଃ ଯୁକ୍ତରାଷ୍ଟ୍ର ଆମେରିକାର ହସ୍ତକ୍ଷେପ ଯୋଗୁଁ ଯୁଦ୍ଧ ବିରତି ଯୋଜନାମା କାର୍ଯ୍ୟକାରୀ ହୋଇପାରୁ ନ ଥିଲା । ସେତେବେଳେ ମାର୍କିନ ଯୁକ୍ତରାଷ୍ଟ୍ରର ନିଜ ସାମରିକ କ୍ଷମତା ଉପରେ ପ୍ରଗାଢ଼ ଆସ୍ଥା ଥିଲା । ଦେଶ ଦେଶ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠାକୁ ସେ ନିଜର ସ୍ୱାର୍ଥ ବିରୋଧୀ ବୋଲି ଭାବୁଥିଲା । ସେଥିପାଇଁ ଇଣ୍ଡୋଚୀନ ହେଉ ବା ଦକ୍ଷିଣ-ପୂର୍ବ ଏସିଆ ହେଉ ସବୁଠାରେ ରାଷ୍ଟ୍ର, ରାଷ୍ଟ୍ରମାନଙ୍କ ମଧ୍ୟରେ ଅଯଥା ଯୁଦ୍ଧ ଲଗାଇ ଦୁଇ ଶିବିରକୁ ନିଜ ଅକ୍ତିଆରରେ ରଖିବାକୁ ଚାହୁଁ ଥିଲା । ଇଣ୍ଡୋଚୀନ ସେହି ଅପକର୍ମର ଗୋଟିଏ ଫଳ । କିନ୍ତୁ ଭିଏତନାମର ଜାତୀୟ ପ୍ରତିରୋଧ ସଂଗ୍ରାମ ମାର୍କିନ ଯୁକ୍ତରାଷ୍ଟ୍ରର ଏହି ଅପକୌଶଳକୁ ସହଜରେ ବୁଝି ପାରିଥିଲା । ପ୍ରସ୍ତାବକୁ ମାନିନେବା ସଙ୍ଗେ ସଙ୍ଗେ ଆମେରିକା ଯୁକ୍ତରାଷ୍ଟ୍ରର ଗତିବିଧି ପ୍ରତି ସଜାଗ ରହିବା ପାଇଁ ବିପ୍ଳବୀ ସରକାର ତରଫରୁ ସ୍ୱତନ୍ତ୍ର ଗୁଇନ୍ଦା ସଂସ୍ଥା ପ୍ରତିଷ୍ଠା କରାଗଲା । ଇଣ୍ଡୋଚୀନ ଏବଂ ଦକ୍ଷିଣ-ପୂର୍ବ ଏସିଆର ପ୍ରବେଶପଥ ଭିଏତନାମକୁ କବଳିତ କରିବା ପାଇଁ ତାର ସମସ୍ତ ଦୁରଭିସନ୍ଧିକୁ ପଣ୍ଡ କରିବା ଉଦ୍ଦେଶ୍ୟରେ କମ୍ରେଡ଼ ହୋ' ଯୁଦ୍ଧବିହୀନ ସ୍ଥାୟୀ ଶାନ୍ତିର ଡାକରା ଦେଲେ ।

ପିତୃଭୂମିର ସ୍ୱାଧୀନତା, ଶାନ୍ତି ଓ ଜାତୀୟ ଐକ୍ୟ ସ୍ଥାପନା ପାଇଁ ଭିଏତନାମର ଅସ୍ଥାୟୀ ବିପ୍ଳବୀ ସରକାର ବଦ୍ଧପରିକର । କିନ୍ତୁ ଯୁଦ୍ଧ ବନ୍ଦ ନ ହେବା ଯାଏ ଏ ସବୁ ଦାବୀ ହାସଲ କରିବା ଅସମ୍ଭବ ହୋଇ ଉଠିବ । ତେଣୁ ପ୍ରଥମ କର୍ତ୍ତବ୍ୟ ହେଉଛି ମାର୍କିନ ଯୁକ୍ତରାଷ୍ଟ୍ର ଓ ଫ୍ରାନ୍ସକୁ ରାଜି କରାଇ ସେମାନଙ୍କର ମିଳିତ ଉଦ୍ୟମରେ ଏକ ଶାନ୍ତି ସମ୍ମିଳନୀ ଆହ୍ୱାନ କରିବା ।

ପଣ୍ଡିତ ଜବାହାର ଲାଲ ନେହେରୁ ସେତେବେଳେ ଭାରତବର୍ଷର ପ୍ରଧାନ ମନ୍ତ୍ରୀ । ଚୀନ ପ୍ରଜାତନ୍ତ୍ରର ପ୍ରଧାନମନ୍ତ୍ରୀ କମ୍ରେଡ ଚୁ-ଏନ୍-ଲାଇଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଖୁବ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ । ଦକ୍ଷିଣ-ପୂର୍ବ ଏସିଆକୁ ଅକ୍ଷତ ଓ ଅନାକ୍ରାନ୍ତ ରଖିବା ପାଇଁ ଏସିଆ ମହାଦେଶର ଏହି ଦୁଇ ବୃହତ୍ ରାଷ୍ଟ୍ର ସବୁବେଳେ ସଜାଗ ଥାଆନ୍ତି । କାରଣ ଦୁର୍ବଳ ଅର୍ଥନୀତିର ସୁଯୋଗ ନେଇ ଯଦି ଥରେ ସାମ୍ରାଜ୍ୟବାଦୀମାନେ ବିଶେଷ କରି ମାର୍କିନ ଯୁକ୍ତରାଷ୍ଟ୍ରର ଆନ୍ତର୍ଜାତିକ ସାମରିକ ମେଣ୍ଟ ଦକ୍ଷିଣ-ପୂର୍ବ ଏସିଆକୁ କବଳିତ କରନ୍ତି ତେବେ ଅଚିରେ ବିଶ୍ୱର ଶାସନ କ୍ଷମତା ସେମାନଙ୍କ ହାତକୁ ଚାଲି ଆସିବ । ତେଣୁ ବିଶ୍ୱ ଶାନ୍ତି ଓ ସହାବସ୍ଥାନ ପ୍ରସାରର ଉଦ୍ଦେଶ୍ୟ ପାଇଁ ଭାରତବର୍ଷ ଓ ଚୀନର ଗୁରୁ ଦାୟିତ୍ୱ ରହିଛି । ଏ ଦୁଇ ବନ୍ଧୁରାଷ୍ଟ୍ରଙ୍କର ବୁଝାମଣା ଓ ପରାମର୍ଶ କ୍ରମେ ୧୯୫୪ ମସିହା ଏପ୍ରିଲ୍ ମାସ ୨୮ ତାରିଖରେ ସୁଇଜରଲାଣ୍ଡର ଜେନେଭାଠାରେ ସମ୍ମିଳନୀ ଡକାଗଲା ।

ଏହି ବୈଠକରେ ଯେଉଁ ନଅଟି ରାଷ୍ଟ୍ର ପ୍ରତିନିଧିତ୍ୱ କରିଥିଲେ ସେମାନେ ହେଲେ, ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର, କାମ୍ବୋଡ଼ିଆ, ଲାଓସ, ଚୀନ ପ୍ରଜାତନ୍ତ୍ର, ସୋଭିଏତ ୟୁନିୟନ, ଫ୍ରାନ୍ସ, ଗ୍ରେଟବ୍ରିଟେନ୍, ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ସାମ୍ରାଜ୍ୟବାଦୀମାନଙ୍କ ଦ୍ୱାରା ଭିଏତନାମରେ ଅବସ୍ଥାପିତ ବାଓଡ଼ାଇ ସରକାରର ଭିଏତନାମ ରାଜ୍ୟ ।

ବହୁତ ଦିନ ଧରି ସମ୍ମିଳନୀ ଚାଲିଲା, ଏପ୍ରିଲ ମାସ ୨୬ ତାରିଖରୁ ଜୁଲାଇ ୨୦ ତାରିଖ ପର୍ଯ୍ୟନ୍ତ । ଭିଏତନାମ ବିପ୍ଳବୀ ସରକାର ପ୍ରତିନିଧି ଦଳର ନେତୃତ୍ୱ ନେଇଥିଲେ କମ୍ରେଡ଼ ଫାମ୍-ଭାନ୍-ଡୁଙ୍ଗ । ଚୀନରୁ କମ୍ରେଡ଼ ଚୁ-ଏନ୍-ଲାଇ, ଯୁକ୍ତରାଷ୍ଟ୍ରରୁ ପରରାଷ୍ଟ୍ର ବିଭାଗ ମନ୍ତ୍ରୀ ଜନ୍ ଫଷ୍ଟର ଡଲେସ, ଫ୍ରାନ୍ସର ପ୍ରଧାନମନ୍ତ୍ରୀ ମେଣ୍ଡେସ୍ ଫ୍ରାନ୍ସ ନିଜ ନିଜ ଦେଶର ପ୍ରତିନିଧିତ୍ୱ କରିଥିଲେ ।

ଡିଏନ୍-ବିଏନ୍-ଫୁର ବିଜୟବାର୍ତ୍ତା ନିକଟରେ ଜେନେଭାଠାରେ ପହଞ୍ଚିଛି । ସମସ୍ତଙ୍କ ହୃଦୟରେ ଭିଏତନାମ ମୁକ୍ତିଆନ୍ଦୋଳନ ପାଇଁ ସ୍ୱତଃପ୍ରବୃତ୍ତ ଦରଦ, ଅନୁରାଗ ଓ ଘନିଷ୍ଠତା ସ୍ଥାନ ପାଇଛି । ମାର୍କିନ ଯୁକ୍ତରାଷ୍ଟ୍ରର ବିଶ୍ୱବିଜିତ ସମର କୌଶଳ ବିରୁଦ୍ଧରେ ଲଢ଼ି ବିଜୟୀ ହୋଇଥିବା ଭିଏତନାମର ଦୁର୍ଦ୍ଧର୍ଷ ଗରିଲା ବାହିନୀ ପ୍ରତି ସମ୍ମାନ ଆଗ ଅପେକ୍ଷା ବହୁତ ପରିମାଣରେ ବୃଦ୍ଧି ପାଇଛି । ସମ୍ମିଳନୀରେ ଆସୀନ ସଦସ୍ୟମାନଙ୍କ ମଧ୍ୟରେ ଭିଏତନାମ ପ୍ରତିନିଧି ଦଳର ନେତା କମ୍ରେଡ଼ ଫାମ୍-ଭାନ୍-ଡୁଙ୍ଗଙ୍କର ସ୍ଥାନ ସ୍ୱତନ୍ତ୍ର ।

ସମବେତ ସଦସ୍ୟମାନେ ଏକମତ ଯେ ଭିଏତନାମରେ ଯୁଦ୍ଧ ବନ୍ଦ ହେଉ, ଉପନିବେଶୀ ରାଜତ୍ୱର ଅବସାନ ଘଟୁ, ମାର୍କିନ ସେନାବାହିନୀ ଭିଏତନାମରୁ ପ୍ରତ୍ୟାବର୍ତ୍ତନ କରନ୍ତୁ, ଭିଏତନାମ ସମ୍ପୂର୍ଣ୍ଣ ମୁକ୍ତ ଅଞ୍ଚଳ ବୋଲି ଘୋଷିତ ହେଉ ଏବଂ ଇଣ୍ଡୋଚୀନରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ହେଉ । କିନ୍ତୁ କେବଳ ଯୁକ୍ତରାଷ୍ଟ୍ର ଆମେରିକା ଏହି ପ୍ରସ୍ତାବଗୁଡ଼ିକୁ ମାନିନେବା ପାଇଁ ରାଜି ନୁହେଁ । ଶାନ୍ତି ସମ୍ମିଳନୀରେ ଆହୂତ ସନ୍ଧିରେ ସ୍ୱାକ୍ଷର କରିବା ପାଇଁ ସେ ଏକମତ ନୁହେଁ । ଭିଏତନାମର ସମ୍ପୂର୍ଣ୍ଣ ସ୍ୱାଧୀନତା ଦାବୀକୁ ଅବୈଧ, ଅନ୍ୟାୟ ଓ ଅପ୍ରାକୃତିକ କହି ସେ ଏହି ଚୂଡ଼ାନ୍ତ ମୀମାଂସାକୁ ବିରୋଧ କରୁଛି । ଐକ୍ୟବଦ୍ଧ ଭିଏତନାମକୁ ମୂଲ୍ୟହୀନ ଦାବୀ କରି ସେ ଭିଏତନାମରେ ନିଜ ଅନୁପ୍ରବେଶକୁ ଜାହିର କରିବା ପାଇଁ ସ୍ୱତନ୍ତ୍ର ପ୍ରସ୍ତାବ ଉପସ୍ଥାପିତ କରିଛି । ଏପ୍ରିଲ ୨୫ ତାରିଖରେ ଭିଏତନାମ ବିରୁଦ୍ଧରେ ମିଳିତ ଯୁଦ୍ଧଘୋଷଣା ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର ଫ୍ରାନସ୍ ଓ ଗ୍ରେଟବ୍ରିଟେନକୁ ଯେଉଁ ନିବେଦନ ଜଣାଇଥିଲା ତାହା ଫଳତଃ ବ୍ରିଟିଶ ସରକାର ଦ୍ୱାରା ବାତିଲ ହୋଇ ଯାଇଛି । ଯୁକ୍ତରାଷ୍ଟ୍ର ଜେନେଭା ଠାରେ ତାର ପ୍ରସ୍ତାବ ସପକ୍ଷରେ କୌଣସି ବନ୍ଧୁରାଷ୍ଟ୍ର ଠାରୁ ସମର୍ଥନ ନ ପାଇ ଡ଼ଲେସ ସମ୍ମିଳନୀ ସ୍ଥାନ ଛାଡ଼ି ଚାଲିଯିବା ପାଇଁ ମନସ୍ଥ କଲେ । ଉପନିବେଶୀ ବନ୍ଧୁରାଷ୍ଟ୍ରଙ୍କ ଠାରୁ ଏପରି ଅପମାନ ସେ ଆଶା କରି ନଥିଲେ । କାରଣ ସେ ଦେଖିଲେ ଇଣ୍ଡୋଚୀନରେ ଫରାସୀ ଉପନିବେଶକୁ ମାର୍କିନ ଉପନିବେଶରେ ପରିଣତ କରିବା ପାଇଁ ସେ ଯେତେ ଯେତେ ପଦକ୍ଷେପ ନେଇଛନ୍ତି ସେ ସବୁକୁ ଭାଙ୍ଗି ଏକ ନୂତନ ଧରଣର ଶାନ୍ତିପୂର୍ଣ୍ଣ ଯୁଦ୍ଧ ବିରତି ପ୍ରସ୍ତାବ ପାଇଁ ଫ୍ରାନସ ଓ ଗ୍ରେଟବ୍ରିଟେନ ତରଫରୁ ପ୍ରବଳ ଚାପ ପଡ଼ୁଛି । ତେଣୁ ଓ୍ୱାଶିଂଟନ ଯାତ୍ରା କରିବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ କିଛି ନାହିଁ । ଡ଼ଲେସ ସମ୍ମିଳନୀ ଛାଡ଼ି ଚାଲିଗଲେ ମଧ୍ୟ ବହୁଦିନ ଧରି ବୈଠକ ଚାଲୁରହିଲା । ଡ଼ଲେସଙ୍କ ସ୍ଥାନରେ ଯୁକ୍ତରାଷ୍ଟ୍ରର ପ୍ରତିନିଧିତ୍ୱ କଲେ ତାଙ୍କର ସହକାରୀ ମନ୍ତ୍ରୀ ଡବ୍ଲ୍ୟୁ. ବି. ବେଡ଼େଲ ସ୍ମିଥ ।

ସମ୍ମିଳନୀର ସର୍ବାଙ୍ଗୀନ ସଫଳତା ପାଇଁ ଚୀନ ପ୍ରଧାନମନ୍ତ୍ରୀ ଚୁଉ-ଏନ-ଲାଇଙ୍କ ଦାନ ଉଲ୍ଲେଖଯୋଗ୍ୟ । ସେ ଦୀର୍ଘ ଦିନ ଧରି ଜେନେଭା ଠାରେ ଅବସ୍ଥାନ କରିଥିଲେ । ସଦସ୍ୟ ରାଷ୍ଟ୍ରମାନଙ୍କ ସହିତ ଯୋଗସୂତ୍ର ରକ୍ଷାକାରୀ ଭାବେ ତାଙ୍କର ଦାୟିତ୍ୱ ଥିଲା ଖୁବ କଠିନ । ଏସିଆ ମହାଦେଶର ସର୍ବ ବୃହତ କମ୍ୟୁନିଷ୍ଟ ରାଷ୍ଟ୍ରର ଅଧିନାୟକ ଭାବେ ସେ ପାଶ୍ଚାତ୍ୟ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ଦୃଷ୍ଟିକଟୁ ହୋଇଥିଲେ ମଧ୍ୟ ସମସ୍ତୋପଯୋଗୀ ରାଜନୈତିକ ଲକ୍ଷ୍ୟ ସିଦ୍ଧି ପାଇଁ ସେ କୌଣସି ବୈରଭାବକୁ ଭ୍ରୂକ୍ଷେପ ନ କରି ସମ୍ମିଳନୀକୁ ଫଳବତୀ କରିବା ଦିଗରେ ମନ ପ୍ରାଣ

ଅନାଉ୍ଡ ଦେଇଥିଲେ । ଏପରିକି ସମ୍ମିଳନୀ ମଧ୍ୟରେ ଗୋଟିଏ ଦିନ ସେ ଡଲେସଙ୍କ ସହିତ କଥାବାର୍ତ୍ତା ଛଳରେ କରମର୍ଦ୍ଦନ କରିବାକୁ ଚାହିଁଥିଲେ, କିନ୍ତୁ ବିଶ୍ୱ ପୁଞ୍ଜିବାଦୀ ଶିବିରର ବିଶ୍ୱସ୍ତ ଜନ୍ମଦାତା ମାର୍କିନ ଯୁକ୍ତରାଷ୍ଟ୍ରର ପ୍ରତିନିଧି ମୁଖ୍ୟ ଫଷ୍ଟର ଡଲେସ ଚୁଉ୍‌ଏନ୍ ଲାଇଙ୍କ ପରି ଜଣେ ସର୍ବହରା କମ୍ୟୁନିଷ୍ଟ ସହିତ କରମର୍ଦ୍ଦନ କରିବା ପାଇଁ ସ୍ପଷ୍ଟ ମନା କରିଦେଇଥିଲେ ।

ଡଲେସଙ୍କ ଅନୁପସ୍ଥିତିରେ ଜୁଲାଇ ୨୧ ତାରିଖ ଦିନ ଯୁଦ୍ଧ ବିରତି ସନ୍ଧି ସ୍ୱାକ୍ଷରିତ ହେଲା । ୱାଶିଂଟନ ଠାରେ ଆଇ ରାଷ୍ଟ୍ରପତି ଆଇଜେନ ହୋ'ର ଘୋଷଣା କଲେ ଯେ ଜେନେଭା ଯୁଦ୍ଧ ବିରତି ଶାନ୍ତି ଚୁକ୍ତି ସହିତ ଆମେରିକା ଯୁକ୍ତରାଷ୍ଟ୍ରର କୌଣସି ରାଜନୈତିକ ସଂପର୍କ ନାହିଁ ।

ଆଇଜେନ ହୋ'ରଙ୍କର ଏହି ପ୍ରକାଶ୍ୟ ବିରୋଧକୁ ଭେତେକ ସଦସ୍ୟ ଶାନ୍ତି-ଚୁକ୍ତି ପାଇଁ ଏକ ଧମକ ବୋଲି ମନେ କଲେ ମଧ୍ୟ କମ୍ରେଡ ଚୁଉ୍‌ଏନ୍ ଲାଇ ସେ ସମସ୍ତ ସଦସ୍ୟଙ୍କୁ ଯଥୋଚିତ ସାହସ ଓ ଉତ୍ସାହ ଦେଇ ଚୁକ୍ତି କରାଇ ନେଲେ ।

ଏହି ଚୁକ୍ତିରେ କେବଳ ଭିଏତନାମ ବା ଇଣ୍ଡୋଚୀନ ନୁହିଁ ସମଗ୍ର ଦକ୍ଷିଣ-ପୂର୍ବ ଏସିଆ ପାଇଁ ପରୋକ୍ଷଭାବେ ରାଜନୈତିକ ସମସ୍ୟାବଳୀର ଶାନ୍ତିପୂର୍ଣ୍ଣ ସମାଧାନର ପଥ ପରିଷ୍କାର ହୋଇଗଲା । ଏହି ଚୁକ୍ତିର ମୂଳ ଲକ୍ଷ୍ୟ ହେଲା ଏସିଆ ମହାଦେଶରେ ଥିବା ଉପନିବେଶ ଗୁଡ଼ିକରୁ ସାମ୍ରାଜ୍ୟବାଦୀ ରାଜତ୍ୱର ଅବସାନ ଘଟାଇବା ଏବଂ ଦେଶୀୟ ଜନତା ହାତରେ ରାଷ୍ଟ୍ର କ୍ଷମତା ଅର୍ପଣ କରିବା । ଜେନେଭା ଚୁକ୍ତିର ମୁଖ୍ୟ ସର୍ତ୍ତାବଳୀ ହେଲା—

(୧) କାମ୍ବୋଡ଼ିଆ, ଲାଓସ ଓ ଭିଏତନାମରେ ଉପନିବେଶୀ ଶାସନର ଅବସାନ ଘଟିବ ଏବଂ ଏହି ରାଜ୍ୟଗୁଡ଼ିକରେ ଦେଖାଦେଇଥିବା ସମସ୍ୟାବଳୀର ସମାଧାନ ନିମନ୍ତେ ଏକ ଆନ୍ତର୍ଜାତିକ ନିୟନ୍ତ୍ରଣ ପରିଷଦ ତତ୍ତ୍ୱାବଧାରକ ଭାବେ କାର୍ଯ୍ୟ କରିବ ।

(୨) ଏହି ସମ୍ମିଳନୀ, କାମ୍ବୋଡ଼ିଆ ଲାଓସ ଓ ଭିଏତନାମର ସମ୍ପୂର୍ଣ୍ଣ ସ୍ୱାଧୀନତା ଓ ସାର୍ବଭୌମତ୍ୱକୁ ସ୍ୱୀକାର କରୁଛି । ଆଜଠାରୁ ଏହି ତିନୋଟି ରାଷ୍ଟ୍ର ସ୍ୱାଧୀନ ରାଜ୍ୟଗୋଷ୍ଠୀ ସହିତ ସାମିଲ ହେବା ପାଇଁ ଉପଯୁକ୍ତ ବିବେଚିତ ହେବେ ।

(୩) କାମ୍ବୋଡ଼ିଆ ଓ ଲାଓସର ଜାତୀୟ ସ୍ୱାଧୀନ ସରକାର ମଧ୍ୟରେ ଦେଶୀୟ ନାଗରିକ ଓ ପ୍ରତିନିଧି ଯଥାର୍ଥ ଆସନ ଗ୍ରହଣ କରିବେ ଏବଂ ସ୍ୱାଧୀନ ସରକାରକୁ ସ୍ଥାୟୀ କରିବା ପାଇଁ ୧୯୫୫ ମସିହା ପୂର୍ବରୁ ସମ୍ବିଧାନ ଅନୁଯାୟୀ ଗୁପ୍ତଭୋଟ ଗ୍ରହଣ ଦ୍ୱାରା ନୂତନ ବ୍ୟବସ୍ଥାପକ ସଭା ଗଠନ କରିବେ ।

(୪) ଭିଏତନାମରେ ଅବସ୍ଥାପିତ ବିଦେଶୀ ସୈନ୍ୟ, ସାମରିକ ବ୍ୟକ୍ତି ବର୍ଗ, ସେନାବାହିନୀ ତଥା ସମସ୍ତ ପ୍ରକାରର ଅସ୍ତ୍ର, ଶସ୍ତ୍ର ଓ ଯୁଦ୍ଧ ସାମଗ୍ରୀର ପରିବହନକୁ ଏହି ଶାନ୍ତି ଚୁକ୍ତି ସମ୍ପୂର୍ଣ୍ଣଭାବେ ବିରୋଧ କରୁଛି । ସ୍ୱାଧୀନୋତ୍ତର ଭିଏତନାମରେ କୌଣସି ପ୍ରକାର ବିଦେଶୀ ସାମରିକ ସାହାଯ୍ୟ ଯୋଗାଣକୁ ବରଦାସ୍ତ କରାଯିବ ନାହିଁ । ଭିଏତନାମର ସ୍ୱାଧୀନ ଭୂଖଣ୍ଡକୁ ରକ୍ଷା କରିବା ଦିଗରେ ସରକାର ନିଜ ତରଫରୁ ସାମରିକ ଆୟୋଜନ କରି ପାରିବେ ।

(୫) ଭିଏତନାମ, କାମ୍ବୋଡ଼ିଆ ଓ ଲାଓସ ସୀମା ମଧ୍ୟରେ କୌଣସି ବିଦେଶୀ ରାଷ୍ଟ୍ର ନିୟନ୍ତ୍ରିତ ସାମରିକ ଘାଟି ପ୍ରତିଷ୍ଠା ହୋଇ ପାରିବ ନାହିଁ । ସନନ୍ଦର ସର୍ତ୍ତ ଅନୁଯାୟୀ ଏହି ରାଷ୍ଟ୍ରଗୁଡ଼ିକ କୌଣସି ସାମରିକ ଗୋଷ୍ଠୀର ପକ୍ଷଭୁକ୍ତ ହେବେ ନାହିଁ ।

(୬) ଭିଏତନାମର ସ୍ୱାଧୀନତା, ଐକ୍ୟ ଓ ଆଞ୍ଚଳିକ ଅଖଣ୍ଡତାକୁ ବଜାୟ ରଖିବା ଦିଗରେ ଶାନ୍ତିଚୁକ୍ତି ସର୍ବଦା ଶ୍ରଦ୍ଧା ଓ ଆନ୍ତରିକତାର ସହିତ ଚେଷ୍ଟା କରିବ । ମୁକ୍ତ ଗଣଭୋଟ ଜରିଆରେ ମୌଳିକ ଅଧିକାର ସାବ୍ୟସ୍ତ କରିବା ପାଇଁ ସାଧାରଣ ନାଗରିକ ଯଥାଯଥ ସୁବିଧା ସୁଯୋଗ ପାଇବେ ।

(୭) ଭିଏତନାମ ସାଧାରଣ ନାଗରିକଙ୍କର ବ୍ୟକ୍ତିଗତ ଧନ, ଜୀବନର ସୁରକ୍ଷା ପାଇଁ ସର୍ତ୍ତରେ ଥିବା ପ୍ରତ୍ୟେକ ନିୟମାବଳୀ କଠୋରଭାବେ କାର୍ଯ୍ୟକାରୀ ହେବା ଉଚିତ୍ । ଭିଏତନାମ ଇଲାକାରେ ସ୍ୱାଧୀନଭାବେ ଚଳପ୍ରଚଳ କରିବା ପାଇଁ ନାଗରିକମାନଙ୍କୁ ସରକାରୀ ଅନୁମତି ମିଳିବା ଉଚିତ୍ ।

(୮) କାମ୍ବୋଡ଼ିଆ, ଲାଓସ ଓ ଭିଏତନାମର ସ୍ୱାଧୀନତା, ସାର୍ବଭୌମତ୍ୱ ଓ ଅଖଣ୍ଡତା ପ୍ରତି ସମ୍ମିଳନୀରେ ଉପସ୍ଥିତ ସମସ୍ତ ସଦସ୍ୟ ସମ୍ମାନ ପ୍ରଦର୍ଶନ କରିବେ । କିନ୍ତୁ ସେମାନଙ୍କର ଆଭ୍ୟନ୍ତରୀଣ ସମସ୍ୟା ଉପରେ ହସ୍ତକ୍ଷେପ କରି ପାରିବେ ନାହିଁ । ସେମାନଙ୍କର ଅନ୍ତର୍ନିହିତ ସମସ୍ୟା ସେମାନେ ନିଜେ ନିଜେ ସମାଧାନ କରିବା ପାଇଁ ଚେଷ୍ଟା ଚଳାଇବେ ।

(୯) ସର୍ବୋପରି କାମ୍ବୋଡ଼ିଆ, ଲାଓସ ଓ ଭିଏତନାମରେ ଯୁଦ୍ଧାବସାନ ଓ ଶାନ୍ତି ପ୍ରତିଷ୍ଠା ଦିଗରେ ଆନ୍ତର୍ଜାତିକ ନିୟନ୍ତ୍ରଣ ପରିଷଦ ଏବଂ ଆନ୍ତର୍ଜାତିକ ତତ୍ତ୍ୱାବଧାରକ ପରିଷଦ ଅନୁସୃତ ସମସ୍ତ ସର୍ତ୍ତାବଳୀକୁ ସଦସ୍ୟ ରାଷ୍ଟ୍ରମାନେ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ବାଧ୍ୟ ହେବେ ।

ଜୁଲାଇ ଶେଷ ସପ୍ତାହ ବେଳକୁ ଜେନେଭା ଶାନ୍ତି ସମ୍ମିଳନୀର ପୂର୍ଣ୍ଣାଙ୍ଗ ବିବରଣୀ ସରକାରୀ ସ୍ତରରେ ପ୍ରକାଶ ପାଇଲା । ମାର୍କିନ ଯୁକ୍ତରାଷ୍ଟ୍ର ଏହି ଐତିହାସିକ

ରାଜନାମାଙ୍କୁ ଅନ୍ତର ସହିତ ସ୍ୱୀକାର କରିପାରୁ ନ ଥିଲେ ମଧ୍ୟ ଆନ୍ତର୍ଜାତିକ ସ୍ତରରେ ନିଜର ରାଜନୈତିକ ସମ୍ମାନ ଅକ୍ଷୁର୍ଣ୍ଣ ରଖିବା ପାଇଁ ଶାନ୍ତି ରାଜନାମାଙ୍କୁ ମାନିବାର ଛଳନା କଲା । ସୌଭାଗ୍ୟର ବିଷୟ ଫ୍ରାନ୍ସ କୌଣସି ଦ୍ୱିଧା ପ୍ରକାଶ ନ କରି ଜେନେଭା ଚୁକ୍ତିକୁ କାର୍ଯ୍ୟକାରୀ କରିବା ନିମନ୍ତେ ପାଶ୍ଚାତ୍ୟ ରାଜ୍ୟରେ ସେ ତରଫରୁ ପ୍ରଥମ ପ୍ରସ୍ତାବ ଆଣିଥିଲା ।

ଫ୍ରାନ୍ସର ଏହି ଅକୃପଣ ଉଦାରତା ମାର୍କିନ ଯୁକ୍ତରାଷ୍ଟ୍ରକୁ ସୁଖ ଦେଇନ ନାହିଁ । ସେ ଭିତରେ ଭିତରେ ଫରାସୀ ଉପନିବେଶକୁ ନିଜ ଆୟତ୍ତ କରିବା ପାଇଁ ଯେଉଁ ଚେଷ୍ଟା ଚଳାଇ ଆସୁଥିଲା ତାହାକୁ ଗୁପ୍ତ ନ ରଖି ସାଧାରଣରେ ପ୍ରକାଶ କରିଦେଲା । ଭିଏତନାମର ଦକ୍ଷିଣ ପଟରେ ଥିବା ଫରାସୀ ଅଧିକୃତ ବ୍ୟବସାୟ ପ୍ରତିଷ୍ଠାନ, ବାଣିଜ୍ୟକେନ୍ଦ୍ର ଓ ସାମରିକ ଘାଟିମାନଙ୍କୁ କୌଶଳ ପ୍ରୟୋଗ କରି ନିଜ ହାତକୁ ଆଣି ଆସିଲା । ଉତ୍ତର ଭିଏତନାମ ସହିତ ଦକ୍ଷିଣାଞ୍ଚଳର ସମସ୍ତ ବ୍ୟବସାୟିକ, ଆର୍ଥିକ ସମ୍ପର୍କ ପ୍ରଥମ ସ୍ତରରେ ଛିନ୍ନ କରି ଦିଆଗଲା । ଏପରିକି ଉତ୍ତର ଓ ଦକ୍ଷିଣ ମଧ୍ୟରେ ଥିବା ପ୍ରବେଶ ପଥକୁ ବନ୍ଦ କରି ଦିଆଗଲା । ଦୁଇ ଅଞ୍ଚଳର ସୀମା ମଧ୍ୟରେ ବହୁଳ ପରିମାଣରେ ମାର୍କିନ ସୈନ୍ୟ ମୁତୟନ ହେଲେ ସୀମାନ୍ତ ରକ୍ଷା ପାଇଁ । ପ୍ରଥମ ଥର ପାଇଁ ଇଣ୍ଡୋଚୀନରେ ଦୁଇଟି ଉପନିବେଶବାଦୀ ଶକ୍ତିଙ୍କ ମଧ୍ୟରେ ସଙ୍ଘର୍ଷର ସୂତ୍ରପାତ ହେଲା । କିନ୍ତୁ ଦୁଇ ରାଷ୍ଟ୍ରଙ୍କର ସ୍ୱାର୍ଥ ଥିଲା ଭିନ୍ନ ଏବଂ ବିପରୀତମୁଖୀ । କାରଣ ଫରାସୀ ଉପନିବେଶ ଇଣ୍ଡୋଚୀନରେ, ମୁକ୍ତି-ଆନ୍ଦୋଳନକୁ ଦମନ କରିବା ପାଇଁ ଫ୍ରାନ୍ସ ଯୁକ୍ତରାଷ୍ଟ୍ରର ସାହାଯ୍ୟ ନେଇଥିଲା । ଇଣ୍ଡୋଚୀନ ଉପନିବେଶରେ ଫ୍ରାନ୍ସର ଅବସ୍ଥାନକୁ ସ୍ଥାୟୀ କରିବା ପାଇଁ ଯୁକ୍ତରାଷ୍ଟ୍ର ପ୍ରଥମେ ଭିଏତନାମରେ ପ୍ରବେଶ କରିଥିଲା । କିନ୍ତୁ ସମୟକ୍ରମେ ଫ୍ରାନ୍ସକୁ ସେଠାରୁ ତଡ଼ି ଇଣ୍ଡୋଚୀନକୁ ନିଜ ଉପନିବେଶ କରିବା ପାଇଁ ସେଠାରେ ସାମରିକ ବଳ ପ୍ରୟୋଗ କରି ଚାଲିଛି । ଫ୍ରାନ୍ସ ତାର ଏହି ସ୍ୱାର୍ଥସିଦ୍ଧି ଅଭିସନ୍ଧିକୁ ବହୁ ପୂର୍ବରୁ ବୁଝିପାରି ଥିଲେ ମଧ୍ୟ କୌଣସି ପ୍ରତିକାର କରି ପାରିନାହିଁ ।

ଜେନେଭା ସମ୍ମିଳନୀର ସିଦ୍ଧାନ୍ତ ବିଜ୍ଞପ୍ତି ପ୍ରକାଶ ପାଇବାର ଏକମାସ ପୂର୍ବରୁ ଅର୍ଥାତ୍ ଜୁନ ୧୬ ତାରିଖ ଦିନ ହ୍ୟୁ'ଠାରେ ଅବସ୍ଥାପିତ ମାର୍କିନ ଯୁକ୍ତରାଷ୍ଟ୍ରର ସଖୀକୁଟଣୀ ବାଓଡ଼ାଇ ସରକାର ନିଜେ ଗାଦି ପରିତ୍ୟାଗ କରି ଡିନ୍-ଡିଏମ୍ ନାମକ ଏକ ସାମନ୍ତବାଦୀ ପୃଷ୍ଠପୋଷକ ହାତରେ ଦକ୍ଷିଣାଞ୍ଚଳର ଶାସନ କ୍ଷମତା ଅର୍ପଣ କଲେ । ଏହି କ୍ଷମତା ହସ୍ତାନ୍ତରର ପୃଷ୍ଠଭୂମିରେ ଥିଲେ ଜନ ଫଷ୍ଟର ଡଲେସ । ବାଓଡାଇଙ୍କଠାରୁ ଡିନ୍‌ଡିଏମ୍‌ଙ୍କୁ ଅଧିକ ଶକ୍ତିଶାଳୀ, ବୁଦ୍ଧିମାନ ଓ ଜଣେ ନିଷ୍ଠୁର ଅତ୍ୟାଚାରୀ ଶାସକଭାବେ ଜଣାଶୁଣା ଦେଖି ସେ ତାଙ୍କୁ ହିଁ ଭିଏତନାମ ଶାସନ ପାଇଁ ମନୋନୀତ କଲେ ।

ଡିନ୍‌-ଡିଏମ୍‌, ହ୍ୟୁ ସହରର ପ୍ରସିଦ୍ଧ ସାମନ୍ତବାଦୀ ଗୋ ପରିବାରର ସନ୍ତାନ ତାଙ୍କର ବଡ଼ଭାଇ ହ୍ୟୁ'ର କ୍ୟାଥଲିକ ଖ୍ରୀଷ୍ଟାନ ସମ୍ପ୍ରଦାୟର ଧର୍ମାଧ୍ୟକ୍ଷ । ଡିନ୍‌-ଡିଏମ୍‌ ନ୍ୟୁ ଜର୍ସିରେ ଥିବା କ୍ୟାଥଲିକ କଲେଜରୁ ଆମେରିକୀୟ ଗଣତାନ୍ତ୍ରିକ ପଦ୍ଧତି ବିଷୟରେ ଉଚ୍ଚଶିକ୍ଷା ଲାଭ କରି ଫେରି ଆଥାନ୍ତି । ଆମେରିକା ଶାସନ ବ୍ୟବସ୍ଥା ପ୍ରତି ତାଙ୍କର ଆନୁଗତ୍ୟ ଓ ଶ୍ରଦ୍ଧା ଅତୁଟ ଥାଏ । ଡଲେସ ଏପରି ଏକ ବିଶ୍ୱସ୍ତ ଅନୁଚର ପାଇ ସୁଯୋଗ ହରାଇବେ କିପରି ? ଡିନ୍‌-ଡିଏମ୍‌ ଶାସନକୁ ସ୍ୱୀକାର କରିନେବା ସଙ୍ଗରେ ଫ୍ରାନ୍‌ସକୁ ରାଜି କରାଇବା ପାଇଁ ଆମେରିକା ତରଫରୁ ଅକ୍ଳାନ୍ତ ଉଦ୍ୟମ ଚାଲିଲା । ଜେନେଭା ସମ୍ମିଳନୀ ଚାଲୁଥିବାବେଳେ ଆମେରିକା ଯୁକ୍ତରାଷ୍ଟ୍ର ତରଫରୁ ଫ୍ରାନ୍‌ସର ଶାସନମୁଖ୍ୟଙ୍କ ନିକଟକୁ ଏକ ପ୍ରସ୍ତାବ ଆସିଲା ଯେ ଭିଏତନାମରେ ଯଦି ସେମାନେ କୌଣସି ପ୍ରଭାବ ବିସ୍ତାର କରିବାକୁ ଚାହାନ୍ତି ତେବେ ବାଓଡାଇଙ୍କୁ କହି ଡିନ୍‌-ଡିଏମ୍‌ ହାତରେ ଶାସନ କ୍ଷମତା ଅର୍ପଣ କରିବା ମଙ୍ଗଳକର ହେବ ।

ଆମେରିକା ଯୁକ୍ତରାଷ୍ଟ୍ରର ଏହି ଚାଲରେ ଫ୍ରାନ୍‌ସ ସହଜରେ ପଡ଼ିଗଲା । ସମ୍ମିଳନୀ ମଧ୍ୟରେ ସେ ଫ୍ରାନ୍‌ସଠାରୁ ଗୋପନ ଚୁକ୍ତି ପତ୍ରରେ ସ୍ୱାକ୍ଷର କରି ନେଲା । ଜେନେଭା ସମ୍ମିଳନୀ ଶେଷ ହେବାର ମାତ୍ର ତିନି ସପ୍ତାହ ପରେ ଡିନ୍‌-ଡିଏମ୍‌ ନିଜକୁ ବାଓଡାଇ ଶାସିତ ଭିଏତନାମ ରାଜ୍ୟର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଏବଂ ପ୍ରତିରକ୍ଷାମନ୍ତ୍ରୀଭାବେ ଘୋଷଣା କଲେ । ଗୋପନରେ ତାଙ୍କୁ ଅର୍ଥନୈତିକ ତଥା ସାମରିକ ସାହାଯ୍ୟ ଦେବାପାଇଁ ମାର୍କିନ ରାଷ୍ଟ୍ରପତି ଆଇଜେନ ହୋଭରଙ୍କଠାରୁ ପ୍ରତିଶ୍ରୁତି ମିଳିଲା ।

ସେହିଦିନ ଠାରୁ ଭିଏତନାମରେ ଦୁଇଟି ଶାସନ ଗାଦି, ଗୋଟିଏ ଉତ୍ତରର ସ୍ୱାଧୀନ ବିପ୍ଳବୀ ସରକାର ଏବଂ ଅନ୍ୟ ଗୋଟିଏ ଦକ୍ଷିଣରେ ମାର୍କିନ ଆଶ୍ରିତ ଡିନ-ଡିଏମ ସଖା କୁଣ୍ଡେଇ ସରକାର । ଦକ୍ଷିଣ ସହିତ ଉତ୍ତରର କୌଣସି ଯୋଗାଯୋଗ ନାହିଁ । ଦକ୍ଷିଣ ଓ ଉତ୍ତର ପରସ୍ପରକୁ ମୁହଁ ଫେରାଇ ଠିଆ ହୋଇଛନ୍ତି ।

ଅନେକ ଦିନ ପରେ ଆଜି ସ୍ପଷ୍ଟ ବୁଝା ପଡ଼ୁଛି ଯେ ସେତେବେଳେ ଜେନେଭା ଶାନ୍ତି ସନନ୍ଦରେ ସ୍ୱାକ୍ଷର କରିବା ପାଇଁ ଯୁକ୍ତରାଷ୍ଟ୍ର କାହିଁକି ପଛଘୁଞ୍ଚା ଦେଇଥିଲା ।

ଜେନେଭା ଶାନ୍ତି ଚୁକ୍ତି ସମ୍ପାଦିତ ହେଲା ପରେ ପରେ ମାର୍କିନ ଯୁକ୍ତରାଷ୍ଟ୍ର ପକ୍ଷରୁ ଅଭିଯୋଗ ଓ ପ୍ରତିରୋଧ ଯେ ଭଳି ପରିମାଣରେ ପ୍ରକାଶ ପାଇଥିଲା । ଠିକ ସମପରିମାଣ ଅଭିଯୋଗର ଶିକାର ହେଲେ କମ୍ରେଡ଼ ହୋ' । ପାର୍ଟି ଭିତରେ

ଥିବା ଅନେକ କମ୍ୟୁନିଷ୍ଟ ତାଙ୍କର ଏହି ଐତିହାସିକ ରାଜିନାମାକୁ ସ୍ୱୀକାର କରି ପାରୁ ନ ଥିଲେ । ଡିଏନ-ବିଏନ ଫୁ ବିଜୟ ପରେ ପରେ ଦେଶ ଭାଗ ପରି ଦାରୁଣ ବିପର୍ଯ୍ୟୟକୁ ସେମାନେ ଆତ୍ମହତ୍ୟା ବୋଲି ମନେ କରୁଥିଲେ । ପରୋକ୍ଷରେ ସେମାନେ ହୋ'ଙ୍କୁ ଏଥିପାଇଁ ଦାୟୀ କଲେ । ହୋ ଯେ ଅନାବଶ୍ୟକ ଉଦାରତାର ପରିଚୟ ଦେଇ ଦକ୍ଷିଣାଂଚଳକୁ ଶତ୍ରୁ ହାତରେ ଛାଡ଼ି ଦେଉଛନ୍ତି, ଏହା ଥିଲା ତାଙ୍କର ପ୍ରତିବାଦ । ଅପର ପକ୍ଷରେ ଶତ୍ରୁ ସହିତ ଶାନ୍ତି ସନ୍ଧି କରିବାର କୌଣସି ଆବଶ୍ୟକତା ଥାଇପାରେ ବୋଲି ସେମାନେ ବୁଝୁ ନ ଥିଲେ । ଡିଏନ-ବିଏନ-ଫୁରେ ଯେତେବେଳେ ଗରିଲାମାନଙ୍କର ଜିତାପଟ ହୋଇ ସାରିଛି, ସେ ଅବସ୍ଥାରେ ସାମରିକ ବଳ ପ୍ରୟୋଗ କରି ଶତ୍ରୁକୁ ପ୍ରତିରୋଧ କରିବାରେ ଅନ୍ୟାୟ ରହିଲା କେଉଁଠି ?

ହୋ'ଙ୍କୁ ସେତେବେଳେ ଚଉଷଠି ବର୍ଷ ବୟସ । ଅଖଣ୍ଡ ଭିଏତନାମର ସ୍ୱପ୍ନ ଦେଖି ଦେଖି ସେ ସଂଗ୍ରାମ କରି ଆସିଛନ୍ତି । ବୟସ କମ୍ ପଡ଼ୁ ନାହିଁ । ବାର୍ଦ୍ଧକ୍ୟ କ୍ଳାନ୍ତିର ଲେଶ ମାତ୍ର ଅନୁଭୂତ ନାହିଁ ତାଙ୍କ ଶରୀରରେ । ଆଜନ୍ମ ତରୁଣ ପରି ସେ ଅବିରାମ ପରିଶ୍ରମ କରି ଚାଲିଛନ୍ତି । ବାଧାବିଘ୍ନ, ଘାତ ବା ପ୍ରତିଘାତର ସୀମା ନାହିଁ ତାଙ୍କ ଜୀବନରେ । ସେହି ଅସୀମ ଯନ୍ତ୍ରଣା ମଧ୍ୟରୁ 'ଦେଶ-ବିଭାଜନ' ଗୋଟିଏ ମାତ୍ର ସହ୍ୟ କରି ପାରୁ ନ ଥିଲେ ମଧ୍ୟ ତାର ବାସ୍ତବବାଦୀ ପ୍ରତିକ୍ରିୟାକୁ ସେ କେବେ ଏଡ଼ାଇ ପାରୁ ନ ଥିଲେ । ଜେନେଭା ସମ୍ମିଳନୀରେ ତାଙ୍କର ସମସ୍ତ କାର୍ଯ୍ୟାବଳୀ ଯେ ମୂଳନୀତିଗତ ଓ ସମୟୋପଯୋଗୀ ସେ ଆଜି ମଧ୍ୟ ତାହା ଦାବୀ କରନ୍ତି । ସାଧାରଣଙ୍କ ମନରେ ଉଙ୍କି ମାରୁଥିବା ଅସନ୍ତୋଷ, ସନ୍ଦେହକୁ ମୋଚନ କରିବାକୁ ଯାଇ ସେ ଲାଓ ଡଙ୍ଗ ପାର୍ଟି ସମ୍ମିଳନୀରେ କହିଲେ ଯେ,

"ଆଗେ ଆମର ମୂଳମନ୍ତ୍ର ଥିଲା ଶେଷ ପର୍ଯ୍ୟନ୍ତ ପ୍ରତିରୋଧ ଚଳାଇ ରଖିବା', ବର୍ତ୍ତମାନ ପରିବର୍ତ୍ତିତ ନୂତନ ପରିସ୍ଥିତିରେ ସେହି ସ୍ଥାନ ଗ୍ରହଣ କରିବ 'ଶାନ୍ତି ଜାତୀୟଐକ୍ୟ, ସ୍ୱାଧୀନତା ଏବଂ ଗଣତନ୍ତ୍ର' ... ... ... ମଣିଷ ଯେତେବେଳେ ଆଲୋଚନା ଆରମ୍ଭ କରେ ସେତେବେଳେ ପରସ୍ପର ପ୍ରତି ଉଦାରଭାବ ପୋଷଣ କରିବା ଉଚିତ । ଅତୀତରେ ଆମେ କହୁଥିଲେ ଫରାସୀ ଆକ୍ରମଣକାରୀମାନଙ୍କୁ ବିତାଡ଼ିତ କରିବାକୁ ପଡ଼ିବ, ଯେମାନଙ୍କୁ ନିଶ୍ଚିହ୍ନ କରିବାକୁ ହେବ, ବର୍ତ୍ତମାନ ଫରାସୀମାନେ ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସେମାନଙ୍କର ସୈନ୍ୟ ଅପସାରଣ କରିନେବା ପାଇଁ ରାଜି ହୋଇଛନ୍ତି ।

"ସାମୟିକ ଦେଶ ଭାଗ ସମ୍ପର୍କରେ ମୁଁ ଏତିକି କହିପାରେ, ଯେଉଁ ଅଞ୍ଚଳମାନଙ୍କରେ ସୈନ୍ୟମାନଙ୍କୁ ନୂତନ କରି ମୁତୟନ କରିବାକୁ ପଡ଼ିବ ସେ

ସ୍ଥାନମାନଙ୍କୁ ନିର୍ଦ୍ଦିଷ୍ଟ କରିଦେବା ମାନେ ନୁହେଁ ଦେଶକୁ ଦ୍ୱିଖଣ୍ଡିତ କରିବା । ଏହା ଗୋଟିଏ ସାମୟିକ ବ୍ୟବସ୍ଥା, ଯାହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ସଫଳଭାବେ ଦେଶକୁ ପୁନର୍ବାର ଐକ୍ୟବଦ୍ଧ କରିବା । ଏତଦ୍ଭିନ୍ନ ଧରି ଆମର ସେହିସବୁ ସ୍ୱଦେଶବାସୀ ମୁକ୍ତ ଅଞ୍ଚଳମାନଙ୍କରେ ବାସ କରିଥିଲେ ସେମାନଙ୍କ ମଧ୍ୟରୁ ଅନେକ ଶତ୍ରୁ ଅଧିକୃତ ଅଞ୍ଚଳର ଅଧିବାସୀ ହେବେ । ସେମାନଙ୍କର ଅସନ୍ତୋଷର କାରଣ ନିଶ୍ଚୟ ରହିଛି । ଅନେକ ହୁଏତ ଏ ଘଟଣାକୁ ଭଲ ଆଖିରେ ଦେଖି ପାରିବେ ନାହିଁ । କେତେକ ହୁଏତ ହତାଶ ହୋଇ ପଡ଼ିବେ ଏବଂ ଆଉ କେତେକ ଆମ ଶତ୍ରୁଦ୍ୱାରା ବ୍ୟବହୃତ ହେବେ । ସେମାନଙ୍କୁ ଆମେ ସ୍ପଷ୍ଟ ଭାବେ ବୁଝାଇ ଦେବା ଯେ ସମଗ୍ର ଦେଶର ସ୍ୱାର୍ଥ ଏବଂ ଦେଶର ସ୍ଥାୟୀ ସ୍ୱାର୍ଥ ପାଇଁ ସେମାନେ ବର୍ତ୍ତମାନର ନୂତନ ପରିସ୍ଥିତିକୁ ମାନିନେବେ । ତା କରି ପାରିଲେ ସେମାନେ ପରେ ଗୌରବ ମଣ୍ଡିତ ହୋଇ ପାରିବେ । ଜାତି ସେମାନଙ୍କ ନିକଟରେ କୃତଜ୍ଞ ରହିବ ।

ସେହି ସମସ୍ୟାରୁ ଉପୁଜିଥିବା ଦୋଷ ତ୍ରୁଟି ସମ୍ବନ୍ଧରେ ସେ ଦେଶବାସୀଙ୍କୁ ସଚେତନ କରିବାକୁ ଯାଇଁ କହିଲେ ଯେ

"ନିମ୍ନୋକ୍ତ ଭ୍ରାନ୍ତି ଘଟିପାରେ ; ବାମପନ୍ଥୀ ବିଚ୍ୟୁତି—କ୍ରମାଗତ ବିଜୟରେ ମଦୋନ୍ମତ୍ତ ହୋଇ କିଛି ଲୋକ ଯେ କୌଣସି ମୂଲ୍ୟ ଦେଇ ଶେଷ ପର୍ଯ୍ୟନ୍ତ ଲଢ଼ାଇ ଚାଲୁ ରଖିପାରିବେ । ଯେଉଁ ସବୁ ଲୋକ ଗଛ ଦେଖି ଜଙ୍ଗଲ ଦେଖି ପାରେନା, ସେମାନଙ୍କ ପରି ଏମାନେ କେବଳ ଶତ୍ରୁର ଛୁଟିଯାଇଥିବା ପଦଚିହ୍ନ ଦେଖନ୍ତି, ସେମାନଙ୍କର କୂଟନୀତି ବୁଝିପାରନ୍ତି ନାହିଁ । ଏମାନେ କେବଳ ଫରାସୀମାନଙ୍କୁ ଦେଖିଛନ୍ତି । ଆମେରିକୀୟଙ୍କୁ ଦେଖି ନାହାନ୍ତି । ସାମରିକ କାର୍ଯ୍ୟରେ ସେମାନଙ୍କର ଖୁବ ଉତ୍ସାହ କିନ୍ତୁ କୂଟନୀତିକୁ ସେମାନେ ଗୁରୁତ୍ୱ ଦିଅନ୍ତି ନାହିଁ । ସେମାନେ ବୁଝି ପାରନ୍ତି ନାହିଁ ଯେ ଗୋଟିଏ ଉଦ୍ଦେଶ୍ୟ ସାଧନ ପାଇଁ ସଶସ୍ତ୍ର ସଂଗ୍ରାମର ଖୁବ ନିକଟରେ ରହି ଆମେ ଆନ୍ତର୍ଜାତୀୟ ସମ୍ମିଳନୀ ମାନଙ୍କରେ କାର୍ଯ୍ୟ କରୁଛୁ । ସେମାନେ ନୂତନ କର୍ମପନ୍ଥାର ବିରୋଧ କରୁଛନ୍ତି; ଦକ୍ଷିଣପନ୍ଥୀ ହୋଇଗଲୁ ବୋଲି ଅଭିଯୋଗ ବାଢ଼ୁଛନ୍ତି; ଶତ୍ରୁପକ୍ଷକୁ ଅନାବଶ୍ୟକ ଉଦାରତା ପ୍ରଦର୍ଶନ କରାଯାଉଛି ବୋଲି କହୁଛନ୍ତି, ସେମାନେ ଏପରି ସର୍ତ୍ତ ଆରୋପ କରୁଛନ୍ତି ଯାହାକି ଅନ୍ୟପକ୍ଷ ପାଇଁ ଗ୍ରହଣଯୋଗ୍ୟ ନୁହେଁ । ସେମାନେ ସବୁକିଛିକୁ ମୁହୂର୍ତ୍ତ ମଧ୍ୟରେ କରିଦେବା ପାଇଁ ଚାହୁଁଛନ୍ତି, କିନ୍ତୁ ବୁଝନ୍ତି ନାହିଁ ଶାନ୍ତି ପାଇଁ ସଂଗ୍ରାମର ପଥ କେତେ ଜଟିଳ ଏବଂ କଠୋର । ଆମେ ଯଦି ବାମପନ୍ଥୀମାନଙ୍କ ନିକଟରେ ଆତ୍ମସମର୍ପଣ କରିବା ତେବେ ଆମେ ନିଃସଙ୍ଗ ହୋଇଯିବା, ନିଜ ଦେଶର ଜନସାଧାରଣଙ୍କଠାରୁ ବିଚ୍ଛିନ୍ନ ହୋଇ ପଡ଼ିବା, ବିଶ୍ୱଜନତା 'ସହିତ ଆମର ସଂପର୍କ ତୁଟିଯିବ, ଆମେ ବ୍ୟର୍ଥ ମନୋରଥ ହେବା" ।

ଜାତି ଉଦ୍ଦେଶ୍ୟରେ ହୋ'ଙ୍କର 'ଏହି ବାର୍ତ୍ତା ଅଭିଯୋଗକାରୀ ମାନଙ୍କର ସକଳ ସନ୍ଦେହକୁ ଘୋଡ଼ାଇ ପକାଇଛି । ଜେନେଭା ଶାନ୍ତି ଚୁକ୍ତିକୁ ସମୟୋପଯୋଗୀ ରାଜନୈତିକ ପଦକ୍ଷେପ ବୋଲି ସେମାନେ ମାନି ନେବାକୁ ବାଧ୍ୟ । କେବଳ ଦେଶଭିତରେ କାହିଁକି ଦେଶବାହାରେ ଏହି ଚୁକ୍ତି ପାଇଁ କମ୍ରେଡ଼ ହୋ-ଚି ମିନ୍ ଅଖଣ୍ଡ ସମ୍ମାନର ଅଧିକାରୀ ହୋଇଛନ୍ତି । ସମାଜବାଦୀ ସୋଭିଏତ ରାଷ୍ଟ୍ରସଂଘ ଓ ଗଣପ୍ରଜାତନ୍ତ୍ରୀ ଚୀନନେତାଙ୍କ ସର୍ବଜନପୂଜ୍ୟ ନେତା ଭାବରେ ଗ୍ରହଣ କରାଯାଇଛି । ଏସିଆ ମହାଦେଶର ଅଦ୍ୱିତୀୟ କୁଶଳୀ ରାଜନୈତିକ ଭାବେ ସେ ଅଭିନବ ଗୌରବ ଅର୍ଜନ କରିଛନ୍ତି । ସ୍ୱାଧୀନତା, ଏକତା ଓ ଶାନ୍ତି ପରସ୍ପରଠାରୁ ବିଚ୍ଛିନ୍ନ ନୁହେଁ, ସେମାନେ ଅଙ୍ଗାଙ୍ଗୀ ଜଡ଼ିତ, ଗୋଟିକର ସ୍ଥିତି ପାଇଁ ଅପରର ଉପସ୍ଥିତି ଅନିବାର୍ଯ୍ୟ ଏକଥା ପ୍ରମାଣିତ କରିଛନ୍ତି କମ୍ରେଡ଼ ହୋ' । ତେଣୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଲାଭ ପାଇଁ ଆବଶ୍ୟକ ପଡ଼ିଲେ ଗୋଟିଏ ବାର କାହିଁକି ଅନେକବାର ଶାନ୍ତି ଚୁକ୍ତି ବା ଯୁଦ୍ଧ ବିରତି ସନନ୍ଦ ସ୍ୱାକ୍ଷରିତ କରିବାକୁ ପଡ଼ିବ, ଏ ସତ୍ୟ ସର୍ବସମ୍ମୁଖରେ ଉପସ୍ଥାପିତ କଲେ ସେ ।

# ୨୮

## ସମାଜବାଦୀ ବିପ୍ଳବ
## ଏବଂ ଅଖଣ୍ଡ ଭିଏତନାମ ପାଇଁ ପ୍ରସ୍ତୁତି

୧୯୫୫ ମସିହାର ନବବର୍ଷ ପହିଲା ତାରିଖ । ଐତିହାସିକ ବା-ଡିନ ଚୌକରେ ପ୍ରବଳ ଜନଗହଳି । ଅସ୍ଥାୟୀ ବିପ୍ଳବୀ ସରକାରର ରାଷ୍ଟ୍ରପତି କମ୍ରେଡ଼ ହୋ ଚି-ମିନ୍ ରାଜଧାନୀକୁ ଫେରୁଛନ୍ତି । ଅନେକ ବର୍ଷ ପରେ ତାଙ୍କ ପାଦ ପଡ଼ୁଛି ମାତୃଭୂମିର ରାଜନୈତିକ ପ୍ରାଣକେନ୍ଦ୍ର ଏହି ହାନୋଇ ସହରରେ । ହଜାର ହଜାର ନରନାରୀ ତାଙ୍କର ଶୁଭ ଦର୍ଶନ ପାଇଁ ଭିଡ଼ ଜମାଇଛନ୍ତି । ସାଧାରଣ ନାଗରିକଙ୍କଠାରୁ ଆରମ୍ଭ କରି ମୁକ୍ତିବାହିନୀର ସୈନିକ ପର୍ଯ୍ୟନ୍ତ ତାଙ୍କୁ ବଧାଇ ଜଣାଇବା ପାଇଁ ଧାଡ଼ିବାନ୍ଧି ଠିଆ ହୋଇଛନ୍ତି । ହୋ-ଚି-ମିନ୍ ଆସିବେ । ଜେନେଭା ଶାନ୍ତି ସନ୍ଧିର ନିପୁଣ ବିଜ୍ଞାଣୀ, ଡିଏ-ନ୍ବିଏନ୍-ଫୁର ବିଜୟୀ ବାତ୍ତ୍ରୀବନ୍ଧ, ଭିଏତନାମ ମୁକ୍ତିବିପ୍ଳବର ଅଦ୍ୱିତୀୟ ନେତା କମ୍ରେଡ଼ ହୋ-ଚି-ମିନ ଏହି ସହର ପରିଦର୍ଶନରେ ଆସିବେ । ସେଥିପାଇଁ ଏ ଲୋକାରଣ୍ୟ, ସେଥିପାଇଁ ଏପରି ଐକାନ୍ତିକ ସମାବେଶ ।

ଡିଏନ୍-ବିଏନ୍-ଫୁର ବିଜୟ ଏବଂ ଜେନେଭା ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେବା ପରଠାରୁ ଫରାସୀ ସେନାବାହିନୀ ଉତ୍ତରାଞ୍ଚଳ ଛାଡ଼ି ଚାଲି ଯାଇଛନ୍ତି । ଉତ୍ତରର ସର୍ବଶେଷ ସାମରିକ ଘାଟି ହାଇଫଙ୍ଗ ଅଧିକାର ପାଇଁ ଜାତୀୟ ପ୍ରତିରୋଧ ସାମ୍ମୁଖ୍ୟ ତରଫରୁ ବିପୁଳ ଆୟୋଜନ ଚାଲିଛି । ଆଉ ମାତ୍ର କିଛି ଦିନ ପରେ ସମଗ୍ର ଉତ୍ତର ଖଣ୍ଡ ପୂର୍ଣ୍ଣ ସ୍ୱାଧୀନତା ଭୋଗ କରିବ । ଅସ୍ଥାୟୀ ବିପ୍ଳବୀ ସରକାର ସ୍ଥାୟୀ ଶାସନ ପ୍ରତିଷ୍ଠା କରିବ ।

ଆଗରୁ କୁହାଯାଇଛି ଜେନେଭା ଶାନ୍ତି ସନ୍ଧି ସ୍ୱାକ୍ଷରିତ ହେବା ସଙ୍ଗେ ସଙ୍ଗେ ଭିଏତନାମ ଦୁଇ ଖଣ୍ଡରେ ବିଭକ୍ତ ହୋଇଛି । ଏହି ବିଭାଜନ ସାମୟିକ ହେଲେ ମଧ୍ୟ ଦକ୍ଷିଣାଞ୍ଚଳରେ ମାର୍କିନ ଯୁକ୍ତରାଷ୍ଟ୍ର କର୍ତ୍ତୃତ୍ୱାଧୀନ ଡିନ୍-ଡିଏମ୍ ସରକାର ପ୍ରତିଷ୍ଠା ହୋଇଛି ଯେ କି ସବୁ ଦିଗରୁ ବିରୋଧ କରୁଛି ଉତ୍ତରର ଅସ୍ଥାୟୀ ବିପ୍ଳବୀ ସରକାରକୁ । ମାର୍କିନ ସାମ୍ରାଜ୍ୟବାଦମାନଙ୍କ ନିତ୍ୟ ପ୍ରରୋଚନା, ସାହାଯ୍ୟ ଓ ସହଯୋଗରେ ଡିନ୍-ଡିଏମ୍ ସରକାର ଦକ୍ଷିଣ ସୀମାନ୍ତରୁ ଉତ୍ତରକୁ ଆକ୍ରମଣ କରିବା ପାଇଁ ସାମରିକ ବଳ ପ୍ରୟୋଗ କରି ଚାଲିଛି । କିନ୍ତୁ ଉତ୍ତରାଞ୍ଚଳର ଗଣତନ୍ତ୍ରପ୍ରେମୀ

ମୁକ୍ତିକାମୀ ଜନତା ସମାଜବାଦୀ ଶିବିରର ସାହାଯ୍ୟ ଓ ତତ୍ତ୍ୱାବଧାନରେ ସେମାନଙ୍କର ଆକ୍ରମଣକୁ ସାମନା କରିବା ପାଇଁ ଆଭ୍ୟନ୍ତରୀଣ ଯୁଦ୍ଧ ପ୍ରସ୍ତୁତି ଅବ୍ୟାହତ ରଖିଛନ୍ତି ।

ମାର୍କିନ ସାମ୍ରାଜ୍ୟବାଦୀ ଓ ପୁଞ୍ଜିପତି ଶ୍ରେଣୀ ଭିଏତନାମର ଏକ ବିଶାଳ ଅଂଶକୁ ନିଜ ଉପନିବେଶରେ ପରିଣତ କରିଛନ୍ତି । ସେମାନଙ୍କର ଶୋଷଣ ଶାସନ ବ୍ୟବସ୍ଥାର କନୁଆଳୀ ମାତ୍ର ଡିନ୍-ଡିଏମ୍ । ଡିନ୍-ଡିଏମ୍ ମାଧ୍ୟମରେ ସୀମାନ୍ତ ଅଞ୍ଚଳକୁ ସର୍ବଦା ଆତଙ୍କିତ କରି ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଉତ୍ତର ଭିଏତନାମକୁ ସମୟକ୍ରମେ କରଗତ କରିବା ହେଉଛି ଅନ୍ତିମ ପ୍ରୟାସ । ସେଥିପାଇଁ ଯେଭଳି ବ୍ୟାପକ ଏବଂ କ୍ରମାଗତ ପ୍ରସ୍ତୁତି ଲୋଡ଼ା ସେଥିରେ କୌଣସି ପ୍ରକାର ଅବହେଳା କରାଯାଉ ନାହିଁ । ତୁଳନାତ୍ମକ ବିଚାରରୁ ଦେଖିଲେ ମାର୍କିନ ସମରବାଦୀମାନେ, ଫରାସୀ ଉପନିବେଶବାଦୀ ମାନଙ୍କଠାରୁ ଅଧିକ ଭୟଙ୍କର ଓ କ୍ଷତିକାରକ ।

ମାର୍କିନ ଯୁକ୍ତରାଷ୍ଟ୍ରର ଉପସ୍ଥିତି ଯୋଗୁଁ ଯେଉଁ ନୂତନ ପରିସ୍ଥିତି ଉପୁଜିଛି ତାକୁ ସମାଧାନ କରିବା ପାଇଁ ନୂତନ କୌଶଳ ଅବଲମ୍ବନ କରିବା ଉଚିତ୍ । କାରଣ ଫରାସୀମାନଙ୍କ ବିରୁଦ୍ଧରେ ଯେଉଁ ଅସ୍ତ୍ର ପ୍ରୟୋଗ କରାଯାଇ ଥିଲା ତାହା ଘଟଣାକ୍ରମେ ପୁରାତନ ଓ ଅଦରକାରୀ ହୋଇ ପଡ଼ିଛି । ମାର୍କିନ ଯୁକ୍ତରାଷ୍ଟ୍ର ପାଇଁ ନୂତନ ଅସ୍ତ୍ର, ଆଧୁନିକ ରଣନୀତି ଏବଂ ଅଭିନବ ରାଜନୈତିକ ତତ୍ତ୍ୱ ପ୍ରୟୋଜନ ।

ପାର୍ଟିକେନ୍ଦ୍ର କମିଟିର ସଦସ୍ୟ ଏବଂ ବିପ୍ଳବୀ ସରକାରର ମନ୍ତ୍ରୀମଣ୍ଡଳର ମିଳିତ ବୈଠକରେ ଏହି ନୂତନ ସମସ୍ୟାକୁ ଉପସ୍ଥାପିତ କରିବା ପାଇଁ କମ୍ରେଡ୍ ହୋ-ଚି-ମିନ୍ ଇଚ୍ଛା ପ୍ରକାଶ କଲେ । ସେତେବେଳେ ଜାତୀୟ ପ୍ରତିରୋଧୀ ସାମ୍ମୁଖ୍ୟର ଅଧିନାୟକ ଙ୍ଗୋ' ଗୁଏନ ଗିଆପ ରାଜଧାନୀରେ ଅବସ୍ଥାନ କରୁ ଥାଆନ୍ତି । ଉପସ୍ଥିତ-ବାନ ସଦସ୍ୟ ଓ ପାର୍ଟି କମ୍ରେଡ୍ମାନଙ୍କୁ ଏକତ୍ରିତ କରାଇ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ସର୍ବସମ୍ମତ ମତ ପ୍ରକାଶ ପାଇଲା । କମ୍ରେଡ୍ ହୋ' ସେଦିନ ଆରମ୍ଭ କଲେ—

"ଉତ୍ତର ଭିଏତନାମ ଜାତୀୟ ଗଣତାନ୍ତ୍ରିକ ବିପ୍ଳବର ସ୍ତର ଅତିକ୍ରମ କରି ସମାଜବାଦୀ ବିପ୍ଳବର ସ୍ରୋତ ସହିତ ସାମିଲ ହୋଇଛି । ବର୍ତ୍ତମାନର ଯୁଗ ହେଉଛି ପୁଞ୍ଜିବାଦଠାରୁ ସମାଜବାଦୀ ଅଗ୍ରଗତିର ଯୁଗ । ଏହି ଅବସ୍ଥାନ୍ତରର ମୁହୂର୍ତ୍ତର ପ୍ରଧାନ ଲକ୍ଷଣ ହେଉଛି ଆମ ଦେଶ ଯାଇ ସିଧା ହଳଖରିବେ କୃଷି ଅନଗ୍ରସରତାରୁ ସମାଜବାଦର ବକ୍ଷକୁ ଝାମ୍ପ ଦେବ । ଏଥିପାଇଁ ତାକୁ ପୁଞ୍ଜିବାଦୀ ବିକାଶର ରାସ୍ତା ଦେଇ ଯିବାକୁ ପଡ଼ିନାହିଁ । ସମାଜବାଦୀ ବ୍ୟବସ୍ଥାକୁ ଜୀବନ୍ତ ରଖିବାକୁ

ଯାଇ ଆମ ଜନତାର ମୁଖ୍ୟ କର୍ତ୍ତବ୍ୟ ହେଉଛି ସମାଜବାଦର ସାମଗ୍ରିକ ତଥା ବୈଜ୍ଞାନିକ ପ୍ରଗତି ଘଟାଇବା, ଧୀରେ ଧୀରେ ଉତ୍ତର ଭିଏତନାମକୁ ସମାଜବାଦ ଆଡ଼କୁ ଟାଣିନେବା । ଅତ୍ୟାଧୁନିକ ଶିଳ୍ପ, ବିକାଶଶୀଳ କୃଷି ଏବଂ ମାର୍ଜିତ ସଂସ୍କୃତିର ସମ୍ଭୃତିର ଜୀବନ୍ୟାସ ଦେବା । ସମାଜବାଦୀ ବିପ୍ଳବର କର୍ମଧାରା ମାଧ୍ୟମରେ ପୁରାତନ ମାନ୍ଧାତା ଅର୍ଥନୀତିର ଅବସାନ ଘଟାଇ ତା ସ୍ଥାନରେ ଆଉ ଏକ ସ୍ୱତନ୍ତ୍ର ଅଭିନବ ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାର ଉପସ୍ଥାପନା କରିବା ହିଁ ଆମ ଜନତାର ମୁଖ୍ୟ ଦାୟିତ୍ୱ" ।

ସମାଜବାଦୀ ବିପ୍ଳବ ଅବଶ୍ୟମ୍ଭାବୀ । ଏହାହିଁ ଦେଶରେ ସମାଜବାଦ ଆଣି ପାରିବ । ମଣିଷ ପ୍ରତି ମଣିଷର ଶୋଷଣ ମନୋବୃତ୍ତି ଦୂର କରି ସମୁଦାୟ ମାନବ ସମାଜକୁ ସୁଷ୍ଠୁ ସୁନ୍ଦର ଜୀବନ ପ୍ରଦାନ କରିବା ହିଁ ଏହାର ଲକ୍ଷ୍ୟ । ଏହି ମହତ୍ତର ଗୌରବମୟ ବିପ୍ଳବ ମାନବ ଇତିହାସରେ ଶୀର୍ଷସ୍ଥାନ ଅଧିକାର କରିଛି । କିନ୍ତୁ ବିପ୍ଳବର ପଥ ସବୁବେଳେ ଜଟିଳ ଏବଂ ଦୀର୍ଘ । ସମାଜର ସର୍ବାଙ୍ଗୀନ ସାମଗ୍ରିକ ଉନ୍ନତି କଲେ ବିପ୍ଳବର ଗତିକୁ ଦ୍ରୁତ, ତୀବ୍ର ଏବଂ କ୍ରମାଗତ କରିବାର ଦାୟିତ୍ୱ ହେଉଛି ଏ ଜନତାର । ସେମାନେ ନୂତନ ଜାତିଗଠନ ଦିଗରେ ସର୍ବାଦୌ ଉତ୍ସର୍ଗୀକୃତ ହେବା ପ୍ରୟୋଜନ । ସେମାନଙ୍କର ବ୍ୟକ୍ତିଗତ ତଥା ସାଂଗଠନିକ ଉଦ୍ୟମରେ ଦେଶରେ ସମାଜବାଦୀ ବିପ୍ଳବ ପାଇଁ ନୂତନ ବାତାବରଣ ସୃଷ୍ଟି ହେବା ଉଚିତ । ଯେପରି ସର୍ବହରା ଶ୍ରମଜୀବୀ ଦୁଃଖୀ ଦରିଦ୍ର ମଣିଷର ଉନ୍ନତି କଲେ ଶକ୍ତିଯନ୍ତ୍ରକୁ ନିୟୋଜିତ କରିଯାଇ ପାରିବ ।

ପ୍ରଥମ ପର୍ଯ୍ୟାୟରେ କମ୍ରେଡ ହୋ' ଦେଶବାସୀଙ୍କୁ ନିବେଦନ କଲେ ଦେଶ ନିର୍ମାଣ କାର୍ଯ୍ୟରେ ଅସୀମ ତ୍ୟାଗ, କଠୋର ନିରନ୍ତରତା ଓ ସ୍ୱଳ୍ପବ୍ୟୟିତା ଅବଲମ୍ବନ କରିବା ପାଇଁ । ସେ ନିଜେ ଥିଲେ ଏହି ଆଦର୍ଶର ପୂଜାରୀ । ଦିନର ଚବିଶ ଘଣ୍ଟା ମଧ୍ୟରୁ ମାତ୍ର ଦୁଇ ତିନି ଘଣ୍ଟାକୁ ବାଦ ଦେଲେ ଅବଶିଷ୍ଟ ସମସ୍ତତକ କଠୋର ପରିଶ୍ରମରେ ବିତିଯାଏ । ଗୋଟିଏ ଶ୍ରେଷ୍ଠ କୁଡ଼ିଆ ଥିଲା ତାଙ୍କର ବିଶ୍ରାମ-ସ୍ଥଳୀ । ପାଦରେ ରବର ଜୋତା ଓ ଦେହରେ ଗାଁ ତିଆରି ମୋଟା ପ୍ୟାଣ୍ଟ ସାର୍ଟ । ଏହି ପୋଷାକରେ ସେ ଭିଏତନାମର ସହରକଡ଼ ପଦବ୍ରଜରେ ବୁଲି ଆସିଛନ୍ତି । ଅର୍ଥନୈତିକ ବିପର୍ଯ୍ୟୟରୁ ମୁକ୍ତିଦାତାର ଉତ୍ତର ଭିଏତନାମକୁ ରକ୍ଷା କରିବା ପାଇଁ ସେ ବାଧ୍ୟ ହୋଇ ମିତବ୍ୟୟିତାର ଅସ୍ତ୍ର ନେଇଥିଲେ । କୃଷକ, ଶ୍ରମିକ ତଥା ଜନସାଧାରଣଙ୍କର ଖର୍ଚ୍ଚ କାଟ ଯୋଗୁ ରାଜକୋଷ ଉପରେ ବିଶେଷ ଚାପ ପଡ଼ିଲା ନାହିଁ । ଶ୍ରେଷ୍ଠ ଶ୍ରେଷ୍ଠ କାର୍ଯ୍ୟ ପାଇଁ ସମାଜବାଦୀ ବନ୍ଧୁମାନଙ୍କ ଠାରୁ ସାହାଯ୍ୟ ଅଣା

ନଲ ନାହିଁ । ୧୯୫୫ ମସିହା ଶେଷ ବେଳକୁ ଭିଏତନାମରେ ନୂଆ ରାସ୍ତାଘାଟ ପୋଲ, କଲ କାରଖାନା ଗଢ଼ି ଉଠିଲା ।

କୃଷି କ୍ଷେତ୍ରରୁ ସାମନ୍ତବାଦୀ ମାଲିକାନା ଲୋପ କରି ପୁଂଜିପତି ଶ୍ରେଣୀ ହାତରୁ ଅର୍ଥନୈତିକ ଓ ରାଜନୈତିକ କର୍ତ୍ତୃତ୍ୱ ଛଡ଼ାଇ ଆଣି ଭିଏତନାମର ଶ୍ରମିକ-କୃଷକ ମିଳିତ ସାମ୍ରାଜ୍ୟ ହାତରେ ଜାତୀୟ ଅର୍ଥନୀତିକୁ ଅର୍ପଣ କରିବା ପାଇଁ ସ୍ୱତନ୍ତ୍ର କର୍ମ ଯୋଜନାର ପ୍ରସ୍ତୁତ ଜନ ଗଣେତାନ୍ତ୍ରିକ ବିପ୍ଳବ ପର୍ଯ୍ୟାୟରେ ଆଶାଜନକ ସଫଳତା ଲାଭ କରିଛି । ତାକୁ ଶାଣିତ ଏବଂ ଆହୁରି ବେଗବାନ କରିବାର ସମସ୍ତ ବର୍ତ୍ତମାନ ଆସିଛି । କୃଷକ-ଶ୍ରମିକମାନଙ୍କର ପାରସ୍ପରିକ ସହଯୋଗ ଫଳରେ ଉତ୍ପାଦନ ବହୁଗୁଣରେ ବୃଦ୍ଧି ପାଉଛି । କୃଷି ଉତ୍ପାଦନର ବହୁଳତା ଯୋଗୁଁ ଖାଦ୍ୟ ପାଇଁ ବିଦେଶୀ ରାଷ୍ଟ୍ରମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ୁନାହିଁ । କେବଳ ଉନ୍ନତ ଧରଣର ଶିଳ୍ପ, ପ୍ରଯୁକ୍ତି ବିଦ୍ୟା, ଏବଂ ଯାନ୍ତ୍ରିକ କାରିଗରୀ ପାଇଁ ବିଦେଶୀ ସାହାଯ୍ୟର ଆବଶ୍ୟକତା ରହିଛି । ଖୁବ କମ ସମୟ ମଧ୍ୟରେ ଭିଏତନାମରେ ସମାଜବାଦୀ ବିପ୍ଳବର ଅଗ୍ରଗତି ଲକ୍ଷ୍ୟକରି ସମାଜବାଦୀ ରାଷ୍ଟ୍ରମାନେ ତାକୁ ସାହାଯ୍ୟ ଦେବା ପାଇଁ ଅଗଭର ହୋଇ ବାହାରି ଆସିଛନ୍ତି ।

ଦେଶ ବର୍ତ୍ତମାନ ଏକ ନୂତନ ଦୁନିଆକୁ ପାଦ ଦେଉଛି । ଆରପଟରେ ଶତ୍ରୁ ଶିବିର ଦକ୍ଷିଣ ଭିଏତନାମ । ସୀମାନ୍ତରେ ସବୁବେଳେ ଅନାଗତ ଯୁଦ୍ଧର ଆଶଙ୍କା । ଉତ୍ତପ୍ତ ଆଗ୍ନେୟଗିରି ମଧ୍ୟରେ ବିଚରଣ କଲା ଭଳି ଭିଏତନାମର ଅବସ୍ଥା । ଜନତାକୁ ପୁନର୍ବାର ଐକ୍ୟବଦ୍ଧ, ସଂଗଠିତ କରି ନ ପାରିଲେ ଦେଶ ଖଣ୍ଡ ଖଣ୍ଡ ହୋଇ ଯିବାର ସମ୍ଭାବନା ବହୁତ ବେଶୀ । ରକ୍ତଲବ୍ଧ ସ୍ୱାଧୀନତା ମଧ୍ୟ ଦୀର୍ଘସ୍ଥାୟୀ ହୋଇ ନ ପାରେ । ଜାତୀୟ ପ୍ରତିରୋଧ ସାମ୍ରାଜ୍ୟ ପରି ଦେଶବ୍ୟାପୀ ଏକ ବିଶାଳ ମୁକ୍ତିବାହିନୀ ଗଠନ ହେବା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ୧୯୫୫ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ ଜାତୀୟ ମିଳିତ ସାମ୍ରାଜ୍ୟର ଅଧିବେଶନ ହାନୋଇ ଠାରେ ବସିଲା । କମ୍ରେଡ ହୋ-ଚି-ମିନ ଏବଂ ମାର୍କ୍ସବାଦୀ କମିଟିର ବରିଷ୍ଠ ସଭ୍ୟମାନଙ୍କ ପରାମର୍ଶ ଅନୁଯାୟୀ 'ଲିନ୍ ଭିଏଟ'କୁ ଭାଙ୍ଗି ଦେଇ ତା ସ୍ଥାନରେ 'ପିତୃଭୂମି ଭିଏତନାମ ସାମ୍ରାଜ୍ୟ' ଗଠନ କରିବାର ପ୍ରସ୍ତାବ ନିଆଗଲା । କମ୍ରେଡ଼ ଟନ ଡୁକ ଥାଙ୍ଗ ଏହାର ସଭାପତି ନିର୍ବାଚିତ ହେଲେ । ସମଗ୍ର ଦେଶରେ ଶାନ୍ତି ଜାତୀୟଐକ୍ୟ, ସ୍ୱାଧୀନତା ଏବଂ ଗଣତନ୍ତ୍ର କାଏମ ରଖିବା ନିମନ୍ତେ 'ପିତୃଭୂମି ଭିଏତନାମ ସାମ୍ରାଜ୍ୟ' ପାଇଁ ନୂତନ ଖସଡ଼ା ପ୍ରସ୍ତୁତ କରାଗଲା ! ସାମ୍ରାଜ୍ୟକୁ ସାମରିକ ଦିଗରୁ ଅଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବା ପାଇଁ ଜାତୀୟ ପ୍ରତିରକ୍ଷା ବାହିନୀ ତରଫରୁ ବ୍ୟାପକ ପଦକ୍ଷେପମାନ ନିଆଗଲା । ଗରିଲା ବାହିନୀ ବ୍ୟତିରେକ

ଅତ୍ୟାଧୁନିକ ପାଶ୍ଚାତ୍ୟ ଯୁଦ୍ଧ ପ୍ରଣାଳୀ ଶିକ୍ଷା କରିବା ପାଇଁ ସାମ୍ମୁଖ୍ୟ ତରଫରୁ ସ୍ୱତନ୍ତ୍ର ସାମରିକ ଶିକ୍ଷାକେନ୍ଦ୍ର ମାନ ପ୍ରତିଷ୍ଠା ହେଲା ।

ଉତ୍ତର ଭିଏତନାମରେ ସମାଜବାଦୀ ବିପ୍ଳବ ସଫଳକାମୀ ହେବ । ସାମନ୍ତ-ବାଦୀ, ପୁଂଜିବାଦୀ ଶ୍ରେଣୀ ଶାସନ ବ୍ୟବସ୍ଥାର ଉଚ୍ଛେଦ ଘଟି ସେଠାରେ ସର୍ବହରାର ଏକନାୟକତ୍ୱ ପ୍ରକାଶ୍ୟ ରୂପ ନେବ । ଶ୍ରମଜୀବୀ, ମେହେନତୀ ଜନଗଣର ହାତରେ ରାଷ୍ଟ୍ରକ୍ଷମତା ଅର୍ପଣ କରିଦିବ । ସେ ସମୟ ଆଗତ ପ୍ରାୟ ।

୧୯୫୫ ମସିହା ସେପ୍ଟେମ୍ବର ୨୦ ତାରିଖରେ ପ୍ରଥମ ଜାତୀୟ ବିଧାନ-ସଭାର ପଞ୍ଚମ ସମ୍ମିଳନୀ ବସିଲା । ମନ୍ତ୍ରୀମଣ୍ଡଳର ସାମାନ୍ୟ ପରିବର୍ତ୍ତନ ଘଟି କମ୍ରେଡ଼ ଫାମ୍ ଭାନ ଡଙ୍ଗ ବିପ୍ଳବୀ ସରକାରର ପ୍ରଧାନ ମନ୍ତ୍ରୀ ହେଲେ । କମ୍ରେଡ଼ ହୋ'ଙ୍କର ଅତି ପୁରାତନ ଏବଂ ତରୁଣ ସହକର୍ମୀ ସେ । କମ୍ରେଡ଼ ଜେନେରାଲ ଗିଆପଙ୍କର ସହଯୋଦ୍ଧା । ମୁକ୍ତି ଆନ୍ଦୋଳନର ଅନ୍ୟତମ ସାରଥୀ ତଥା ଭିଏତନାମ ଶ୍ରମିକ ଦଳ ପଲିଟବ୍ୟୁରୋର ଗଣ୍ୟମାନ୍ୟ ସଦସ୍ୟ । ତାଙ୍କ ହାତରେ ବିପ୍ଳବୀ ସରକାର ସମାଜବାଦୀ ବିପ୍ଳବର ସଫଳ ରୂପାୟନ ପାଇଁ ଜୀବନ୍ତ, ଚଞ୍ଚଳ ଓ କର୍ମମୁଖର ହୋଇ ଉଠିବ ବୋଲି ହୋ ବିଶ୍ୱାସ କରନ୍ତି ।

ଜନ ଗଣତାନ୍ତ୍ରିକ ବିପ୍ଳବ ପରେ ଭୂସଂସ୍କାର ଏବଂ ଅର୍ଥନୈତିକ ପୁନଃ-ସଂସ୍ଥାନ ଉତ୍ତର ଭିଏତନାମରେ ମୌଳିକ ସମସ୍ୟାଗୁଡ଼ିକର ପରିବର୍ତ୍ତନ ଘଟାଇଛି ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ପୁରାତନ ବିଷମ ଧର୍ମୀ ଅର୍ଥନୈତିକ ବ୍ୟାଧି ସମୂଳେ ଲୋପ ପାଇନାହିଁ । ଗାଁ ଗହଳି ତଥା ସହରତଳି ଅଞ୍ଚଳମାନଙ୍କରେ ଥିବା କୃଷକ, ଶ୍ରେଷ୍ଠ ବ୍ୟବସାୟୀ, ଦୋକାନଦାର ଏବଂ କାରିଗରମାନେ ଏବେ ସୁଦ୍ଧା ଅର୍ଥନୀତିର ଏକ ବିରାଟ ଅଂଶକୁ ପ୍ରଭାବିତ କରିଛନ୍ତି । ଘରୋଇ ଶିଳ୍ପୋଦ୍ୟୋଗ ମାନଙ୍କରେ ବୁର୍ଜୁଆ ଶୋଷଣ ଆଜି ମଧ୍ୟ ଅବ୍ୟାହତ ରହିଛି । ଶ୍ରମିକମାନେ ଦୁଃଖ ଦାରିଦ୍ର୍ୟ ମଧ୍ୟରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ପାରିନାହାନ୍ତି । ବୈପ୍ଳବିକ ସଂଗ୍ରାମର ଏହି ନିମ୍ନତମ ଦୁର୍ବଳତାର ସୁଯୋଗନେଇ ଶତ୍ରୁପକ୍ଷ ଅଗ୍ରଗତିର ପଥ ରୋଧ କରିବା ପାଇଁ ମୁଣ୍ଡ ଟେକି ଉଠୁଛନ୍ତି । ଜାତୀୟଐକ୍ୟ, ଏବଂ ସ୍ୱାଧୀନତାକୁ ବିପନ୍ନ କରୁଛନ୍ତି । ସେମାନଙ୍କର ମୂଳଚ୍ଛେଦନ କରିବାକୁ ହେଲେ ଭିଏତନାମ ସାଧାରଣ ଜନତାର ରାଜନୈତିକ ଚେତନାକୁ ଉନ୍ନତ, ମାର୍କସ ଓ ସମାଜବାଦ ଅଭିମୁଖୀ କରିବାକୁ ପଡ଼ିବ । ଶୋଷଣ ବିହୀନ, ଅର୍ଥନୈତିକ ଦାସତ୍ୱରୁ ମୁକ୍ତ ଏକ ଅର୍ଥନୈତିକ ଅବସ୍ଥାହିଁ ସେମାନଙ୍କର ଏହି ଚେତନାକୁ ଉଜ୍ଜୀବିତ କରିପାରିବ । ଏହି ଭରସାରେ ହୋ ତାଙ୍କର ବିପ୍ଳବୀ ସରକାରକୁ ନିର୍ଦ୍ଦେଶ ଦେଲେ ଦେଶରେ ଥିବା ବିଭିନ୍ନ ଶ୍ରେଣୀର ସ୍ୱାର୍ଥରକ୍ଷାକାରୀ ଅର୍ଥନୈତିକ ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକୁ ବ୍ୟକ୍ତିଗତ

ଥିଲା ଯାହାକୁ ମୁକ୍ତକରି ରାଷ୍ଟ୍ରୀୟ ସମ୍ପତ୍ତିରେ ପରିଣତ କରିବା ପାଇଁ । ତା ସ୍ଥାନରେ ସରକାରଙ୍କ ତରଫରୁ କୃଷି ସମବାୟ ପ୍ରତିଷ୍ଠାନ, ସରକାରୀ କ୍ଷୁଦ୍ର ଶିଳ୍ପୋଦ୍ୟୋଗ କୁଟୀର ଶିଳ୍ପ ସଂସ୍ଥାମାନ ଗଢ଼ି ଉଠିଲା । ସରକାରୀ ସ୍ତରରେ ସେହି ସଂସ୍ଥାମାନଙ୍କୁ ଆବଶ୍ୟକୀୟ କଞ୍ଚାମାଲ, ଅର୍ଥ, ଶିଳ୍ପ ଯନ୍ତ୍ରପାତି, କୃଷି ସାମଗ୍ରୀ ଓ ଉନ୍ନତ ବିହନ ଆଦି ଯୋଗାଇ ଦିଆଗଲା । କୃଷି ସମବାୟ ପ୍ରତିଷ୍ଠାନ ହାତରେ ଦେଶର ୭୮.୭ ଭାଗ ଭୂସଂପତ୍ତି ଅର୍ପଣ କରାଗଲା । ଏଥିରେ ଶତକଡ଼ା ୮୫ ଭାଗରୁ ଅଧିକ ବ୍ୟକ୍ତି ନିଯୁକ୍ତି ପାଇଲେ । ସମବାୟ ଦୃଷ୍ଟିରେ ଏହି ପ୍ରଣାଳୀର ଆଶାତୀତ ସଫଳତା କାର୍ଯ୍ୟ ଶିଳ୍ପକୁ ସେହି ଢଗରେ ଟାଣି ନେବା ପାଇଁ ପ୍ରେରଣା ଯୋଗାଇଲା । ଦେଖାଗଲା ୧୯୫୮ ମସିହା ଶେଷ ବେଳକୁ ପ୍ରାୟ ୧୦୫,୦୦୦ କ୍ଷୁଦ୍ର ବ୍ୟବସାୟୀ ସମବାୟରେ ଯୋଗ ଦେଇ ସାରିଛନ୍ତି । ବେକାରୀ, ଖାଦ୍ୟାଭାବ ଆଦି ଜଟିଳ ସମସ୍ୟାର ଆଂଶିକ ସମାଧାନ ଘଟିଛି । ଜନସାଧାରଣଙ୍କର ଜୀବନ ଧାରଣର ମାନ ଅପେକ୍ଷାକୃତ ଉନ୍ନତ ହୋଇଛି । ଆର୍ଥିକ ସ୍ୱଚ୍ଛଳତା ଏବଂ ସରକାରଙ୍କର ପ୍ରଗତିଶୀଳ ପଦକ୍ଷେପ ଯୋଗୁଁ ଶିକ୍ଷା, ସଂସ୍କୃତି, ସାହିତ୍ୟ ଓ ଜନସ୍ୱାସ୍ଥ୍ୟର ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇ ପାରିଛି ।

ଜାତି ଗଠନ ଢଗରେ ଏହି କେତୋଟି ମୌଳିକ ଆବଶ୍ୟକତାର ପରିପୂରଣ ପାଇଁ କମ୍ରେଡ଼ ହୋ' ତିନିବର୍ଷିଆ ଯୋଜନା ହାତକୁ ନେଇଥିଲେ । ଦେଖାଗଲା ଏହି କେବର୍ଷ ସମୟ ମଧ୍ୟରେ ଯୋଜନାବଦ୍ଧ ଅର୍ଥନୀତି ଆଶାତୀତ ସଫଳତା ଲାଭ କରି-ପାରିଛି । ସାଧାରଣ ବ୍ୟକ୍ତି ଚେତନାର ମାନ ପୂର୍ବାପେକ୍ଷା ଅଧିକ ବୃଦ୍ଧି ପାଇବାରେ ଲାଗିଛି । ସଂପୂର୍ଣ୍ଣ ଶ୍ରେଣୀହୀନ ଏକ ସମାଜବାଦୀ ସମାଜ ପାଇଁ ସେମାନଙ୍କର ମାନସିକ ତଥା ରାଜନୈତିକ ପ୍ରସ୍ତୁତ କୌଣସି ଦିଗରୁ କମ୍ ନୁହେଁ । ପ୍ରଚଳିତ ଅର୍ଦ୍ଧ ପୁଞ୍ଜିବାଦୀ ଶାସନସଂବିଧାନରେ ସେମାନେ ସନ୍ତୁଷ୍ଟ ନୁହନ୍ତି । ନୂତନ ପରିସ୍ଥିତି ଓ ସମସ୍ୟାକୁ ଦୃଷ୍ଟି ନୂତନ ଶାସନ ବ୍ୟବସ୍ଥା ସେମାନେ ଦାବୀ କରନ୍ତି ।

ଜନତାର ଦାବୀ ପାଇଁ ୧୯୫୯ ମସିହା ଡିସେମ୍ବର ୩୧ ତାରିଖ ଦିନ ଜାତୀୟ ବ୍ୟବସ୍ଥାପକ ସଭା ଦ୍ୱାରା ଉତ୍ତର ଭିଏତନାମ ପାଇଁ ନୂତନ ସଂବିଧାନ ଗୃହୀତ ହେଲା । ଉତ୍ତର ଭିଏତନାମରେ ସମାଜବାଦ ପ୍ରତିଷ୍ଠା କରିବା ଏବଂ ଏକ ଶାନ୍ତିପୂର୍ଣ୍ଣ, ସ୍ୱାଧୀନ, ସମୃଦ୍ଧ ଓ ଗଣତାନ୍ତ୍ରିକ ଅଖଣ୍ଡ ଭିଏତନାମ ଗଠନ କରିବା ସହିତ ଏକୀକରଣ ଦିଗରେ ଦୃଢ଼ ଓ କ୍ରମାଗତ ସଂଗ୍ରାମ ଚଳାଇବା ଥିଲା ଏହି ନୂତନ ସାମ୍ବିଧାନିକ ବ୍ୟବସ୍ଥାର ଅନ୍ୟ ଏକ ମୁଖ୍ୟ ଚରିତ୍ର ।

୧୯୬୦ ମସିହାର ପ୍ରଥମ ଭାଗ । ଉତ୍ତର ଭିଏତନାମରେ ସମାଜବାଦୀ ବିପ୍ଳବର ଜୁଆର କୂଳ ଲଂଘି ଆଗକୁ ମାଡ଼ି ଚାଲିଛି । ସାଧାରଣ ସଭା ସମିତିମାନଙ୍କରେ

କମ୍ରେଡ଼ ହୋ' ଏବଂ ତାଙ୍କର ସହକର୍ମୀମାନେ ଦକ୍ଷିଣ ଭିଏତନାମରେ ଅବସ୍ଥାପିତ ଡ଼ି.ଏମ୍. ସରକାରର ପ୍ରତିକ୍ରିୟାଶୀଳ, ଶୋଷଣକାରୀ, ଜନସ୍ୱାର୍ଥବିରୋଧୀ ନୀତିକୁ ସର୍ବସାଧାରଣରେ ନିନ୍ଦିତ କରାଇବା ପାଇଁ ସଯତ୍ନ ଉଦ୍ୟମ ଚଳାଇଛନ୍ତି । ଫଳରେ ଦକ୍ଷିଣ ଭିଏତନାମରେ ଏକ ବିପ୍ଳବ ସିଦ୍ଧ, ରାଜଦ୍ରୋହୀ, ଦେଶବତ୍ସଳ, ମୁକ୍ତିକାମୀ ଗଣ ସଂଗଠନ ମୁଣ୍ଡ ଟେକିଛି । ନିଜ ଦେଶରେ ଥାଇ ହୋ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ନିଜର ମୁକ୍ତ ହସ୍ତ ପ୍ରସାରଣ କରିଛନ୍ତି । ଦେଶ ବାହାରୁ ବିଦେଶୀ ମିତ୍ର ଶକ୍ତିମାନଙ୍କର ଆନ୍ତର୍ଜାତିକ ସମର୍ଥନ ପାଇବା ଆଶାରେ ହୋ' ପୃଥିବୀର ବିଭିନ୍ନ ସ୍ଥାନ ପରିଦର୍ଶନରେ ଗଲେ । ବର୍ମା, ମାଳୟ, ଚୀନ, ମଙ୍ଗୋଲିଆ ଓ ଇଣ୍ଡୋନେସିଆ ଆଦି ଦକ୍ଷିଣପୂର୍ବ ଏସିଆରେ ଥିବା ସହୋଦର ରାଷ୍ଟ୍ରମାନଙ୍କଠାରୁ ବିପୁଳ ଜନ-ସମର୍ଥନ ପାଇଲେ । ସୋଭିଏତ ୟୁନିଅନର ଅକୁଣ୍ଠ ସହଯୋଗ ତ ସବୁବେଳେ ସାଥିରେ ରହିଛି । ଆଫ୍ରିକା, ଲାଟିନ ଆମେରିକା ଏବଂ ଏସିଆ ମହାଦେଶର ପ୍ରତ୍ୟେକ ରାଷ୍ଟ୍ର ସହିତ ସେ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ରକ୍ଷା ନିମନ୍ତେ ନିଜ ତରଫରୁ ନିବେଦନ ଜଣାଇଲେ । ନିଜ ଦେଶ ତଥା ଦକ୍ଷିଣ ଭିଏତନାମର ମୁକ୍ତି ବିପ୍ଳବ ଏବଂ ଦୁଇ ଭିଏତନାମର ଅଖଣ୍ଡତା ଫେରାଇ ଆଣିବା କାର୍ଯ୍ୟରେ ସେ ବିଶ୍ୱ ଜନମତର ମତାମତକୁ ପରିଚାଳିତ କରିବା ପାଇଁ ଚାହିଁଥିଲେ । ତାଙ୍କର ଏହି ଉଦ୍ୟମ ପରବର୍ତ୍ତୀ ସମୟରେ ଭିଏତନାମ ଏକତ୍ରୀକରଣ ପାଇଁ ପ୍ରଭୂତ ସାହାଯ୍ୟ ଯୋଗାଇଛି ।

ଭିଏତନାମ କମ୍ୟୁନିଷ୍ଟ ପାର୍ଟି ଆଜି ତିରିଶ ବର୍ଷ ବୟସରେ ପଦାର୍ପଣ କରିଛି । ତିରିଶଟି ବସନ୍ତ ସେ ଭେଟିଛି ତା ଜୀବନରେ । କିନ୍ତୁ କେବେ ଏହି ରାଜଧାନୀର ମୁକ୍ତି ସେ ଦେଖି ନାହିଁ । ଶୈଶବରୁ ସେ ମୁକ୍ତ ଭୂମିରେ । ଆଜୀବନ ମୁକ୍ତି ପାଇଁ ସେ ବ୍ରତୀ । ଏବେ ସାମୟିକ ବିଶ୍ରାମ ମିଳିଛି ରଣାଙ୍ଗନରୁ । ମୁକ୍ତ ଫେରନ୍ତା ସୈନିକ ପରି ସେ ମା କୋଳକୁ ଫେରିଛି । ତିରିଶ ବାର୍ଷିକ ଶୁଭ ଜନ୍ମତିଥିକୁ ମହାସମାରୋହରେ ପାଳନ କରିବା ପାଇଁ ପିତୃଭୂମିର ରାଜଧାନୀରେ ସାରା ଦେଶର ଲୋକ ରୁଣ୍ଡ ହୋଇଛନ୍ତି । ପାଞ୍ଚଲକ୍ଷ ପାର୍ଟି ସଦସ୍ୟଙ୍କର ପାଞ୍ଚଶହ ପ୍ରତିନିଧି ଗହଣରେ ପାର୍ଟିର ତୃତୀୟ ଜାତୀୟ ସମ୍ମିଳନୀ ଆରମ୍ଭ ହୋଇଛି । ସମ୍ମିଳନୀର ସମବେତ ସଦସ୍ୟ ଦେଶବାସୀଙ୍କ ଶ୍ରୋତାମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇବାର ଦାୟିତ୍ୱ ତାଙ୍କର । ଗତ ତିରିଶ ବର୍ଷ ବ୍ୟାପୀ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଲିଖିତ ଭାବରେ କମ୍ରେଡ଼ ହୋ ଆଗତ କଲେ ପ୍ରକାଶ୍ୟ ଅଧିବେଶନରେ । ସେଥିରେ ଭିଏତନାମ ମୁକ୍ତି ଆନ୍ଦୋଳନର ଜନ୍ମ ଓ ତାପରଠାରୁ କେତେ ସ୍ତର ଦେଇ ଭିଏତନାମ ଗତି କରିଛି ସେ ସବୁର ସଂକ୍ଷିପ୍ତ ଓ ସାରଗର୍ଭକ ବିବରଣୀ-ମାନ ଉଲ୍ଲେଖ କରାଯାଇଥିଲା । ସ୍ୱାଧୀନୋତ୍ତର ଭିଏତନାମ ଓ ଅଖଣ୍ଡ ଭିଏତନାମ

ପାଇଁ ପରବର୍ତ୍ତୀ ସମୟରେ କି କି ନୂତନ ପଦକ୍ଷେପମାନ ନିଆଯାଇ ପାରିବ, ସେଥିପାଇଁ ନିର୍ଦ୍ଦିଷ୍ଟ ପ୍ରସ୍ତାବର ଉପସ୍ଥାପନା କରାଯାଇଥିଲା ।

ସେତେବେଳେ ପାର୍ଟି କମ୍ରେଡ଼ମାନଙ୍କ ମଧ୍ୟରେ ଆଦର୍ଶଗତ ଭିନ୍ନତା ନେଇ ନାନା ଦ୍ୱନ୍ଦ୍ୱ ପ୍ରକାଶ ପାଇଥିଲା । ଅଧିକାଂଶ ସଭ୍ୟ 'ଦକ୍ଷିଣପନ୍ଥୀ' ଓ 'ବାମପନ୍ଥୀ' ବିଚ୍ୟୁତିର ଶରବ୍ୟ ହୋଇ ପାର୍ଟିର ସାଧାରଣ ନିୟମ ପାଳନ କରିବାରେ ବ୍ୟତିକ୍ରମ କରୁଥିଲେ । ପ୍ରତ୍ୟକ୍ଷ ସଂଗ୍ରାମ ଠାରୁ ଦୂରରେ ରହୁଥିବାରୁ ଦଳବିରୋଧୀ ଅନେକ ସନ୍ତାମକ ବ୍ୟାଧି ସେମାନଙ୍କୁ ଗ୍ରାସ କରିଥିଲା । ତେଣୁ ଦୁଇ ଭିଏତନାମର ଏକତ୍ରୀକରଣ ବା ଉତ୍ତର ଭିଏତନାମରେ ସମାଜବାଦ ସମାଜ ବ୍ୟବସ୍ଥାର ଉଜ୍ଜ୍ୱଳ ସମ୍ଭାବନାକୁ ସେମାନେ ଠିକ୍ ଚକ୍ଷୁରେ ଦେଖି ପାରୁ ନ ଥିଲେ । ଅପର ପକ୍ଷରେ ବିପ୍ଳବ ପରିପନ୍ଥୀ ଶକ୍ତିମାନଙ୍କୁ ନିଜର ବ୍ୟକ୍ତିଗତ ଦୁର୍ବଳତା ମାଧ୍ୟମରେ ଦେଶଭିତରେ ଶକ୍ତିମନ୍ତ ହେବାପାଇଁ ଉତ୍ସାହିତ କରୁଥିଲେ । ସେଥିପାଇଁ ପ୍ରାରମ୍ଭିକ ଭାଷଣ ପ୍ରସଙ୍ଗରେ ପାର୍ଟି କମ୍ରେଡ଼ ଓ ସମର୍ଥକମାନଙ୍କୁ ସଚେତନ କରାଇବା ଉଦ୍ଦେଶ୍ୟ ରଖି କହିଲେ—

"ସମାଜବାଦୀ ବିପ୍ଳବ ସମୟରେ ପାର୍ଟି ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ ହେବା ଉଚିତ । ପାର୍ଟି ସଭ୍ୟମାନେ ଯଦି ସେମାନଙ୍କର ବ୍ୟକ୍ତିଗତ ଜୀବନକୁ ପରିବର୍ତ୍ତନ ନ କରନ୍ତି ବା ଉନ୍ନତି ନ ଘଟାନ୍ତି ତେବେ ଆମ ସମାଜକୁ ଆଉ ଏକ ନୂତନ ରୂପ ଦେବା ଅସମ୍ଭବ ହୋଇ ପଡ଼ିବ । ସମାଜବାଦୀ ବିପ୍ଳବ ଦାବୀ କରେ ଯେ ପାର୍ଟି ସଭ୍ୟମାନେ ସେମାନଙ୍କର ଉନ୍ନତ ସମାଜବାଦୀ ଚେତନା ଏବଂ ଶ୍ରେଣୀ ସ୍ଥିତି ସମ୍ବନ୍ଧରେ ଦୃଢ଼ ହେବା ଉଚିତ । ଯାହା ଫଳରେ ଶୋଷକ ଶ୍ରେଣୀର ଚକ୍ରାନ୍ତ ବ୍ୟୂହ ମଧ୍ୟରୁ ବାହାରି ଆସିବା ସଙ୍ଗେ ସଙ୍ଗେ ବ୍ୟକ୍ତିବାଦକୁ ଜଳାଞ୍ଜଳି ଦେବେ ଏବଂ ନିଜକୁ ସମଷ୍ଟିବାଦ ଧାରାରେ ଦୀକ୍ଷିତ କରାଇବେ" ।

ଆଧୁନିକ ସଂଶୋଧନବାଦ ମତାନ୍ଧତା ଏବଂ ଉଗ୍ରଗୋଷ୍ଠୀବାଦର ଭୟଙ୍କର ପରିପ୍ରସାରକୁ ଆଖି ଆଗରେ ଦେଖି ସେ ପାର୍ଟି କମ୍ରେଡ଼ମାନଙ୍କୁ ସଚେତନ କରାଇ ଦେଲେ ଯେ ଯୁବକ, ବୃଦ୍ଧ, ମହିଳା, ସଂଖ୍ୟାଲଘୁ ସମ୍ପ୍ରଦାୟ ଅଥବା ଦେଶପ୍ରେମୀ ସାଧାରଣ ନାଗରିକ, ଯେଉଁମାନେ କି ସର୍ବହରା ଶ୍ରେଣୀର ପ୍ରତିନିଧିତ୍ୱ କରନ୍ତି ସେମାନଙ୍କୁ ଯଥାଶୀଘ୍ର ପାର୍ଟି ତାଲିକାଭୁକ୍ତ କରାଯିବା ଆବଶ୍ୟକ । ପାର୍ଟି ଭିତରେ ଥିବା ସଭ୍ୟମାନଙ୍କର ମାନସିକ ଏକତା ଏବଂ ଏକତ୍ର ସର୍ବଦା ଅଭିନ୍ନ ରହିବା ବାଞ୍ଛନୀୟ । ସମାଜବାଦୀ ନିର୍ମାଣର ବିଜୟ ପଥରେ ଶ୍ରମିକ ଶ୍ରେଣୀ ଓ ସାଧାରଣ ଜନତାକୁ ଅଗ୍ରଣୀ କରିବା ପାଇଁ ପାର୍ଟି ଆବଶ୍ୟକୀୟ ଦକ୍ଷତା ଅର୍ଜନ କରିବା ଉଚିତ୍ । ସେହିମାନେ ହିଁ ଦେଶର ଏକତ୍ରୀକରଣ ପାଇଁ ସଂଗ୍ରାମ ଚାଲୁରଖିବେ ।

•

ଦେଶ ବିଭକ୍ତି ପରେ ମଧ୍ୟ ହୋ' ଦକ୍ଷିଣାଞ୍ଚଳକୁ ନିଜଦେଶଠାରୁ ଭିନ୍ନ ଚକ୍ଷୁରେ ଦେଖୁ ନ ଥିଲେ । ସେ ଏହାକୁ ସାମୟିକ ବିଭାଜନ ଭାବି ତାର ସମାଧାନ ପାଇଁ ସମଗ୍ର ଜାତିକୁ ପ୍ରସ୍ତୁତ କରୁଥିଲେ । କେବଳ ନିଜ ଦେଶ କାହିଁକି ଦକ୍ଷିଣ ପୂର୍ବର ସମସ୍ୟାବଳୀକୁ ସମାଧାନ କରିବା ନିମନ୍ତେ ସେ ବିଶ୍ୱ ସର୍ବହରା ଆନ୍ଦୋଳନ ତଥା ଅନ୍ତର୍ଜାତିକ ଶ୍ରମଜୀବୀ ମଣିଷର ସଂଗଠନ ଗୁଡ଼ିକୁ ନିଜ ସମକ୍ଷରେ ଐକ୍ୟବଦ୍ଧ ହେବା ପାଇଁ ନିବେଦନ କରିଥିଲେ—

"ଏ ଦୁନିଆ ଅତି ବିସ୍ତୃତ ହେଲେ ମଧ୍ୟ ଗୋଟିଏ ପରିବାର ପରି । ସର୍ବହରା ସବୁଠାରେ ପରସ୍ପର ସହୋଦର ସଦୃଶ" ।

"ଆମର ପାର୍ଟି ସଭ୍ୟତା ଏବଂ ସୁନ୍ଦରର ପ୍ରତିରୂପ—
ଏକତା ଓ ସ୍ୱାଧୀନତା
ଶାନ୍ତି ଏବଂ କଲ୍ୟାଣ" ।

ଦେଶରେ ସମାଜବାଦୀ ବିପ୍ଳବକୁ ସଫଳ କରିବା ପାଇଁ ଆବଶ୍ୟକୀୟ ପ୍ରସ୍ତୁତି ହୋଇ ସାରିଥିଲେ ମଧ୍ୟ ଅର୍ଥନୈତିକ ଦିଗରୁ ଏହା ପ୍ରବଳ ବାଧାର ସମ୍ମୁଖୀନ ହୋଇଥିଲା । ତାର ମୁଖ୍ୟ କାରଣ ହେଲା ଉତ୍ପାଦନ କ୍ଷେତ୍ରରେ ସମାଜବାଦୀ ପରିଚାଳନାର ଦାରୁଣ ଅଭାବ । ଅର୍ଥନୀତିରେ ଚାଲିଆସୁଥିବା ପାରମ୍ପରିକତା, ଅମଳ-ତନ୍ତ୍ର ଦୁର୍ନୀତି ଓ ବ୍ୟୟବହୁଳତା ଆଦି ଉପସର୍ଗ ଗୁଡ଼ିକୁ ଲୋପ କରି ଏକ ସମନ୍ୱାତ୍ମକ ଯୋଜନା ମଧ୍ୟରେ ଅର୍ଥନୀତିକୁ ସମ୍ପୂର୍ଣ୍ଣ ଭାବେ ସମାଜବାଦୀ ପରିଚାଳନାର ଅଧୀନରେ ରଖିବା ଉଦ୍ଦେଶ୍ୟ ନେଇ କମ୍ରେଡ଼ ହୋ' ପଞ୍ଚବାର୍ଷିକ ରାଷ୍ଟ୍ରୀୟ ଯୋଜନାର ପ୍ରସ୍ତାବ ଦେଲେ । ଦେଶର ବିଶିଷ୍ଟ ଅର୍ଥନୀତିଜ୍ଞ ମାନେ ତାଙ୍କର ଏହି ପ୍ରସ୍ତାବକୁ ଅର୍ଥନୀତି କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପଦକ୍ଷେପ ମନେକରି ତାକୁ ସଫଳ କରିବା ନିମନ୍ତେ ସକଳ ଉତ୍ସାହ ଉଦ୍ଦୀପନା ଅଜାଡ଼ି ଦେଲେ । ଏହି ଯୋଜନା କାର୍ଯ୍ୟତଃ ୧୯୬୪ ମସିହାରେ ଆରମ୍ଭ ହୋଇଛି । ୧୯୬୫ ମସିହା ଶେଷ ବେଳକୁ ସମୁଦାୟ ଜନତାର ଅଶୀ ଭାଗ ଜନତା ସମବାୟ କୋଠଗୃହରେ ଯୋଗ ଦେଇଛନ୍ତି । ସମସ୍ତ ଉପ-ନିବେଶରେ ଥିବା ୯୫ ଭାଗ ନିରକ୍ଷର ଜନତାଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ପ୍ରାଥମିକ ଲେଖାପଢ଼ା ଶେଷ କରି ସାରିଛନ୍ତି । ବିଶ୍ୱବିଦ୍ୟାଳୟମାନଙ୍କରେ ଉଚ୍ଚଶିକ୍ଷା ପାଇଁ ସ୍ଥାନ ସଂଖ୍ୟା ବହୁଳ ପରିମାଣରେ ବୃଦ୍ଧି ପାଇଛି । ହଇଜା, ମ୍ୟାଲେରିଆ, ବାତଜ୍ୱର ଆଦି ସଂକ୍ରାମକ ବ୍ୟାଧି ଏବଂ ଦାରିଦ୍ର୍ୟ, ନିରକ୍ଷରତା ଆଦି ସାମାଜିକ ବିଲକ୍ଷଣ ଗୁଡ଼ିକୁ ଅତି ସହଜ ଓ ବୈଜ୍ଞାନିକ ଉପାୟରେ ଦୂର କରାଯାଇ ପାରିଛି । ସଂକ୍ଷେପରେ କହିବାକୁ ଗଲେ ଉତ୍ତର ଭିଏତନାମରେ ସର୍ବାତ୍ମକ ପ୍ରଗତିର ଜୟଯାତ୍ରା ଆରମ୍ଭ ହୋଇଯାଇଛି । ଦକ୍ଷିଣ ଓ ଉତ୍ତର ଭିଏତନାମ ମଧ୍ୟରେ ଥିବା ଏହି ବ୍ୟବଧାନକ

ନିରୁତ୍ତ ଦକ୍ଷିଣ ଭିଏତନାମର ପରାଧୀନ ଜନତା ପକ୍ଷରେ କମ୍ ଈର୍ଷାର ବିଷୟ ନୁହେଁ !!

ପଚିଶ ବର୍ଷ ହୋଇଗଲା । ମୁକ୍ତରାଷ୍ଟ୍ର ଆମେରିକାର ଯୁଦ୍ଧ ବେପାରୀମାନେ ଭିଏତନାମରେ ଆସ୍ଥାନ ଜମାଇଛନ୍ତି । ଫରାସୀମାନଙ୍କ ବଦଳରେ ଭିଏତନାମକୁ ନୂତନ ଏକ ଉପନିବେଶରେ ପରିଣତ କରିବା ପାଇଁ ସେମାନେ ମୂଳରୁ ଚେଷ୍ଟା ଅବ୍ୟାହତ ରଖିଛନ୍ତି । ସମାଜବାଦୀ ଦୁନିଆ ବିରୁଦ୍ଧରେ ଶକ୍ତିଶାଳୀ ସାମରିକ ଘାଟୀ-ମାନ ପ୍ରତିଷ୍ଠା କରି ବିଶ୍ୱର ବିଭିନ୍ନ ପ୍ରାନ୍ତରେ ଚାଲିଥିବା ମୁକ୍ତି ଆନ୍ଦୋଳନ ଗୁଡ଼ିକୁ ଧ୍ୱଂସ କରିଦେବା ହେଉଛି ସେମାନଙ୍କର ଲକ୍ଷ୍ୟ । ତେଣୁ ଦକ୍ଷିଣ ପୂର୍ବ ଏସିଆରେ ସମାଜବାଦର ପରିପ୍ରସାରକୁ ସେମାନେ ପୂର୍ଣ୍ଣ ପ୍ରାଣରେ ବିରୋଧ କରନ୍ତି । ସେମାନଙ୍କ ଦ୍ୱାରା ପ୍ରସ୍ତାବିତ ବିଶ୍ୱ ଯୁଦ୍ଧ କୌଶଳର ଏହା ଏକ ଅବିଚ୍ଛେଦ୍ୟ ଅଙ୍ଗ । ସେଥିପାଇଁ ସେମାନେ କେବେହେଲେ ଶାନ୍ତି ଚୁକ୍ତିକୁ ସ୍ୱୀକାର କରନ୍ତି ନାହିଁ । ସେଥିପାଇଁ ସେମାନେ ଦକ୍ଷିଣ ଭିଏତନାମରେ ଏକ ଶ୍ରେଣୀ ବିଭକ୍ତ ରାଷ୍ଟ୍ର ପ୍ରତିଷ୍ଠା ପାଇଁ ଦୃଢ଼ ପରିକର ।

ଯେଉଁମାନେ ଉତ୍ତରର ଅଗଷ୍ଟ ବିପ୍ଳବ ଏବଂ ଡିଏନ-ବିଏନ୍ ଫୁ ଅଭ୍ୟୁତ୍ଥାନରେ ପରାଜିତ ହୋଇଥିଲେ, ସେହି ସାମନ୍ତବାଦୀ ଜମିଦାର, ପ୍ରତିକ୍ରିୟାଶୀଳ ଶକ୍ତି ଏବଂ ରାଜନ୍ୟବର୍ଗ ଦକ୍ଷିଣ ଭିଏତନାମରେ ମାର୍କିନ ମୁକ୍ତରାଷ୍ଟ୍ରକୁ ଦେଶ ଭିତରୁ ପ୍ରଭୂତ ସାହାଯ୍ୟ ଯୋଗାଉଛନ୍ତି । ମାର୍କିନ ଶାସନ ପରାମର୍ଶଦାତାମାନଙ୍କ ଦ୍ୱାରା ଦକ୍ଷିଣାଂ-ଚଳରେ ଡଲାରର ବାତ୍ୟା ବୋହିବାରେ ଲାଗିଛି । ଘଟଣାକ୍ରମେ ସମୁଦାୟ ଭିଏତନାମକୁ ସାମରିକ ଗ୍ରହଣୀରେ ପରିଣତ କରିବା ପାଇଁ ଯୁକ୍ତରାଷ୍ଟ୍ର ପ୍ରତିରକ୍ଷା ବିଭାଗ ତରଫରୁ ପ୍ରତ୍ୟକ୍ଷ ସାମରିକ ସାହାଯ୍ୟ ଅବ୍ୟାହତ ରହିଛି ।

ଅର୍ଥନୀତି ଦିଗରୁ ଦକ୍ଷିଣ ଭିଏତନାମ ମାର୍କିନ ଯୁଦ୍ଧ ବେପାରୀ ଏବଂ ତାହା ସାଙ୍ଗରେ ଥିବା ଅନ୍ୟାନ୍ୟ ପୁଞ୍ଜିବାଦୀ ରାଷ୍ଟ୍ର ଗୁଡିକରୁ ଉତ୍ପନ୍ନ ହେଉଥିବା ବଳକା ଦ୍ରବ୍ୟର ବଜାରରେ ପରିଣତ ହୋଇଛି । ଫଳରେ ଦକ୍ଷିଣାଞ୍ଚଳର ସମ୍ପୂର୍ଣ୍ଣ ଅର୍ଥନୀତି ବର୍ତ୍ତମାନ ଯୁକ୍ତରାଷ୍ଟ୍ରର ଏକଚୁଟିଆ ପୁଞ୍ଜିପତି ମାନଙ୍କ ହାତମୁଠାରେ । ଅର୍ଥନୀତିର ଗଣ୍ଠିକାଠିକୁ ଆୟତ୍ତ କରିନେବା ପରେ ଜନ ଜୀବନର ସଂସ୍କୃତି ଓ ସଭ୍ୟତା ମଧ୍ୟକୁ ପ୍ରବେଶ କରିବା ସେମାନଙ୍କ ପକ୍ଷରେ ଖୁବ ସହଜ ହୋଇ ପଡ଼ିଛି । ସମାଜବାଦୀ ଶିବିରର ମରଣକାମୁଡ଼ ଫଳରେ ମୃତାହତ ହୋଇ ପଡ଼ିଥିବା ସେମାନଙ୍କର ପ୍ରତିକ୍ରିୟାଶୀଳ, ରକ୍ଷଣଶୀଳ, ପତମାନ, କୁତ୍ସିତ ଐତିହ୍ୟକୁ ବଞ୍ଚାଇବା ପାଇଁ ସେମାନେ ଦକ୍ଷିଣ ଭିଏତନାମର ଯୁବସମାଜ, ଦରିଦ୍ର, ବେକାର, ନିଃସହାୟ ଏବଂ ନୈରାଶ୍ୟ ଜର୍ଜ୍ଜରିତ ଜନତାକୁ ସାମାନ୍ୟ ଅର୍ଥଲୋଭ ଦେଖାଇ କିଣି ନେଉଛନ୍ତି । ସାମନ୍ତବାଦୀ ଡିନ୍-ଡିଏମ୍ ସଖୀ କୁଣ୍ଡେଇ ସରକାର ପ୍ରଶାସନିକ ବ୍ୟବସ୍ଥା

ମାଧ୍ୟମରେ ମାର୍କିନ ଦୁର୍ନୀତିସମ୍ପନ୍ନ ଏକ ସାମନ୍ତଶୀଳ ସମାଜ ବ୍ୟବସ୍ଥା ଭିଏତ-ନାମରେ ସୃଷ୍ଟି ହୋଇଛି । ସାଧାରଣ ନିରକ୍ଷର ପ୍ରଜାଙ୍କର ରାଜନୈତିକ ଅଜ୍ଞତାର ସୁଯୋଗ ନେଇ ସେମାନଙ୍କ ଆଖିରେ ଡିନ୍-ଡିଏମ୍ ସରକାରକୁ ଜାତୀୟତାବାଦୀ ସରକାର ବୋଲି ଚିତ୍ରଣ କରାଯାଇଛି । ସାଇଗନର ଜନମତକୁ ପ୍ରଭାବିତ କରାଇବା ପାଇଁ ସାମ୍ରାଜ୍ୟବାଦୀ ମାର୍କିନ ସରକାର ତରଫରୁ ସାଧାରଣତନ୍ତ୍ର ଓ ସ୍ୱାଧୀନତା ନାମରେ ବହୁଳ ପ୍ରଚାର ଚାଲିଛି ।

ଡିନ୍-ଡିଏମ୍‌ର ସାମାନ୍ୟତମ ଉଦ୍ଦେଶ୍ୟ ହିତକ ଲୋପ ପାଇଛି । ସେ ଆମେରିକାନ ଉପନିବେଶବାଦୀ ମାନଙ୍କର କ୍ରୀତଦାସ ପରି । ଆମେରିକାର ଆଦେଶରେ ଗାନସନ୍, ଚ ଥାନ, ଗ୍ୟେ ଡୁବ୍, ଯୋ ଦେ, କୁ-ଚି, ଓ ବିନଥାନଠାରେ ବର୍ବର ହତ୍ୟାକାଣ୍ଡ ଚାଲିଛି । ୧୯୫୪ ଠାରୁ ଏହା ଆରମ୍ଭ ହୋଇଛି, ଜେନେଭା ଶାନ୍ତିଚୁକ୍ତିର ପରେ ପରେ । ଦକ୍ଷିଣରେ ଥିବା ଦେଶପ୍ରେମୀ ସଂଗ୍ରାମୀ ଯୋଦ୍ଧା-ମାନଙ୍କୁ ନିର୍ମୂଳ କରିବା ଉଦ୍ଦେଶ୍ୟରେ 'କମ୍ୟୁନିଷ୍ଟ ମାରଣ ଅଭିଯାନ' ଆରମ୍ଭ ହୋଇଛି । ୧୯୫୮ ମସିହାରେ 'ଫୁ ଲୋଇ' ଯାତନା ଶିବିରରେ ଥିବା ଏକ ହଜାରରୁ ଊର୍ଦ୍ଧ୍ୱ ବନ୍ଦୀମାନଙ୍କୁ ବିଷାକ୍ତ ଖାଦ୍ୟ ଦେଇ ମରାଯାଇଛି । ୧୯୫୯ରେ ସାଧାରଣ ଜନତା ଏବଂ ବିଶେଷ କରି ଲୁଚି ରହିଥିବା ସଂଗ୍ରାମୀ ଯୋଦ୍ଧା-ମାନଙ୍କର ଶିରଚ୍ଛେଦନ ପାଇଁ ୧୦-୫୯ ନାମରେ ଅମାନୁଷିକ ବର୍ବର ଆଇନ ପ୍ରଣୟନ କରାଯାଇଛି । ଏପରି ଲୋମହର୍ଷଣକାରୀ ମଧ୍ୟଯୁଗୀୟ ଦଣ୍ଡ ବ୍ୟବସ୍ଥା ଆଧୁନିକ ସମର ଇତିହାସରେ ବିରଳ ।

ଜାତି ଜନତାର ସହନଶୀଳତାର ପରାସୀମା ଫାଟି ପଡ଼ିଛି । କ୍ରୋଧ, ପ୍ରତିହିଂସା ଓ ପ୍ରତିଶୋଧର ଜ୍ୱାଳାରେ ସେମାନେ ଥରହର । ୧୯୬୦ ଜାନୁଆରୀ ମାସରୁ ଦକ୍ଷିଣ ଭିଏତନାମର ମୁକ୍ତିକାମୀ 'ଜନତା ସାମୁଖ୍ୟ' ତରଫରୁ ଡିନ-ଡିଏମ ସରକାରର ତଥାକଥିତ 'ଜାତୀୟ ବିଧାନ ସଭା'କୁ ଭାଙ୍ଗି ତା ବଦଳରେ ଆଉ ଏକ ଗଣନିର୍ବାଚିତ ସଂସଦ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ଚାଲିରହିଛି । ସେମାନେ ଆଶା କରନ୍ତି ଗଣନିର୍ବାଚିତ ସରକାର ପ୍ରତିଷ୍ଠା ହୋଇ ପାରିଲେ ସାଧାରଣ ଜନତାର ଜୀବନ ଧାରଣର ମାନ ଉନ୍ନତ ହେବ ଏବଂ ସେମାନଙ୍କର ସର୍ବନିମ୍ନ ପ୍ରାପ୍ୟ ମୌଳିକ ଗଣତାନ୍ତ୍ରିକ ଅଧିକାର ଗୁଡ଼ିକୁ ଫେରି ପାଇବେ । ଏହି ଆଶାରେ ଅଟଳ ରହି କ୍ୱାଙ୍ଗଟ୍ରି, କା ମାଉ, କା ତାଇ, ହୋଆ ହାଓର ଅଗଣିତ ଖ୍ରୀଷ୍ଟାନ ଧର୍ମାବଲମ୍ବୀ ଦକ୍ଷିଣୀ ଅଧିବାସୀ ଆନ୍ଦୋଳନ ଆରମ୍ଭ କରିଦେଲେ । ଏହି ଆନ୍ଦୋଳନ ସହର ଏବଂ ସହର ତଳି ଅଞ୍ଚଳ ମାନଙ୍କରେ ଆବଦ୍ଧ ନ ରହି ଦୂରୁଁ ଦୂରୁଁ ଉତ୍ତର ସୀମା ଯାଏ ବ୍ୟାପିଗଲା । ବିଶେଷ କରି ଦରିଦ୍ର ଓ ଦଳିତ ଶ୍ରେଣୀର ଲୋକେ ବହୁ

ପରମାଣରେ ଏହି ଆନ୍ଦୋଳନରେ ଅଂଶୀଦାର ହେଲେ । ଅଗଣିତ ଦେଶପ୍ରେମୀ ବୀରମାନଙ୍କର ଆତ୍ମବଳି ଦାନରେ ଦକ୍ଷିଣ ଭିଏତନାମ ମୁକ୍ତି ସଂଗ୍ରାମ ବହ୍ନି ତେଜରେ ଜଳି ଉଠିଲା । ତ୍ୟାଗ, କର୍ତ୍ତବ୍ୟନିଷ୍ଠା, ଦେଶପ୍ରେମ, ଆତ୍ମୋତ୍ସର୍ଗ ସମୁଦାୟ ଜନଜୀବନକୁ କବଳିତ କରିଦେଲା ଯେପରି !! ବୟସ, ଜାତି, ଧର୍ମ, ଲିଙ୍ଗ ନିର୍ବିଶେଷରେ ସକଳ ଶ୍ରେଣୀର ବ୍ୟକ୍ତିବିଶେଷ ଧାଇଁ ଆସିଲେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବା ପାଇଁ । ଠିକ୍ ଉତ୍ତର ପରି ଦକ୍ଷିଣ ସୀମାରେ ଅହରହ ରଣ ଦୁନ୍ଦୁଭି ବାଜି ଉଠିଲା । ମୁକ୍ତି ସଂଗ୍ରାମର ଶେଷ ଶିଖା ଅଦୂର ଦେହଳିଚୂଡ଼ାରୁ ହାତଠାରି ଆମନ୍ତ୍ରଣ ଜଣାଉଛି !

ଏ ଆମନ୍ତ୍ରଣର ଅଧିକର୍ତ୍ତା କିଏ ? ନେତୃବିହୀନ ଦକ୍ଷିଣ ଭିଏତନାମର ବିପ୍ଳବ ସ୍ରୋତ ଉଦ୍ଦେଶ୍ୟହୀନ ହୋଇ ବହିଚାଲିଛି । ତାକୁ ଦିଗନ୍ତମୁଖୀ କରି ସ୍ୱାଧୀନତାର ମହାସ୍ରୋତରେ ମିଶାଇବ କିଏ ? ଅଖଣ୍ଡ ଭିଏତନାମ ଖଣ୍ଡ ବିଖଣ୍ଡ ହୋଇସିବା ପରେ ନେତୃତ୍ୱର ଅଭାବ ଦାରୁଣ ଭାବରେ ଅନୁଭୂତ ହୋଇଛି । କାରଣ ଯେଉଁମାନେ ଭିଏତନାମ ମୁକ୍ତି ସଂଗ୍ରାମର ପ୍ରକୃତ ଜନ୍ମଦାତା ସେ ସମସ୍ତେ ଆଜି ଉତ୍ତର ଖଣ୍ଡରେ । ମାର୍କିନ ଯୁକ୍ତରାଷ୍ଟ୍ରର ଅପକୌଶଳ ଯୋଗୁଁ ସେମାନେ ଆଜି ଭିନ୍ନ ଘରେ ବାସ କରୁଛନ୍ତି । ସେମାନଙ୍କ ହାତରୁ ଦକ୍ଷିଣକୁ ଛଡ଼ାଇ ଅଣାଯାଇଛି ।

ଉତ୍ତର ଭିଏତନାମରେ ସମାଜବାଦୀ ନିର୍ମାଣ କାର୍ଯ୍ୟ ଯେତେ ଜୋରରେ ଚାଲିଛି ତାଠାରୁ ଅଧିକ ଆଶା ନେଇ ଦକ୍ଷିଣ ଭିଏତନାମର ଜନତା ମୁକ୍ତି ପାଇଁ ପାଗଳ ହୋଇ ଉଠୁଛନ୍ତି । ଉତ୍ତରରେ ସ୍ୱାଧୀନ ସୁଖୀ ଓ ସ୍ୱାଚ୍ଛନ୍ଦ୍ୟଭରା ଜୀବନ ପାଇଁ ସ୍ୱପ୍ନ ଯେତେ ଫଳବତୀ ହୋଇ ଉଠୁଛି ଦକ୍ଷିଣରେ ସ୍ୱାଧୀନତାର ପ୍ରଥମ ସ୍ୱାଦ ଚାଖିବା ପାଇଁ ନିପୀଡ଼ିତ ଜନତା ଚାତକ ପରି ଚାହିଁ ରହିଛି । ଗୋଟିଏ ସୀମାର କଡ଼େ କଡ଼େ ରହିଥିବା ଦୁଇଟି ଜାତି ମଧ୍ୟରେ କେତେ ତଫାତ ସତେ ! ଗୋଟିଏ ପଟରେ ବିଦ୍ରୋହର ରକ୍ତପାତ ଓ ଅନ୍ୟ ପଟରେ ଶାନ୍ତି ଶତଦଳର ପରିବ୍ୟାପ୍ତ ପୃଥିବୀ । ଗୋଟିଏ ଦିଗରେ ମଣିଷର ତାଜା ରକ୍ତରେ ସୁଖ ସମ୍ଭୋଗର ମହୋତ୍ସବ ଚାଲିଛି ତ ଅନ୍ୟ ଖଣ୍ଡରେ ଅପଧ୍ୱଂସ୍ତ ମଶାଣି ପଦାରୁ ସବୁଜଶ୍ରୀ ନୂତନ ଦୁନିଆ ହସି ଉଠୁଛି ।

ପ୍ରେସିଡେଣ୍ଟ ହୋ'-ଚି-ମିନ ଉତ୍ତର ପଟରେ । ଦକ୍ଷିଣର ସକଳ ସମ୍ବାଦ ତାଙ୍କ ନିକଟରେ ପହଞ୍ଚୁଥିଲେ ମଧ୍ୟ ସେ କିଂକର୍ତ୍ତବ୍ୟ ବିମୂଢ଼ ! ସ୍ୱପ୍ନଶ୍ରୀ ଅଖଣ୍ଡ ଭିଏତନାମ ସ୍ୱପ୍ନରେ ରହିଗଲା କେବଳ !! ନେତୃହୀନ ଦକ୍ଷିଣ ଭିଏତନାମର ଏହି ଦାରୁଣ ବିପର୍ଯ୍ୟୟକୁ ସମ୍ଭାଳିବ କିଏ ? ଦଳ ଦଳ ହୋଇ ମୁକ୍ତି ସଂଗ୍ରାମୀମାନେ ଭିଡ଼ ଜମାଇଛନ୍ତି ତାଙ୍କ ନିକଟରେ । ସେ କେବଳ ଉତ୍ତର ଖଣ୍ଡର ନୁହନ୍ତି । ସମୁଦାୟ ଭିଏତନାମର ସେ ଏକକ ଶାସକର୍ତ୍ତା । ଏହି ଆସ୍ଥା ଓ ବିଶ୍ୱାସ ନେଇ

ଦରିଦ୍ର, ପଙ୍ଗୁ, ନିଃସମ୍ବଳ, ନିଃସହାୟ ଜନତା ତାଙ୍କୁ ଘେରି ରହିଛନ୍ତି । ସେ ଏହାର ଉତ୍ତର ଦେବେ । ଦକ୍ଷିଣ ଭିଏତନାମ ମୁକ୍ତ ହେବ ନା ନାହିଁ ?

ଜନ୍ମଦିନ ମଧ୍ୟରେ ଦକ୍ଷିଣର ମୁକ୍ତି ସଂଗ୍ରାମୀ ଯୋଦ୍ଧାମାନେ ଠୁଳ ହୋଇଛନ୍ତି ହାନୋଇ ଉପକଣ୍ଠରେ । କମ୍ରେଡ୍ ହୋ-ଚି-ମିନଙ୍କ ସହିତ ସାକ୍ଷାତ ଅତ୍ୟନ୍ତ ଜରୁରୀ ହୋଇଉଠିଛି । ତାଙ୍କର ପରାମର୍ଶ ବର୍ତ୍ତମାନ ଅପରିହାର୍ଯ୍ୟ । ପଦଦଳିତ ଜନତାର ଆକୁଳ ନିବେଦନ ତାର ପ୍ରାଣୋପମ ନେତାଙ୍କର କାନରେ ମହାଗୁଞ୍ଜରଣ ସୃଷ୍ଟି କରିଛି । ସ୍ବୟଂ ହୋ' ସ୍ଥିର ରହିପାରୁ ନାହାନ୍ତି ତାଙ୍କ ସ୍ଥାନରେ । ମାତ୍ର କେତୋଟି ଦିନର ବିଶ୍ରାମ ପରେ ଏହି ମର୍ମାନ୍ତିକ ଆହ୍ୱାନ ତାଙ୍କୁ ଚଞ୍ଚଳିତ କରି ଦେଉଛି । ୧୯୬୫ ମସିହା ମାର୍ଚ୍ଚ ମାସ ୨୭ ତାରିଖ ଦିନ ସେ ଏକ 'ସ୍ୱତନ୍ତ୍ର ରାଜନୈତିକ ଅଧିବେଶନ ଡକାଇଲେ । ଏହି ସମାବେଶର ମୁଖ୍ୟ କାରଣ ଥିଲା କେବଳ ଦକ୍ଷିଣ ଭିଏତନାମର ମୁକ୍ତି ସଂଗ୍ରାମ ସମ୍ପର୍କରେ ଉପୁଜିଥିବା ସମସ୍ୟାବଳୀ ।

ଅଧିବେଶନ ପାଇଁ କମ୍ରେଡ୍ ହୋ' ନିଜେ ରାଜନୈତିକ ଦଲିଲ ପ୍ରସ୍ତୁତ କରିଥିଲେ । ଉତ୍ତର ଭିଏତନାମରେ ସମାଜବାଦୀ ନିର୍ମାଣକାର୍ଯ୍ୟକୁ ସଫଳ କରିବା ପାଇଁ ନିଆଯାଇଥିବା ତିନିବର୍ଷିଆ ସମୟାବଦ୍ଧ ଯୋଜନାର ଅଗ୍ରଗତି ସମ୍ବନ୍ଧରେ ସଠିକ ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଉତ୍ତର ପଟରେ ଥିବା ଅଧିବାସୀମାନଙ୍କର ସକଳ ସମର୍ଥନ, ସହାଯ୍ୟ ନେଇ ଦକ୍ଷିଣର ମୁକ୍ତି ସଂଗ୍ରାମକୁ ଅଧିକ ଶାଣିତ ଓ ବେଗବତୀ କରାଇବା ପାଇଁ ସେ ସମବେତ ସଦସ୍ୟମାନଙ୍କୁ ନିବେଦନ କରିଥିଲେ । ମାର୍କିନ ମୁକ୍ତରାଷ୍ଟ୍ର ଓ ତାର ଉପନିବେଶବାଦୀ ବନ୍ଧୁରାଷ୍ଟ୍ରମାନଙ୍କର ବର୍ବରୋଚିତ ନରହତ୍ୟାକୁ ସାମନା କରି ଯେଉଁ ଶହୀଦମାନେ ଦକ୍ଷିଣ ପଟର ମୁକ୍ତି ସଂଗ୍ରାମରେ ଆତ୍ମ-ବଳି ଦେଇଛନ୍ତି ସେମାନଙ୍କ ଉଦ୍ଦେଶ୍ୟରେ ସେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି । ସାମ୍ରାଜ୍ୟବାଦୀ ନରହତ୍ୟାକାରୀମାନଙ୍କର ଲୌହ ଅର୍ଗଳୀ ଭେଦ କରି ଦକ୍ଷିଣର ମୁକ୍ତିସ୍ରୋତ ଯେପରି ଦ୍ରୁତ ଗତିରେ ଧାବମାନ, ସେଥିପ୍ରତି ଆନ୍ତରିକ ବଧାଇ ଜଣାଇ ସେ ନିଜ ଦେଶର ସାଧାରଣ ନାଗରିକ ଓ ବିଶ୍ୱର ଶାନ୍ତି, ମୁକ୍ତିକାମୀ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ବିପ୍ଳବୀ ଜନତାଙ୍କୁ ତାଙ୍କ ତରଫରୁ ମାନବିକ ନିବେଦନ ଜଣାଇ ଥିଲେ,

"ଚାଲ ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ଆମର ସକଳ ଚେଷ୍ଟା ଓ ସାମର୍ଥ୍ୟକୁ ଦ୍ୱିଗୁଣିତ କରି ଦକ୍ଷିଣ ପଟରେ ଥିବା ଆମର ଆତ୍ମୀୟସ୍ୱଜନଙ୍କ ମୁକ୍ତିପାଇଁ ଚାଲିଥିବା ସଂଗ୍ରାମପ୍ରତି କୃତଜ୍ଞତା ଜ୍ଞାପନ କରିବା" ।

ସେଦିନର ଏହି ନିବେଦନ ହ୍ୱାନୋଇ ବିଶ୍ୱକୁ ଚହଲାଇ ଦେଇଥିଲା । ଭିଏତନାମର ଲକ୍ଷ ଲକ୍ଷ ନରନାରୀ ସେଦିନ ଏହି ନିବେଦନର ପ୍ରତିଧ୍ୱନି ଦେଇ ସହରର ପରିକ୍ରମା କରିଥିଲେ । ହୋ'ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗ୍ରହିଥିବା ସମାଜବାଦୀ ଆନ୍ଦୋଳନରେ ଅଂଶୀଦାର ଭିଏତନାମୀ ଜନତା ସେଦିନ ସମ୍ମଗ୍ରତରେ ଆଗେଇ ଆସିଥିଲେ ଦକ୍ଷିଣ ଭିଏତନାମର ମୁକ୍ତିସଂଗ୍ରାମ ପାଇଁ ପ୍ରାଣଦାନ ନିମନ୍ତେ । ସେଦିନ ଅଜି ବି ମନେ ପଡ଼େ । ଉତ୍ତର ଭିଏତନାମର କୌଣସି ମଣିଷ ସେ ମୁହୂର୍ତ୍ତିକୁ ଭୁଲି ପାରିବ ନାହିଁ । ଯେଉଁ ଦିନ ସାଥୀ ହୋ-ଚି-ମିନ ଅଶ୍ରୁସିକ୍ତ ନୟନରେ ଜାତିକୁ ସବିନୟ ନିବେଦନ ଜଣାଇଥିଲେ "ଯେ ପର୍ଯ୍ୟନ୍ତ ଆମ ଦେଶର ଏକୀକରଣ ସମ୍ଭବ ହୋଇନାହିଁ ସେ ପର୍ଯ୍ୟନ୍ତ ମୁଁ ଶୋଇ ପାରିବ ନାହିଁ କିମ୍ବା କୌଣସି ପ୍ରକାର ଆମିଷଧାର ବଶବର୍ତ୍ତୀ ହୋଇ ମୁଁ ଖାଇ ପାରିବ ନାହିଁ । ଦକ୍ଷିଣ ଏବଂ ଉତ୍ତର ଗୋଟିଏ ପରିବାର ମଧ୍ୟରୁ ଆସିଛନ୍ତି । ସେମାନେ ଏକା ରକ୍ତରୁ ଜନ୍ମ ହୋଇଥିବା ଭାଇ ପରି । ସେମାନଙ୍କୁ କୌଣସି ଶକ୍ତି ଭିନ୍ନ କରି ପାରିବ ନାହିଁ" ।

କିନ୍ତୁ ୧୯୫୪ ମସିହାର ଦୁଃସମୟରୁ ସେମାନେ ମାର୍କିନ୍ ସାମ୍ରାଜ୍ୟବାଦୀମାନଙ୍କ ଶୀକାର ହୋଇ ଆସିଛନ୍ତି । ଇତିହାସର ଲୋମହର୍ଷଣକାରୀ ଦୁର୍ଭାଗ୍ୟକୁ ନିଜ ମଥାରେ ବହନ କରି ଆଜି ସେମାନେ ପରାଧୀନତାର ଅନ୍ଧାରୀ ଗର୍ଭରେ ସଢ଼ୁଛନ୍ତି । ଦେଶପ୍ରୀତି, ମମତା, ଗଣତନ୍ତ୍ର, ସ୍ୱାଧୀନତା ଓ ଶାନ୍ତି ଆଦି ମାନବିକ ସମ୍ପତ୍ତି ସେମାନଙ୍କ ନିକଟରେ ଦୁର୍ଲ୍ଲଭ । ଛଦ୍ମ ଉପନିବେଶବାଦର ଅର୍ଗଳୀ ମଧ୍ୟରେ ସେମାନେ ବନ୍ଦୀ । ବାଧ୍ୟହୋଇ ସେମାନେ ସେ ଦଶା ଭୋଗ କରୁଛନ୍ତି । ପ୍ରିୟତମା ଦକ୍ଷିଣ ସୁନ୍ଦରୀର ବସୁଧା ଉପରେ ସେମାନଙ୍କର ଜୀବନ ମୃତ୍ୟୁର କାରାଗାରରେ । ଏହି ଘୃଣ୍ୟ ଅପରାଧକୁ ସ୍ୱର୍ଗ କିମ୍ବା ଧରିତ୍ରୀ କେହି କ୍ଷମା ଦେଇ ପାରିବେ ନାହିଁ ।

ଦୁଃଖ, ନିର୍ଯ୍ୟାତନା କିମ୍ବା ଶୋଷଣ ପୀଡ଼ନ ସହ୍ୟ କରିବାର ଏକ ନିର୍ଦ୍ଦିଷ୍ଟ ସୀମା ଅଛି । ସେ ସୀମା ଅତିକ୍ରମି ଗଲେ ମଣିଷ ଅପେ ଆପେ ହିଂସ୍ର ହୋଇ ଉଠେ । ଶାନ୍ତ ସମୁଦ୍ରରେ··· ଅଶାନ୍ତ ଝଡ଼ ଉଠେ । ନିଥର ମରୁଭୂମିର କ୍ଷୁଦ୍ର ବାଲିକଣା ଗର୍ଜି ଉଠେ । ଦକ୍ଷିଣ ଭିଏତନାମର ଅବସ୍ଥା ଠିକ୍ ସେହିପରି । ଜେନେଭା ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେବା ପରେ ଦୀର୍ଘ ଛ ବର୍ଷ ବିତି ଯାଇଛି । ନିରୀହ ଜନତାର ଅଶ୍ରୁପାତରେ ଭିଏତନାମର ରାଜରାସ୍ତାରେ ଅଦିନ ବନ୍ୟା ବତ୍ପାତ ସୃଷ୍ଟି ହୋଇଛି । କେତେ ଆପୋଷ ଆଲୋଚନାର ଆଡ଼ମ୍ବର ଘଟି ତାପର ମୁହୂର୍ତ୍ତିରେ ପାଣି ଫୋଟକା ପରି ମିଳାଇ ଯାଇଛି । ପାରସ୍ପରିକ ବୁଝାମଣା ଭିତ୍ତିରେ ସମାଧାନର ରାସ୍ତା ବନ୍ଦ ହୋଇଛି । ଶାନ୍ତିର ଆଇନ କାର୍ଯ୍ୟକାରୀ ହୋଇ ପାରିନାହିଁ । ଅପର ପକ୍ଷରେ ନିରୀହ ଜନତାକୁ ପୋକମାଛି ପରି ବ୍ୟବହାର କରାଯାଇଛି । ଜଘନ୍ୟ ନରହତ୍ୟା,

ରକ୍ତପାତ, ଧ୍ୱଂସଲୀଳା ମଧ୍ୟରେ ସାରା ଦକ୍ଷିଣ ଭିଏତନାମ ଶାନ୍ତ କାକୁସ୍ଥ ହୋଇ ମୁକ୍ତି-ପାଗଳ ହୋଇଛି । ପ୍ରତିବାଦ ସ୍ୱରୂପ ୧୯୬୦ ମସିହାରେ ଡିସେମ୍ବର କୋଡ଼ିଏ ତାରିଖରେ "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ" ଜନ୍ମ ନେଇଛି । ଆଗରୁ ଯେଉଁ ଦେଶପ୍ରେମୀ ବୀର, ଯୋଦ୍ଧା ଓ ମୁକ୍ତିକାମୀ ଗଣ ସଂଗଠନ ନିର୍ଦ୍ଦିଷ୍ଟ ଏକ ରାଜନୈତିକ ସାମ୍ମୁଖ୍ୟ ବା ଗଣ ମଇଦାନ ଅଭାବରୁ ବିକ୍ଷିପ୍ତଭାବରେ ରହି ସଙ୍ଗଠିତ ହୋଇ ପାରୁ ନ ଥିଲେ ସେମାନେ ଜାତୀୟ ମୁକ୍ତିସାମ୍ମୁଖ୍ୟର ପତାକା ତଳେ ଏକତ୍ରିତ ହେବା ପାଇଁ ସୁଯୋଗ ପାଇଲେ । ଦଶବର୍ଷ ଅଟଳ ବଳରେ ସେମାନେ ବଳୀୟାନ ହୋଇ ଉଠିବା ସ୍ୱାଭାବିକ । ଶ୍ରମିକ, କୃଷକ, ଛାତ୍ର, ଯୁବକ, ବୁଦ୍ଧିଜୀବୀ ଆଦି ସକଳ ଶ୍ରେଣୀର ନିର୍ଯ୍ୟାତିତ ଜନତା, ପ୍ରତିନିଧି ସ୍ୱେଚ୍ଛାସେବକ ଆସି ମିଳିତ ହେଲେ ଗୋଟିଏ ଛତ୍ରତଳେ । ଡିନ୍-ଡିଏମର ଶୋଷଣ ରାଜ୍ୟରେ ସେମାନଙ୍କର ସାଧାରଣ ଜୀବନ ନିର୍ବାହ ଅସମ୍ଭବ ହୋଇ ଉଠିଛି । ସେମାନେ ବରଂ ବୃଦ୍ଧାନ୍ତ ମୃତ୍ୟୁ । ମୃତ୍ୟୁ ମୁକ୍ତିସଂଗ୍ରାମରେ ହେଲେ କ୍ଷତି କ'ଣ ?? ଡିନ-ଡିଏମ ସରକାର ପରି ଏକ ସାମନ୍ତବାଦୀ, ପ୍ରତିକ୍ରିୟାଶୀଳ, ମୁଷ୍ଟିମେୟ ସାମ୍ରାଜ୍ୟବାଦୀ ସମର୍ଥିତ ସରକାର, ଯେ କି ଜାତୀୟ ସ୍ୱାର୍ଥକୁ ପ୍ରତିମୁହୂର୍ତ୍ତରେ ପ୍ରତିହତ କରି ଆସିଛି ତାକୁ ବଳ ପ୍ରୟୋଗ କରି ନିର୍ମୂଳ କରିବାରେ ଆପତ୍ତି ରହିଲା କେଉଁଠି ?? ଭିଏତନାମ ଜାତିକୁ ଦାସ କରି ରଖିବା ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର ଯେଉଁ ବାତୁଳତାର ଆଶ୍ରୟ ନେଉଛି ତାକୁ ଦୃଢ଼ ହସ୍ତରେ ଦମନ କରିବାର ପ୍ରୟାସ ନିଶ୍ଚୟ ଅବ୍ୟାହତ ରହିବ । ସେଥିପାଇଁ ଯେ କୌଣସି ମୂଲ୍ୟ ଦେବା ପାଇଁ ପ୍ରତ୍ୟେକ ଭିଏତନାମୀ ପ୍ରସ୍ତୁତ ରହିଛି । ଏହା ହିଁ ବିପ୍ଳବର ପ୍ରକୃତ ନିୟମ । ସାଧାରଣ ଜନତା ହାତରେ କ୍ଷମତା ଟେକିଦେବା ନିମନ୍ତେ ଆବଶ୍ୟକ ହେଲେ ପ୍ରତିବିପ୍ଳବୀ ଶକ୍ତିମାନଙ୍କୁ ନିପାତ କରିବାକୁ ହିଂସାତ୍ମକ ବିପ୍ଳବର ପନ୍ଥା ଗ୍ରହଣ କରିବାକୁ ପଡ଼ିବ । ମୁକ୍ତି ଆନ୍ଦୋଳନକୁ ଆଗକୁ ବଢ଼ାଇ ନେବା ପାଇଁ ରାଜନୈତିକ ସଂଗ୍ରାମ ସହିତ ସଶସ୍ତ୍ର ବିପ୍ଳବର ଆଶ୍ରୟ ନେବା ନିମନ୍ତେ ବର୍ତ୍ତମାନ ସୁବର୍ଣ୍ଣ ସୁଯୋଗ ଉପଗତ ।

ସେହିଦିନଠାରୁ ଦକ୍ଷିଣ ଭିଏତନାମର ନାଗରିକମାନେ ସଶସ୍ତ୍ର ବିପ୍ଳବର ବିଭିନ୍ନ ସ୍ତର ଅତିକ୍ରମି ଆସିଛନ୍ତି । ବିଶେଷ କରି ବେନ୍-ଟ୍ରି ପ୍ରଦେଶରେ ଏକାଧିକ ବାର ସଶସ୍ତ୍ର ବିଦ୍ରୋହ ମୁଣ୍ଡଟେକି ପୁଣି ଦବି ଯାଇଛି । କିନ୍ତୁ ପ୍ରତିଥରର କ୍ଷତି ପୂର୍ବାପେକ୍ଷା ବହୁ ଅଧିକ ଗୁଣରେ ବୃଦ୍ଧି ପାଇବାରେ ଲାଗିଛି ।

ଉଦାହରଣ ସ୍ୱରୂପ ୧୯୬୦ ମସିହା ଜାନୁୟାରି ସତର ତାରିଖର ଗୋଟିଏ ରାତି । ସେଦିନ ଇଣ୍ଡୋଚୀନରେ ପ୍ରବଳ ଶୀତର ଦାପଟ । ବସବାସ ହୀନ ଦରିଦ୍ର ଭିଏତନାମୀ ମୁଣ୍ଡ ଗୋଡ଼ାଇ ପଡ଼ି ରହିଛି କେଉଁ କୋଣରେ । କିନ୍ତୁ ବେନ୍-ଟ୍ରିର

ଜାଗ୍ରତ ସିଂହ ଶିଶୁ ଅକ୍ଷିରେ ନିଦ ନାହିଁ ସେ ରାତରେ । ସବୁଦିନର ଜଡ଼ତା ଭାଙ୍ଗି ସେ କୁମ୍ଭକର୍ଣ୍ଣ ନିଦ୍ରାରୁ ଉଠିଛି । ଏଥର ତାର କର୍ତ୍ତବ୍ୟର ପାଳି । ସେ କର୍ତ୍ତବ୍ୟ ଜୀବନ ମରଣ ସମ୍ପୃକ୍ତ ସଂଗ୍ରାମର କର୍ତ୍ତବ୍ୟ । ବେନ୍-ଟ୍ରିର କିଶୋର ଜଙ୍ଗୀ ବିପ୍ଳବୀମାନେ ହାତରେ ତୀର, ବର୍ଚ୍ଛା ଓ ଲଠି ଧରି ବାହାରି ପଡ଼ିଲେ । ଆକାଶର ଦ୍ୱିତୀୟା ଚନ୍ଦ୍ର ଏବେ ବି ହୁଙ୍କିମାରି ଚାହିଁ ରହିଛି । ତାର ରଶ୍ମି ଜାଲ ବିଚ୍ଛୁରିତ ହୋଇ ପଡ଼ୁଛି ବେନ୍-ଟ୍ରି ଉପରେ । ବେନ୍-ଟ୍ରି ହସୁଛି । ହସୁଛି ଦକ୍ଷିଣ ଭିଏତନାମ । ହସୁଛି ତାର ଗଛ ଲତା, ନଦୀ ନାଳ, ବଣ, ପର୍ବତ । ମଦମତ୍ତ ଉନ୍ମାଦର ହସ ତା' ଓଠରେ । ପ୍ରତି ଦ୍ୱାରରେ ସେ ରାତର କରାଘାତ । ଆବାଳ ବୃଦ୍ଧ ବନିତା ହାତରେ ଗ୍ରାମୀଣ ଧନୁଶର, ଲଠି, ଶାବଳ ଓ କୁରାଢ଼ି । ଶତ୍ରୁ କବଳରୁ ଆତ୍ମରକ୍ଷା ପାଇଁ କି ଦୁର୍ବାର ଅଭିଯାନ ! ବିଶ୍ୱ ଆଧୁନିକ ରଣ କୌଶଳକୁ ସାମନା କରିବା ପାଇଁ ସେ ଦାମ ଜୀବନ ଛନ୍ଦରେ କେତେ ଶକ୍ତି, ସାହସ ସତେ ! !

ରାତ ପାହୁଛି । ଶତ୍ରୁ ଶିବିର ଅଧୀନରେ ଥିବା ଗାଁ ଗଣ୍ଡା ଜାଳି ପୋଡ଼ି ଛାରଖାର ହୋଇ ଯାଉଛି । ସେମାନଙ୍କର ସୈନ୍ୟ ଗ୍ରହର୍ଣ୍ଣରେ ଅତନ୍ଦ୍ର ରଜନୀର ଭୂତ ପ୍ରବେଶ କରିଛି । ମୁକ୍ତିଫ୍ରଣ୍ଟ ସାମରିକ ବିଭାଗ ତରଫରୁ ଠିଆ ହୋଇଥିବା ପ୍ରଧାନ ପ୍ରଧାନ ସାମରିକ ଘାଣ୍ଟିମାନଙ୍କୁ ଜବରଦସ୍ତି ଦଖଲ କରାଯାଇ ସେମାନଙ୍କର ପ୍ରତିନିଧିମାନଙ୍କଠାରୁ କ୍ଷମତା ହସ୍ତାନ୍ତର କରାଯାଇଛି । ବେନ୍-ଟ୍ରିର ବହୁତ ଏକ ଅଞ୍ଚଳରୁ ଶତ୍ରୁ ସୈନ୍ୟଙ୍କୁ ବଳପୂର୍ବକ ଅପସାରଣ କରାଯାଇଛି । ବେନ୍-ଟ୍ରି ଆଜି ସ୍ୱଦେଶୀମାନଙ୍କ ହାତରେ । ସେହି ରାତିଠାରୁ ବିପ୍ଳବୀମାନଙ୍କର ଶକ୍ତି, ସାହସ ଓ ଉତ୍ସାହ ବୃଦ୍ଧି ପାଇଛି । ଗ୍ରାମରେ ଗ୍ରାମରେ, ସେମାନଙ୍କର ପ୍ରତିନିଧିମାନେ ଜନ-ସାମରିକ ବାହିନୀ ଗଠନ କରିବାରେ ଲାଗି ପଡ଼ିଛନ୍ତି । ସଦ୍ୟ ଶତ୍ରୁମୁକ୍ତ ହୋଇଥିବା ଅଞ୍ଚଳମାନଙ୍କରେ ସ୍ୱାୟତ୍ତ ଶାସନ ସଂସ୍ଥା ଗଠନ କରିବା ପାଇଁ ଆବଶ୍ୟକୀୟ ପ୍ରସ୍ତୁତି ପର୍ବର ମୂଳଦୁଆ ପଡ଼ୁଛି । ଅତ୍ୟାଚାରୀ ଜମିଦାରମାନଙ୍କ ହାତରେ ଥିବା ଜମିକୁ ଛଡ଼ାଇ ଆଣି ଦରିଦ୍ର ପ୍ରଜାଙ୍କ ମଧ୍ୟରେ ବଣ୍ଟା ଯାଉଛି । ବେନ୍-ଟ୍ରିର ଏହି ଉଦ୍‌ବେଳନ ଦେଖି ପଡ଼ୋଶୀ ନାମ ବୋ, ଟେ-ନୁଏନ, ଏବଂ କେନ୍ଦ୍ର ଟ୍ରୁଙ୍ଗ ବୋର ଚଞ୍ଚ ଚଞ୍ଚଳ ହୋଇ ଉଠିଛନ୍ତି । ସେମାନେ ଆଉ ସ୍ଥିର ରହିବାକୁ ଚାହାନ୍ତି ନାହିଁ । ରଣ ଡାକର ମଞ୍ଜୁଆଳ ସେମାନେ ନ ହେବେ ବା କିପରି ! !

ଶତ୍ରୁ ପକ୍ଷ ସେତେବେଳେ ବିପର୍ଯ୍ୟସ୍ତ ରାଜନୈତିକ ସୋପାନରେ ଉପନୀତ । ବିଶ୍ୱ ରାଜନୈତିକ ବ୍ୟବସ୍ଥାରେ ମୌଳିକ ଦ୍ୱନ୍ଦ୍ୱ ଉପୁଜୁଛି । ଷଷ୍ଠ ଦଶକରେ ସମାଜବାଦୀ ଦୁନିଆର ଅନନୁମେୟ ଅଗ୍ରଗତି ଓ ବିଜୟ ଫଳରେ ଉପନିବେଶବାଦୀ ତଥା ସାମ୍ରାଜ୍ୟବାଦୀ ଶକ୍ତି ମାନଙ୍କର ସାମର୍ଥ୍ୟ ମଳିନ ହେଉଛି । ଏହି ଦୁର୍ଦ୍ଦାନ୍ତ

ସୁଯୋଗର ଅପେକ୍ଷାରେ ଥିଲେ ଦକ୍ଷିଣ ଭିଏତନାମର ମୁକ୍ତିକାମୀ ଯୋଧାନ୍ୱିତ ବିପ୍ଳବୀ ଗଣ । ପ୍ରତିହିଂସାର ଦାବାନଳରେ ହୃଦୟ ଭରପୁର । ବାଧ୍ୟ ହୋଇ ସେମାନେ ହିଂସାତ୍ମକ ପଥ ବରଣ କରିଛନ୍ତି । ନିଜ ଜୀବନକୁ ତିଳ ତିଳ ଦଗ୍ଧ କରି ସେମାନେ ପ୍ରତିଶୋଧ ନେବାକୁ ବ୍ୟଗ୍ରାନ୍ତି । ସେମାନଙ୍କର ଯାତ୍ରା ପଥ ସୁଦୀର୍ଘ ଏବଂ କଠୋର । ବିଦ୍ରୋହୀମାନଙ୍କ ତରଫରୁ ଶତ୍ରୁ ଛାଉଣୀ ଉପରେ କ୍ରମାଗତ ଆକ୍ରମଣ ଚାଲିଲା । ସେତେବେଳେ ଯୁକ୍ତରାଷ୍ଟ୍ର ଆମେରିକା ଭିଏତନାମକୁ ଆମଦାନୀ ହୋଇଥିବା ସାମରିକ ବଳ ଉପରେ ବିଶେଷ ଜୋର ଦେଉ ନ ଥାଏ । ଭିଏତନାମରେ ଥିବା ଦେଶଦ୍ରୋହୀ ଅନୁଚରମାନେ କେବଳ ସେମାନଙ୍କର ବଳ । ସେମାନଙ୍କୁ ଶେଷ କରିବା ପାଇଁ ବିଦ୍ରୋହୀ ମାନଙ୍କୁ କେତେ ସମୟ ଲାଗିଥାଆନ୍ତା !

ଚାରିଆଡେ ବିଜୟ ବାର୍ତ୍ତା । ଆକାଶ ଧରଣୀରେ ବିପ୍ଳବର ଜୟ ଜୟକାର । ଦେଶବ୍ୟାପୀ ବିପ୍ଳବୀମାନଙ୍କ ସପକ୍ଷରେ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇ ସାରିଛି । ସାଧାରଣ ଜନତା ମନରେ ବିଶ୍ୱାସ ଫେରି ଆସିଛି ଯେ ସେମାନେ ହେଉଛନ୍ତି ଭିଏତନାମର ଯାଦୁକରୀ ! ସେମାନଙ୍କ ହାତରେ ଦେଶୀୟ ଜନତାର ମୁକ୍ତି ନିହିତ ।

ସେହିଦିନଠାରୁ "ମୁକ୍ତିପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମୁଖ୍ୟ" ହିଁ ସାଧାରଣ ଜନତା ଓ ଭିଏତକଙ୍ଗ ଭାବେ ପରିଚିତ । ୧୯୬୧ ମସିହାଠାରୁ ସ୍ୱଦେଶୀ ବିପ୍ଳବୀମାନଙ୍କ ନେତୃତ୍ୱରେ ଦକ୍ଷିଣ ଭିଏତନାମରେ ମୁକ୍ତି ସଂଗ୍ରାମ ଭୟଙ୍କର ରୂପ ଧାରଣ କରିଛି । ଦରମର ପଞ୍ଚବର୍ଷୀ ସେମାନେ ଜୀବନ ଆହୁତି ଦେଇଛନ୍ତି ସଂଗ୍ରାମର ବେଦୀ ତଳେ । ଅନ୍ତରର ନିଃସ୍ୱ, ନିର୍ଜୀବ ଜନତା ଆଜି ଜୀବନ୍ତ ଓ ସାହସର ପ୍ରତିରୂପ । ସେମାନଙ୍କ ତେଜରେ ଡିନ-ଡିଏମର ମୁଖଶ୍ରୀ ମଳିନ ପଡ଼ିଛି । ଗୋଟିକ ପରେ ଗୋଟିଏ କରି ପରୀକ୍ଷିତ ଯୁଦ୍ଧ କୌଶଳ ସେମାନଙ୍କର ନୈତିକ ମେରୁଦଣ୍ଡକୁ ଦୋହଲାଇ ପକାଇଛି । ଏଥର ସେମାନେ ଆଉ ଏକ ପରିବର୍ତ୍ତିତ ରଣ କୌଶଳ ଅବଲମ୍ବନ କରିବାକୁ ବ୍ୟଗ୍ରାନ୍ତି । ଯାହାକି ଆଗରୁ କେବେ ଶୁଣାନଥିବ । ବିପ୍ଳବୀ-ମାନଙ୍କୁ ଭିଏତନାମ ମାଟିରୁ ସମୂଳେ ଲୋପ କରିଦେବା ଉଦ୍ଦେଶ୍ୟରେ ମାର୍କିନ ଯୁକ୍ତରାଷ୍ଟ୍ର ତାର ବିଶ୍ୱ ରଣନୀତିକୁ ନୂତନ ଦିଗରେ ମୁହାଇଲା । ଭିଏତନାମରେ ଏହାର ପ୍ରୟୋଗ ଓ ପରୀକ୍ଷା ପ୍ରାର୍ଥନୀୟ । ଯୁକ୍ତରାଷ୍ଟ୍ରର ଏହି ନୂତନ ରଣ କୌଶଳ ବିଶେଷ ଧରଣର ଥିଲା । ତେଣୁ ଏହା 'ସ୍ୱତନ୍ତ୍ର ଯୁଦ୍ଧ' ନାମରେ ଖ୍ୟାତ ।

ଏହାର ବିଶେଷତ୍ୱ ଏୟା ଯେ ପ୍ରଥମ ଥର ପାଇଁ ଭିଏତନାମୀମାନେ ଭିଏତନାମୀ ମାନଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲେ । ଦକ୍ଷିଣ ଭିଏତନାମର ମୁକ୍ତି ଆନ୍ଦୋଳନକାରୀ ମାନଙ୍କୁ ନିଧନ କରିବା ପାଇଁ ଡିନ୍-ଡିଏମ୍ ସରକାରକୁ ସମର୍ଥନ

ଜଣାଉଥିବା ଭିଏତନାମୀ ଜମିଦାର ଶ୍ରେଣୀ, ପ୍ରତିକ୍ରିୟାଶୀଳ ଶକ୍ତି, ରାଜରାଜୁଡ଼ା ବଂଶ ଏବଂ ବେତନ ଭୋଗୀ ରାଜକର୍ମଚାରୀମାନେ ସ୍ୱତନ୍ତ୍ର ଯୁଦ୍ଧରେ ଅଂଶ ଗ୍ରହଣ କଲେ । ନିଉୟର୍କରୁ ଆମଦାନୀ କରାଯାଇଥିବା ମାର୍କିନ ସେନାମୁଖ୍ୟଙ୍କ ନେତୃତ୍ୱରେ ଭିଏତନାମୀ ସୈନ୍ୟମାନେ ଭିଏତନାମର ବିପ୍ଳବୀମାନଙ୍କ ବିରୁଦ୍ଧରେ ରଣାଙ୍ଗନରେ ଠିଆ ହେଲେ । ସମ୍ମୁଖ ରଣର ଦୁଇପଟରେ କେବଳ ହିଁ ଭିଏତନାମୀ । ଅନ୍ତରାଳରେ ରହି ଆମେରିକୀୟ ସୈନ୍ୟ ସାମନ୍ତ ଏହି ଭୟଙ୍କର ନୃତ୍ୟକଳାକୁ ହିଁ ଉପଭୋଗ କରୁଥିଲେ ।

'ସ୍ୱତନ୍ତ୍ର ଯୁଦ୍ଧ'ରେ ବ୍ୟବହୃତ ଅସ୍ତ୍ରଶସ୍ତ୍ରର ପରିମାଣ ପୂର୍ବାପେକ୍ଷା ଶତଗୁଣେ ଅଧିକ ଥିଲା । ଯୁକ୍ତରାଷ୍ଟ୍ରର ସୁଚତୁର ପ୍ରସିଦ୍ଧ ବୈଜ୍ଞାନିକ ମାନଙ୍କ ଦ୍ୱାରା ନିର୍ମିତ ଅତି ଆଧୁନିକ ଧରଣର ମାରଣାସ୍ତ୍ର ଏଥିରେ ପ୍ରୟୋଗ କରାଯାଇଥିଲା । ଯାହାକି ଭିଏତନାମୀ ମାନଙ୍କର କଳ୍ପନାର ବହୁତ ଊର୍ଦ୍ଧ୍ୱରେ । ବିଶେଷ କରି ସେହି ଯୁଦ୍ଧରେ ଡିନ୍-ଡିଏମ୍ ସଖୀକୁ ସେଇ ସରକାର ଅଧୀନରେ ଥିବା ଦେଶୀୟ ସୈନ୍ୟମାନଙ୍କୁ ନିବେଶକାଳୀନ ପରିସ୍ଥିତି ଭିତ୍ତିରେ ସାମରିକ ଯୁଦ୍ଧ ଚାଳନା ଶିକ୍ଷା ଦିଆଗଲା । କାରଣ ସେମାନେ ଭିଏତନାମର ଭୌଗୋଳିକ ସ୍ଥିତି ଓ ପ୍ରାକୃତିକ ଅବସ୍ଥା ସହିତ ଆପଣାର । ସେମାନଙ୍କୁ ନେଇ ଡିନ-ଡିଏମ ଯୁଦ୍ଧ ଭୂମିରେ ଓହ୍ଲାଇଲା । ଗୋଟିଏ ପଟରେ ଧନୁଶର ଧାରୀ କିଶୋର ଜଙ୍ଗୀ ବିପ୍ଳବୀଗଣ ଏବଂ ଅନ୍ୟ ପଟରେ ବିଶ୍ୱର ଖ୍ୟାତିସମ୍ପନ୍ନ ଦୁର୍ଦ୍ଧର୍ଷ ସାମରିକ ବାହିନୀ ।

ସେଦିନ ଯୁଦ୍ଧର ଆଉ ଏକ ବିଶିଷ୍ଟ ଦିଗ ଥିଲା, ତାହା ହେଲା ଏପ୍ରକାର ରଣ ନୀତିର ପ୍ରୟୋଗ ଓ ପରୀକ୍ଷା ଫଳରେ ମାର୍କିନ ଯୁକ୍ତରାଷ୍ଟ୍ର ଯଦି ଭିଏତନାମ ମୁକ୍ତି ଆନ୍ଦୋଳନର ନିଆଁକୁ ଚପାଇ ଦେଇ ପାରିବ ତେବେ ବିଶ୍ୱର ଅନ୍ୟାନ୍ୟ ପରାଧୀନ, ମୁକ୍ତିକାମୀ ରାଷ୍ଟ୍ର ମାନଙ୍କରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ବିରୁଦ୍ଧରେ ଆଜିଠାରୁ ଅସ୍ତ୍ର ପକାଇବା ପାଇଁ ସେ ପୂର୍ଣ୍ଣ ସୁଯୋଗ ପାଇବ । ଫଳରେ ଭିଏତନାମ ପରି ଅନ୍ୟାନ୍ୟ ପରାଧୀନ ରାଷ୍ଟ୍ର ଗୁଡ଼ିକରେ ସେ ଉପନିବେଶ ତିଆରି କରି ପାରିବ । କେବଳ ପରାଧୀନ ଜାତି କାହିଁକି ନୂତନ କରି ସ୍ୱାଧୀନତା ଲାଭ କରିଥିବା ଆଫ୍ରିକା ଓ ଲାଟିନ ଆମେରିକୀୟ ଦେଶମାନଙ୍କରେ ଏହି ବିଷ ପ୍ରୟୋଗ କରିବା ପାଇଁ । ଯୁକ୍ତରାଷ୍ଟ୍ର ଅନେକ ଦିନରୁ ଅପେକ୍ଷା କରିଥିଲା ।

ଭିଏତନାମ ଯେଉଁଦିନ ଠାରୁ 'ସ୍ୱତନ୍ତ୍ର ଯୁଦ୍ଧ'ର ପରୀକ୍ଷାଗାରରେ ପରିଣତ ହେଲା ସେଦିନ ଠାରୁ ଆମେରିକାର ଆଭ୍ୟନ୍ତରୀଣ ସାମରିକ ନୀତିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ମାନ ଦେଖା ଦେଇଛି । ଭିଏତନାମରେ 'ସ୍ୱତନ୍ତ୍ର ଯୁଦ୍ଧ'କୁ ସଫଳ

କରିବା ପାଇଁ ମାର୍କିନ ସରକାର 'ଷ୍ଟାଲେ ଟେଲର' ଯୋଜନା ହାତକୁ ନେଲେ । ଏହି ଯୋଜନା ହିଁ 'ସ୍ୱତନ୍ତ୍ର ଯୁଦ୍ଧ'ର ମେରୁଦଣ୍ଡ ପରି । ଏହାର ମୂଳ ଲକ୍ଷ୍ୟ ଥିଲା ମାର୍କିନ ସାମରିକ ସେଣ୍ଟ ପେଣ୍ଟାଗନର ସକଳ ଶକ୍ତି ସାମର୍ଥ୍ୟକୁ ଦକ୍ଷିଣ ଭିଏତନାମକୁ ସ୍ଥାନାନ୍ତରିତ କରି ଭିଏତନାମରେ ସାମରିକ ଶକ୍ତି ବୃଦ୍ଧି ଘଟାଇବା ଏବଂ ମାତ୍ର ଅଠର ମାସ ମଧ୍ୟରେ ଭିଏତନାମର ମୁକ୍ତି ଦାବାନଳକୁ ସମୂଳେ ପାଇଁ ନିର୍ବାପିତ କରିବା ସଙ୍ଗେ ସଙ୍ଗେ ଦକ୍ଷିଣ ଭିଏତନାମକୁ ସମ୍ପୂର୍ଣ୍ଣ କରଗତ କରିବା । ସେଥିପାଇଁ ସେମାନେ ଅତି ଚତୁରତାର ସହିତ ଗୋଟିଏ ପରେ ଗୋଟିଏ ଗାଁକୁ ନିଜ ସୈନ୍ୟ ଛାଉଣୀରେ ପରିଣତ କରିଦେଲେ । ଏହିପରି ସାରା ଭିଏତନାମକୁ ନିଜ ଶିବିରାଧୀନ କରିବା ପାଇଁ ସେମାନଙ୍କର ଚେଷ୍ଟା ଅପ୍ରତିହତ ରହିଲା । ଏଥିପାଇଁ ଯେତେ ଅର୍ଥ, ଯେତେ ସାମରିକ ବଳର ଆବଶ୍ୟକତା ପଡ଼ିଛି, ତାହା ନିର୍ବିବାଦରେ ଯୋଗାଡ଼ ଦିଆଯାଇଛି । ଖୁବ କମ୍ ସମୟ ମଧ୍ୟରେ ଏହିପରି ୧୭,୦୦୦ ଗ୍ରାମକୁ ସେମାନେ ସୈନ୍ୟ ଶିବିରରେ ପରିଣତ କରିବାର ସ୍ୱପ୍ନ ଦେଖିଥିଲେ । ସମଗ୍ର ଭିଏତନାମ ଏକ ବୃହତ୍ ଯାତନା ଗୃହରେ ପରିଣତ ହେଉ, ଏହାହିଁ ଥିଲା ତାଙ୍କର ଅନ୍ତିମ ବାସନା । ଏହି ସ୍ୱପ୍ନ ଓ ବାସନା ବିଳାସକୁ ଚରିତାର୍ଥ କରିବା ପାଇଁ ସେମାନେ ପ୍ରଥମ ପଦକ୍ଷେପ ସ୍ୱରୂପ ବିପ୍ଳବୀ ମାନଙ୍କର ଘାଟୀ ଗୁଡ଼ିକୁ ସଶସ୍ତ୍ର ଆକ୍ରମଣ କରିବା ପାଇଁ ଚେଷ୍ଟା ଚଳାଇଥିଲେ ।

କିନ୍ତୁ ସେମାନଙ୍କର ସେ ଅଦ୍ଭୁତ ସ୍ୱପ୍ନ ପାହାନ୍ତା ପୂର୍ବରୁ କେଉଁଆଡ଼େ ଉଭେଇ ଯାଇଥିଲା । ନିଜ ଦେଶର ଏହି ଅନନୁମେୟ ବିପର୍ଯ୍ୟୟର ଆଶଙ୍କା କରି ଭିଏତନାମର ମୁକ୍ତି ସଂଗ୍ରାମୀମାନେ ଦିନେ ମୁକ୍ତି ସାମ୍ମୁଖ୍ୟ ତଳେ ଏକତ୍ରିତ ହେଲେ । ସେଦିନ ୧୯୬୨ ମସିହା ଫେବୃୟାରୀ ୧୬ ତାରିଖ । ପ୍ରଥମ ଥର ପାଇଁ 'ମୁକ୍ତି ପାଇଁ ଭିଏତନାମ ଜାତୀୟ ସାମ୍ମୁଖ୍ୟ'ର ବୈଠକ ବସିଛି । ବିଶିଷ୍ଟ ଆଇନଜୀବୀ ନୁଏନ-ହୁ ସର୍ବସମ୍ମତ କ୍ରମେ ସାମ୍ମୁଖ୍ୟ କେନ୍ଦ୍ର କମିଟିର ସଭାପତି ନିର୍ବାଚିତ ହୋଇଛନ୍ତି । ତାଙ୍କର ଆହ୍ୱାନ କ୍ରମେ ଜାତୀୟ ସାମ୍ମୁଖ୍ୟ ମାତ୍ର ଗୋଟିଏ ପ୍ରସ୍ତାବ ଗ୍ରହଣ କରିଥିଲା ଯାହାକି ସେଦିନର ଯୁଦ୍ଧନଷ୍ଟ ଦେଶକୁ ଉଦ୍ଧାର କରିବା ପାଇଁ ସମବେତ ବିପ୍ଳବୀ ତଥା ସାମ୍ମୁଖ୍ୟର ଅନ୍ୟାନ୍ୟ ସାଥୀ ଓ ସଂଗ୍ରାମୀ ମାନଙ୍କୁ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ପ୍ରଦାନ କରିଥିଲା—"ଯୁଦ୍ଧଖୋର, ଆକ୍ରମଣକାରୀ, ମାର୍କିନ ଯୁକ୍ତରାଷ୍ଟ୍ରର ସାମ୍ରାଜ୍ୟବାଦ ବିରୁଦ୍ଧରେ ଦୃଢ଼ ଭାବରେ ସଂଗ୍ରାମ ଚାଲୁ ରଖିବା ପାଇଁ ଡିନ୍ ଡିଏମ୍ ସରକାରର ଚକ୍ରାନ୍ତ, ତାର ସମର୍ଥନକାରୀ ଓ ଶାସନ ବ୍ୟବସ୍ଥାର ମୂଳୋତ୍ପାଟନ ପାଇଁ ଏକ ବୃହତ ଗଣତାନ୍ତ୍ରିକ ଏବଂ ଜାତୀୟ ମୁକ୍ତ ସାମ୍ମୁଖ୍ୟର ଶାସନ ପ୍ରତିଷ୍ଠା ପାଇଁ, ଗଣତାନ୍ତ୍ରିକ ଅଧିକାର, ଜାତୀୟ ମୁକ୍ତି, ଉନ୍ନତ ଜୀବନଯାପନ ଫେରି ପାଇବା ପାଇଁ, ଶାନ୍ତିର ସୁରକ୍ଷା ପାଇଁ, ଗୋଷ୍ଠୀ ନିରପେକ୍ଷ ନୀତି କାର୍ଯ୍ୟକାରୀ

କରିବା ପାଇଁ, ଦେଶର ଏକତ୍ରୀକରଣ ପାଇଁ ଏବଂ ସର୍ବୋପରି ଇଣ୍ଡୋଚୀନ, ଦକ୍ଷିଣପୂର୍ବ ଏସିଆ ଓ ସାରା ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ, ବିଶ୍ୱ ମୁକ୍ତି ଆନ୍ଦୋଳନର ସକ୍ରିୟ ଅଂଶ ଗ୍ରହଣ ନିମନ୍ତେ ସାଧାରଣ ଜନତାକୁ ସମବେତ କରାଇବା ଦିଗରେ ମୁକ୍ତି ପାଇଁ, ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟର ଗୁରୁଦାୟିତ୍ୱ ରହିଛି । ବର୍ତ୍ତମାନର ଅବସ୍ଥା ଯାହା ସେଥିରୁ ସ୍ଥାନମାନଙ୍କୁ ଶତ୍ରୁମାନଙ୍କ ହାତରୁ ଉଦ୍ଧାର କରାଯାଇଥିଲା ସେ ସବୁଠାରେ ସାମ୍ମୁଖ୍ୟର ଶକ୍ତି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଲକ୍ଷ ଲକ୍ଷ ସଂଖ୍ୟାରେ ସାଧାରଣ ଜନତା ସାମ୍ରାଜ୍ୟବାଦୀ ଆକ୍ରମଣକାରୀମାନଙ୍କୁ ସାମ୍ନା କରିବା ପାଇଁ ଆଗେଇ ଆସିଛନ୍ତି । ପ୍ରତ୍ୟେକ ସ୍ଥଳରେ ଗରିଲା ଯୁଦ୍ଧ-କୌଶଳ ପ୍ରବଳ ବେଗରେ ବୃଦ୍ଧି ପାଇଛି । ଦେଶକୁ ମୁକ୍ତ କରିବା ପାଇଁ ପ୍ରତ୍ୟେକଟି ବ୍ୟକ୍ତି ଅପୂର୍ବ ତେଜ ବଳ ନେଇ ଜାତୀୟ ସାମ୍ମୁଖ୍ୟରେ ଯୋଗ ଦେଇଛି । ଶତ୍ରୁର ପରିକଳ୍ପିତ 'ଗ୍ରାମ୍ୟ ସୈନ୍ୟ ଶିବିର' ଦରଭଙ୍ଗା କୁଡ଼ିଆ ଖଣ୍ଡରେ ପରିଣତ ହୋଇଛି । ବିପ୍ଳବର ଉଦ୍ଦାମ ତରଙ୍ଗରେ 'ଷ୍ଟାଲେ-ଟେଲର' ଯୋଜନା ଭାସିଯିବାକୁ ବସିଛି ।

୧୯୬୮ର ପ୍ରଥମ ଦିନ ଯୁଦ୍ଧର କାହାଣୀ । ଥିଉ-ଥିଏମ୍ ସରକାର 'ସ୍ୱତନ୍ତ୍ର ଯୁଦ୍ଧ'କୁ ଜାତୀୟ ଯୋଜନାର ଅଙ୍ଗୀଭୂତ କରିଛି । ଆପ ବାକ୍ ଠାରେ ଶତ୍ରୁ ପକ୍ଷରୁ ଦୁଇହଜାରରୁ ଅଧିକ ସୈନ୍ୟ ମୁତୟନ କରାଯାଇଛି । ପ୍ରଥମ ଥର ପାଇଁ ଶତ୍ରୁ ପକ୍ଷର ଏକ ଦଶମାଂଶ ସୈନ୍ୟବାହିନୀ ଆପ-ବାକ ବିପ୍ଳବୀ ଘାଟୀ ଧ୍ୱଂସ କରି ଦେବାର ଉଦ୍ଦେଶ୍ୟ ନେଇ ଆକ୍ରମଣ ଆରମ୍ଭ କରିଛନ୍ତି । ସେମାନଙ୍କ ହାତରେ ବହୁ ସଂଖ୍ୟାର ଲଢ଼ୁଆ ବିମାନ ଏବଂ ଏମ-୧୧୩ର ଅସ୍ତ୍ରଯୁକ୍ତ ବୋଝାଇ ମୋଟର ଗାଡ଼ି । ଅତ୍ୟାଧୁନିକ ରଣ କୌଶଳରେ ସଜ୍ଜିତ ମାର୍କିନ ଯୁକ୍ତରାଷ୍ଟ୍ର ତାର ସମ୍ମାନବୋଧକ ଲଢ଼ାଇ ପାଇଁ ତିଆରି ହୋଇ ଆସିଛି । ଗୁଳି ଗୋଳା, ବାରୁଦ ଓ କମାଣର ଅଭାବ ନାହିଁ ସେମାନଙ୍କର ।

ସେଦିନ ଆଜି ବି କଥା କୁହେ । ଭିଏତନାମର ଜନସମୁଦ୍ର ସତେ ଯେପରି କ୍ଷୁଦ୍ର ବାଲିବନ୍ଧ ଭାଙ୍ଗି ମାଡ଼ି ଚାଲିଛି ଆଗକୁ । ଆଗରେ ପଡ଼ିଥିବା ସୈନ୍ୟ ଛାଉଣୀ, ଶତ୍ରୁ କବଳିତ ଗାଁ ଗଣ୍ଡା ସାମରିକ ଘାଟୀ, ଅସ୍ତ୍ରାଗାର ଉଦ୍ଦାମ ତରଙ୍ଗରେ ଲୀନ ହୋଇ ଯାଉଛି । ସ୍ତ୍ରୀ ପୁରୁଷ, ଶିଶୁ, ବୃଦ୍ଧ, ଯୁବକ, କିଶୋର ନିର୍ବିଶେଷରେ ସମସ୍ତେ ଚାଲିଛନ୍ତି ମୁକ୍ତି ସଂଗ୍ରାମର ଧ୍ୱଜାଧରି । ଶତ୍ରୁ ହାତରେ ଥିବା ଆପ-ବାକର ଏକ ବିସ୍ତୃତ ଅଞ୍ଚଳ ଜାତୀୟ ସାମ୍ମୁଖ୍ୟ ଦଖଲ କଲା । ସେଠାରେ ଚାଲିଥିବା ମାର୍କିନ ସମର୍ଥିତ ଶାସନ ବ୍ୟବସ୍ଥା, ଶୋଷକ ଜମିଦାର ଶ୍ରେଣୀ ଓ ଅତ୍ୟାଚାରୀ ରାଜକର୍ମଚାରୀ ମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରାଗଲା । ଶତ୍ରୁ ଶିବିରରୁ ସହସ୍ରାଧିକ

ସୈନ୍ୟଙ୍କୁ ବନ୍ଦୀ କରିଗଲା । ପରବର୍ତ୍ତୀ ସମୟରେ ସେମାନଙ୍କ ମଧ୍ୟରୁ ଅନେକଙ୍କ ଗଣ ସାମ୍ମୁଖ୍ୟରେ ଯୋଗ ଦେଇଥିଲେ ।

ଆପ-ବାକ୍ ଠାରେ ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ଡିନ୍-ଡିଏମ୍ ସରକାରର 'ସ୍ୱତନ୍ତ୍ର ଯୁଦ୍ଧ' ନୀତି ଶୋଚନୀୟ ଭାବେ ପରାଜୟ ସ୍ୱୀକାର କଲା । ସାମରିକ ଦିଗରୁ ସେମାନେ ଦେବାଳିଆ ହେବାକୁ ବାଧ୍ୟହେଲେ । 'ସ୍ୱତନ୍ତ୍ର ଯୁଦ୍ଧ' ଯୋଗୁଁ ରାଜକୋଷ ଉପରେ ପ୍ରବଳ ଚାପ ପଡ଼ିବା ଫଳରେ ଅନ୍ୟାନ୍ୟ ଯୋଜନାମାନ ବାଧାପ୍ରାପ୍ତ ହେଲା । ଅର୍ଥନୈତିକ ଅନଗ୍ରସରତା ସଙ୍ଗେ ସଙ୍ଗେ ରାଜନୈତିକ ପରାଜୟ କ୍ରମଶଃ ସ୍ପଷ୍ଟ ହୋଇ ଉଠିଲା । ଦକ୍ଷିଣର ବୀର ଜଓ୍ୱାନ ଓ ମୁକ୍ତି ସଂଗ୍ରାମୀମାନଙ୍କର ଅଭୂତପୂର୍ବ ସାହସ ଆଗରେ 'ଷ୍ଟାଲେ-ଟେଲର' ଯୋଜନା ନତି ସ୍ୱୀକାର କଲା ।

ଏହି ପରାଭୂତ ଯୁଦ୍ଧ ଯୋଜନାକୁ ମାର୍କିନ ଯୁକ୍ତରାଷ୍ଟ୍ର ସାଦରେ ଗ୍ରହଣ କରି ପାରିଲା ନାହିଁ । ତାର ଆନ୍ତର୍ଜାତିକ ସାମରିକ ସମ୍ମାନବୋଧ ସତେ ଯେପରି ମାଟିରେ ମିଶି ଯାଇଛି ! ଏଥିପାଇଁ ସେ ଡିନ୍-ଡିଏମ୍ ସରକାରର ଅପାରଗତାକୁହିଁ ମୁଖ୍ୟତଃ ଦାୟୀ କରିଲା । ୧୯୬୩ ନଭେମ୍ବର ମାସରେ ଡିନ୍-ଡିଏମ୍ ଠାରୁ କ୍ଷମତା ହସ୍ତାନ୍ତର କରିବାର ଆଶା ନେଇ ମାର୍କିନ ଯୁକ୍ତରାଷ୍ଟ୍ରର ସାମରିକ ବାହିନୀ ଅତି କରୁଣ ଭାବରେ ଡିଏମ୍ ଏବଂ ନୁ' ଭାଇମାନଙ୍କୁ ହତ୍ୟା କଲେ ଏବଂ ତାଙ୍କ ସ୍ଥାନରେ ଆଉ ଏକ ପଦଲେହନକାରୀ ନୁଏନ ଖାନଙ୍କୁ ଶାସନଗାଦିରେ ଅବସ୍ଥାପିତ କଲେ ।

ଆପ ବାକ୍ ଠାରେ ମୁକ୍ତି ବିଦ୍ରୋହୀ ମାନଙ୍କର ବିଜୟ, ଏବଂ ଡିନ୍-ଡିଏମ୍ ସରକାରର ଆଶୁପତନ ଫଳରେ ଜାତୀୟ ମୁକ୍ତି ସାମ୍ମୁଖ୍ୟର ରାଜନୈତିକ ସମ୍ମାନ ବହୁ ପରିମାଣରେ ଦେଶର ଅଭ୍ୟନ୍ତରକୁ ବ୍ୟାପି ଯାଇଛି । ଫାସିବାଦୀ ସମରନୀତି ବିରୁଦ୍ଧରେ ସେମାନଙ୍କର ଅଭୂତପୂର୍ବ ସଂଗ୍ରାମ ଶତ୍ରୁ କବଳିତ ଅଞ୍ଚଳ ମାନଙ୍କରେ ଥିବା ସାଧାରଣ ନାଗରିକ ମାନଙ୍କ ହୃଦୟରେ ଗଭୀର ଆଶା ସଞ୍ଚାର କରିପାରିଛି । ସେମାନେ କୌଣସି ନେତୃତ୍ୱକୁ ଆଉ ଅପେକ୍ଷା ନ କରି ନିଜ ଅଞ୍ଚଳ ମାନଙ୍କରେ ଥିବା ଶତ୍ରୁ ସୈନ୍ୟ ଶିବିର ଉପରେ ଆକ୍ରମଣ ଆରମ୍ଭ କରିଦେଇଛନ୍ତି । ସେମାନଙ୍କର ଉଦାହରଣ କ୍ରମଶଃ ନିକଟବର୍ତ୍ତୀ ସହର, ସହରତଳି ଅଞ୍ଚଳକୁ ପ୍ରସାରିତ ହୋଇଛି । ମୁକ୍ତ ଜୀବନ, ସୁଖୀ ଭବିଷ୍ୟତ ଓ ଯୁଦ୍ଧ ବିହୀନ ଦୁନିଆ ପାଇଁ ସେ ସମସ୍ତେ ପାଗଳ ହୋଇ ଉଠିଛନ୍ତି ।

ଜନଉଚ୍ଛ୍ୱାସର ଏହି ଅଫୁରନ୍ତ ଶକ୍ତି ଦେଖି ପରାଜିତ ପେଣ୍ଟାଗନ ଅତୀବ ବିଚଳିତ । 'ଷ୍ଟାଲେ-ଟେଲର' ଯୋଜନା ପରିବର୍ତ୍ତେ ଆଉ ଏକ ଅଭିନବ ଯୋଜନା ସେ କାର୍ଯ୍ୟକାରୀ କରିବାକୁ ଚାହେଁ । ତାହା ହେଉଛି ବିଶ୍ୱ ବିଖ୍ୟାତ

ଜନସନ ମ୍ୟାକନାମାର ଯୁଦ୍ଧ ଯୋଜନା ! ୧୯୬୪ ଓ ୧୯୬୫ ଏହି ଦୁଇ ବର୍ଷ ମଧ୍ୟରେ ସାମରିକ ବଳ ପ୍ରୟୋଗ ଦ୍ୱାରା ଭିଏତନାମକୁ ଦଖଲ କରିବା ହେଲା ଏହି ଯୋଜନାର ଏକମାତ୍ର ଲକ୍ଷ୍ୟ । ୧୯୬୪ ମସିହା ଶେଷ ବେଳକୁ ଭିଏତନାମ ଯୁକ୍ତରାଷ୍ଟ୍ର ମିଳିତ ଯୁଦ୍ଧ ମେଣ୍ଡର ଆଦେଶରେ ଛ' ହଜାର ବଛା ବଛା ମାର୍କିନ ସାମରିକ ପରାମର୍ଶଦାତାଙ୍କ ସମେତ ପଚିଶ ହଜାର ଲଢ଼ୁଆ ସୈନ୍ୟ ଭିଏତନାମରେ ପହଞ୍ଚିଲେ । ଏତେ ଛୋଟ ରାଜ୍ୟଟି ପାଇଁ ଏତେ ସାମରିକ ଶକ୍ତି !! ଲୋକ ବଳ ସହିତ ଅସ୍ତ୍ରବଳର ପ୍ରାଚୁର୍ଯ୍ୟ ଆଗ ଅପେକ୍ଷା ବହୁ ଗୁଣରେ ଅଧିକ । ଭିଏତନାମ ଆଧୁନିକ ଯୁଦ୍ଧର ପରୀକ୍ଷାଗାରରେ ପରିଣତ ହୋଇଛି ।

ମାର୍କିନ ସରକାରର ଏତାଦୃଶ ମାନବଷଯ୍ଥୀ ରୁଚିହୀନ ବର୍ବର ପଦକ୍ଷେପକୁ ଭିଏତନାମ ଜନତା କ୍ଷମା ଦିଅନ୍ତା କିପରି ? ରାଗ ଓ ଘୃଣାରେ ବିକୃତ ହୋଇ ଉଠିଥିବା ମଣିଷ ପଶୁ ହେବା ପାଇଁ ବାଧ୍ୟ ହେଲା । ହ୍ୟୁ ଏବଂ ସାଇଗନରେ ମାର୍କିନ-ଖାନ ବିରୋଧୀ ଆନ୍ଦୋଳନ ତୋଫାନ ବେଗରେ ବ୍ୟାପି ଗଲା । ଫଳରେ ପାଖ ଆଖରେ ଥିବା ଅନ୍ୟାନ୍ୟ ସହର ବଜାରରେ ସେହି ଅବସ୍ଥା । ୧୯୬୪ ମସିହା ଅଗଷ୍ଟ ମାସ କୋଡ଼ିଏ ତାରିଖ ରାତିରେ ପ୍ରାୟ ଦୁଇ ଲକ୍ଷରୁ ଅଧିକ ସହର ସାଧାରଣ ନାଗରିକ ସେମାନଙ୍କର ପାରମ୍ପରିକ ତୀର ବର୍ଚ୍ଛି ଧରି ଦକ୍ଷିଣ ଭିଏତନାମର ଇତିହାସ ପ୍ରସିଦ୍ଧ ରାଜନୈତିକ ପୀଠ 'ସ୍ୱାଧୀନତାର ରାଜଗୃହ' ଚଢ଼ାଉ କଲେ । ସେହି ରାତି ଠାରୁ ୧୯୬୪ ମସିହା ଅନ୍ତିମ ଦିନ ପର୍ଯ୍ୟନ୍ତ ଦକ୍ଷିଣ ଭିଏତନାମରେ ଜାତୀୟ ମୁକ୍ତି ସାମ୍ମୁଖ୍ୟ ତରଫରୁ ଶତ୍ରୁ ସୈନ୍ୟ ଶିବିର ଓ ସରକାରୀ ସଂସ୍ଥା ମାନଙ୍କ ଉପରେ କ୍ରମାଗତ ଆକ୍ରମଣ ଲାଗି ରହିଲା । କଳ କାରଖାନା ମାନଙ୍କରେ ଧର୍ମଘଟ, ତାଲାବନ୍ଦ, ସହର ବଜାର ମାନଙ୍କରେ ବ୍ୟବସାୟ କାରବାର ବନ୍ଦ, ବିଦ୍ୟୁତ, ଜଳ ଓ ପରିବହନ ଆଦି ଗୁରୁତ୍ୱପୂର୍ଣ୍ଣ ସଂସ୍ଥାମାନଙ୍କରେ ନିତ୍ୟ ବିଦ୍ରୋହ ଫଳରେ ଜୀବନ-ଯାତ୍ରା ଅଚଳ ହୋଇ ଉଠିଲା । ଗୁଏନ୍ ଖାନ ସରକାରର ସାମରିକ ବଳ, ଡଲାରର ରାଜକୀୟ ବିଭବ ସାଧାରଣ ନାଗରିକ ମାନଙ୍କର ମୌଳିକ ଅଭାବ ଦୂର କରିବା ପାଇଁ ସମର୍ଥ ହୋଇ ପାରିଲା ନାହିଁ । ଫଳରେ ସରକାରୀ କଳର ଚରମ ଦୁର୍ବଳତାର ସୁଯୋଗ ନେଇ ମୁକ୍ତି ସାମ୍ମୁଖ୍ୟ ତରଫରୁ ଗୁଏନ ଖାନ ସରକାରର ଇସ୍ତଫା ଦାବୀ କରି ଆଉ ଏକ ରାଜ୍ୟ ବ୍ୟାପୀ ଗଣ ଅଭ୍ୟୁତ୍ଥାନ ମୁଣ୍ଡ ଟେକିଲା । ଏହି ଗଣ ଆନ୍ଦୋଳନ ସେତେବେଳେ ମୁଖ୍ୟତଃ ତିନିଭାଗରେ ବିଭକ୍ତ ଥିଲା (୧) ଗ୍ରାମାଞ୍ଚଳ, ସହରାଞ୍ଚଳ ଏବଂ ପାର୍ବତ୍ୟାଞ୍ଚଳ । ଗରିଲା ରଣ କୌଶଳର ବିଭିନ୍ନ ପର୍ଯ୍ୟାୟ ଦେଇ ଏହି ତିନି ମୁଖ୍ୟ ବିଭାଗକୁ ଯୁଦ୍ଧ ପରିଚାଳନା ଶିକ୍ଷା ଦିଆଯାଉଥିଲା । ଗଣ ବିଦ୍ରୋହର କ୍ରମବର୍ଦ୍ଧିଷ୍ଣୁ ଚାପମାତ୍ରା ଅନୁଭବ କରି ମୁକ୍ତି ସାମ୍ମୁଖ୍ୟ ତରଫରୁ ଆଉ ଏକ ସାଧାରଣ ଅଭ୍ୟୁତ୍ଥାନ ପାଇଁ ଡାକରା ଦିଆଗଲା । ୧୯୬୪ ମସିହା

ଡିସେମ୍ବର ୩ ପରେ ବିନ୍‌ଗିଆ ଠାରେ ମୁକ୍ତି ବାହିନୀର ଦୁର୍ଦ୍ଧର୍ଷ ଗରିଲା ମାନଙ୍କ ସହିତ ଥ୍ୟୁଏନ ଖାନର ଯୁଦ୍ଧ ନିପୁଣ ବଛା ବଛା ଲଢ଼ୁଆ ସୈନ୍ୟ ମୁହାଁମୁହିଁ ହେଲେ । ବିନଗିଆ ଯୁଦ୍ଧର ଆଉ ଏକ ବିଶେଷତ୍ୱ ହେଲା ଏଥିରେ ପ୍ରଥମ ଥର ପାଇଁ ଗରିଲା ମାନେ ମୁକ୍ତ ଆକାଶ ତଳେ ସ୍ପଷ୍ଟ ଦିବାଲୋକରେ ମାର୍କିନ ଯୁଦ୍ଧବାଦୀଙ୍କର ଅତ୍ୟାଧୁନିକ ରଣ-କୌଶଳର ସାମନା କରିଥିଲେ । ଦୀର୍ଘ ଛ'ଦିନ ଛ'ରାତି ଧରି ଏହି ଯୁଦ୍ଧ ଚାଲିଥିଲା । ଯୁଦ୍ଧ ଶେଷ ପରିଣାମ ଜଣାଇ ଦେଲା ଯେ ମୁକ୍ତ ବାହିନୀର ଗରିଲା ମାନେ ଶତ୍ରୁ ପକ୍ଷର ୩୭ଟି ଲଢ଼ୁଆ ବିମାନ ସହିତ ଏମ୍‌-୧୧୩ ର ସଂଖ୍ୟାଧିକ ମୋଟରକାର ଧ୍ୱଂସ କରି ଦେଇଛନ୍ତି । ମୃତାହତଙ୍କ ସଂଖ୍ୟା ଅଗଣନ । ଦୁଇଟି ଶକ୍ତିଶାଳୀ ସୁସଜ୍ଜିତ ସୈନ୍ୟବାହିନୀ ଛତ୍ରଭଙ୍ଗ ଦେଇ ପଳାୟନ କରିଛନ୍ତି ।

ଆପ ବାକର ବିଜୟବାର୍ତ୍ତା ଠାରୁ ବିନ ଗିଆର ବିଜୟ କାହାଣୀ ଦକ୍ଷିଣ ଭିଏତନାମର ମୁକ୍ତି ପାଗଳ ଜନତା ପାଇଁ ଅଧିକ ପ୍ରେରଣାଦାୟୀ । ସ୍ୱତନ୍ତ୍ର ଯୁଦ୍ଧର ସର୍ବୋତ୍ତମ ଯୁଦ୍ଧ କୌଶଳ ଯେ ବିଶ୍ୱ ସାମ୍ରାଜ୍ୟବାଦୀ ନୀତିର ମୁଖରେ କଳଙ୍କ ଲଗାଇଛି ଏଥିରେ ସନ୍ଦେହର ଅବକାଶ ନାହିଁ ।

ବିନ ଗିଆର ବିଜୟ ପରେ ପରେ ଉତ୍ୟକ୍ତ ଜନତାର ସାହସ ଦ୍ୱିଗୁଣ ତେଜରେ ବଢ଼ି ଚାଲିଛି । ୧୯୬୫ ମସିହା ମଧ୍ୟଭାଗ ବେଳକୁ ଗୋଟିଏ ପରେ ଗୋଟିଏ ହୋଇ ଶତ୍ରୁ ପକ୍ଷର ଅନେକ ସାମରିକ ଘାଣ୍ଟି ମୁକ୍ତି ସାମ୍ମୁଖ୍ୟର ଦଖଲକୁ ଆସିଛି । ଆନ ଲାଓ, ଦେଓ ନଙ୍ଗ ପ୍ଲିକୁ, ଡଙ୍ଗ ସ୍ୱୋଇ ଏବଂ ବା ଗିଆ ଆଦି ଅଞ୍ଚଳ ମାନଙ୍କରେ ମୁକ୍ତ ସାମ୍ମୁଖ୍ୟ ସ୍ୱାଧୀନତାର ଧ୍ୱଜା ଉତ୍ତୋଳନ କରି ପାରିଛି । ପ୍ରଥମ ଛ'ମାସ ମଧ୍ୟରେ ଥ୍ୟୁଏନ ଖାନ ସରକାରର ନବେ ହଜାର ସୈନ୍ୟ ମୁକ୍ତି ସାମ୍ମୁଖ୍ୟ ହାତରେ ବନ୍ଦୀ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ୩୦୦୦ ହେଉଛନ୍ତି ଖୋଦ ମାର୍କିନ ଯୁକ୍ତରାଷ୍ଟ୍ରର ।

ପରାଜିତ ଯୁଦ୍ଧର ଘନକୁହେଳୀ ମଧ୍ୟରେ ଉପନିବେଶବାଦୀ ଯୁକ୍ତରାଷ୍ଟ୍ର ଆମେରିକା ପଥ ବାରିପାରୁ ନାହିଁ । ତାର ସମସ୍ତ ଅପକୌଶଳ ଦକ୍ଷିଣ ଭିଏତନାମରେ ବ୍ୟର୍ଥ ହୋଇ ଯାଉଛି । କୋଟି କୋଟି ଡଲାରର ବିନିମୟରେ ନିର୍ମିତ ହୋଇଥିବା ସାମ୍ରାଜ୍ୟବାଦୀ ସ୍ୱପ୍ନର ପ୍ରାସାଦ ଅଚିରେ ଧୂଳିରେ ଲୋଟିଯାଉଛି । ହୁଏତ ଆଉ କିଛି ଦିନ ପରେ ତାର ଅଣୁକଣା ପୃଥିବୀ ବକ୍ଷରୁ ନିଶ୍ଚିହ୍ନ ହୋଇ ଯିବ । ମୃତ୍ୟୁର ପାଦଦେଶରେ ଠିଆ ହୋଇ ମାର୍କିନ ସରକାର ନୂତନ ଜୀବନ ପାଇଁ ଅପେକ୍ଷା କରିଛି । 'ସ୍ୱତନ୍ତ୍ର ଯୁଦ୍ଧ'ର ପରିବର୍ତ୍ତେ ଆଉ ଏକ ନୂତନ ସମରର କୌଶଳର ପ୍ରୟୋଗ ଅବଶ୍ୟମ୍ଭାବୀ । ନବ-ଉପନିବେଶବାଦର ଅନ୍ତିମ ସୁରକ୍ଷା ପାଇଁ ଆବଶ୍ୟକ ପଡ଼ିଲେ ମାର୍କିନ ରାଜକୋଷ ଶୂନ୍ୟ ହୋଇ ଯାଇପାରେ । କିନ୍ତୁ ବିଶ୍ୱ

ସାମ୍ରାଜ୍ୟବାଦୀ ଶିବିରର ଅମୋଘ ଅସ୍ତ୍ର ଉପନିବେଶୀ ଶାସନ ବ୍ୟବସ୍ଥା ଅକ୍ଷୁର୍ଣ୍ଣ ରହିବନି ରହିବ। ତେଣୁ ପେଣ୍ଟାଗନ ତରଫରୁ ବିଶ୍ୱର ଅଦ୍ୱିତୀୟ ରଣ ନୀତିର ସୃଷ୍ଟି ପାଇଁ ପରୀକ୍ଷା ଚାଲିଲା। ମାର୍କିନ ସରକାରର ମଦଦରେ ଚଳ ପ୍ରଚଳ ହେଉଥିବା ଅନେକ ପରାଧୀନ ରାଷ୍ଟ୍ରର ସରକାର ଓ ଉପନିବେଶୀ ଶାସନ ମୁଖ୍ୟ ଏହି ବିଭତ୍ସ ଧ୍ୱଂସଲୀଳାରେ ଘୃତାହୁତି କରିବା ପାଇଁ କମର ଭିଡ଼ି ବାହାରି ଆସିଲେ। ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସାମରିକ ସାହାଯ୍ୟ ଚୁକ୍ତି ସ୍ୱାକ୍ଷରିତ ହେଲା। ଏ ସବୁର ନିପୁଣ ବିନ୍ଧାଣୀ ହେଉଛି ମାର୍କିନ ସରକାର। ଏକାଧିକ ରାଷ୍ଟ୍ରର ସହାୟତାକୁ ଆଶ୍ରୟ କରି କ୍ଷୁଦ୍ର ଦକ୍ଷିଣ ଭିଏତନାମକୁ ଦଖଲ କରିବା ତାର ଉଦ୍ଦେଶ୍ୟ।

ନୁଏନ ଖାନ ସରକାରର ଜାତୀୟ ଯୁଦ୍ଧ ନୀତିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ମାନ ଦେଖି ଜାତୀୟ ମୁକ୍ତି ସାମ୍ମୁଖ୍ୟ ୧୯୬୫ ମସିହା ମାର୍ଚ୍ଚ ମାସରେ କେନ୍ଦ୍ର କମିଟିର ଏକ ଜରୁରୀ ବୈଠକ ଆହ୍ୱାନ କଲା। ଶତ୍ରୁ ପକ୍ଷର ପରିବର୍ତ୍ତିତ ପୃଷ୍ଠ-ଭୂମିରେ ନିଜର ଗରିଲା ରଣ କୌଶଳକୁ ଅପରିବର୍ତ୍ତିତ ରଖିବା ଅର୍ଥ ଶତ୍ରୁ ପକ୍ଷର ଗତି ସହିତ ତାଳ ପକାଇ ନପାରିବା ସହିତ ସମାନ। ସାଧାରଣ ଜନତାର ନୈତିକ ଦୃଢ଼ତାକୁ ବଜାୟ ରଖିବା ପାଇଁ କେନ୍ଦ୍ର କମିଟି ବଜ୍ର ନିର୍ଘୋଷ ସ୍ୱରରେ ଘୋଷଣା କଲା। "ମାର୍କିନ ସାମ୍ରାଜ୍ୟବାଦୀ ମାନଙ୍କର ଆକ୍ରମଣାତ୍ମକ ଯୁଦ୍ଧ ପ୍ରସାର ନୀତି ପ୍ରମାଣ କରୁଛି ଯେ ସେମାନଙ୍କର ଗତ ଯୁଦ୍ଧରେ ଶୋଚନୀୟ ପରାଜୟ ଘଟିଛି। ଏହି ବିପର୍ଯ୍ୟୟ ଦେଖାଇ ଦେଉଛି ଯେ ବିଗତ ଏଗାର ବର୍ଷ ଧରି ସେମାନେ ଦକ୍ଷିଣ ଭିଏତନାମରେ ଯେଉଁ ଉପନିବେଶବାଦୀ ଯୁଦ୍ଧ ଚଳାଇ ରଖିଥିଲେ ଏବଂ ସ୍ୱତନ୍ତ୍ର ଯୁଦ୍ଧର ଡାକରା ଦେଇଥିଲେ ତାହାର ସର୍ବନାଶ ଘଟିଛି। 'ଭିଏତନାମୀ ମାନଙ୍କୁ ଭିଏତନାମୀ ବିରୁଦ୍ଧରେ ଲଢ଼ାଇବାର' ଅଭିନବ ଅପକୌଶଳ ସେମାନଙ୍କର ଚୂର୍ଣ୍ଣୀଭୂତ ହୋଇଛି। ତା ବଦଳରେ ଦକ୍ଷିଣ ଭିଏତନାମର ଜନତା ଓ ବୀରଶିଶୁ ଅଦମ୍ୟ ନୈତିକ ବଳ ଓ ସାହସ ନେଇ ସାମ୍ରାଜ୍ୟବାଦୀ ମାନଙ୍କର କୁଟ ଚକ୍ରାନ୍ତକୁ ପଣ୍ଡ କରିବା ଦିଗରେ ସଫଳ ହୋଇଛନ୍ତି। 'ସ୍ୱତନ୍ତ୍ର ଯୁଦ୍ଧ'ର ପରୀକ୍ଷାଗାରରୁ ଦକ୍ଷିଣ ଭିଏତନାମ ଉତ୍ତୀର୍ଣ୍ଣ ହୋଇଛି।

ଦକ୍ଷିଣ ଭିଏତନାମରେ ଯେତେବେଳେ ଯୁଦ୍ଧର ଅଖଣ୍ଡ ବହ୍ନି ଜଳୁଛି ଠିକ୍ ସେତିକି ବେଳେ ତାର ପ୍ରିୟତମ ସନ୍ତାନ ହୋ' ଉତ୍ତର ପଟରେ ନିର୍ବାକ ନୟନରେ ଚାହିଁ ରହିଛି ସେହି ଆଡ଼େ। କେତେ ଦିନର ସ୍ୱପ୍ନ ସଫଳ ହେବାକୁ ଯାଉଛି! ଦକ୍ଷିଣର ବିଭତ୍ସ ନରହତ୍ୟା ଓ ଗଣ ହତ୍ୟାରେ ତା ଆଖିରୁ ଅଜସ୍ର ଲୁହ ଗଡ଼ି ଯାଉଛି ଅଜାଣତରେ। ରାତି ରାତିର ଶୋକ ଉପବାସ, ଅନିଦ୍ରା ମଧ୍ୟରେ ସେ ନିରତ ଭାବୁଚି ଦକ୍ଷିଣର ସହଯୋଦ୍ଧା ଭାଇ, ବନ୍ଧୁ ଓ ବିପ୍ଳବୀ ଗରିଲା ମାନଙ୍କ କଥା।

ଯେଉଁଦିନ ଦକ୍ଷିଣ ଭିଏତନାମ ମୁକ୍ତ ହେବ ସେହି ଚିନ୍ତା ତାଙ୍କୁ ଅବିରତ ପାଗଳ କରି ପକାଉଛି । ଯେଉଁ ସାହସ, ଧୈର୍ଯ୍ୟ, ବିଶ୍ୱାସ ଓ କର୍ତ୍ତବ୍ୟବୋଧର ଭରସା ଦେଇ ସେ ଲକ୍ଷ ଲକ୍ଷ ଦକ୍ଷିଣ ଭିଏତନାମୀ ପୁତ୍ର କନ୍ୟାଙ୍କୁ ମୃତ୍ୟୁ ମୁହଁକୁ ଠେଲି ଦେଇଛି, ସେହି ନରକ କୁଣ୍ଡରୁ ସେମାନଙ୍କୁ ସବୁଦିନ ପାଇଁ ରକ୍ଷା କରି ପାରିବନି ' ! ବିଜୟରେ ସେ ଉନ୍ମତ୍ତ ହେବାର ବ୍ୟକ୍ତି ନୁହେଁ । କିନ୍ତୁ ବିଜୟୀ ଗାଡ଼ିମାନରେ ଗର୍ବ କରିବା ପାଇଁ ତାର ଅଧିକାର ଅଛି ନିଶ୍ଚୟ । ଦିନ ଥିଲା, ସେ କେବଳ ଉତ୍ତର ଭିଏତନାମର ଭାଗ୍ୟ ବିଧାତା ଥିଲା, କିନ୍ତୁ ଆଜି ସେ ଦକ୍ଷିଣର ତ୍ରାଣକର୍ତ୍ତା । ତା ପାଖରେ ଆଜି ଲକ୍ଷ ଲକ୍ଷ ମୁକ୍ତିକାମୀ ଗରିଲା ଜମାଟ ବାନ୍ଧିଛନ୍ତି । ତାର ଆଦେଶ ସେମାନଙ୍କର ଶିରୋଧାର୍ଯ୍ୟ । ଦୁଇଟି ଦେଶ କିନ୍ତୁ ଗୋଟିଏ ଅଧିନାୟକ ସେ । ପ୍ରେସିଡେଣ୍ଟ ହୋ ଚି-ମିନ୍‌ର ବାର୍ତ୍ତା ଦକ୍ଷିଣ ଖଣ୍ଡରେ ଆସି ପହଞ୍ଚୁଛି ।

—"ବର୍ତ୍ତମାନ ଦକ୍ଷିଣ ଭିଏତନାମର ଅବସ୍ଥା ଯାହା ତାହା ସ୍ପଷ୍ଟ ଭାବେ ଦର୍ଶାଇ ଦେଉଛି ଯେ 'ସ୍ୱତନ୍ତ୍ର ଯୁଦ୍ଧ'ରେ ସାମ୍ରାଜ୍ୟବାଦୀ ଯୁକ୍ତରାଷ୍ଟ୍ରର ଶୋଚନୀୟ ପରାଜୟ ଅପରିହାର୍ଯ୍ୟ । ଯେଉଁ ବିଶେଷ ଧରଣ ଯୁଦ୍ଧର ପରୀକ୍ଷା ସେମାନେ ଦକ୍ଷିଣ ଭିଏତନାମରେ କରିବାକୁ ଚାହୁଁଥିଲେ ସେଥିରେ ସେମାନେ ନିଜେ ଜାଲ ଯୋଗୁ ଛାରଖାର ହୋଇଛନ୍ତି । ଅନ୍ୟ ସ୍ଥାନରେ ଏତାଦୃଶ ପରାଜୟ ଅବଶ୍ୟମ୍ଭାବୀ । ତାହାହିଁ ବିଶ୍ୱରେ ଚାଲିଥିବା ଜାତୀୟ ମୁକ୍ତିବିପ୍ଳବ ଏବଂ ଆମ ଦକ୍ଷିଣର ଦେଶପ୍ରେମୀ ଯୋଦ୍ଧାମାନଙ୍କର ମୁକ୍ତି ସଂଗ୍ରାମର ଆନ୍ତର୍ଜାତିକ ବୈଶିଷ୍ଟ୍ୟ" ।



## ୬୦

# ମାର୍କିନ ଧ୍ୱଂସଲୀଳା ବିରୁଦ୍ଧରେ ଭିଏତନାମ ବ୍ୟାପୀ ଜାତୀୟ ସଂଗ୍ରାମ

ଭିଏତନାମରେ 'ମାର୍କିନ ସ୍ୱତନ୍ତ୍ର ଯୁଦ୍ଧ ବ୍ୟବସ୍ଥା'ର ଦାରୁଣ ପରାଜୟ ପରେ ପରେ ପଶ୍ଚିମା ନବଉପନିବେଶବାଦୀମାନେ ସ୍ୱଭାବତଃ ଆଶାଶୂନ୍ୟ ହୋଇପଡ଼ିବା କଥା । କାରଣ ସେମାନଙ୍କର କ୍ରମାଗତ ପ୍ରଚେଷ୍ଟା ହେତୁ କ୍ଷୁଦ୍ର ଭିଏତନାମର ନିଜସ୍ୱ ଗରିଲା ବାହିନୀ ନିକଟରେ ବିଶ୍ୱର ଅତ୍ୟାଧୁନିକ ରଣକୌଶଳ ଆତ୍ମସମର୍ପଣ କରି ସାରିଛି । ଗୁଏନଖାନ୍ ସରକାର ସାହାଯ୍ୟରେ ଭିଏତନାମରେ ନୂତନ ଉପନିବେଶ ପ୍ରତିଷ୍ଠା କରିବାର ସ୍ୱପ୍ନ ବାସ୍ତବତାଠାରୁ ବହୁ ଦୂରରେ । ଦକ୍ଷିଣ ଭିଏତନାମର ମୁକ୍ତି ପାଇଁ ଗଢ଼ା ହୋଇଥିବା ଗଣ ସାମ୍ମୁଖ୍ୟର ପ୍ରବଳ ପ୍ରତିରୋଧ ଯୋଗୁଁ ଶତ୍ରୁ ସୈନ୍ୟ ପାହାଡ଼ିଆ ଅଞ୍ଚଳମାନଙ୍କରେ ପ୍ରବେଶ କରିପାରୁ ନାହାନ୍ତି । ସର୍ବୋପରି ମାର୍କିନ ସୈନ୍ୟ ନିୟନ୍ତ୍ରିତ ସାମରିକ ଘାଟୀମାନଙ୍କ ମଧ୍ୟରୁ ଗୋଟିଏ ପରେ ଗୋଟିଏ ହୋଇ ଅନେକ ଶତ୍ରୁ ହାତରୁ ମୁକ୍ତି ପାଇବାରେ ଲାଗିଛି । ମାର୍କିନ ଯୁଦ୍ଧନେତାମାନଙ୍କ ପକ୍ଷରେ ଏ ପ୍ରକାର ସାମରିକ ବିପତ୍ତି ଅତ୍ୟନ୍ତ ମର୍ଯ୍ୟାଦାହାନିକର ବୋଲି ମନେ ହୋଇଛି । ତେଣୁ ସେମାନେ ହୃତ ମୈତ୍ରୀ ଫେରିପାଇବା ପାଇଁ ପୂର୍ବାପେକ୍ଷା ଦ୍ୱିଗୁଣ ଶକ୍ତିରେ ବଳୀୟାନ । ଦକ୍ଷିଣ ଭିଏତନାମର କଡ଼େ କଡ଼େ ସୈନ୍ୟମାନେ ପଇଁତରା ମାରୁଛନ୍ତି । ୧୯୬୫ର ବର୍ଷାନ୍ତ ବେଳକୁ ଦୁଇଲକ୍ଷ ସୁଦକ୍ଷ ମାର୍କିନ ତଥା ମାର୍କିନ ସମର୍ଥନବାଦୀ ସୈନ୍ୟ ଭିଏତନାମରେ ପହଞ୍ଚି ସାରିଛନ୍ତି । ପଦାତିକ ବାହିନୀ ଅପେକ୍ଷା ଆକାଶବାହିନୀ ଏବଂ ନୌ-ବାହିନୀ ଉପରେ ସେମାନେ ଏଥର ଅଧିକ ନିର୍ଭରଶୀଳ । କାରଣ ବଣ ପାହାଡ଼ରେ ଲୁଚି ଛପି ଲଢ଼ୁଥିବା ଦୁର୍ଦ୍ଧର୍ଷ ଗରିଲାମାନଙ୍କୁ ପ୍ରତ୍ୟକ୍ଷ ସାମନା କରିବା ପରିବର୍ତ୍ତେ ଆକାଶରୁ ବୋମା ବର୍ଷଣ କରିବା ଆହୁରି ଅଧିକ ସହଜ ଏବଂ ଫଳପ୍ରଦ ହେବ । ସେଥିପାଇଁ ଭୟଙ୍କର ମାରଣାସ୍ତ୍ର ଓ ଗୋଳା ବାରୁଦ ବୋଝାଇ ଲଢ଼ୁଆ ବିମାନମାନ ଇଣ୍ଡୋଚୀନ ଆକାଶରେ ବିଚରଣ କରୁଛନ୍ତି । ବହୁଦିନ ଧରି ଭିଏତନାମରେ ରହିରହି ମାର୍କିନ ସୈନ୍ୟମାନେ କ୍ଳାନ୍ତ ହୋଇ ପଡ଼ିଛନ୍ତି । ସେମାନେ ଆଉ ଦୀର୍ଘଦିନ ଅପେକ୍ଷା କରିବାକୁ ଚାହାନ୍ତି ନାହିଁ । କମ୍ ସମୟ ମଧ୍ୟରେ ଭିଏତନାମ ଦଖଲ ଖୁବ୍ ଜରୁରୀ ହୋଇ ପଡ଼ିଛି ସେମାନଙ୍କ ପାଇଁ । ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଭିଏତନାମରେ

ପୂର୍ଣ୍ଣ ସାମ୍ରାଜ୍ୟ ବିସ୍ତାର କରିବା କ୍ରମରେ ସେମାନେ 'ସୀମିତ ଯୁଦ୍ଧ'ର ଆଶ୍ରୟ ନେଇଛନ୍ତି । 'ନାଭାରେ ଯୋଜନା' ଏବଂ ସ୍ୱତନ୍ତ୍ର ଯୁଦ୍ଧ' ପରି ଏହା ପେଣ୍ଟାଗନର ଅନ୍ୟ ଏକ ସୁଚିନ୍ତିତ ସାମରିକ ପଦକ୍ଷେପ ।

ମାର୍କିନ ଯୁଦ୍ଧବିଶାରଦମାନଙ୍କର ପରୀକ୍ଷିତ ନୂତନ ଯୁଦ୍ଧ କୌଶଳକୁ ବୁଝି "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ଫ୍ରଣ୍ଟ" ତ୍ରିବିଧ ଯୁଦ୍ଧର ଆୟୋଜନ କରିବା ଆରମ୍ଭ କଲ । କାରଣ ଏହି ଅଳ୍ପ ସମୟ ମଧ୍ୟରେ ଦେଶରେ ନାନା ପ୍ରକାର ପରିବର୍ତ୍ତନ ଦେଖା ଦେଇଛି । ପରିସ୍ଥିତିକୁ ଠିକ୍ ରୂପେ ଅନୁଧ୍ୟାନ କରି ନ ପାରିଲେ ତ୍ରିବିଧ ପଦପାତରେ ତ୍ରୁଟି ହେବାର ସମ୍ଭାବନା ବହୁତ ବେଶୀ । ମାର୍କିନ ସାମ୍ରାଜ୍ୟବାଦୀମାନଙ୍କଦ୍ୱାରା ଅନୁସୃତ ନୂତନ ରଣନୀତି ଯୋଗୁଁ ପୂର୍ବର ଗରିଲା ଯୁଦ୍ଧ ପ୍ରଣାଳୀ ଅଦରକାରୀ ହୋଇପଡ଼ିଛି । ତେଣୁ ୧୯୬୫ ମସିହାର ସମର ଶେଷାନ୍ତ ଯୋଗୁଁ ପାର୍ଟିକେନ୍ଦ୍ର କମିଟିର ଜରୁରୀ ବୈଠକ ବସିଲା । ମାର୍କିନ ସାମ୍ରାଜ୍ୟ-ଖୋରମାନଙ୍କର ସାମୂହିକ ଧ୍ୱଂସଲୀଳାକୁ ପ୍ରତିରୋଧ କରିବା ଥିଲା ଏହି ବୈଠକର ମୁଖ୍ୟ ଆଲୋଚ୍ୟ ବିଷୟ । ବୈଜ୍ଞାନିକ ପଦ୍ଧତି ପ୍ରୟୋଗ ଦ୍ୱାରା ଶତ୍ରୁର ଅତ୍ୟାଧୁନିକ ରଣ କୌଶଳକୁ ପ୍ରତିହତ କରିବା ପାଇଁ ନାନା ପନ୍ଥା ଆବଶ୍ୟକ ହେଉଥିବାରୁ ଏକ ନୀତି ନିର୍ଦ୍ଧାରଣ କମିଟିର ପ୍ରୟୋଜନ ପଡ଼ିଲା । ସେହି କମିଟିର ରାଜନୈତିକ ଅନୁସନ୍ଧାନ ଓ ଅନୁଧ୍ୟାନ ଉପରେ ନିର୍ଭର କରୁଥିଲା ଭିଏତନାମ ମୁକ୍ତିସଂଗ୍ରାମର ପରବର୍ତ୍ତୀ ପଦକ୍ଷେପ ।

ସେତେବେଳେ ଭିଏତନାମର ଗରିଲା ବାହିନୀ ଦେଶର ବଣ ଜଙ୍ଗଲ ଘେରା ମାଳଅଞ୍ଚଳମାନଙ୍କରେ ଲୁଚି ହୋଇଯାଇଥାନ୍ତି । ସେମାନଙ୍କର ନୈତିକ ବଳକୁ ବଜାୟ ରଖିବା ଥିଲା ପ୍ରତ୍ୟେକ ଦେଶବାସୀର ପବିତ୍ର କର୍ତ୍ତବ୍ୟ । ଯୁଦ୍ଧାଙ୍ଗନ ବାହାରେ ଥିବା ସାଧାରଣ ନାଗରିକ ମୁକ୍ତିସଂଗ୍ରାମର ଏହି ଗୁରୁତ୍ୱ ଠିକ ବୁଝି ପାରିଥିଲେ ସେତେବେଳେ । ତେଣୁ ମୁକ୍ତଫ୍ରଣ୍ଟ ଆମେରିକାର ଲଢ଼ୁଆ ଆକାଶବାହିନୀକୁ ପରିହାସ କରି ସେଦିନ ପାର୍ଟିକେନ୍ଦ୍ର କମିଟିରେ ଦୃଢ଼ ରାଜନୈତିକ ତଥା ସାମରିକ ନିଷ୍ପତ୍ତି ଗ୍ରହଣ କରାଗଲା ।

ଦକ୍ଷିଣ ପଟରେ ଯୁକ୍ତରାଷ୍ଟ୍ରର ଆକ୍ରମଣାତ୍ମକ ଯୁଦ୍ଧବାଦୀମାନେ ଉପନିବେଶ ପ୍ରତିଷ୍ଠା ପାଇଁ ଖୁବ୍ ଆଗ୍ରହବାନ୍ । ତେଣୁ ସେମାନେ କେବଳ ସଙ୍ଗୀ କଣ୍ଢେଇ ନୁଏନ ଖାନ୍ ସରକାର ଉପରେ ଭରସା ନରଖି ନିଜ ଦେଶର ସାମରିକ ବାହିନୀକୁ ଏଥିରେ ପରିଚାଳିତ କରୁଛନ୍ତି । ତେଣୁ ତାଙ୍କ ପକ୍ଷରେ ଦୁଇଟି ସ୍ୱୟଂଚାଳିତ ସାମରିକ ସଂସ୍ଥା କାମ କରୁଛି, ଗୋଟିଏ ହେଲା ଦେଶୀୟ ନୁଏନ ଖାନ୍‌ର ସାମରିକ ବଳ ଏବଂ ଅନ୍ୟଟି ବିଦେଶୀ ପେଣ୍ଟାଗନ ଦ୍ୱାରା ସୁସଜ୍ଜିତ ଦ୍ରୁତଗାମୀ ଆକାଶବାହିନୀ । ତେଣୁ ଏ ଯୁଦ୍ଧର ଭୟଙ୍କରତା ଓ କ୍ଷିପ୍ରତା ଏଥିରୁ ସହଜରେ ଅନୁମେୟ ।

କିନ୍ତୁ ମାର୍କିନ ଯୁକ୍ତରାଷ୍ଟ୍ରର କୌଣସି ଗୋଟିଏ ଆଶା ଫଳବତୀ ହୋଇ ପାରୁନାହିଁ । ଯେଉଁ ସ୍ୱପ୍ନ ନେଇ ସେ ଇଣ୍ଡୋଚୀନରେ ପ୍ରବେଶ କରିଥିଲା, ସେ ସବୁ ଗୋଟିକ ପରେ ଗୋଟିଏ ହୋଇ ଭାଙ୍ଗି ପଡୁଛି । ଅର୍ଥନୈତିକ ଦିଗରୁ ନ ହେଲେ ମଧ୍ୟ ସାମରିକ ଦିଗରୁ ସେ କିଛିଏ ହେଲେ ଲାଭବାନ୍ ହୋଇ ପାରୁନାହିଁ । ବରଂ ଯୁଦ୍ଧରେ ବିପୁଳ ଅର୍ଥ ବ୍ୟୟ କରିବା ଫଳରେ ଯୁକ୍ତରାଷ୍ଟ୍ରର ଆଭ୍ୟନ୍ତରୀଣ ଅର୍ଥନୀତି ଦୁର୍ବଳ ହୋଇ ଉଠୁଛି । ତାର ସାମରିକ ପେଣ୍ଟ ପେଣ୍ଟାଗନ ଉପରେ ଅଯଥା ଚାପ ପଡ଼ିବା ଯୋଗୁଁ ସାମରିକ ଦିଗ ମଧ୍ୟ କ୍ଷତିଗ୍ରସ୍ତ ହେବାକୁ ବାଧ୍ୟ । ବିଶ୍ୱ-ପୁଞ୍ଜିବାଦୀ ଅର୍ଥନୀତି ଯେତେ ପ୍ରାଚୁର୍ଯ୍ୟଭରା ହେଲେ ମଧ୍ୟ ନିର୍ଦ୍ଦିଷ୍ଟ ଏକ ନିୟମ ମଧ୍ୟରେ ତାର ଗତିପଥ ନିୟନ୍ତ୍ରିତ ହୋଇଥାଏ । ସେଥିରେ କୌଣସି କାରଣରୁ ବ୍ୟତିକ୍ରମ ଦେଖାଗଲେ ତାହାର ପତନ ଅବଶ୍ୟମ୍ଭାବୀ । ଯୁକ୍ତରାଷ୍ଟ୍ରର ଯୁଦ୍ଧ ଅର୍ଥନୀତି ବିଶାରଦମାନଙ୍କୁ ଏହି ତତ୍ତ୍ୱ ବହୁ ପୂର୍ବରୁ ଜଣା । କିନ୍ତୁ ସେମାନେ ନିଜ ଦେଶକୁ ଏହି ଅଧଃପତନ ମୁଖରୁ ରକ୍ଷା କରିବା ପାଇଁ ସମର୍ଥ ହୋଇ ପାରିନାହାନ୍ତି । କାରଣ ଗୋଟିଏ ସମୟରେ ଏକାଧିକ ସ୍ଥାନରେ ଯୁଦ୍ଧ ବ୍ୟବସ୍ଥା ଓ ଉପନିବେଶ ପ୍ରତିଷ୍ଠା ସ୍ୱପ୍ନ ସେମାନଙ୍କୁ ଏତେ ମୋହାନ୍ଧ କରି ଦେଇଛି ଯେ ସେମାନେ ତାର ବାସ୍ତବତାଠାରୁ ବହୁ ଦୂରକୁ ଚାଲିଯାଇଛନ୍ତି । ଗଡ଼ିଗଲା ପାଣି ଯେପରି ଲେଉଟି ନ ଆସେ ଠିକ୍ ସେହିପରି ମାର୍କିନ ଯୁକ୍ତରାଷ୍ଟ୍ରର ଅବସ୍ଥା ।

ବିପୁଳ ଧନାଗାର, ଅତ୍ୟାଧୁନିକ ଯୁଦ୍ଧ ସରଞ୍ଜାମ ଓ ଭୟଙ୍କର ମାରଣାସ୍ତ୍ର ବିନିଯୋଗ ପରେ ସେମାନେ ପରାଜିତ କାହିଁକି ? ଏଥିପାଇଁ ତାତ୍ତ୍ୱିକ ଏବଂ ପ୍ରୟୋଗାତ୍ମକ ଉଭୟ କାରଣ ହିଁ ସମପରିମାଣରେ ଦାୟୀ । ପ୍ରଥମରେ ଭିଏତନାମରେ ନବ-ଉପନିବେଶର ସୁରକ୍ଷା ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର ଦୁଇଟି ଅସ୍ତ୍ର ପ୍ରୟୋଗ କରିଥିଲା—ରାଜନୈତିକ ଏବଂ ପାରମ୍ପରିକ ଢଙ୍ଗରେ ଚାଲି ଆସୁଥିବା ପୁରାତନ ଉପନିବେଶ ତଥା ଶୋଷଣବାଦୀ ସାମରିକ ଅସ୍ତ୍ର । କିନ୍ତୁ ଏ ଦୁଇ ଦିଗ ମଧ୍ୟରେ ଥିବା ମୌଳିକ ପାରସ୍ପରିକ ଭିନ୍ନତା ଯୋଗୁଁ ଦୁଇଟିକୁ ଏକା ସାଙ୍ଗରେ ନେଇ ଗୋଟିଏ ଲକ୍ଷ୍ୟରେ ପହଞ୍ଚିବା ସମ୍ଭବ ହୋଇ ପାରିଲା ନାହିଁ । ଅପର ପକ୍ଷରେ ଏ ଦୁଇ ନୀତିର ମୌଳିକ ପାର୍ଥକ୍ୟ ଯୋଗୁଁ ଯୁକ୍ତରାଷ୍ଟ୍ରର ଯୁଦ୍ଧବାଦୀ ଅର୍ଥନୀତିରେ ବିରାଟ ଫାଟ ଦେଖାଗଲା ।

ଦ୍ୱିତୀୟରେ ଯୁକ୍ତରାଷ୍ଟ୍ରର ଅନ୍ୟାୟୋଚିତ, ଅବାଞ୍ଛିତ ଆକ୍ରମଣ ଯୋଗୁଁ ବାହାର ଦୁନିଆଠାରୁ ସେ କୌଣସି ନୈତିକ ସମର୍ଥନ ପାଇଲା ନାହିଁ । କେତୋଟି ସମର ପରିପୁଷ୍ଟ ଚୁକ୍ତିବାଦୀ ଦେଶକୁ ବାଦଦେଲେ ଜନବହୁଳ ସମାଜବାଦୀ ରାଷ୍ଟ୍ରମାନଙ୍କଠାରୁ ସେ କ୍ରମାଗତ ବିରୋଧର ସମ୍ମୁଖୀନ ହେଲା । ଜାତିସଂଘ ଓ ନିରାପତ୍ତା ପରିଷଦରେ ତାକୁ ଏଥିପାଇଁ ଅନେକ ସମୟରେ ଲାଞ୍ଛିତ ହେବାକୁ

ପଡ଼ୁଛି । ଏପରିକି ନିଜ ଦେଶର ବିଶାଳ ଏକ ଜନଶ୍ରେଣୀ ଭିଏତନାମରେ ମାର୍କିନ ନଗ୍ନ ଆକ୍ରମଣ ବିରୁଦ୍ଧରେ ବିକ୍ଷୋଭ୍‌ଗାର କରିବାକୁ ଲାଗିଲେ । ଫଳରେ ଦେଶ ବାହାରୁ ଓ ଭିତରୁ ପ୍ରବଳ ଧକ୍କା ପାଇ ମାର୍କିନ ସମରବାଦୀମାନେ ବେଶୀଦୂର ଆଗେଇବାକୁ ସାହସ ବଳେଇ ପାରୁ ନ ଥିଲେ ।

ବାସ୍ତବରେ ମାର୍କିନ ଯୁକ୍ତରାଷ୍ଟ୍ର ବିଶ୍ୱର ସବୁଠୁ ଶକ୍ତିଶାଳୀ ଏବଂ ଧନଶାଳୀ ରାଷ୍ଟ୍ର । ପୁଞ୍ଜିବାଦୀ ଦୁନିଆର ସମଗ୍ର ଅର୍ଥନୀତି ତାର ନିୟନ୍ତ୍ରଣରେ ପରିଚାଳିତ । ବିଶ୍ୱ ସାମ୍ରାଜ୍ୟବାଦୀ ଓ ସମରବାଦୀ ଶିବିରର ସେ ମୁକୁଟମଣି । ତାର ସ୍ୱାର୍ଥ ଲାଗି ସେ ଆଗାମୀ ବିଶ୍ୱରେ ଏକ ନୂତନ ଉଗ୍ର ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ପ୍ରତିଷ୍ଠା କରିବାକୁ ଚାହେଁ । ସେଥିପାଇଁ ଅର୍ଥର ଆବଶ୍ୟକତା ଯେତେ ବେଶୀ ତା' ଠାରୁ ଅଧିକ ଜରୁରୀ ହେଉଛି ସାମରିକ ସାମର୍ଥ୍ୟ । ତେଣୁ ପେଣ୍ଟାଗନରେ ସବୁ ସମୟ ପାଇଁ ବହୁ ପରିମାଣରେ ମାରଣାସ୍ତ୍ର ଓ ଅସ୍ତ୍ରଶସ୍ତ୍ର ଗଚ୍ଛିତ ରହିବା ଏକାନ୍ତ ପ୍ରୟୋଜନ । ଆବଶ୍ୟକୀୟ ପରିମାଣଠାରୁ ଟିକେ ଊଣା ହେଲେ ବିପଦର ସମ୍ଭାବନା ଖୁବ୍ ବେଶୀ । ଏହି ଦୃଷ୍ଟିରୁ ସେ ତାର ସାମରିକ ଶକ୍ତିର ବିପୁଳ ଅଂଶକୁ ଭିଏତନାମରେ ଖଟାଇବାକୁ ଚାହେଁ ନାହିଁ ।

ଏହିପରି କେତୋଟି ଅପରିହାର୍ଯ୍ୟ କାରଣ ଯୋଗୁଁ ଯୁକ୍ତରାଷ୍ଟ୍ର ସମର କୌଶଳ ଗତି ଧିମେଇ ପଡ଼ୁଛି । ସେମାନଙ୍କର ଅନ୍ତର୍ନିହିତ ଦ୍ୱନ୍ଦ୍ୱ ଓ ଦୁର୍ବଳତାର ସୁଯୋଗ ନେଇ ଅନ୍ୟପକ୍ଷରେ ଭିଏତନାମ ମୁକ୍ତିସଂଗ୍ରାମର ଗରିଲା ବାହିନୀ ନିଜ ଶକ୍ତି ବୃଦ୍ଧି ପାଇଁ ଜୋରସୋରରେ କାର୍ଯ୍ୟ ଆରମ୍ଭ କରିଛନ୍ତି । ଦକ୍ଷିଣ ଭିଏତନାମର ସାଧାରଣ ପ୍ରଜା, ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସଂଗ୍ରାମରେ ସାମିଲ ହୋଇଛନ୍ତି । ସେ ସମସ୍ତେ ଆଜି ଏକତାବଦ୍ଧ । ଦକ୍ଷିଣରେ ସମସ୍ତ ମୁକ୍ତିକାମୀ, ଦେଶପ୍ରେମୀ ଶକ୍ତିମାନଙ୍କର ନେତୃତ୍ୱ ନେଇଛି ଜାତୀୟ ମୁକ୍ତି ସଂଗ୍ରାମ । ପ୍ରଧାନ ପ୍ରଧାନ ଘାଟୀମାନଙ୍କ ଜଗି ଜାତୀୟ ସଂଗ୍ରାମର ସଂଗ୍ରାମୀ ଗରିଲାମାନେ ରାତି ଦିନ ପହରା ଦେଉଛନ୍ତି । ସହର ଓ ସହରତଳି ଅଞ୍ଚଳମାନଙ୍କରେ ରାଜନୈତିକ ଚେତନା ସହ ସାମରିକ ଚେତନାର ଗୁଣାତ୍ମକ ବିକାଶ ଘଟିଛି । ସେ ସମସ୍ତେ ଆଜି ଆକ୍ରମଣକାରୀ ବିରୁଦ୍ଧରେ ସଂଘବଦ୍ଧ । ସାଧାରଣ ଜନତାର ବିଶ୍ୱାସ ଓ ଦମ୍ଭ ନେଇ ଗରିଲା ବାହିନୀ ଅଭୂତପୂର୍ବ ଉତ୍ସାହରେ ଆଗକୁ ମାଡ଼ି ଚାଲିଛି । ରାଜନୈତିକ ମୁକ୍ତି ଆଜି ସାମରିକ ବିଦ୍ରୋହରେ ପରିଣତ ହେବାକୁ ଯାଉଛି ।

ଦକ୍ଷିଣ ପକ୍ଷରେ ଚାଲିଥିବା ମୁକ୍ତିବାହିନୀର ସମରସଜ୍ଜା ଉତ୍ତର ପକ୍ଷରେ ଥିବା ତାର ସହୃଦୟୀ ଦେଶପ୍ରେମୀ ଭାଇର ହୃଦୟକୁ ନିବିଡ଼ ଆକର୍ଷଣ କରୁଛି ।

ହୋ'ଙ୍କ ହାତରେ ଦଶବର୍ଷ କଟିଗଲାଣି । ସେମାନେ ସ୍ୱାଧୀନ ସରକାରର ବାହୁଛାୟା ତଳେ ମୁକ୍ତ ଜୀବନ ଯାପନ କରୁଛନ୍ତି । ସମାଜବାଦୀ ବିପ୍ଳବ ଓ ସମାଜବାଦୀ ନିର୍ମାଣ କାର୍ଯ୍ୟରେ ସେମାନଙ୍କର ସମସ୍ତ ସମୟ ଅତିବାହିତ ହୋଇ ଯାଉଛି । ଦେଶର ସୁଖ, ସମୃଦ୍ଧି ଓ ସର୍ବାତ୍ମକ ପ୍ରଗତି ହିଁ ଏକମାତ୍ର କାମ୍ୟ । ସେହି ନବନିର୍ମାଣର ସେମାନେ ନିପୁଣ କାରିଗର । ଦକ୍ଷିଣରେ ଚାଲିଥିବା ମୁକ୍ତି ବିପ୍ଳବ ଯଦି ବିଜୟୀ ନ ହୁଏ ତେବେ ସେମାନଙ୍କର ରଥଚକ ଆଉ ଆଗକୁ ଯାଇ ପାରିବ ନାହିଁ । ସମାଜବାଦୀ ସମାଜ ଗଠନର ସକଳ ଆଶା ଅଚିରେ ଧୂଳିସାତ୍ ହୋଇଯିବ । ଏହି ଭାବୀ ଆଶଙ୍କାରେ ସେମାନେ ବିଚଳିତ । ଦକ୍ଷିଣର ମୁକ୍ତି ନିଆଁକୁ ନିଜ ଅଣ୍ଟିରେ ଘୋଡ଼ାଇ ରଖିବାକୁ ସେମାନଙ୍କର ଇଚ୍ଛା ନାହିଁ । କାରଣ ମାତ୍ର କେତେବର୍ଷ ହେଲା ସେମାନେ ବିଦେଶୀଙ୍କର କାଳ ଗ୍ରାସରୁ ତ୍ରାଣ ପାଇଛନ୍ତି । ଦକ୍ଷିଣର ମୁକ୍ତି ବିପ୍ଳବର ପ୍ରଧାନ ଘାଟି ହେଲା ସ୍ୱାଧୀନ ଉତ୍ତର ଭିଏତନାମ । କମ୍ରେଡ଼ ହୋ-ଚି-ମିନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ସାମରିକ ପରିଚାଳନାରେ ଗରିଲା ବାହିନୀର ମୁକ୍ତିଯୁଦ୍ଧ ପୁଣି ଥରେ ଆରମ୍ଭ ହେଲା । ପ୍ରେସିଡେଣ୍ଟ ହୋ-ଚି- ମିନଙ୍କର ସାଦର ସମ୍ବୋଧନ ପାଇ ବିଶ୍ୱର ମୁକ୍ତିକାମୀ ଜନତା ବନ୍ଧୁତା ଓ ସାହାଯ୍ୟର ହସ୍ତ ପ୍ରସାରଣ କଲେ । ଜାତୀୟବାଦୀ ରାଷ୍ଟ୍ର, ଶାନ୍ତି ଓ ମୁକ୍ତିକାମୀ ବିଶ୍ୱବାସୀ ଭିଏତନାମରେ ଆମେରିକାର ସାମ୍ରାଜ୍ୟବାଦୀ ହସ୍ତକ୍ଷେପ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଏହାର ନେତୃତ୍ୱ ନେଲେ ସମାଜବାଦୀ ରାଷ୍ଟ୍ରସମୂହ ଏବଂ ଉତ୍ତର ଭିଏତନାମ ।

ଦେଶ ବାହାରୁ ବିପୁଳ ସମର୍ଥନ ଲାଭ କରି ପ୍ରେସିଡେଣ୍ଟ ହୋ' ମୁକ୍ତି-ଯୁଦ୍ଧକୁ ଆଗେଇ ନେବା ପାଇଁ ପାର୍ଟି କେନ୍ଦ୍ର କମିଟିର ଜରୁରୀ ବୈଠକ ଡକାଇଲେ । ଏହି ବୈଠକର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଅନୁକୂଳ ସମୟ ମଧ୍ୟରେ ସାମରିକ ଶକ୍ତିର ବିପୁଳ ଉତ୍ସାହକୁ ଠିକ୍ ରୂପ ଦେଇ ନ ପାରିଲେ ତାର ସାମର୍ଥ୍ୟର ଉପଯୁକ୍ତ ବିନିଯୋଗ ହୋଇ ପାରେନା । ସେତେବେଳର ସମସ୍ୟା ଯାହା ସମସ୍ତ ଗରିଲା ବାହିନୀ ଉତ୍ସୁକ ନୟନରେ ଚାହିଁ ବସିଥାନ୍ତି ସମ୍ମୁଖ ରଣରେ ଡେଇଁ ପଡ଼ିବା ପାଇଁ । ସେଇ ଏକ ସୁବର୍ଣ୍ଣ ମୁହୂର୍ତ୍ତ ହୋ'-ଚି-ମିନ ହଜନ୍ତେ କିପରି !!

ଦକ୍ଷିଣ ଭିଏତନାମର ମୁକ୍ତିସାମ୍ମୁଖ୍ୟ, କମ୍ୟୁନିଷ୍ଟପାର୍ଟି ଏବଂ ଉତ୍ତରର ଦେଶପ୍ରେମୀ ସହଯୋଦ୍ଧା, ଏ ସମସ୍ତଙ୍କୁ ଗୋଟିଏ ଦୀକ୍ଷାରେ ଦୀକ୍ଷିତ କରାଇ ମୁକ୍ତି-ବିପ୍ଳବ ପାଇଁ ଶେଷ ପ୍ରସ୍ତୁତିର ଆହ୍ୱାନ ଦେବା ଥିଲା ତାଙ୍କର ଲକ୍ଷ୍ୟ । ତେଣୁ ସେ ଅତି ଦରଦୀ ସ୍ୱରରେ, କେନ୍ଦ୍ର କମିଟି ଆଗରେ ଘୋଷଣା କଲେ "ଏହି ଯୁଦ୍ଧ ପାଞ୍ଚବର୍ଷ, ଦଶବର୍ଷ ବା କୋଡ଼ିଏ ବର୍ଷ ଏପରିକି ତାଠାରୁ ଆହୁରି ଅଧିକ କାଳ ପର୍ଯ୍ୟନ୍ତ ଚାଲିପାରେ । ହାନୋଇ, ହାଇଫଙ୍ଗ ପରି ଅନେକ ସହର, କଳକାରଖାନା

ଧ୍ୱଂସ ହୋଇ ଯାଇପାରେ । କିନ୍ତୁ ଭିଏତନାମ ଜାତି କେବେ ଧ୍ୱଂସ ପାଇବ ନାହିଁ । ସ୍ୱାଧୀନତା ଓ ମୁକ୍ତି ଠାରୁ ବଳି ମୂଲ୍ୟବାନ୍ ପଦାର୍ଥ ଆଉ କିଛି ନାହିଁ । ବିଜୟ ପରେ ଆମ ଦେଶକୁ ଆମେ ପୁଣିଥରେ ଏହାଠାରୁ ଅଦ୍ଭୁତ ସୁନ୍ଦର ଓ ମହାନ୍ କରି ଗଢ଼ି ତୋଳିବା" ।

ମୁକ୍ତି ସଂଗ୍ରାମର ଏହି ଗୁରୁଦାୟିତ୍ୱ ଯେ କେବଳ "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ" ଉପରେ ଥିଲା ତାହା ନୁହେଁ, ଉତ୍ତରର ସ୍ୱାଧୀନ ସରକାର ଓ ଭିଏତନାମ କମ୍ୟୁନିଷ୍ଟପାର୍ଟି ଥିଲା ବାସ୍ତବରେ ଏହି ସଂଗ୍ରାମର ପ୍ରଧାନ ବାହକ । କାରଣ ସେମାନେ ମୁକ୍ତ ଏବଂ ସ୍ୱାଧୀନଭାବରେ ବିଚରଣ କରିବାର ଶକ୍ତି ସେମାନଙ୍କର ଅଛି । ମୁକ୍ତି ସଂଗ୍ରାମ ପାଇଁ ରାଜନୈତିକ ଚେତନାର ଅଭିବୃଦ୍ଧିର ଯେତିକି ଆବଶ୍ୟକତା ଥିଲା ଦେଶର ଅର୍ଥନୈତିକ ସମୃଦ୍ଧି ଓ ସାମରିକ ପ୍ରାଚୁର୍ଯ୍ୟ, ଉନ୍ନତ ବୈଜ୍ଞାନିକ ପଦ୍ଧତି ଏବଂ ସଙ୍ଗୋପନ ପ୍ରମୁକ୍ତି ବିଦ୍ୟାର ଉତ୍କର୍ଷତା ଥିଲା ସବୁଠାରୁ ଜରୁରୀ । କାରଣ ସମାଜବାଦୀ ନିର୍ମାଣ ପାଇଁ ଏମାନେ ଗୋଟିଏ ଗୋଟିଏ ଦୁର୍ଗ ସଦୃଶ । ସମାଜବାଦୀ ନିର୍ମାଣକୁ ବାଦ ଦେଇ କୌଣସି ମୁକ୍ତି ସଂଗ୍ରାମକୁ କଳ୍ପନା କରାଯାଇ ନ ପାରେ । ତେଣୁ ଉତ୍ତର ପକ୍ଷର ସାମରିକ ପ୍ରସ୍ତୁତି ଉପରେ ନିର୍ଭର କରୁଥିଲା ଦକ୍ଷିଣ ଭିଏତନାମର ମହାନ୍ ମୁକ୍ତି ବିପ୍ଳବ । ଫଳରେ ମାର୍କିନ ସମରବାଦୀମାନଙ୍କର ପ୍ରଧାନ ଶରବ୍ୟ ହେଲା ଉତ୍ତର ଭିଏତନାମର ସ୍ୱାଧୀନ ସରକାର ଏବଂ ସମାଜବାଦୀ ଅର୍ଥନୈତିକ ପ୍ରଗତି । ତେଣୁ ସେମାନେ ୧୯୬୪ ମସିହା ଅଗଷ୍ଟ ମାସ ୫ ତାରିଖରୁ ଉତ୍ତର ଭିଏତନାମ ଉପରେ ବୋମାବର୍ଷଣ ଆରମ୍ଭ କରିଦେଲେ ।

୧୯୬୫ ମସିହା ଫେବୃୟାରୀ ମାସ ପରଠାରୁ ମାର୍କିନ ଆକାଶବାହିନୀ ତରଫରୁ ଉତ୍ତର ଭିଏତନାମରେ ପ୍ରବଳ ବୋମା ମାଡ଼ ଚାଲିଲା । କିଛିଦିନ ପରେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ମାର୍କିନ ନୌବହର ଇଣ୍ଡୋଚୀନ ଉପକୂଳରେ ସାମରିକ ନୌ ଘାଟୀ ପ୍ରତିଷ୍ଠା କଲା । ଉଦ୍ଦେଶ୍ୟ ହେଲା ନୂତନ ଭାବେ ସ୍ୱାଧୀନତା ଲାଭ କରି ସମାଜବାଦୀ ନବନିର୍ମାଣ ପଥରେ ଚାଲୁଥିବା ଉତ୍ତର ଭିଏତନାମ ଉପରେ ଯଦି ପ୍ରଚଣ୍ଡ ଆକ୍ରମଣ ଅପ୍ରତିହତ ରହେ, ତେବେ ତାର ନବଜାତ ଅର୍ଥନୀତି ଧ୍ୱଂସ ପାଇବା ସଙ୍ଗେ ସଙ୍ଗେ ସେ ଆଉ ଦକ୍ଷିଣର ମୁକ୍ତି ବିପ୍ଳବକୁ ସାହାଯ୍ୟ ଯୋଗାଇବା ପାଇଁ ସମର୍ଥ ହୋଇ ପାରିବ ନାହିଁ । ଅପର ପକ୍ଷରେ ଏ ଦୁଇ ଦେଶର ମୁକ୍ତିବିପ୍ଳବର ମୃତ୍ୟୁ ଘଟିବା ସଙ୍ଗେ ସଙ୍ଗେ ମାର୍କିନ ଉପନିବେଶର ପ୍ରତିଷ୍ଠା ପାଇଁ ପଥ ଉନ୍ମୁକ୍ତ ହୋଇଯିବ ।

ଦେଶ ଏପରି ଘୋର ସଙ୍କଟର ସମ୍ମୁଖୀନ ଦେଖି ଜନ୍ଦ୍ରେଡ଼ ହୋ' ଅସ୍ଥିର ହୋଇ ପଡ଼ିଲେ । ପୂର୍ବପରି ତାଙ୍କ ଆଖିରେ ଆଉ ନିଦ ଆସିଲା ନାହିଁ । ଅନେକ

ଜତ୍ରାହ୍ନନ ଭିତରେ ସେ ବସି ବସି ଦୋହରାଉ ଥିଲେ ଭିଏତନାମ ମୁକ୍ତିସଂଗ୍ରାମର ଇତିହାସକୁ । ନବନିର୍ମାଣ ପଥରେ ଭିଏତନାମକୁ ଥରେ ଦେଖି ପୁଣି ସେ ପଛକୁ ଫେରି ଚାହିଁ ରହନ୍ତି ଆପଣ !! ଦିନ ପରେ ଦିନ ବିତି ଯାଉଛି, ହେଲେ ମୁହୂର୍ତ୍ତିଏ ପାଇଁ ବିଶ୍ରାମ ମିଳୁ ନାହିଁ ତାଙ୍କୁ । ଦିନରାତି କଟି ଯାଉଛି ଦେଶ କାମରେ । କେଉଁ-ଦିନ ସୈନ୍ୟ ଛାଉଣୀରେ ଗରିଲାମାନଙ୍କ ସହିତ ତ ଅନ୍ୟ କେଉଁଦିନ କଲକାର-ଖାନାରେ କାମ କରୁଥିବା ମଜଦୁର ଭାଇ ସହିତ, ଆଉ କେଉଁଦିନ ସୁଦୂର ଶସ୍ୟକ୍ଷେତରେ କାର୍ଯ୍ୟରତ କୃଷି ଶ୍ରମିକ ସହିତ । ଅଧିକ ସମୟ ବିତିଯାଏ ମୁକ୍ତି ବାହିନୀର ସଂଗଠନ କାର୍ଯ୍ୟରେ । ସେମାନଙ୍କୁ ପୁନରୁତ୍ଥିତ କରିବା ଦିଗରେ ସେ ମନ ପ୍ରାଣ ଅଜାଡ଼ି ଦେଇଛନ୍ତି । ଦକ୍ଷିଣ ଯୁଦ୍ଧର ପଛ ପଟରେ ଥାଇ କିପରି ସାମରିକ ଯୁଦ୍ଧ ପରିଚାଳନା କରିବାକୁ ହୁଏ ତାର ମୁଖ୍ୟ ଦାୟିତ୍ୱ ସେ ନିଜ ହାତରେ ବହନ କରିଛନ୍ତି । ଅସ୍ମନକ ବୋମା ମାଡ଼ରୁ ରକ୍ଷାପାଇବା ପାଇଁ ମାଟି ତଳେ ତଳେ ଟ୍ରେଞ୍ଚ ତିଆରି କରାଇବାରେ ସେ ସାଧାରଣ ଜନତାକୁ ଲଗାଇ ଦେଇଛନ୍ତି । ଶିଶୁ, କିଶୋର, ବୃଦ୍ଧ ଏପରିକି ଘର କୋଣରେ ଅନୂଢ଼ା ଯୁବତୀମାନେ ଆସି ସମବେତ ହୋଇଛନ୍ତି ମଇଦାନରେ । ସହର ଅଞ୍ଚଳରୁ ବସ୍ତିମାନ ଉଠାଇ ଅଣାଯାଇ ଶତ୍ରୁ ନଜର ନ ପଡ଼ିବା ସ୍ଥାନରେ ନୂତନ ବସ୍ତିମାନ ନିର୍ମାଣ କରାଯାଉଛି । ଏହି ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ହୋଇଛନ୍ତି ଯୁଦ୍ଧକୁ ନ ଯାଇଥିବା ସାଧାରଣ ନାଗରିକ, ମହିଳା ଓ କିଶୋର । ଯୁଦ୍ଧ ଭୂମିରେ ହତାହତ ସୈନ୍ୟମାନଙ୍କର ଚିକିତ୍ସା ଓ ସୁରକ୍ଷା ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ ଚିକିତ୍ସାଳୟ ମାନଙ୍କର ବ୍ୟବସ୍ଥା କରାଯାଇଛି । ଅଳ୍ପ ବ୍ୟୟରେ କିପରି ଚିକିତ୍ସାର ସୁବନ୍ଦୋବସ୍ତ କରାଯାଇ ପାରିବ ସେଥିପାଇଁ ସେ ବିଶେଷ ନଜର ଦେଇଛନ୍ତି । ଦେଶପ୍ରେମୀ ମହିଳାମାନେ ସେବିକା ରୂପରେ ନିଯୁକ୍ତି ପାଇଛନ୍ତି । ପ୍ରତିଦିନ ସେ ନିର୍ଦ୍ଦିଷ୍ଟ ସମୟରେ ନୌ ବାହିନୀ ଓ ଆକାଶ ବାହିନୀର ମୁଖ୍ୟ କର୍ମକର୍ତ୍ତାଙ୍କୁ ଭେଟନ୍ତି । ନବବର୍ଷର ଉପହାର ପଠାଇ ସୈନ୍ୟ ଶିବିରରେ ଥିବା ଗରିଲା ଓ ମୁକ୍ତିଯୋଦ୍ଧା ମାନଙ୍କୁ ଆହୁରି ଉତ୍ସାହିତ କରନ୍ତି । ତାଙ୍କର ପ୍ରେରଣା ଓ ସନ୍ଦେଶ ଆଦେଶରେ ସେମାନେ ନିଜ ଜୀବନକୁ ପାଣି ଛଡ଼ାଇ ଦେଶ ପାଇଁ ଯୁଦ୍ଧ କରୁଛନ୍ତି । ଯୁଦ୍ଧ ସମୟରେ ସେମାନେ କିପରି ପରସ୍ପର ମଧ୍ୟରେ ଶୃଙ୍ଖଳା, ସଦ୍‌ଭାବ ଓ ଏକତା ରକ୍ଷା କରି ପାରିବେ ସେଥିପାଇଁ କମ୍ରେଡ଼ ହୋ' ସର୍ବଦା ଜାଗ୍ରତ । କାରଣ ସେ ଜାଣନ୍ତି ସମସ୍ତ ପ୍ରକାର ସାମରିକ ପ୍ରାଚୁର୍ଯ୍ୟ ବଳ ଓ ବିଭବ ଥାଇ ମଧ୍ୟ ଯଦି ଏକତାର କୌଣସି ଅଭାବ ଘଟେ ତେବେ ସେ ବିଦ୍ରୋହ ଯେତେ ବେଗବତୀ ହୋଇଥାଉନା କାହିଁକି ତାହା ସଫଳ ହୋଇ ପାରେ ନାହିଁ । ତେଣୁ ସେମାନଙ୍କର ରାଜନୈତିକ ଓ ବୌଦ୍ଧିକ ଚେତନାର ଅଭିବୃଦ୍ଧି ପାଇଁ ହୋ'

ସେମାନଙ୍କ ପାଇଁ ମୁକ୍ତିକାଳୀନ ସ୍ୱତନ୍ତ୍ର ଶିକ୍ଷା ଓ ଶୃଙ୍ଖଳାର ନିୟମମାନ ପ୍ରଣୟନ କରିଥିଲେ । ଆଧୁନିକ ଅସ୍ତ୍ର ଓ ବୈଜ୍ଞାନିକ ପଦ୍ଧତି ଅବଲମ୍ବନ କରିବା ପାଇଁ ଆବଶ୍ୟକୀୟ ସାମରିକ କୌଶଳ ଶିକ୍ଷା ଦେବା ପାଇଁ ବନ୍ଧୁ ସମାଜବାଦୀ ରାଷ୍ଟ୍ର-ମାନଙ୍କର ସହାୟତା ସେ ଲୋଡ଼ିଥିଲେ । କିନ୍ତୁ ସେ ସବୁବେଳେ ସହଯୋଦ୍ଧା ସାଥୀମାନଙ୍କୁ ଚେତାଇ ଦେଇଥିଲେ ଯେ "ରଣ ଯୁଦ୍ଧର ବିଜୟ ପାଇଁ ଅପରିହାର୍ଯ୍ୟ ଆବଶ୍ୟକତା ହିଁ ଜନଶକ୍ତି, ସେମାନଙ୍କର ରାଜନୈତିକ ଓ ନୈତିକ ଚରିତ୍ର ଏବଂ ସର୍ବୋପରି ଗଣମୁକ୍ତିବାହିନୀକୁ ଜନ ଯୁଦ୍ଧର ଉଚିତ୍ ରାସ୍ତାରେ କଢ଼ାଇ ନେବା ଉପରେ ପାର୍ଟିର ସାମର୍ଥ୍ୟ" ।

ହୋ'ଙ୍କର ଏହି ଡାକରାରେ ଉତ୍ତର ଭିଏତନାମର ମୁକ୍ତ ଜନତା ପୁଣି ଥରେ ଜାଗି ଉଠିଲେ । ଶାନ୍ତ, ସାହସୀ ଅଥଚ ଦୃଢ଼ ଏବଂ ଚତୁର ଭାବରେ ସେମାନେ ମାର୍କିନ ଆକ୍ରମଣର ସାମନା କରିବାକୁ ଚାହିଁଥିଲେ । ଆମେରିକୀୟ ସମରବାଦୀମାନେ ସମପରିମାଣରେ ଚତୁର ନିଷ୍ଠୁର । ସେମାନେ ଅଯଥା ବ୍ୟସ୍ତ ବନ୍ଦ କରି ତା ସ୍ଥାନରେ ଭୟଙ୍କର ମାରଣାସ୍ତ୍ରମାନ ବ୍ୟବହାର କଲେ । ଫଳରେ ଭିଏତନାମରେ ମାର୍କିନ ନୌ-ବାହିନୀର ଓ ଯୁଦ୍ଧ ବିମାନର ସଂଖ୍ୟା ବହୁ ପରିମାଣରେ କମିଗଲା ।

ଏହିପରି ବର୍ଷବର୍ଷ ବିତିଯାଇଛି ଯୁଦ୍ଧର ଅଶାନ୍ତ ବାତାବରଣ ମଧ୍ୟରେ । ଜନତାର ଧୈର୍ଯ୍ୟ କଠୋର ପରୀକ୍ଷାର ସମ୍ମୁଖୀନ ହୋଇଛି । ମାର୍କିନ ଯୁଦ୍ଧଲିପ୍ସା ଭିଏତନାମରେ ଅବର୍ଣ୍ଣନୀୟ ହତ୍ୟାଅପରାଧ କରି ଚାଲିଛି । ହଜାର ହଜାର ଜନତାର ଶାନ୍ତ କୋମଳ ଜୀବନ ବିଚ୍ଛିନ୍ନ ହୋଇ ପଡ଼ିଛି ବସୁଧାର ବକ୍ଷବନ୍ଧ ମାଟି ଉପରେ । କେବଳ ସହର ନୁହେଁ କି ରାଜଧାନୀ ନୁହେଁ, ନିରୀହ ପଲ୍ଲୀବସ୍ତି ଉପରେ ସେମାନଙ୍କର ବାହିନୀ ନ ଥିବା ଆକ୍ରମଣ ଯୋଗୁଁ କେତେ ସଦ୍ୟ ଜାତ ଶିଶୁ ଅଛଟରେ ପ୍ରାଣ ହରାଇଛନ୍ତି । ଶ୍ରମିକ ଅଧ୍ୟୁଷିତ ଅଞ୍ଚଳ ସହିତ ବାହାର ଦୁନିଆ ସମସ୍ତ ଯୋଗାଯୋଗ ଛିନ୍ନ ହୋଇ ଯାଇଛି । ବହୁ ବହୁ ଦେଶପ୍ରେମୀ ଓ ସେମାନଙ୍କର ପରିବାର ଜନ୍ମଜନ୍ମାନ୍ତର ପାଇଁ ନିଶ୍ଚିହ୍ନ ହୋଇ ଯାଇଛନ୍ତି ।

କେବଳ ସେତିକି ନୁହେଁ ଉତ୍ତର ଭିଏତନାମର ଛଅଟି ପ୍ରଧାନ ସହର, ହାନୋଇ, ହାଇଫଙ୍ଗ, ନାମ ଡିନ୍, ଥାଇ ନୁଏନ, ଭିଏତ ଟ୍ରି ଏବଂ ଭିନ୍ ଉପରେ ଏକାଧିକ ବାର ବୋମା ମାଡ଼ ହେବା ଫଳରେ ବହୁମୂଲ୍ୟରେ ନିର୍ମିତ କୋଠାବାଡ଼ି, ଶିକ୍ଷାନୁଷ୍ଠାନ, ଚିକିତ୍ସାଳୟ ଆଦି ମାଟି ସ୍ତୂପରେ ପରିଣତ ହୋଇଛି । ସମୁଦାୟ ତିରିଶଟି ପ୍ରାଦେଶିକ ରାଜଧାନୀ ମଧ୍ୟରୁ ପଚିଶଟି ଉପରେ ବାରମ୍ବାର ବୋମାବର୍ଷଣ ଚାଲିଛି । ତନ୍ମଧ୍ୟରୁ ଡଙ୍ଗହୋଇ, ଡିନ୍‌ବିନ୍, ଫୁ ଲିଇ, ବାକ୍ ଥୋଙ୍ଗ, ସ୍ୱେନ ବାଇ,

ଏବଂ ସନ୍ ଲ ଆଦି ଛ'ଟି ସହର ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ ପାଇଛି । ସବୁଠାରୁ ବଳି ମର୍ମାନ୍ତିକ ଘଟଣା ହେଉଛି ସ୍ୱାଧୀନୋତ୍ତର ଭିଏତନାମରେ ଯେତେ ବନ୍ଧବାଡ଼, କଳକାରଖାନା, ଜଳସେଚନ ଯୋଜନା, ନଦୀବନ୍ଧ ଯୋଜନା, ଚିକିତ୍ସାଳୟ, ବ୍ୟବସାୟ ପ୍ରତିଷ୍ଠାନ, ସ୍ୱାସ୍ଥ୍ୟ ନିବାସ, ଚର୍ଚ୍ଚ, ପାଗୋଡ଼ା ଆଦି ଧର୍ମ ମନ୍ଦିର ଥିଲା ସେ ସବୁକୁ ଅତି ନିଷ୍ଠୁର ଭାବେ ଧ୍ୱଂସ କରାଯାଇଛି । କିନ୍ତୁ ସେହି ଧ୍ୱଂସ ସ୍ତୂପ ତଳୁ ମଣିଷ ମନର ଅତି ଦୃଢ଼ତମ ଜୀବନୀଶକ୍ତି ପୁଣି ଥରେ ମୁଣ୍ଡଟେକି ଉଠିଛି । ଗୋଟିଏ ମଣିଷର ମୃତ ଶରୀର ମଧ୍ୟରୁ କୋଟି କୋଟି ବିଦ୍ରୋହୀ ପ୍ରତିଶୋଧୀ ରକ୍ତପିପାସୁ ଗରିଲା ଜନ୍ମ ନେଇଛନ୍ତି । ଉତ୍ତର ଖଣ୍ଡର କ୍ରମାଗତ ସାହାଯ୍ୟ ଦାନରେ ଦକ୍ଷିଣରେ ମୁକ୍ତିବାତ୍ୟା ଆହୁରି ଘନେଇ ଉଠିଛି । ମାର୍କିନ ସମର ଦସ୍ୟୁମାନେ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ସେମାନେ ଜାଣନ୍ତି ଉତ୍ତରର ସ୍ୱାଧୀନ ସରକାର ବିରୁଦ୍ଧରେ ସେମାନେ ଆଉ ଦୀର୍ଘଦିନ ଧରି ଯୁଦ୍ଧ ଚାଲୁ ରଖିପାରିବେ ନାହିଁ । ତେଣୁ ୧୯୬୮ ମସିହା ମାର୍ଚ୍ଚ ମାସ ୩୧ ତାରିଖ ଦିନ ମାର୍କିନ ସରକାର ଉତ୍ତର ଭିଏତନାମରେ ଯୁଦ୍ଧ ପରିହାର କରିବାର ପ୍ରସ୍ତାବ ଦେଲା । କିନ୍ତୁ ପୂର୍ବପରି ନ ହେଲେ ମଧ୍ୟ ଭିଏତନାମ ଉପରେ ସାମୟିକ ବୋମାବର୍ଷଣ ବହୁଦିନ ପର୍ଯ୍ୟନ୍ତ ଲାଗି ରହିଲା । ଫଳରେ ଭିଏତନାମର ସ୍ୱାଧୀନ ସରକାର ଏ ପ୍ରକାର ପାକ୍ଷିକ ଯୁଦ୍ଧ-ବିରତି ପ୍ରସ୍ତାବକୁ ଅନୁମୋଦନ କରି ପାରିଲେ ନାହିଁ । ଦିନ ଗଡ଼ି ଚାଲିବା ସଙ୍ଗେ ସଙ୍ଗେ ଅବସ୍ଥା ଭୀଷଣ ଆକାର ଧାରଣ କଲା । ମାର୍କିନ ରାଜକୋଷ ବ୍ୟୟବହୁଳତାର ଭାର ସହିବା ପାଇଁ ଅସମର୍ଥ ହୋଇ ବସିଲା । ପେଣ୍ଟାଗନର ମେରୁଦଣ୍ଡ ଆଉ ଦୃଢ଼ ରହି ପାରିଲା ନାହିଁ । ୧୯୬୮ ମସିହା ନଭେମ୍ବର ପହିଲା ତାରିଖ ଦିନ ମାର୍କିନ ସରକାର ବିନା ସର୍ତ୍ତରେ ସମୁଦାୟ ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଉପରେ ବୋମା ମାଡ଼ ବନ୍ଦ କରିବା ପାଇଁ ନିର୍ଦ୍ଦେଶ ଦେଲେ । ସେଥିପାଇଁ ଉତ୍ତର ଭିଏତନାମର ସ୍ୱାଧୀନ ସରକାର, କମ୍ୟୁନିଷ୍ଟ ପାର୍ଟି ଦକ୍ଷିଣ ଭିଏତନାମର ମୁକ୍ତିସାମ୍ମୁଖ୍ୟ ଏବଂ ମାର୍କିନ ସରକାରର ପ୍ରତିନିଧିମାନଙ୍କୁ ନେଇ ଏକ ଚତୁଃପାକ୍ଷିକ ବୈଠକ ପ୍ୟାରିସ ସହରରେ ବସିଲା । ଦୀର୍ଘ ବର୍ଷବର୍ଷର ମରଣାନ୍ତକ ଜୀବନ ଯୁଦ୍ଧର ଅବସାନ ଘଟିଲା । ଉତ୍ତର ଭିଏତନାମରେ ପୁଣି ଶାନ୍ତି ଫେରି ଆସିଲା ।

ଏକ ଅସମ୍ପୂର୍ଣ୍ଣ ହିସାବରୁ ଜଣାପଡ଼ିଛି ୧୯୬୮ ନଭେମ୍ବର ପହିଲା ଯାଏ ଭିଏତନାମର ବିପ୍ଳବୀ ଯୋଦ୍ଧାମାନେ ମାର୍କିନ ସରକାରର ୨.୪୩ ସାମରିକ ବିମାନ ୬୮ଟି ଶକ୍ତିଶାଳୀ ବି-୫୨ ବୋମାବର୍ଷୀ ବିମାନ, ଯୁଦ୍ଧକ୍ଷେତ୍ରରେ ସଦ୍ୟ ନିର୍ମିତ ଅତ୍ୟାଧୁନିକ ସାମରିକ ଜାହାଜ ଗୁଡ଼ିକ ସମେତ ହଜାର ହଜାର ଜଳ ଏବଂ ବିମାନ ଦସ୍ୟୁମାନଙ୍କୁ ଧ୍ୱଂସର ଅତଳ ଗହ୍ୱରକୁ ଠେଲି ଦେଇ ପାରିଛନ୍ତି । କେବଳ ସେତିକି

ନୁହେଁ ସେହି ସେହି ସମୟର ବିଭିନ୍ନ ପ୍ରକାରର ଯୁଦ୍ଧ ସରଞ୍ଜାମବାହୀ ଜଳ ଜାହାଜ ଗୁଡ଼ିକୁ ଜାଳି ପୋଡ଼ି ଛାରଖାର କରି ଦେଇଛନ୍ତି । ଯେଉଁଥିପାଇଁ ମାର୍କିନ ସମର-ବିତ୍‌ମାନେ ଉତ୍ତର ଭିଏତନାମ ମାଟିରୁ ସବୁଦିନ ପାଇଁ ପଳାଇଯିବା ପାଇଁ ବାଧ୍ୟ ହୋଇଛନ୍ତି । ବସ୍ତୁତଃ ଭିଏତନାମରେ ଶାନ୍ତିର ବିଜୟ ଘଟିଛି । ଏହି ଐତିହାସିକ ଘଟଣା ଦକ୍ଷିଣ ଭିଏତନାମର ସହୋଦରମାନଙ୍କ ପକ୍ଷରେ କିମ୍ବା ବିଶ୍ୱ ଶାନ୍ତିକାମୀ ଜୀବର ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ବିଶବର୍ଷର ଲଗାତର ଯୁଦ୍ଧ ଯୋଗୁ ଭିଏତନାମର ନବ୍ୟ ସ୍ୱାଧୀନ ଅର୍ଥନୀତି ଭାଙ୍ଗି ପଡ଼ିବା ସ୍ୱାଭାବିକ । ସମାଜବାଦୀ ନିର୍ମାଣର ମଝି ପଥରେ ପୁନଶ୍ଚ ଯାକର କଣ୍ଟା ବିଛେଇ ପଡ଼ିଛି ଯେପରି ! ଯୁଦ୍ଧାହତ ଅର୍ଥନୀତିକୁ ସମାଜବାଦୀ ଢଙ୍ଗରେ ସ୍ୱାଧୀନ ରଖିବାକୁ ଗଲେ ପୁଣି ଆୟାସ ଲୋଡ଼ା । କମ୍ରେଡ଼ ହୋ'ଙ୍କର ସାହସ ଓ ଦମ୍ଭ ଅତୁଟ ରହିଛି ଏ ଯାଏ । ଉତ୍ତର ଭିଏତନାମ ଯୁଦ୍ଧରେ ମାର୍କିନ ଯୁଦ୍ଧବାଦୀ ମାନଙ୍କର ମୁଖ୍ୟ ଶିକାର ହୋଇଥିବା ପରିବହନ ଏବଂ ଯୋଗାଯୋଗ ବ୍ୟବସ୍ଥାକୁ ସୁଧାରିବା ପାଇଁ କମ୍ରେଡ଼ ହୋ ପାର୍ଟି କେନ୍ଦ୍ର କମିଟିର ପରାମର୍ଶ ନେଇଲେ ଏବଂ ତଦନୁଯାୟୀ ଗାଁ ଗହଳ ଓ ସହରରେ ରହୁଥିବା ସ୍ଥାନୀୟ ପାର୍ଟି କମ୍ରେଡ଼ ମାନଙ୍କୁ ନିର୍ଦ୍ଦେଶ ଦେଲେ ନିଜ ନିଜ ସ୍ଥାନର ପରିବହନ ଓ ଯୋଗା-ଯୋଗ ବ୍ୟବସ୍ଥାରେ ଦେଖାଦେଇଥିବା ଅଚଳ ଅବସ୍ଥାକୁ ନିଜ ଦାୟିତ୍ୱରେ ସମାଧାନ କରିନେବା ପାଇଁ । ଫଳରେ ମାତ୍ର କେତେଦିନ ମଧ୍ୟରେ ଅଗମ୍ୟ ସ୍ଥାନମାନଙ୍କ ସହିତ ଯୋଗାଯୋଗ ପାଇଁ ପଥ ପରିଷ୍କାର ହୋଇଗଲା ଏବଂ ପୂର୍ବବତ ଅତ୍ୟାବଶ୍ୟକୀୟ ସାମଗ୍ରୀମାନ ଠିକ୍ ସମୟରେ ଗାଁ ଗହଳରେ ପହଞ୍ଚି ପାରିଲା । ପରିବହନ ଓ ଯୋଗାଯୋଗ ପରି ଦେଶର ବିଭିନ୍ନ ସ୍ତରରେ ଦେଖାଦେଇଥିବା ଗୁରୁତର ବଡ଼ ସମସ୍ୟାମାନ ପ୍ରତି ହୋ' ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ଶିକ୍ଷା, ସଂସ୍କୃତି, ବ୍ୟବସାୟ, ସ୍ୱାସ୍ଥ୍ୟ, ଚିକିତ୍ସା ସର୍ବୋପରି ଅର୍ଥନୀତିରେ ସୃଷ୍ଟି ହୋଇଥିବା ସାମୟିକ ମାନ୍ଦା ଅବସ୍ଥାକୁ ଦୂର କରିବା ପାଇଁ ସେ ଜାତୀୟ ସ୍ତରରେ ନିଜ ଦେଶର ଜନସାଧାରଣଙ୍କୁ ଆହ୍ୱାନ ଦେଲେ—"ପାର୍ଟି ପ୍ରତି ଅନୁରକ୍ତ ରୁହ, ଜନତାର ଭକ୍ତ ହୁଅ, ପିତୃଭୂମିର ସ୍ୱାଧୀନତା ଓ ମୁକ୍ତି ପାଇଁ ଏବଂ ସମାଜବାଦ ପାଇଁ ଯେ କୌଣସି ପ୍ରକାର ତ୍ୟାଗ ସ୍ୱୀକାର କରିବା ନିମନ୍ତେ ପ୍ରସ୍ତୁତ ରୁହ । ଦିଆଯାଇଥିବା ପ୍ରତ୍ୟେକ ଦାୟିତ୍ୱ ପୂରଣ କର, ପ୍ରତ୍ୟେକ ସମସ୍ୟାର ସମାଧାନ କର, ଯେ କୌଣସି ଶତ୍ରୁ ହେଲେ ମଧ୍ୟ ତାକୁ ପରାହତ କର" । ସାଧାରଣ ପାର୍ଟି କର୍ମୀ ମାନଙ୍କୁ ଉନ୍ନତ ରାଜନୈତିକ ଚେତନାରେ ପରିପୂର୍ଣ୍ଣ କରିବା ଉଦ୍ଦେଶ୍ୟ ନେଇ ସେ ପାର୍ଟି ତରଫରୁ ସ୍ୱତନ୍ତ୍ର ଶିକ୍ଷା ଅଭିଯାନର ଡାକରା ଦେଲେ । କର୍ମୀମାନଙ୍କର ବୈପ୍ଳବିକ ଚିନ୍ତାଧାରା ଓ ନୈତିକ

ତରୁଣବର୍ଗଙ୍କୁ ଉଚ୍ଚ ସ୍ତରକୁ ନେବା ପାଇଁ ଏବଂ ସେମାନଙ୍କ ମନରେ ଥିବା ବ୍ୟକ୍ତି ସଙ୍କୀର୍ଣ୍ଣତା ଦୂର କରିବା ପାଇଁ ସେ ସ୍ୱତନ୍ତ୍ର ଶିକ୍ଷା ପ୍ରଣାଳୀର ପ୍ରଚଳନ କରିଥିଲେ । ସ୍ୱାଧୀନତା, ମୁକ୍ତି, ସାର୍ବଭୌମତ୍ୱ ଏବଂ ଆତ୍ମନିର୍ଭରଶୀଳତା ପ୍ରତି ବିଶେଷ ମହତ୍ତ୍ୱ ପ୍ରଦାନ କରାଗଲା । ମଣିଷ ମଧ୍ୟରେ ଦାୟିତ୍ୱ ବୋଧ ସୃଷ୍ଟି କରିବା ପାଇଁ, ସଂଶୋଧନବାଦ, ମତାନ୍ଧତା ଠାରୁ ଦୂରରେ ରହିବା ପାଇଁ ଏବଂ ମାର୍କସ୍‌ବାଦୀ ଲେନିନ୍‌ବାଦୀ ଦୀକ୍ଷାରେ ନିଜକୁ ପରିଚାଳିତ କରିବାପାଇଁ ଯାହା କିଛି ପ୍ରୟୋଜନୀୟ, ସେ ସବୁ ତାତ୍ତ୍ୱିକ ଦିଗ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଗଲା । ହୋ'ଙ୍କ ବିଚାରରେ ଯଦି ଉତ୍ତର ଭିଏତନାମର ସମୁଦାୟ ସମାଜ ବ୍ୟବସ୍ଥାକୁ ସାମ୍ରାଜ୍ୟବାଦୀ ମୁଣ୍ଡଖୋଜା ମାନଙ୍କର ବିଷଜ୍ୱାଳା ମଧ୍ୟରୁ ସମ୍ପୂର୍ଣ୍ଣ ମୁକ୍ତ କରି ନ ଯାଏ ତେବେ ଉତ୍ତର ଭିଏତନାମର ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ ରଖି ହେବ ନାହିଁ କିମ୍ବା ଦକ୍ଷିଣରେ ଚାଲିଥିବା ମୁକ୍ତିସଂଗ୍ରାମକୁ ଆଉ ସାହାଯ୍ୟ କରିହେବ ନାହିଁ । ତେଣୁ ଯୁଦ୍ଧ ସମୟରେ ମାର୍କିନ ସମର୍ଥକ-ମାନେ ଗ୍ରସ୍ତ ହୋଇଥିବା ସେମାନଙ୍କର ସଂକ୍ରାମକ ବ୍ୟାଧିକୁ ସମ୍ପୂର୍ଣ୍ଣ ନିରାକରଣ କରିବା ଉଦ୍ଦେଶ୍ୟରେ ସେ ପ୍ରଶାସନିକ ତଥା ଅର୍ଥନୈତିକ ଦିଗ ପ୍ରତି ବିଶେଷ ଧ୍ୟାନ ଦେଲେ । କାରଣ ଏ ଦୁଇଟି ଦିଗ ସମୁଦାୟ ସମାଜ ବ୍ୟବସ୍ଥାର ଦୁଇ ପ୍ରଧାନ ଆୟୁଧ । ପ୍ରଶାସନିକ କ୍ଷେତ୍ରରେ ଅନେକ କ୍ଷମଣୀୟ ଅପରାଧ ଘଟି ଯାଇଥିଲା । ଶାସନ ଦାୟିତ୍ୱରେ ଥିବା ଉଚ୍ଚସ୍ତରୀୟ ଅମଲାମାନେ ସାଧାରଣ ଜନତାର ସ୍ୱାର୍ଥ ପ୍ରତି ଧ୍ୟାନ ନ ଦେଇ ସେମାନଙ୍କର ଗଣତାନ୍ତ୍ରିକ ଦାୟିତ୍ୱବୋଧରେ ବ୍ୟାଘାତ କରୁଥିଲେ । ଫଳରେ ସମାଜବାଦୀ ଗଠନ କାର୍ଯ୍ୟରେ ବିରାଟ ବାଧା ସୃଷ୍ଟି ହେଉଥିଲା । ଶିଳ୍ପୋଦ୍ୟୋଗ ମାନଙ୍କରେ ଶ୍ରମିକ ଶ୍ରେଣୀର ଏକ ବିଶାଳ ଅଂଶ ଶ୍ରମ ଶୃଙ୍ଖଳା ମାନି ଚଳିବାକୁ ପ୍ରସ୍ତୁତ ନ ଥିଲେ । ଶିଳ୍ପ ପରିଚାଳନା, ଉତ୍ପାଦନ ଏବଂ ସମବାୟ ଭିତ୍ତିକ ଶିଳ୍ପ ସଂସ୍ଥା ମାନଙ୍କରେ ଅନଭିପ୍ରେତ ବିଶୃଙ୍ଖଳା ଓ କର୍ମହୀନତା ଦେଖାଗଲା । ଫଳରେ ଜାତୀୟ ଉତ୍ପାଦନ ଭୀଷଣ ବେଗରେ ହ୍ରାସ ହୋଇ ପଡ଼ିଲା । ଅର୍ଥନୀତିର ମେରୁଦଣ୍ଡ ଭାଙ୍ଗି ପଡ଼ିବା ସଙ୍ଗେ ସଙ୍ଗେ ସାଧାରଣ ଜୀବନ ନିର୍ବାହରେ ଅଚଳ ଅବସ୍ଥା ସୃଷ୍ଟି ହେଲା । ନିଜ ଦେଶର ଏତାଦୃଶ କରୁଣ ମୁହୂର୍ତ୍ତକୁ ତ୍ୟଜି କିଏ ଅପରକୁ ସାହାଯ୍ୟ କରିବା ପାଇଁ ହାତ ବଢ଼ାଇବ ?

କମ୍ରେଡ଼ ହୋ' ପାର୍ଟିକୁ ଏହି ମରଣ ମାଡ଼ରୁ ରକ୍ଷା କରିବା ପାଇଁ ଦୃଢ଼ ପରିକର । ଅର୍ଥନୀତି ଓ ଶାସନ ବ୍ୟବସ୍ଥାକୁ ଦୁଃସହ ବ୍ୟାଧିରୁ ଆରୋଗ୍ୟ ଦେବା ପାଇଁ ଧାଳନା ଯୁଦ୍ଧର ପ୍ରୟୋଜନ ପଡ଼ିଲା । ସେ ଯୁଦ୍ଧ ଚାଲିଲା ଭିଏତନାମର ଅର୍ଥନୀତି ଓ ପ୍ରଶାସନିକ ମଇଦାନରେ, ଶିଳ୍ପୋଦ୍ୟୋଗରେ ଓ କୃଷିକ୍ଷେତ୍ରରେ, ଶିକ୍ଷାଳୟରେ ଓ ସମାଜ ବ୍ୟବସ୍ଥାରେ । ଯୁଦ୍ଧ ବାଧିତ ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗ

ନିର୍ଦ୍ଦେଶରେ ସବୁ ଶ୍ରେଣୀର ବ୍ୟକ୍ତିଙ୍କୁ ବାଧ୍ୟତାମୂଳକ ଶିକ୍ଷା ଦିଆଗଲା ଉତ୍ପାଦନ ବୃଦ୍ଧି ପାଇଁ ଏବଂ ଦେଶର ସ୍ୱାଧୀନତାର ସୁରକ୍ଷା ପାଇଁ । ଶ୍ରମିକ, କୃଷକ, ଶିକ୍ଷକ, ଛାତ୍ର, ଯୁବକ ନିଜ ନିଜ ସ୍ଥାନରୁ ଦୁଇଟି ମୁଖ୍ୟ କର୍ତ୍ତବ୍ୟ ପୂରଣ ପାଇଁ ଶପଥ ଗ୍ରହଣ କଲେ । ଶ୍ରମିକର ହାତୁଡ଼ି ସାଙ୍ଗରେ ରାଇଫଲ ରହିଲା ବେଳେ କୃଷକ ହାତରେ ଲଙ୍ଗଳ ସହିତ ଧନୁଶର ଗର୍ଜି ଉଠିଲା । 'ଉତ୍ପାଦନ ଏବଂ ପ୍ରତିରକ୍ଷା' ଏହି ସଂକଳ୍ପରେ ସମଗ୍ର ଜାତି ବ୍ରତୀ ହେବା ପାଇଁ ବାଧ୍ୟ ହେଲା । ଏହିପରି ସମାଜର ପ୍ରତ୍ୟେକ ଶ୍ରେଣୀ ପାଇଁ ସ୍ୱତନ୍ତ୍ର ଦାୟିତ୍ୱ ବାଣ୍ଟି ଦିଆଗଲା । କୃଷକ, ଶ୍ରମିକ, ବୁଦ୍ଧିଜୀବୀ, ଛାତ୍ର, ମହିଳା, ଶିକ୍ଷକ ଏବଂ ସେନାବାହିନୀ ମଧ୍ୟରେ ପରସ୍ପରର ଦାୟିତ୍ୱ ବୋଧ ସମ୍ବନ୍ଧୀୟ ଶିକ୍ଷା ଏବଂ ଆତ୍ମ ସମୀକ୍ଷାର ସ୍ପଷ୍ଟ ସୂଚନା ରହିଲା । ଯୁଦ୍ଧ ଦୁର୍ଦ୍ଦଶାଗ୍ରସ୍ତ ଜୀବନରୁ ଛାଡ଼ ପାଇବା ପାଇଁ ହୋ'ଙ୍କର ସକଳ ଉଦ୍ୟମ ପରବର୍ତ୍ତୀ ସମୟରେ ଗୋଟି ଗୋଟି ହୋଇ ସଫଳ ହୋଇଛି । ତ୍ୟାଗ ଓ କର୍ତ୍ତବ୍ୟ ନିଷ୍ଠାର କ୍ଷିପ୍ରତା ଯୋଗୁଁ ଭିଏତନାମରେ ଅଚିରେ ସୁଖ ସମୃଦ୍ଧିର ରାଜ୍ୟ ପ୍ରତିଷ୍ଠା ହୋଇ ପାରିଛି । ହଜାର ହଜାର ସଂଖ୍ୟାରେ ଦେଶପ୍ରେମୀ ବୀର ଜାତି ନିର୍ମାଣ ପାଇଁ ଆଗଭର ହୋଇ ବାହାରି ଆସିଛନ୍ତି । ସେଦିନ ହୋ'ଙ୍କ ମନରେ ଆନନ୍ଦର ସୀମା ନାହିଁ । ନିଜ ଚତୁଃପାର୍ଶ୍ୱରେ ସମବେତ ଜନ ସମୁଦ୍ରର ତୀରରେ ଠିଆ ହୋଇ ସେ ଆନନ୍ଦ ମୁଖର ସ୍ୱରରେ ଘୋଷଣା କଲେ "ଆମର ଜନତା କେବଳ ନିଜ ସ୍ୱାର୍ଥ ପାଇଁ କିମ୍ବା ନିଜର ମୁକ୍ତି ପାଇଁ ଯୁଦ୍ଧ ବା ତ୍ୟାଗ ସ୍ୱୀକାର କରେନା । ସମଗ୍ର ମାନବ ଜାତିର ମୁକ୍ତି ଓ ସ୍ୱାଧୀନତା ପାଇଁ, ସବୁ ଦେଶର ଶାନ୍ତି ପ୍ରତିଷ୍ଠା ପାଇଁ ତା'ର ତ୍ୟାଗ ଅବାରିତ ରହିଛି" ।

ମାର୍କିନ ସାମ୍ରାଜ୍ୟବାଦ ବିରୁଦ୍ଧରେ ଭିଏତନାମ ଜାତିର ଜୀବନପଣ ସଂଗ୍ରାମ ବିଶ୍ୱ ମେହେନତି ଜନଗଣର ବୈପ୍ଳବିକ ସଂଗ୍ରାମର ଅଗ୍ରଗାମୀବାହିନୀ ପରି । ଉପନିବେଶବାଦୀ ଆକ୍ରମଣକାରୀ ଯୁଦ୍ଧ ବିରୁଦ୍ଧରେ ଦୁନିଆର ଶାନ୍ତିପ୍ରିୟ ଦଳିତ ଜନତାର ବିପ୍ଳବର ପ୍ରତିରୂପ ପରି । ତାର ବିଜୟ ହିଁ ପୃଥିବୀର ସମାଜବାଦୀ ରାଜନୀତିର ସାମୂହିକ ବିଜୟ ସହିତ ସମାନ । ସେଥିପାଇଁ ଆଜି ଉତ୍ତର ଖଣ୍ଡରେ ଜନତାର ଗଣତାନ୍ତ୍ରିକ ଏକନାୟକତ୍ୱ ପ୍ରତିଷ୍ଠା ହୋଇ ପାରିଛି । ଦକ୍ଷିଣରେ ମୁକ୍ତି ବିପ୍ଳବକୁ ବିଜୟର ତୁଙ୍ଗ ଶିଖରରେ ପହଞ୍ଚାଇବା ପାଇଁ ସର୍ବାଦୌ ଚେଷ୍ଟା ଜାରି ରହିଛି । କାରଣ ଦକ୍ଷିଣ ଓ ଉତ୍ତର ଏକ ଏବଂ ଅଭିନ୍ନ ।



## ୨୧

# ଦକ୍ଷିଣ ଭିଏତନାମ ପ୍ରତିରୋଧୀ ଯୁଦ୍ଧର ନୂତନ ଅଧ୍ୟାୟ

ଇଣ୍ଡୋଚୀନରେ ଉପନିବେଶୀ ଶାସନ ଜାହିର କରିବାର ଏକମାତ୍ର ସ୍ଥାନ ହେଉଛି ଦକ୍ଷିଣ ଭିଏତନାମ । କାରଣ ବହୁ ପୂର୍ବରୁ ଉତ୍ତର ଭିଏତନାମ ସ୍ୱାଧୀନ ହୋଇ ମାର୍କିନ କବଳରୁ ଖସି ଚାଲିଯାଇଛି । ଦକ୍ଷିଣ ଭୂଖଣ୍ଡ ଯଦି ଚାଲିଯାଏ, କେବଳ ଇଣ୍ଡୋଚୀନ ନୁହେଁ ଦକ୍ଷିଣ ପୂର୍ବ ଏସିଆରେ ସାମ୍ରାଜ୍ୟ ବିସ୍ତାର କରିବାର ଶେଷ ଅଙ୍କୁରଟି ମଧ୍ୟ ଶୁଖିଯିବ । ତେଣୁ ଯେ କୌଣସି ଉପାୟରେ ବି ଉପନିବେଶବାଦର ସୁରକ୍ଷା ପାଇଁ ଦକ୍ଷିଣ ଭିଏତନାମକୁ କବଳିତ କରିବାକୁ ପଡ଼ିବ । ସେଥିପାଇଁ ୧୯୬୪ ମସିହାର ପ୍ରାରମ୍ଭରୁ ମାର୍କିନ ସାମରିକ ବାହିନୀର ମୁଖ୍ୟ ସରଞ୍ଜାମ ସ୍ଥଳୀ ହେଉଛି ଦକ୍ଷିଣ ଭିଏତନାମ ଉପରକୁ । ବହୁଳ ପରିମାଣରେ ବିଦେଶୀ ସୈନ୍ୟ, ବିଦେଶୀ ଯୁଦ୍ଧାସ୍ତ୍ର, ବୋମା ଓ ଗୁଳି ଗୋଳା ସାଧାରଣ ନାଗରିକ ମନରେ ଭୀତି ସଞ୍ଚାର କରୁଛି । ଦକ୍ଷିଣ ଭିଏତନାମ ମରଣ ଯୁଦ୍ଧର ବାରୁଦ ଗଦା ଉପରେ ଆସୀନ । ଏହି ଦୁଃସମୟରେ ଭିଏତନାମ ମୁକ୍ତି ସାମ୍ମୁଖ୍ୟର ଦୁର୍ଦ୍ଧର୍ଷ ଗରିଲା-ବାହିନୀ ତରଫରୁ "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ ଜରିଆରେ "ମାର୍କିନ ଆକ୍ରମଣକାରୀ ବିରୁଦ୍ଧରେ ଜାତି ଜନତାର ବିଜୟ ଅଭିଯାନ" ଶୀର୍ଷକ ପ୍ରଚୁର ପତ୍ର ବଣ୍ଟା ଯାଇଛି । ସହର, ମଫସଲ, ପୁରପଲ୍ଲୀରେ ଏହି ବିଦ୍ରୋହ ଆହ୍ୱାନ ପହଞ୍ଚି ଯାଇଛି । ଦକ୍ଷିଣ ଭିଏତନାମୀ ଜନତା ଯେ ପର୍ଯ୍ୟନ୍ତ ତାର ମୌଳିକ ଦାବୀ ସ୍ୱାଧୀନତା, ଶାନ୍ତି, ଗଣତନ୍ତ୍ର ଓ ନିରପେକ୍ଷତା ହାସଲ କରି ପାରି ନାହିଁ, ସେ ପର୍ଯ୍ୟନ୍ତ ଦକ୍ଷିଣ ଭିଏତନାମର ସାଧାରଣ ନାଗରିକ କିମ୍ବା ତାର ସାମରିକବାହିନୀ ହାତ ମୁଠାରେ ଥିବା ଅସ୍ତ୍ର ତଳକୁ ଖସିବ ନାହିଁ । ମାର୍କିନ ଆକ୍ରମଣକାରୀ ଏବଂ ସେମାନଙ୍କର ପଦଲେହନକାରୀ ମାନଙ୍କର ବଜ୍ରାଘାତ ବିରୁଦ୍ଧରେ ଦୃଢ଼ ଭାବରେ ଠିଆ ହେବା ପାଇଁ ଦକ୍ଷିଣ ଭିଏତନାମୀ ଜାତି ସର୍ବଦା ପ୍ରସ୍ତୁତ ଏବଂ ସେମାନେ ଜାଣନ୍ତି ଅନ୍ତିମ ବିଜୟ ହିଁ ତାଙ୍କର ।

ସେତେବେଳେ ଦକ୍ଷିଣ ଭିଏତନାମ ମୁକ୍ତି ସଂଗ୍ରାମର ନେତୃତ୍ୱ ନେଉଥାନ୍ତି କମ୍ରେଡ଼ ହୋ ଚି-ମିନ୍ । ତାଙ୍କର ମାନବବାଦୀ ନିର୍ଦ୍ଦେଶରେ ଉତ୍ତର ଏବଂ ଦକ୍ଷିଣରେ ଦେଶପ୍ରେମୀ ବୀର, ଯୋଦ୍ଧା ଓ ଗରିଲାମାନେ "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ"ରେ ସାମିଲ ହୋଇଥାନ୍ତି । ସଂକ୍ଷେପରେ କହିବାକୁ ଗଲେ ଉତ୍ତର ଓ ଦକ୍ଷିଣର ମୁକ୍ତି ସଂଗ୍ରାମୀ ମାନଙ୍କ ମଧ୍ୟରେ କୌଣସି ତଫାତ

ପାର୍ଥକ୍ୟ ନ ଥାଏ । ସେମାନେ ଦକ୍ଷିଣର ମୁକ୍ତି ଓ ଭିଏତନାମ ଏକତ୍ରୀକରଣ ପାଇଁ ଐକ୍ୟବଦ୍ଧ ।

କମ୍ରେଡ୍ ହୋ-ଚି-ମିନ୍ ସେମାନଙ୍କର ଏହି ମନବଳକୁ ଦୃଢ଼ ଏବଂ କଠିନ କରିବା ପାଇଁ ସରକାରୀ ସ୍ତରରେ ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ତୃତୀୟ ବ୍ୟାନସଭାର ଦ୍ୱିତୀୟ ସମ୍ମିଳନୀରେ ଉଦ୍‌ବୋଧନ ଦେଲେ –

"ଶହ ଶହ ଏବଂ ହଜାର ହଜାର ସଂଖ୍ୟାର ମାର୍କିନ ସୈନ୍ୟ ସାମନ୍ତଙ୍କୁ ମାରଣାସ୍ତ୍ର ଭିଏତନାମ ଯୁଦ୍ଧରେ ନିଯୁକ୍ତ କଲେ ମଧ୍ୟ ଏହି ଅପରାଧୀ ଯୁଦ୍ଧ ପାଇଁ ପଡ଼ୋଶୀ ସାମ୍ରାଜ୍ୟବାଦୀ ଦେଶ ଓ ଅନୁଚର ରାଜ୍ୟମାନଙ୍କଠାରୁ ଯେତେ ସଂଖ୍ୟାରେ ନିଜ୍ଞୁଆ ସୈନିକ ଆଣି ଠୁଳ କଲେ ମଧ୍ୟ ଆମର ଜନତା ଏବଂ ସଂଗ୍ରାମୀ ଯୋଦ୍ଧା ସେମାନଙ୍କୁ ପରାସ୍ତ କରିବା ପାଇଁ ପ୍ରତିଜ୍ଞାବଦ୍ଧ ।"

ପୁଣି ଥରେ ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ସରକାର ବଜ୍ର କଣ୍ଠରେ ନିଜର ଭୂମିକା ଓ ଦୃଢ଼ତା ସମ୍ବନ୍ଧରେ ଘୋଷଣା କରୁଛି ଯେ;

"ଅତି ସାହସିକତାର ସହିତ ଭିଏତନାମର ସ୍ୱାଧୀନତା, ସାର୍ବଭୌମତ୍ୱ, ଏକତା ଏବଂ ଆଞ୍ଚଳିକ ଅଖଣ୍ଡତା ବଜାୟ ରଖିବାକୁ ପଡ଼ିବ । ଭିଏତନାମ ଗୋଟିଏ ଏବଂ ଭିଏତନାମୀ ଜାତି ମଧ୍ୟ ଏକ । କୌଣସି ଶକ୍ତି ଜନତାର ଏହି ପବିତ୍ର ଅଧିକାର ଉପରେ ହସ୍ତକ୍ଷେପ କରି ପାରିବ ନାହିଁ ।"

ସେଦିନ ୧୯୬୫ ମସିହା ୧୨ ତାରିଖ । ଶୀତ ସରିଯାଇଛି । ବସନ୍ତର ପ୍ରଥମ ଖବର ପାଇ ପାହାଡ଼ ତଳ ସୈନ୍ୟ ଛାଉଣୀରେ ଦିନ କାଟୁଥିବା ସୈନିକ ଫେରି ଆସିଛି ଘରକୁ ମାତ୍ର କେତୋଟି ଦିନ ପାଇଁ । ପୁଣି ତାକୁ ଫେରିଯିବାକୁ ପଡ଼ିବ ସେହି ମୁକ୍ତାଞ୍ଚଳ ମଶାଣୀ ପଦାକୁ । ନହାଙ୍କର ଆବେଦନ ତା କାନରେ ପଡ଼ୁଛି । ସେ ଆଉ ମୁହୂର୍ତ୍ତିକାଳ ବିଳମ୍ବ କରିବାକୁ ଚାହେଁ ନା । ପିତୃଭୂମିର ବ୍ୟାକୁଳ ଡାକରାରେ ତାର ଅବସର ସରି ଯାଇଛି । ତାର ଠିକ୍ ଦୁଇ ଦିନ ପରେ ଶତ୍ରୁ ସୈନ୍ୟ ଶିବିର ଉପରେ କ୍ରମାଗତ ଆକ୍ରମଣ ଚାଲିଲା । କେବଳ ମାର୍କିନ ସରକାର ସମର୍ଥିତ ସଖୀ କ୍ୟୁଏଇ ସରକାରର ସୈନ୍ୟସାମନ୍ତ କାହିଁକି, ବିଦେଶରୁ ଆମଦାନୀ ହୋଇଥିବା ଶ୍ୱେତାଙ୍ଗ ଆମେରିକୀୟମାନେ ଯୁଦ୍ଧ ଛାଉଣୀରେ ଛିନ୍ନ ପଡ଼ିଲେ । ଗରିଲା ବାହିନୀର ଶତ୍ରୁ ମେଧଯଜ୍ଞରେ ସେମାନେ ନିର୍ଦ୍ଦୟଭାବେ ବଳି ପଡ଼ିଲେ ।

'ସ୍ୱତନ୍ତ୍ର ଯୁଦ୍ଧର' ପରାଜୟପାଇଁ ମାର୍କିନ ସରକାର ଡିନ୍-ଡି-ଏମ୍ ସରକାରକୁ ଦାୟୀ କରିଥିଲେ । ସେଥିପାଇଁ ସେମାନେ ପରବର୍ତ୍ତୀ ସମୟରେ ଅତି ଭୟଙ୍କର ମାରଣାସ୍ତ୍ର ବ୍ୟବହାର କରିଥିଲେ । ସେମାନଙ୍କର ଦୃଢ଼ ଧାରଣା ଥିଲା ବିଶ୍ୱ ବିଖ୍ୟାତ ମାର୍କିନ ରଣ କୌଶଳକୁ ଦୁନିଆର କୌଣସି ଶକ୍ତି ପ୍ରତିରୋଧ କରି ପାରିବ ନାହିଁ ।

ସେମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହେବ । କିନ୍ତୁ ୧୯୬୫ର ମଧ୍ୟଭାଗ ବିତିଗଲାଣି, ଅଥଚ ସେମାନଙ୍କର ଆଂଶିକ ବିଜୟ ମଧ୍ୟ ସୁଦୂର ପରାହତ । ସେମାନେ ଅବଲମ୍ବନ କରିଥିବା କୌଣସି ରୀତି ବା ଯୁଦ୍ଧ କୌଶଳ ଏପର୍ଯ୍ୟନ୍ତ ଆଶାଜନକ ଫଳକୁ ଆଣି ପାରିନାହିଁ । ଅପର ପକ୍ଷରେ ଏଥିନିମନ୍ତେ କୋଟି କୋଟି ମୂଲ୍ୟର ଯୁଦ୍ଧ ସରଞ୍ଜାମ ଓ ଜନ ଜୀବନର ହାନି ଘଟିଛି ।

ପର୍ଣ୍ଣୀ କୁମ୍ଭେର ସରକାର ଉପରେ ସେମାନଙ୍କର ଅଯଥା ଦୋଷାରୋପ ଭୁଲ ବୋଲି ପ୍ରମାଣିତ ହୋଇ ସାରିଛି । ତେଣୁ ପୁଣି ଥରେ ସେମାନଙ୍କର ସାହାଯ୍ୟ ନେଇ ମାର୍କିନ ସାମରିକ ବାହିନୀ ଦକ୍ଷିଣରେ ପ୍ରସିଦ୍ଧ ଭାନ୍-ଟୁଙ୍ଗ ଅଞ୍ଚଳ ଉପରେ ଆକ୍ରମଣ କଲେ । ୧୯୬୫ ମସିହାର ଅଗଷ୍ଟ ମାସ । ପ୍ରାୟ ୮୦୦୦ ବଛା ବଛା ମାର୍କିନ ସୈନ୍ୟ ଆକାଶ ବାହିନୀ ଓ ନୌବାହିନୀର ସାହାଯ୍ୟ ନେଇ ଭାନ୍-ଟୁଙ୍ଗ ଠାରେ ଯୁଦ୍ଧ ଆରମ୍ଭ ପ୍ରଚେଷ୍ଟା କଲେ । ସେମାନଙ୍କ ସହିତ ଦେଶୀୟ ପ୍ରତିକ୍ରିୟାଶୀଳ ସରକାରର ସୈନ୍ୟସାମନ୍ତଙ୍କ ସଂଖ୍ୟା ମଧ୍ୟ କୌଣସି ଗୁଣରେ କମ୍ ନୁହେଁ । କିନ୍ତୁ ଭାନ୍-ଟୁଙ୍ଗର ସ୍ଥାନୀୟ ଗରିଲାମାନେ ସେମାନଙ୍କର ଏହି ପାଶବିକ ଯୋଜନାକୁ ଆଗକୁ ବଢ଼ିବାକୁ ଦେଲେ ନାହିଁ । ଶତ୍ରୁ ଶିବିରର ଆକ୍ରମଣ ସମ୍ବାଦ ସେମାନଙ୍କ ନିକଟରେ ପହଞ୍ଚି ସାରିଥିଲା । ତେଣୁ ସେମାନେ ଆକ୍ରମଣର ସାମନା କରିବା ପାଇଁ ସର୍ବଦା ପ୍ରସ୍ତୁତ ଥିଲେ । ସାଧାରଣ ଜନତାର ପ୍ରତ୍ୟକ୍ଷ ସହଯୋଗ କ୍ରମେ ଭାନ୍ ଟୁଙ୍ଗର ଲଢ଼ାଇରେ ଗରିଲାମାନେ ବିଜୟୀ ହେଲେ । ମାର୍କିନ ସରକାର ଏବଂ ତାର ସମର୍ଥିତ ଦେଶୀୟ ସରକାରର ସମସ୍ତ ସୈନ୍ୟ, ଯୁଦ୍ଧ ସରଞ୍ଜାମ, ଗୁଳିଗୋଳା, ସୈନ୍ୟବାହିନୀ ଓ ଆକାଶ ବାହିନୀର ପର୍ଯ୍ୟାପ୍ତ ସମ୍ବଳ ପୁଣିଥରେ ଅକାଳ ଧ୍ୱଂସର ସମ୍ମୁଖୀନ ହେଲା ।

ଭାନ୍-ଟୁଙ୍ଗର ବିଜୟ ପରେ ସ୍ଥାନୀୟ ଗରିଲା ବାହିନୀ ଓ ଜନତାର ନୈତିକ ବଳ ପୂର୍ବାପେକ୍ଷା ଦୃଢ଼ହେବା ସ୍ୱାଭାବିକ । ଯୁଦ୍ଧୋତ୍ତର ଦକ୍ଷିଣ ଭିଏତନାମରେ ଟିକେ ଶାନ୍ତିର ନିଃଶ୍ୱାସ ମାରିବା ପୂର୍ବରୁ ପୁନର୍ବାର ଯୁଦ୍ଧଭୂମିରୁ ଡାକରା ଆସିଲା । ୮୦୦୦ ସୈନ୍ୟ ପରିବର୍ତ୍ତେ ଯୁଦ୍ଧାଙ୍ଗନାରେ ୨୦୦,୦୦୦ ମାର୍କିନ ଏବଂ ତାର ଅନୁଗାମୀ ସୈନ୍ୟଙ୍କର ଅଭୂତପୂର୍ବ ରଣସଜ୍ଜା ଦେଖି ଭିଏତନାମର ଜଙ୍ଗଲ ଗରିଲା ସୈନ୍ୟ ସ୍ୱଭାବତଃ ବିଚଳିତ ହୋଇ ପଡ଼ିବା କଥା । ବିଦେଶୀ ସୈନ୍ୟମାନଙ୍କ ପଶ୍ଚାତ୍ ରଣ-ଭୂମିରେ ସାହାଯ୍ୟ ଦେବାପାଇଁ ପ୍ରାୟ ପାଞ୍ଚଲକ୍ଷ ଦେଶୀୟ ସୈନ୍ୟ ପହଞ୍ଚି ସାରିଥାନ୍ତି ।

୧୯୬୫ ମସିହାର ଶୀତ ଶେଷ ସମୟଠାରୁ ଆରମ୍ଭ କରି ୧୯୬୬ ମସିହା ଶେଷ ବସନ୍ତ ପର୍ଯ୍ୟନ୍ତ ଏହି ଯୁଦ୍ଧ ଚାଲିଲା । ଗ୍ରୀଷ୍ମର ପ୍ରାନ୍ତକାଳରେ ପୁଣି ୪୦୦,୦୦୦ ମାର୍କିନ ସୈନ୍ୟଙ୍କୁ ନୂତନ ଭାବେ ଯୁଦ୍ଧସ୍ଥଳ କରାଗଲା ।

ସୌଭାଗ୍ୟର ବିଷୟ ସେତେବେଳେ ଗ୍ରୀଷ୍ମଋତୁ । ମଧ୍ୟାହ୍ନ ଗ୍ରୀଷ୍ମର ଉତ୍କଟ ଉତ୍ତପ୍ତ ପବନ ଶ୍ୱେତକାୟ ବିଦେଶୀ ସୈନ୍ୟମାନଙ୍କୁ ଅସହ୍ୟ ମନେ ହେଲା । ଦକ୍ଷିଣ ଭିଏତନାମର ପ୍ରାକୃତିକ ଉଷ୍ଣ ଜଳବାୟୁରେ ସେମାନେ ଦୀର୍ଘଦିନ ଯୁଦ୍ଧ ଜାରି ରଖି ପାରିଲେ ନାହିଁ । ଫଳରେ ପ୍ରଥମ ଗ୍ରୀଷ୍ମ ଶେଷ ବେଳକୁ ୨୯୦ ୦୦୦ ବିଦେଶୀ ସୈନ୍ୟ ଗରିଲାମାନଙ୍କ ଆକ୍ରମଣ ମାଡ଼ରେ ଅକର୍ମଣ୍ୟ ହୋଇ ପଡ଼ିଲେ । ଯେଉଁ ଦେଶୀୟ ସୈନ୍ୟସାମନ୍ତ ରହିଗଲେ ସେମାନେ ଅବଶିଷ୍ଟ ସଂଯୁକ୍ତ ମିତ୍ର ଫୌଜ୍ ରଖିଥିଲେ ସିନା ସେମାନଙ୍କର ନୈତିକ ଦମ୍ଭ ଭାଙ୍ଗି ପଡ଼ିଲା । ଦ୍ୱିତୀୟ ଗ୍ରୀଷ୍ମରେ ସେମାନଙ୍କ ମଧ୍ୟରୁ ପୁଣି ୧୮,୦୦୦ ସୈନ୍ୟ ମୃତ୍ୟୁମୁଖରେ ପଡ଼ିଲେ । ଅଧିକାଂଶ କର୍ମହୀନ ଓ ପଙ୍ଗୁ ହୋଇ ପଡ଼ିଲେ । ମୁକ୍ତିଭୂମିରେ ସେମାନଙ୍କର ଚିକିତ୍ସା ଓ ରକ୍ଷଣାବେକ୍ଷଣ ଆଉ ଏକ ମହାସମସ୍ୟା ସୃଷ୍ଟି କଲା । ଫଳରେ ୧୯୬୭ ଗ୍ରୀଷ୍ମ ଋତୁର ଶେଷ ପର୍ଯ୍ୟାୟରେ ମାର୍କିନ ସରକାର ସାମରିକ ଯୁଦ୍ଧ ବନ୍ଦ ପାଇଁ ବାଧ୍ୟ ହେଲା । ଏହି ଘଟଣା ଦକ୍ଷିଣ ଭିଏତନାମର ମୁକ୍ତିବାହିନୀ ଓ ସାଧାରଣ ଜନତା ପାଇଁ ଏକ ନୂତନ ଇତିହାସର ଭିତ୍ତିପ୍ରସ୍ତର ସ୍ଥାପନା କରିଛି । ଗୋଟିଏ ସମୟରେ ଏତେ ସଂଖ୍ୟାର ସୈନ୍ୟମାନଙ୍କୁ ମୁକାବିଲା କରି ଯୁଦ୍ଧଜୟୀ ହେବା ସେମାନଙ୍କ ପକ୍ଷରେ କମ୍ ଗୌରବର ବିଷୟ ନୁହେଁ । ବାସ୍ତବିକ ସେମାନଙ୍କର ନିଷ୍ଠା ଓ ଯୁଦ୍ଧଂଦେହି ଜୀବନ ପଣ ପ୍ରଶଂସାର୍ହ । ମାର୍କିନ ସମର ବାହିନୀର ପତନ ପରେ ସେମାନଙ୍କ ମଧ୍ୟରେ ଥିବା ବ୍ୟକ୍ତିଗତ ମତ ପାର୍ଥକ୍ୟ ଓ ପାରସ୍ପରିକ ବିରୋଧୀତା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ମାର୍କିନ ସରକାର ଓ ମାର୍କିନ ସମର୍ଥନରେ ଭିଏତନାମରେ ଅବସ୍ଥିତ ସଖୀକୁଶ୍ନେଇ ସରକାର ମଧ୍ୟରେ ତୀବ୍ର ଦ୍ୱନ୍ଦ୍ୱ ଉପୁଜିଥିଲା । ଏହି ପରାଜୟ ପାଇଁ ସେମାନେ ପରସ୍ପରକୁ ଦାୟୀ କରୁଥିଲେ ।

ଶତ୍ରୁ ଶିବିରରେ ଏତାଦୃଶ ଦ୍ୱନ୍ଦ୍ୱ ଓ ଆଦର୍ଶହୀନତାକୁ ଲକ୍ଷ୍ୟ କରି ମୁକ୍ତି-ସୈନ୍ୟର ସଂଗ୍ରାମୀ ଯୋଦ୍ଧା ଓ ନେତୃବୃନ୍ଦ ନିଜ ନିଜ ଅଞ୍ଚଳରେ ରାଜନୈତିକ ତଥା ସାମରିକ ଭିତ୍ତି ଦୃଢ଼ କରିବାକୁ ସୁଯୋଗ ପାଇଲେ । ଏହି ଅବସରରେ ସଙ୍ଗଠନରେ ସାମରିକ ଶକ୍ତିକୁ ଯଦି ଆଶାଜନକ ରୂପେ ଦୃଢ଼ କରାଯାଇ ପାରନ୍ତା ତେବେ ଶତ୍ରୁ ଶିବିରକୁ ଅତିରେ ଟାଳି ଦେଇ ହୁଅନ୍ତା । ଏହି ଆଶାକୁ ଆଶ୍ରୟ କରି ଦକ୍ଷିଣ ଭିଏତନାମର ଶ୍ରେଷ୍ଠ ବଡ଼ ପ୍ରାପ୍ତ ପ୍ରତ୍ୟେକ ସହରରେ ମାର୍କିନ ବିରୋଧୀ ଅଭିଯାନ ଆରମ୍ଭ ହୋଇଗଲା । ହ୍ୟୁ ଏବଂ ଡା-ନାଙ୍ଗ୍ ଥିଲା ଏହି ଅଭିଯାନର ପ୍ରଧାନ ପୀଠ । ସାଧାରଣ ଜନତା ମାର୍କିନ ସରକାର ଓ ତାର ସମର୍ଥିତ ସଖୀକୁଶ୍ନେଇ ସରକାରକୁ ଦେଶରୁ ମୂଳପୋଛ କରିଦେବା ପାଇଁ ଅଣ୍ଟାଭିଡ଼ି ବାହାରି ଆସିଲେ । ସେମାନଙ୍କର ମୁଖ୍ୟ ଦାବୀ ଥିଲା ମୁକ୍ତି ସୈନ୍ୟ ହାତରେ ଭିଏତନାମର ଶାସନ କ୍ଷମତା ଅର୍ପଣ ଏବଂ ଭିଏତନାମ ଇଲାକାରୁ ମାର୍କିନ ସୈନ୍ୟ ଅପସାରଣ ।

ଜନତାର ଏହି ନ୍ୟାଯ୍ୟୋଚିତ ଦାବୀର ପ୍ରତିଧ୍ୱନି ମିଳିଥିଲା ସେଦିନ ଭିଏତନାମର ପ୍ରତିଟି ମଣିଷର ସ୍ୱରରୁ । ଜନସାଧାରଣର ଏହି ଅବାଧ ଉଦ୍‌ବେଳନ ଦେଖି "ମୁକ୍ତିପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ" ୧୯୬୭ ମସିହା ଅଗଷ୍ଟ ମାସରେ ଏକ ସ୍ୱତନ୍ତ୍ର ଅଧିବେଶନ ଆହ୍ୱାନ କଲା । ମାର୍କିନ ଆକ୍ରମଣକାରୀ-ମାନଙ୍କ ବିରୁଦ୍ଧରେ ଦେଶବ୍ୟାପୀ ଏକ ଦୃଢ଼ ରାଜନୈତିକ ଐକ୍ୟବଦ୍ଧ ପ୍ରତିରୋଧୀ ଗଣ ସଙ୍ଗଠନ ତିଆରି କରାଇବା ଥିଲା ଏହି ସମାବେଶର ମୁଖ୍ୟ ଉଦ୍ଦେଶ୍ୟ । ଜାତୀୟ ମୁକ୍ତି ପାଇଁ ଚାଲିଥିବା ସଂଗ୍ରାମକୁ ଅନ୍ତିମ ବିଜୟ ପର୍ଯ୍ୟନ୍ତ ସମତେଜନରେ ଚାଲୁରଖିବା ପାଇଁ ମୁକ୍ତିସାମ୍ମୁଖ୍ୟ ତରଫରୁ ସର୍ବାତ୍ମକ ନିବେଦନ କରାଗଲା । ରାଜନୈତିକ ପ୍ରସ୍ତାବ ମାଧ୍ୟମରେ ପ୍ରତି ସହର ଓ ଗ୍ରାମୀଣ ସହରମାନଙ୍କରେ ବିଦ୍ରୋହୀ ଅଭ୍ୟୁତ୍ଥାନ ପାଇଁ ସାଧାରଣ ଜନତା ଓ ମୁକ୍ତିବାହିନୀକୁ ସର୍ବଦା ଜାଗ୍ରତ ରଖିବା ପାଇଁ ନିର୍ଦ୍ଦେଶ ଦିଆଗଲା । ସହରମାନଙ୍କରେ ଅପୋରମ୍ଭିକ ଗତିରେ ନୂତନ ଘାଟିମାନ ପ୍ରତିଷ୍ଠା କରି ରାଷ୍ଟ୍ରକ୍ଷମତା ଦଖଲ ପର୍ଯ୍ୟନ୍ତ ମୁକ୍ତି ଅବ୍ୟାହତ ରଖିବା ପାଇଁ ଦଳୀୟ ଆଦେଶ ମିଳିଲା ।

ମୁକ୍ତିସାମ୍ମୁଖ୍ୟ ଓ କମ୍ୟୁନିଷ୍ଟ ପାର୍ଟିର ଏହି ମହାନ୍ ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବା ପାଇଁ ଭିଏତନାମୀ ଜାତି ସେଦିନ ବ୍ରତୀ ବସିଥିଲା ସେପରି । ୧୯୬୮ ମସିହା ଜାନୁଆରୀ ମାସ ୩୧ ତାରିଖର ଏକ ଐତିହାସିକ ନିଶୀଥରେ ଦକ୍ଷିଣ ଭିଏତନାମର ପ୍ରାୟ ଚଉଷଠିଟି ସହର ଏକା ଥରକେ ଜଳି ଉଠିଲା । ଗରିଲା ବାହିନୀର ଦୃପ୍ତ ପଦଧ୍ୱନିରେ ସହର ଏବଂ ସହର ତଳି ଗ୍ରାମମାନଙ୍କରେ ସେଦିନ ନାହିଁ ନ ଥିବା କମ୍ପନ । ସାଧାରଣ ଜନତା, ଶିଶୁ ଓ ବୃଦ୍ଧଙ୍କର ପ୍ରାଣଖୋଲା ହସରେ ସାରା ପଲ୍ଲୀ-ଅଞ୍ଚଳ ମୁଖରିତ । କେତେ ଦିନର ଆକାଂକ୍ଷିତ ସ୍ୱପ୍ନ ଆଜି ଯେପରି ବାସ୍ତବ ଦୁନିଆରେ ଉଦ୍‌ଭାସିତ ! ହ୍ୟୁ' ଏବଂ ପାଖ ଆଖ ଅଞ୍ଚଳକୁ ମୁକ୍ତ କରି ମୁକ୍ତିବାହିନୀ ସେଦିନ ସେଠାରେ ବିପ୍ଳବୀ ସରକାରମାନ ପ୍ରତିଷ୍ଠା କରିଥିଲା । ନିଜର ସଂଗ୍ରାମ ମନର ଦକ୍ଷତା ବଳରେ ସେଦିନ ସେ ରାଷ୍ଟ୍ରକ୍ଷମତା ଛଡ଼ାଇ ଆଣିଥିଲା ବିଦେଶୀ ଶକ୍ତି ହାତରୁ । ଜାତୀୟ ଗଣତାନ୍ତ୍ରିକ ଶାନ୍ତିକାମୀ ଶକ୍ତିମାନଙ୍କର ମିଳିତ ସହଯୋଗ ସଙ୍ଘ ଗଢ଼ି ଉଠିଲା ହ୍ୟୁ' ଏବଂ ସାଇଗନଠାରେ । ଯେଉଁମାନେ ନବ-ପ୍ରତିଷ୍ଠିତ ବିପ୍ଳବୀ ସରକାରକୁ ଅକୁଣ୍ଠ ସମର୍ଥନ ଜଣାଇଲେ, ସେ ସମସ୍ତ ଶକ୍ତି "ଜାତୀୟ ମୁକ୍ତି ପାଇଁ ଐକ୍ୟବଦ୍ଧ ବ୍ୟାପକ ଗଣ ସଙ୍ଗଠନ"ରେ ସାମିଲ ହେଲେ । ମାର୍କିନ୍ ସମରବାଦୀ ଆକ୍ରମଣ ବିରୁଦ୍ଧରେ ଜାତୀୟ ସ୍ତରରେ ଏକ ପ୍ରତିରୋଧୀ ଗଣସଙ୍ଗଠନ ମୁଣ୍ଡ ଟେକିଲା ।

୧୯୬୮ ମସିହାରେ ରାଜ୍ୟବ୍ୟାପୀ ଗଣ ଅଭ୍ୟୁତ୍ଥାନର ସଫଳତା ଦେଖି ଦେଖି "ହ୍ୱାଇଟ ହାଉସ" ଏବଂ "ପେଣ୍ଟାଗନ"ଙ୍କ ଧୈର୍ଯ୍ୟଚ୍ୟୁତି ଘଟିଲା । ମୁଖର ବାସ୍ତବତା

ଯେତେ ଦୁଃଖଦାୟକ ନୁହେଁ ତାର ଚଳଣା ତା' ଠାରୁ ବହୁଗୁଣେ ଭୟଙ୍କର । ଦେଶର ବୃକ୍ଷପଟରେ ଯେଉଁ ରହିଥିବା ବିପ୍ଳବୀ ସରକାରର ଜନଶକ୍ତିକୁ ଦେଖି ସେମାନେ ଆତଙ୍କ ଗଣିଲେ । ସେମାନଙ୍କ ବିଶ୍ୱାସରେ ଅଧିକରୁ ଅଧିକ ପରିମାଣରେ ସୈନ୍ୟ ମୁତୟନ କରାଯାଇ ପାରିଲେ ଭିଏତନାମ ଯୁଦ୍ଧର ଶେଷ ଫଳାଫଳ ସେମାନଙ୍କ ସପକ୍ଷରେ ଯିବ । ତେଣୁ ଯେଉଁ ସ୍ଥାନ ମାନଙ୍କରେ ମୁକ୍ତିବାହିନୀ ପ୍ରବେଶ କରି ପାରି ନ ଥିଲା ସେଠାରେ ମାର୍କିନ ସୈନ୍ୟଙ୍କୁ ନୂତନ ରଣସରଞ୍ଜାମ ସହ ନିଯୁକ୍ତ କରିବେ । କିନ୍ତୁ ସେମାନଙ୍କର ସବୁବେଳେ ଗରିଲା ମାନଙ୍କର ଆକସ୍ମିକ ଆକ୍ରମଣ ପ୍ରତି ଭୟ ରହିଥିଲା ।

ମାର୍କିନ ସରକାରର ଯୁଦ୍ଧ ପ୍ରସ୍ତୁତ ସମସ୍ତ ମଧ୍ୟରେ ଭିଏତନାମ ଜାତୀୟ ମୁକ୍ତି ମୋର୍ଚ୍ଚା ଦେଶର ଏକ ବିରାଟ ଅଞ୍ଚଳକୁ ଅଧିକୃତ କରିପାରି ଥିଲା । ଆଗରୁ କୁହାଯାଇଛି ପାର୍ବତ୍ୟ ଅଞ୍ଚଳ ମାନଙ୍କରେ ସେମାନଙ୍କର ଏକଚାଟିଆ ଅଧିକାର ପୂର୍ବବତ୍ କାୟମ ହୋଇଥିଲା । କେବଳ ମୁଷ୍ଟିମେୟ କେତୋଟି ସହରାଞ୍ଚଳକୁ ସେମାନେ ପ୍ରବେଶ କରି ପାରି ନ ଥିଲେ । ସେ ସ୍ଥାନ ମାନଙ୍କରେ ପ୍ରଥମ ଥର ପାଇଁ ନୂତନ ଘାଟି ଓ ଦୁର୍ଗଙ୍କ ପଥମାନ ନିର୍ମାଣ କରାଗଲା । ମାର୍କିନ ଆକ୍ରମଣକାରୀ ଏବଂ ସେମାନଙ୍କର ଅନୁଚର ସୈନ୍ୟ ମାନଙ୍କୁ ଭିଏତନାମ ମାଟିରେ ଶେଷ ସମାଧି ଦେବା ପାଇଁ ଯେ କୌଣସି ଉପାୟ ଅବଲମ୍ବନ କରାଯାଇ ପାରେ, ସେଥିରେ ଗରିଲା ମାନେ ଅବହେଳା କରୁ ନ ଥିଲେ । ୧୯୬୮ ମସିହାର ଟେଟ୍ ଅଭ୍ୟୁତ୍ଥାନ ପରେ ପରେ ବୈପ୍ଳବିକ ସଂଗ୍ରାମର ଧାରାକୁ ସେମାନେ ପିତୃଭୂମିର ଅତି ଅଗମ୍ୟ ସ୍ଥାନକୁ ବୁହାଇ ନେଇ ପାରିଥିଲେ । ଫଳରେ ଶତ୍ରୁ ସୈନ୍ୟମାନେ ଭିଏତନାମ ମାଟିରେ ଶାନ୍ତିରେ ମୁଣ୍ଡ ଲୁଚ୍ଛିବା ପାଇଁ ନିରାପଦ ସ୍ଥାନ ପାଇଲେ ନାହିଁ । ପ୍ରତିଦିନ ପ୍ରତି ରାତିରେ କୌଣସି ନା କୌଣସି ସ୍ଥାନରେ ଆକ୍ରମଣ ପ୍ରତିଆକ୍ରମଣ ଲାଗି ରହିଲା । ମୁକ୍ତିବାହିନୀ ତୁଳନାରେ ଶତ୍ରୁପକ୍ଷର ଅନେକ ସାମରିକ ଘାଟି ଏପରିକି ସାମରିକ କେନ୍ଦ୍ରସ୍ଥଳ ଅଚଳ ହୋଇ ପଡ଼ିଲା ।

ଏହିପରି ଶିଥିଳ ବିଦ୍ରୋହ ଅନେକ ଦିନ ପର୍ଯ୍ୟନ୍ତ ଲାଗି ରହିଥିଲା । କ୍ରମେ ଏହା ଏକ ନୀତି ଓ ଗତାନୁଗତିକ ଧାରାରେ ପରିଣତ ହେଲା । କ୍ରମାଗତ ଆକ୍ରମଣ ଓ ପ୍ରତିରୋଧର ସଙ୍ଘାତ ଭିତରେ ଉହା ଏକ ଧର୍ମର ରୂପ ନେଇ ଜାତି ଜନତାର ଆଗରେ ଠିଆ ହେଲା । ଜନତାର ତ୍ୟାଗ ଓ ଆତ୍ମୋତ୍ସର୍ଗର ଏହି ଘନ ଘାତ-ନାଳା ସେଦିନ ମୁକ୍ତିବାହିନୀକୁ ଅଧିକ ଦୁର୍ବାର ଓ ଦୁରନ୍ତ କରି ଗଢ଼ି ତୋଳିଲା । ସେମାନେ ଅଜ ଅଜେୟ, ଅପରାଜିତ ।

୧୯୬୮ ଶେଷଭାଗ ବେଳକୁ ଭିଏତନାମ ଜାତୀୟ ମୁକ୍ତି ସାମ୍ମୁଖ୍ୟ ଏକ ସ୍ୱୟଂ ସମ୍ପୂର୍ଣ୍ଣ ସାମରିକ ବାହିନୀରେ ପରିଣତ ହୋଇ ସାରିଛି । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଯେ କୌଣସି ଆକ୍ରମଣକୁ ମୁକାବିଲା କରିବା ପାଇଁ ସେମାନେ ସମର୍ଥ । ସେମାନେ ଶତ୍ରୁବାହିନୀର ୬୩୦,୦୦୦ ଜଣ ଲଢୁଆ ସୈନ୍ୟଙ୍କୁ ଅକର୍ମଣ୍ୟ କରି ପ୍ରମାଣିତ କରିଛନ୍ତି ଯେ ଆହୁ ଯେତେ ଅଧିକ ପରିମାଣରେ ସୈନ୍ୟ ସେମାନଙ୍କ ବିରୁଦ୍ଧରେ ମୁତୟନ କରାଗଲେ ମଧ୍ୟ ସେମାନେ ତାହା ଖାତିର କରନ୍ତି ନାହିଁ । ଅସୀମ ସାହସ ଓ ଦେଶପ୍ରୀତିର ଐକାନ୍ତିକ ନିଷ୍ଠା ନେଇ ସେମାନେ ସଂଗ୍ରାମ କରନ୍ତି ।

୧୯୬୯ ମସିହାର ପ୍ରଥମ ଛ'ମାସ ମଧ୍ୟରେ ପେଣ୍ଟାଗନ ତଥା ତାର ଅନୁଚର ବିଦେଶୀ ରାଷ୍ଟ୍ରର ପ୍ରାୟ ୧୪୫,୦୦୦ଟି ସୈନ୍ୟ ଦଳ ମୁକ୍ତି ସାମ୍ମୁଖ୍ୟ ହାତରେ ବନ୍ଦୀ ହେଲେ । ୩୩୨,୦୦୦ ଶତ୍ରୁ ସୈନ୍ୟ ଗରିଲାମାନଙ୍କର ଅତର୍କିତ ଆକ୍ରମଣ ଫଳରେ ଅଚଳ ହୋଇ ପଡ଼ିଲେ । ଦକ୍ଷିଣ ଭିଏତନାମର କାଠପୁତୁଳି ସରକାର ଅଧୀନରେ ଥିବା ୬୩୦,୦୦୦ ପଦାତିକବାହିନୀ ମୁକାବିଲା ଅବସ୍ଥାରେ ଗରିଲା ବାହିନୀର ନଜର ବନ୍ଦୀରେ ରହିଲେ । ଏହିପରି ଭାବେ ମାର୍କିନ ଏବଂ ତାର ସମର୍ଥିତ ସେନାବାହିନୀର ଅର୍ଦ୍ଧେକରୁ ଅଧିକ ସୈନ୍ୟବଳ, ଅଚଳ ପଙ୍ଗୁ ହୋଇ ରହିଲେ । ଫଳରେ ଶତ୍ରୁପକ୍ଷ ମୁକ୍ତିବାହିନୀ ସହ ସାମରିକ ସ୍ତରରେ ସାମ୍ନା କରି ପାରିଲା ନାହିଁ । ବିପରୀତ ଦିଗରେ ଗରିଲା ବାହିନୀର ସାମର୍ଥ୍ୟ ଓ କାର୍ଯ୍ୟକୁଶଳତା ଦିନକୁ ଦିନ ବଢ଼ି ଚାଲିଥିଲା ।

ନିଶ୍ଚିତ ପରାଜୟର ପୂର୍ବାଭାସ ଦେଖି ମାର୍କିନ ଯୁକ୍ତରାଷ୍ଟ୍ରର ସରକାର କିଛି ସମୟ ପାଇଁ ଭିଏତନାମରେ ଯୁଦ୍ଧ ବନ୍ଦ କରିବା ପାଇଁ ବାଧ୍ୟ ହେଲେ । ସେମାନଙ୍କର ନିବେଦନ କ୍ରମେ ୧୯୬୯ ମସିହା ଜାନୁୟାରୀ ମାସରେ ପ୍ୟାରିସ ଠାରେ ଚତୁଃପାକ୍ଷିକ ସମ୍ମିଳନୀ ବସିଲା । ଏହି ସମ୍ମିଳନୀ ପାଇଁ ମାର୍କିନ ଯୁକ୍ତରାଷ୍ଟ୍ରର ସରକାରୀ ପ୍ରତିନିଧି "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ"ର ପ୍ରତିନିଧି ମାନଙ୍କ ସହିତ ଯୁଦ୍ଧ ବିରତି ପ୍ରସ୍ତାବ ନେଇ ଆଲୋଚନା କରି ସାରିଥିଲେ । ତା ପରଠାରୁ ଦକ୍ଷିଣ ଭିଏତନାମର ମୁକ୍ତି ସଂଗ୍ରାମ ନୂତନ ଦିଗ ଆଡ଼େ ମୁହାଁଇଲା । ଏହି ପରିବର୍ତ୍ତିତ ଗଣ ଯୁଦ୍ଧର ଚରିତ୍ର ନୂତନ ରାଜନୈତିକ ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲା । ଆଗରୁ ମୁକ୍ତି ସାମ୍ମୁଖ୍ୟ ବିଦ୍ରୋହୀ ଅଭ୍ୟୁତ୍ଥାନ ଉପରେ ଗୁରୁତ୍ୱ ଆରୋପ କରି ସଂଗ୍ରାମର କାର୍ଯ୍ୟ ତତ୍ପରତାକୁ ସାମରିକ ବିଜୟ ମଧ୍ୟରେ ସୀମାବଦ୍ଧ ରଖିଥିଲା । କିନ୍ତୁ ବର୍ତ୍ତମାନ ତାହା ସାମରିକ ବିଜୟର ସ୍ତର ଅତିକ୍ରମ କରି ଭିଏତନାମର ସର୍ବାତ୍ମକ ଅଭ୍ୟୁଦୟ ପାଇଁ ପଥ ପରିଷ୍କାର କରିଦେଲା । ଭିଏତନାମରେ ପ୍ରଥମ କରି

ଏକ ରାଜନୈତିକ ମୋର୍ଚ୍ଚା ଗଠନ କରାଗଲା । ଯାହାକୁ କେନ୍ଦ୍ର କରି ମୁକ୍ତି ସାମ୍ମୁଖ୍ୟର ଯୋଦ୍ଧାମାନେ ସେମାନଙ୍କର ବୈପ୍ଳବିକ ଅଭିଯାନ ଆରମ୍ଭ କରିଦେଲେ । ସେହିଦିନଠାରୁ ଦକ୍ଷିଣ ଭିଏତନାମର ଗାଁମାନ କଡ଼େ କଡ଼େ ପ୍ରତିଦିନ କିଛି ନା କିଛି ଆକ୍ରମଣ ଲାଗି ରହିଲା । ଶତ୍ରୁପକ୍ଷ ଜଗି ରହିଥିବା ପ୍ରଧାନ ପ୍ରଧାନ ଘାଟି ମାନଙ୍କରେ ଗେରିଲା ମାନଙ୍କର ଆକସ୍ମିକ ଆକ୍ରମଣ ଯୋଗୁଁ ବିଦେଶୀ ସୈନ୍ୟମାନେ ନିଜକୁ ପ୍ରସ୍ତୁତ ରଖି ପାରୁ ନ ଥିଲେ । ବାଧ୍ୟ ହୋଇ ସେମାନେ ମୁକ୍ତିବାହିନୀ ନିକଟରେ ଆତ୍ମସମର୍ପଣ କରୁଥିଲେ । ମୁକ୍ତି ସାମ୍ମୁଖ୍ୟ ଦ୍ୱାରା ମୁକ୍ତ ହେଉଥିବା ଅଞ୍ଚଳର ପରିସୀମା କ୍ରମଶଃ ବୃଦ୍ଧି ପାଇଲା । ବଣ ପାହାଡ଼ଘେରା ପଥୁରିଆ ଅଞ୍ଚଳ ଅତିକ୍ରମ କରି ଗେରିଲାମାନେ ସମତଳ ତ୍ରିକୋଣ ଭୂମିରେ ପହଞ୍ଚିଲେ । ନୀଳ ଆକାଶ ତଳେ ସୁନ୍ଦର ଭିଏତନାମର ମୁକ୍ତ ଧରଣୀ ଆଜି ସେମାନଙ୍କର । କେବଳ ଗାଁ କାହିଁକି ନିର୍ଭୀକ ଭାବେ ବଡ଼ ବଡ଼ ସହର ମାନଙ୍କରେ ସେମାନେ ପ୍ରବେଶ କଲେ । ଗ୍ରାମ୍ୟ ସ୍ତରରୁ ଆରମ୍ଭ କରି ଜିଲ୍ଲା ଓ ପ୍ରାଦେଶିକ ସ୍ତରରେ ମୁକ୍ତି ସାମ୍ମୁଖ୍ୟର ଗଣ ଶାସନ ପ୍ରତିଷ୍ଠିତ ହେଲା ।

୧୯୬୯ ମସିହା ଜୁନ ମାସ ଛଅ ତାରିଖର ଏହି ସ୍ମରଣୀୟ ସନ୍ଧ୍ୟା । "ଭିଏତନାମ ଜାତୀୟ, ଗଣତାନ୍ତ୍ରିକ ଓ ଶାନ୍ତିବାଦୀ ସହଯୋଗ ସଂସ୍ଥା", "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ" ଏବଂ ଦେଶ ଭିତରେ ଥିବା ଅନ୍ୟାନ୍ୟ ଦେଶପ୍ରେମୀ ଓ ଗଣତନ୍ତ୍ରବାଦୀ ଶକ୍ତି ମାନଙ୍କର ମିଳିତ ଆବେଦନ କ୍ରମେ ଦକ୍ଷିଣ ଭିଏତନାମର ଗଣ ପ୍ରତିନିଧି ମାନଙ୍କୁ ନେଇ ଏକ ସାଧାରଣ ସମ୍ମିଳନୀ ଆହ୍ୱାନ କରାଗଲା । ଏହି ପ୍ରକାଶ୍ୟ ସମ୍ମିଳନୀରେ ସମବେତ ସଦସ୍ୟ ଓ ପ୍ରତିନିଧି ମାନଙ୍କର ସର୍ବସମ୍ମତ ପ୍ରସ୍ତାବ ଓ ଅନୁମୋଦନ କ୍ରମେ ଦକ୍ଷିଣ ଭିଏତନାମ ପାଇଁ ଏକ ଅସ୍ଥାୟୀ ସରକାର ଗଠନ କରାଗଲା ଏବଂ ସରକାରକୁ ସବୁ ସମୟରେ ନୈତିକ ଓ ପ୍ରଶାସନିକ ସାହାଯ୍ୟ ଦେବା ପାଇଁ ଏକ "ସ୍ୱତନ୍ତ୍ର ପରାମର୍ଶଦାତା କମିଟି" ପ୍ରସ୍ତୁତ ହେଲା । ୧୯୬୫ ମସିହା ପରଠାରୁ ୧୯୬୯ ପର୍ଯ୍ୟନ୍ତ ମାର୍କିନ ସମରବାଦୀ ଆକ୍ରମଣ ବିରୁଦ୍ଧରେ ମୁକ୍ତି-ସାମ୍ମୁଖ୍ୟ ବହୁବାର ବିଜୟୀ ହୋଇଥିଲେ ମଧ୍ୟ ତାହା କେବେ ପ୍ରକାଶ୍ୟ ରୂପ ନେଇ ନ ଥିଲା । ଗ୍ରାମ ଓ ସହର ସ୍ତରରେ ଅସ୍ଥାୟୀ ବିପ୍ଳବୀ ସରକାର ଗଠନ ହେଲା ପରେ ସମଗ୍ର ଭିଏତନାମ ପରାଧୀନତା କବଳରୁ ମୁକ୍ତ ହେଲା ବୋଲି ସର୍ବସାଧାରଣରେ ଅନୁଭୂତ ହେଲା । ପ୍ରକୃତରେ ମୁକ୍ତ ଭିଏତନାମରେ ଜାତୀୟ ଗଣବାଦୀ ଶାସନ ପ୍ରତିଷ୍ଠା ହୋଇ ପାରିଛି ବୋଲି ସାଧାରଣ ନାଗରିକଙ୍କର ହୃଦବୋଧ ହେଲା । ଶତାବ୍ଦୀ ଶତାବ୍ଦୀ ତଳର ଦାସତ୍ୱରୁ ସେମାନେ ରକ୍ଷା ପାଇଲେ । ଭିଏତନାମରେ ସ୍ୱାଧୀନତା ଓ ମୁକ୍ତିର ନୂତନ ପୃଥିବୀ ଜନ୍ମ ନେଲା ।

ଜନସାଧାରଣଙ୍କ ପାଖରେ ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ'ର ବୈପ୍ଳବିକ କାର୍ଯ୍ୟାବଳୀ ଓ ଅସ୍ଥାୟୀ ସରକାରଙ୍କର ସ୍ୱାଧୀନ ଶାସନ ବ୍ୟବସ୍ଥାକୁ କେନ୍ଦ୍ରୀଭୂତ କରାଇବା ଉଦ୍ଦେଶ୍ୟରେ ମୁକ୍ତ ଅଞ୍ଚଳ ମାନଙ୍କରେ ଜନତାର ଗଣତାନ୍ତ୍ରିକ ଅଧିକାର ସାବ୍ୟସ୍ତ ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳେ ପ୍ରାୟ ସମଗ୍ର ଜନତା ଉତ୍କଟ ଦାରିଦ୍ର୍ୟର ସୀମାରେଖା ତଳେ ଜୀବନ ନିର୍ବାହ କରୁଥାନ୍ତି । ଉପନିବେଶୀ ଶୋଷିତ ଅର୍ଥନୀତିରେ ସେମାନଙ୍କର କୌଣସି ଭାଗ ନ ଥାଏ । ସେମାନଙ୍କର ଜୀବନ ନିର୍ବାହର ମାନକୁ ଉନ୍ନତ କରିବା ପାଇଁ ପ୍ରଥମେ କୃଷି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଗଲା । ସଘନ ଚାଷ ପ୍ରଣାଳୀ ଯୋଗୁଁ କୃଷକମାନଙ୍କର ଆର୍ଥିକ ମାନ ବୃଦ୍ଧି ପାଇଲା ଏବଂ ପରବର୍ତ୍ତୀ ସମୟରେ ଦୈନିକ ମଜୁରିପ୍ରାପ୍ତ କୃଷି ଶ୍ରମିକମାନେ 'ଲଙ୍ଗଳ ଯାର ଜମି ତାର' ଆନ୍ଦୋଳନରେ ଯୋଗ-ଦେଲେ । ଦେଶୀୟ ଜମିଦାର, କୁଲକ ଓ ଅମାତ୍ୟ ବର୍ଗ ବିରୁଦ୍ଧରେ ସେମାନଙ୍କର ନ୍ୟାଯ୍ୟୋଚିତ ଦାବୀର ବିଜୟ ଘଟିଲା ଏବଂ ଅର୍ଦ୍ଧାଧିକ ଭିଏତନାମୀ କୃଷକ ମଜଦୂର, ଜମିଦାର ଶ୍ରେଣୀ ହାତରୁ ଉଦ୍‌ବୃତ୍ତ ଜମି ଛଡ଼ାଇ ଆଣି ନିଜ ନିଜ ଭିତରେ ବାଣ୍ଟି ନେଲେ । ଶିକ୍ଷା, ସଂସ୍କୃତି, କୁଟୀର ଶିଳ୍ପ ଓ ଗ୍ରାମୋଦ୍ୟୋଗ ମାନଙ୍କରେ ଅଦ୍ଭୁତପୂର୍ବ ବୈପ୍ଳବିକ ପରିବର୍ତ୍ତନମାନ ଘଟିଲା । ଉନ୍ନତ ଚିକିତ୍ସା ବ୍ୟବସ୍ଥା ଯୋଗୁଁ ସାଧାରଣ ସ୍ୱାସ୍ଥ୍ୟରେ ଉନ୍ନତି ଦେଖାଗଲା । ଅସ୍ଥାୟୀ ବିପ୍ଳବୀ ସରକାର ଅଧୀନରେ ଥିବା ମୁକ୍ତାଞ୍ଚଳ ମାନଙ୍କରେ ବାସ କରୁଥିବା ବାସିନ୍ଦା ମାନଙ୍କୁ ଦେଖି ଉପନିବେଶୀ ଶୋଷଣ ଜର୍ଜରିତ ପରାଧୀନ ଅଞ୍ଚଳର ଅଧିବାସୀମାନେ ଈର୍ଷାପରାୟଣ ହୋଇ ଉଠିବା ସ୍ୱାଭାବିକ । ସେମାନେ ପଡ଼ୋଶୀ ମାନଙ୍କ ପରି ସମପରିମାଣରେ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ କରିବା ନିମନ୍ତେ ବ୍ୟାକୁଳ ହୋଇ ପଡ଼ିଲେ । ପ୍ରଜାତନ୍ତ୍ର ଶାସନ ବ୍ୟବସ୍ଥା ନିୟନ୍ତ୍ରିତ ଜନଜୀବନ ଓ ମାର୍କିନ ଉପନିବେଶବାଦୀ ଶୋଷଣ ଯନ୍ତ୍ରରେ ପୀଡ଼ିତ ସମାଜ ବ୍ୟବସ୍ଥା ମଧ୍ୟରେ ଏକ ବିରାଟ ବ୍ୟବଧାନ ଦେଖାଗଲା । ଫଳରେ ପରାଧୀନ ଅଞ୍ଚଳ ମାନଙ୍କରେ ଦୁର୍ବିଷହ ଜୀବନ ନେଇ ବଞ୍ଚିଥିବା ଭିଏତନାମୀ ବିଦ୍ରୋହ କରି ଉଠିଲେ । ସେମାନେ ମଧ୍ୟ ଅନ୍ୟମାନଙ୍କ ପରି ମୁକ୍ତ ଓ ସୁଖୀ ଜୀବନ ଆଶା କରନ୍ତି ।

ଯେଉଁ ଅଞ୍ଚଳମାନଙ୍କରେ ମାର୍କିନ ଉପନିବେଶବାଦର ଶେଷ ପାଉଁଶ ଟିକିକ ଲାଗି ରହିଲା ସେଠାରେ ଦେଖାଗଲା ନିତ୍ୟ ବିଦ୍ରୋହ, ଦଙ୍ଗା ହାଙ୍ଗାମା ଓ ମୃତ୍ୟୁର ଅଶାନ୍ତ ବାୟୁମଣ୍ଡଳ । ଏହାହିଁ ଇତିହାସର ଧାରା । ଏହାର ଗତିକୁ ଦୁନିଆର କୌଣସି ଶକ୍ତି ରୋଧ କରି ପାରିବ ନାହିଁ । ସମଗ୍ର ଭିଏତନାମରେ ମୁକ୍ତି ବିପ୍ଳବର ନିଆଁ ଜଳି ଉଠିଲା । କି ସ୍ୱାଧୀନ, କି ପରାଧୀନ ସବୁରି ତୁଣ୍ଡରେ ମାର୍କିନ ଉପନିବେଶବାଦ ବିରୋଧୀ ଦୁଆ ।

ଜନନେତା ହୋ' ଜନତାର ସ୍ୱତଃସ୍ଫୂର୍ତ୍ତି ସଂଗ୍ରାମପ୍ରବଣତା ଲକ୍ଷ୍ୟ କରି ଦିନେ କହିଥିଲେ,

“ଏହା ସ୍ପଷ୍ଟ ଯେ ମାର୍କିନ ସାମ୍ରାଜ୍ୟବାଦୀମାନେ ଚରମ ପରାଜୟର ସମ୍ମୁଖୀନ। କିନ୍ତୁ ସେମାନେ ଆମ ଦକ୍ଷିଣକୁ କବଳିତ କରିବାର ଦୁରଭିସନ୍ଧି ଏ ଯାଏ ପରିତ୍ୟାଗ କରି ନାହାନ୍ତି। ଆମର କୋଟି କୋଟି ଜନତା ଓ ସେମାନଙ୍କର ସାମରିକ ବଳ ଯଦି ଗୋଟିଏ ବ୍ୟକ୍ତିର ଏକତ୍ର ହୋଇ, ବୈପ୍ଳବିକ ସାହସିକତାକୁ ମୂଳମନ୍ତ୍ର କରି, କୌଣସି ତ୍ୟାଗ ବା କଷ୍ଟକୁ ଭ୍ରୂକ୍ଷେପ ନ କରି ଶତ୍ରୁକୁ ପ୍ରତିରୋଧ କରିବା ପାଇଁ ଦୃଢ଼ ହୁଏ ଏବଂ ଅନ୍ତିମ ମୁକ୍ତିରେ ବିଜୟୀ ହେବା ଲକ୍ଷ୍ୟ ରଖି ସଂଗ୍ରାମ ଚାଲୁ ରଖେ ତେବେ ସାମ୍ରାଜ୍ୟବାଦୀମାନଙ୍କର କାଠପୁତଳି ସାମରିକ ବାହିନୀ ଓ ତାର ଶାସନ ବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବେ ଫେଲ ହେବ। ଦକ୍ଷିଣ ଭିଏତନାମ ମୁକ୍ତ ହେବ, ଉତ୍ତର ଖଣ୍ଡର ସ୍ୱାଧୀନତା ଚିରନ୍ତନ ହେବ ଏବଂ ସର୍ବୋପରି ଶାନ୍ତିପୂର୍ଣ୍ଣ ଏକତ୍ରୀକରଣର ଆଶା ଉଜ୍ଜ୍ୱଳ ହୋଇ ଉଠିବ”।

ସେତେବେଳର ସମୟ ହେଉଛି ୧୯୬୯ ମସିହା ଜୁଲାଇ ମାସ ୨୦ ତାରିଖ। ପୂର୍ଣ୍ଣ ସ୍ୱାଧୀନତାର ମନ୍ଦିର ପ୍ରବେଶ ପାଇଁ ସମଗ୍ର ଜାତି ଦ୍ୱାର ଦେଶରେ ଦଣ୍ଡାୟମାନ। ଭିଏତନାମର ଦୁଇ ପଟରେ ମୁକ୍ତିର ଅଲିଭା ମଶାଲ ଜଳି ଉଠିଛି। ଉନ୍ମାଦ ତାଳରେ ମୁକ୍ତିବାହିନୀର ଗରିଲାମାନେ ପଦଚାରଣ କରୁଛନ୍ତି। ଜୀବନର ପ୍ରାନ୍ତ-ମଞ୍ଚରେ ସ୍ୱାଧୀନତାର ସ୍ୱାଦ ଚାଖିବା ପାଇଁ କେତେ ବ୍ୟାକୁଳତା ସତେ !! ମୁହୂର୍ତ୍ତେ ମାତ୍ର ବିଶ୍ରାମ ନାହିଁ। ଚାରି ପଟରୁ ପ୍ରଚଣ୍ଡ ଆକ୍ରମଣ, ଗୁଳିବର୍ଷଣ ଚାଲିଛି ଶତ୍ରୁ ଶିବିର ଉପରେ। ସାମରିକ, ରାଜନୈତିକ ଏବଂ କୂଟନୈତିକ ସବୁ ଦିଗରୁ ସେମାନେ ବର୍ତ୍ତମାନ ସ୍ୱୟଂସମ୍ପୂର୍ଣ୍ଣ।

ମାର୍କିନ ଯୁକ୍ତରାଷ୍ଟ୍ର ଉଭୟ ପଟରୁ ପରାଭବ ପାଇସାରିଛି। ଗରିଲା ସୈନ୍ୟ ଶିବିରରୁ ମୁକ୍ତିର ବାଟ ଆଉ ଦିଶୁ ନାହିଁ। ଅନୁଚର ରାଷ୍ଟ୍ରମାନଙ୍କଠାରୁ ଧାର ଦୂରରେ ଆଣିଥିବା ସାମରିକ ବଳ ଉପରେ ଆଉ ବିଶ୍ୱାସ ନାହିଁ ତାର। ସେ ସମସ୍ତେ ତାକୁ ଯୁଦ୍ଧ ଭୂମିରେ ଧୋକ୍କା ଦେଇ ସାରିଛନ୍ତି। ଭିଏତନାମରେ ଉପନିବେଶ ପ୍ରତିଷ୍ଠା ପାଇଁ ଚାଲିଥିବା ଯୁଦ୍ଧକୁ “ଭିଏତନାମୀ କରଣ” କରିବାର ଚାଲ ଖେଳି ସେ ଯେଉଁ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି ସେଥିରୁ ନିସ୍ତାରର ପଥ ନାହିଁ। ତାର ସମସ୍ତ ଯୁଦ୍ଧ ନୀତି ବିଫଳତାର ଅତଳ ଗର୍ଭରେ ଲୀନ ହୋଇ ଯାଇଛି। ବିଶ୍ୱରାଜନୀତିରେ ତାର ସ୍ଥାନ ବହୁ ନିମ୍ନକୁ ଖସି ଆସିଛି। ସେ ସେଥିରୁ ସାମୟିକ ବିରତି ଚାହେଁ। କିନ୍ତୁ ଭିଏତନାମର କ୍ରୋଧ, ପ୍ରତିଶୋଧ ପରାୟଣ ଜନତା ତାର ହୃଦ୍‌ରକ୍ତ ପାଇଁ ପାଗଳ। ସେମାନେ ଏହି ଭିଏତନାମ ମାଟିରେ ହିଁ ମାର୍କିନ

ସମରବାଦୀ ଶାସନ ବ୍ୟବସ୍ଥାର କବର ଖୋଳିବାକୁ ଚାହାଁନ୍ତି । ପେଣ୍ଟାଗନ ଫେରି-ଯିବାର ରାସ୍ତା ବହୁତ ଦୂରରେ ।

ଠିକ୍ ଏହି ସନ୍ଧିକ୍ଷଣରେ ଉତ୍ତର ଭିଏତନାମର ଗଣତାନ୍ତ୍ରିକ ସାଧାରଣତନ୍ତ୍ର ସରକାର ତରଫରୁ ଚାରିଦଫା ସମ୍ବଳିତ ଦାବୀପତ୍ର ସାଧାରଣର ଅବଗତି ପାଇଁ ପ୍ରକାଶ ପାଇଲା ଯେଉଁଥିରେ ମାର୍କିନ ସରକାରଙ୍କୁ ଭିଏତନାମ ଛାଡ଼ିଯିବା ପାଇଁ ଏବଂ ଭିଏତନାମ ସମସ୍ୟାରେ ବିଦେଶୀ ହସ୍ତକ୍ଷେପ ବନ୍ଦ କରିବା ପାଇଁ ଏକ ଧମକପୂର୍ଣ୍ଣ ଆଦେଶ ଦିଆଯାଇଥିଲା । ସେହି ଚାରିଦଫା ସମ୍ବଳିତ ଦାବୀପତ୍ର ହେଲା :—

(୧) ଶାନ୍ତି, ସ୍ୱାଧୀନତା, ସାର୍ବଭୌମତ୍ୱ, ଏକତା ଏବଂ ଆଞ୍ଚଳିକ ଅଖଣ୍ଡତା ଆଦି ଭିଏତନାମୀ ଜନତାର ମୌଳିକ ଜାତୀୟ ଅଧିକାର ଗୁଡ଼ିକୁ ସ୍ୱୀକାର କରାଯିବ ।

(୨) ଭିଏତନାମ ଏକତ୍ରୀକରଣ ପୂର୍ବରୁ ୧୯୫୪ ମସିହାରେ ସ୍ୱାକ୍ଷରିତ ହୋଇଥିବା ଜେନେଭା ଚୁକ୍ତିକୁ ଅତି କଡ଼ାକଡ଼ି ଭାବେ ପାଳନ କରାଯିବ ।

(୩) ଦକ୍ଷିଣ ଭିଏତନାମର ଆଭ୍ୟନ୍ତରୀଣ ସମସ୍ୟାବଳୀର ସମାଧାନ ଭିଏତନାମର ସାଧାରଣ ନାଗରିକମାନେ ସ୍ଥିର କରିବେ ।

(୪) ଦୁଇ ଭିଏତନାମ ମଧ୍ୟରେ ଶାନ୍ତିପୂର୍ଣ୍ଣ ଏକତ୍ରୀକରଣ ଦୁଇ ପଟର ଅଧିବାସୀ ମାନଙ୍କ ଦ୍ୱାରା ସମାହିତ ହେବ ।

ଉତ୍ତର ଭିଏତନାମର ସରକାର ତରଫରୁ ଉକ୍ତ ଦାବୀପତ୍ର ପ୍ରକାଶ ପାଇବା ପରେ ପରେ ଦକ୍ଷିଣର ଅସ୍ଥାୟୀ ବିପ୍ଳବୀ ସରକାର ଏବଂ "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ"ର ମିଳିତ ସ୍ୱାକ୍ଷରରେ ଆଉ ଏକ ଦଶ ଦଫା ଦାବୀ-ପତ୍ର ମାର୍କିନ ସରକାରର ଭିଏତନାମୀ ପ୍ରତିନିଧି ମାନଙ୍କ ହାତରେ ଦିଆଗଲା ଯେଉଁଥିରେ କି ଭିଏତନାମ ମୁକ୍ତି ସଂଗ୍ରାମଠାରୁ ଆରମ୍ଭ କରି ଦୁଇ ଭିଏତନାମର ମିଶ୍ରଣ ପର୍ଯ୍ୟନ୍ତ ଏକ ଧାରାବାହିକ ସର୍ତ୍ତାବଳୀର ସ୍ପଷ୍ଟ ଉଲ୍ଲେଖ କରାଯାଇଥିଲା । ସେଗୁଡ଼ିକ ହେଉଛି—

(୧) ଭିଏତନାମ ଜନତାର ମୌଳିକ ଜାତୀୟ ଅଧିକାର ପ୍ରତି ସମ୍ମାନ ପ୍ରଦର୍ଶନ କରାଯିବ ।

(୨) ଦକ୍ଷିଣ ଭିଏତନାମରେ ଯୁଦ୍ଧ ପ୍ରାରମ୍ଭରୁ ମାର୍କିନ ଯୁକ୍ତରାଷ୍ଟ୍ର ତାର ଏବଂ ଅନୁସଙ୍ଗୀ ସାମରିକ ମେଣ୍ଟର ସାହାଯ୍ୟ କ୍ରମେ ଯେତେ ସୈନ୍ୟବଳ, ଯୁଦ୍ଧସାମଗ୍ରୀ ଏବଂ ମାରଣାସ୍ତ୍ର ଆଣି ଠୁଳ କରିଛି ସେ ସବୁ ବିନା ସର୍ତ୍ତରେ ଯଥା ଶୀଘ୍ର ଅପସାରଣ କରାଯିବ ।

(୩) ପିତୃଭୂମିର ସୁରକ୍ଷା ପାଇଁ ପ୍ରତିରକ୍ଷା ବିଭାଗକୁ ଦୃଢ଼ କରିବା ଦିଗରେ ଭିଏତନାମୀମାନଙ୍କର ସମ୍ପୂର୍ଣ୍ଣ ଅଧିକାର ରହିଛି । ଆତ୍ମରକ୍ଷାର ଏହା ଏକ ମୌଳିକ ଦାବୀ । ଭିଏତନାମ ସାମରିକ ବିଭାଗର ପ୍ରତ୍ୟେକ ସମସ୍ୟା ଦକ୍ଷିଣ ଭିଏତନାମ ପ୍ରତିନିଧିଦଳମାନଙ୍କ ଦ୍ୱାରା ହିଁ ସମାହିତ ହେବ ।

(୪) ଦକ୍ଷିଣ ଭିଏତନାମର ଆଭ୍ୟନ୍ତରୀଣ ବ୍ୟାପାରରେ ବିଦେଶୀ ହସ୍ତକ୍ଷେପ ରହିବ ନାହିଁ । ଦେଶୀୟ ଜନତା ନିଜ ସମସ୍ୟାର ସମାଧାନ କରିବେ ।

(୫) ଶାନ୍ତି ପ୍ରତିଷ୍ଠା ଓ ସାଧାରଣ ନିର୍ବାଚନ ଅନ୍ତଃବର୍ତ୍ତୀ ସମୟ ମଧ୍ୟରେ କୌଣସି ପକ୍ଷ ଦକ୍ଷିଣ ଭିଏତନାମକୁ ନିଜ ପ୍ରଭାବର ଅଧୀନରେ ରହିବା ପାଇଁ ବାଧ୍ୟ କରିବେ ନାହିଁ ।

(୬) ଦକ୍ଷିଣ ଭିଏତନାମ ଶାନ୍ତି ଓ ନିରପେକ୍ଷ ବୈଦେଶିକ ନୀତି ଅନୁସରଣ କରିବ ।

(୭) ବିଭିନ୍ନ ପର୍ଯ୍ୟାୟ ଦେଇ ଶାନ୍ତିପୂର୍ଣ୍ଣ ଉପାୟରେ ଦୁଇ ଭିଏତନାମର ଏକତ୍ରୀକରଣ ଘଟିବ । କୌଣସି ବିଦେଶୀ ଶକ୍ତିର ସାହାଯ୍ୟ ନ ନେଇ ଦୁଇ ଭିଏତନାମ ପାରସ୍ପରିକ ଆଲୋଚନା ଓ ସଂହତି ମାଧ୍ୟମରେ ଏହି ସମସ୍ୟା ସମାଧାନ କରିବେ ।

(୮) ଉତ୍ତର ଏବଂ ଦକ୍ଷିଣ ଦୁଇ ଭିଏତନାମ ନିଜ ଭିତରେ ସଂକଳ୍ପବଦ୍ଧ ହେବା ଉଚିତ୍ ଯେ ସେମାନେ କୌଣସି ବିଦେଶୀ ଶକ୍ତିର ସାମରିକ ମେଣ୍ଟ ମଧ୍ୟରେ ପ୍ରବେଶ କରିବେ ନାହିଁ କିମ୍ବା କୌଣସି ବୈଦେଶିକ ଶକ୍ତିକୁ ନିଜ ଦେଶରେ ସାମରିକ ଘାଟୀ ପ୍ରତିଷ୍ଠା କରାଇ ଦେବେ ନାହିଁ । କୌଣସି ବିଦେଶୀ ରାଷ୍ଟ୍ରର ସୈନ୍ୟ ଦଳ ବା ସାମରିକ ବ୍ୟକ୍ତି ଭିଏତନାମରେ ରହି ପାରିବେ ନାହିଁ । ଅନ୍ୟ ପକ୍ଷରେ ଦୁଇ ଭିଏତନାମ କୌଣସି ବୈଦେଶିକ ରାଷ୍ଟ୍ରର ସାମରିକ ମେଣ୍ଟ ବା ଶିବିରର ସାହାଯ୍ୟ ପ୍ରାର୍ଥୀ ହେବେ ନାହିଁ ।

(୯) (କ) ଯୁଦ୍ଧ ବନ୍ଦୀମାନଙ୍କୁ ମୁକ୍ତ କରିବା ଦିଗରେ ଉଭୟ ପକ୍ଷ ସମ୍ମିଳିତ ପଦକ୍ଷେପ ଗ୍ରହଣ କରିବେ ।

(ଖ) ଭିଏତନାମ ଯୁଦ୍ଧରେ ମାର୍କିନ ଯୁକ୍ତରାଷ୍ଟ୍ରର ସାମରିକ ବାହିନୀ ଦ୍ୱାରା ଭିଏତନାମ ଯେଉଁ ପ୍ରକାର କ୍ଷତିର ସମ୍ମୁଖୀନ ହୋଇଛି ସେ ସବୁ କ୍ଷତି ପୂରଣ ଯୁକ୍ତରାଷ୍ଟ୍ର ସରକାର ଦେବାକୁ ବାଧ୍ୟ ହେବ ।

(୧୦) ଦକ୍ଷିଣ ଭିଏତନାମ ମାଟିରୁ ଯୁକ୍ତରାଷ୍ଟ୍ରର ସାମରିକ ଦଳ, ସୈନ୍ୟ ବାହିନୀ, ଯୁଦ୍ଧ ବିଶାରଦ ଏବଂ ସର୍ବୋପରି ବହୁଳ ପରିମାଣରେ ଯୁଦ୍ଧ ସାମଗ୍ରୀର

ଅପସାରଣ ପାଇଁ ଆନ୍ତର୍ଜାତିକ ସ୍ତରରେ ଏକ ପରିଚାଳନା କମିଟି ରହିବ ଯାହାର ନିର୍ଦ୍ଦେଶ ମାନିବା ପାଇଁ ଉଭୟପକ୍ଷ ବାଧ୍ୟ ହେବେ ।

ଉଭୟ ଭିଏତନାମର ସରକାରୀ ସ୍ତରରୁ ଏ ପ୍ରକାର ସନ୍ଧିସମ୍ବଳିତ ଦାବୀପତ୍ର ପାଇ ହ୍ୱାଇଟ ହାଉସରେ ଥିବା ମାର୍କିନ ଶାସନମୁଖ୍ୟ ପ୍ରମାଦ ଗଣିଲେ । ସେମାନଙ୍କର ବିଶ୍ୱାସ ନ ଥିଲା ଏତେ ଶୀଘ୍ର ଦୁଇ ଭିଏତନାମକୁ ନେଇ ଜାତୀୟ ସ୍ତରରେ ମାର୍କିନ ବିରୋଧୀ ଏକ ଗଣ ସଂଗଠନ ଠିଆ ହୋଇ ପାରିବ, ଯେଉଁ ସଂଗଠନ କି ଉଭୟ ଭିଏତନାମର ମୁକ୍ତି ଓ ଏକୀକରଣ ପାଇଁ ଆଜୀବନ ସଂଗ୍ରାମ ଚାଲୁରଖିବ ।

ବାସ୍ତବରେ ଦୁଇ ଭିଏତନାମର ଐକ୍ୟବଦ୍ଧ ପ୍ରତିରୋଧ ଯୋଗୁଁ ହିଁ ସେ ସଂଗ୍ରାମ ବିଜୟ ଲାଭ କରିପାରିଛି । ସଂଗଠନର ନେତୃତ୍ୱ ଓ ଜନତାର ତ୍ୟାଗ ଫଳରେ ଜାତୀୟ ମୁକ୍ତିର ସ୍ରୋତ ଆହୁରି ଶାଣିତ, ଆହୁରି ରକ୍ତାକ୍ତ ହୋଇ ଉଠିଛି । ଯୁଦ୍ଧବାଦୀ ଦୁନିଆର ଆକ୍ରମଣ ବିରୁଦ୍ଧରେ କ୍ଷୁଦ୍ର ଭିଏତନାମର ଏହି ଆକସ୍ମିକ ବିଜୟ ଯେଉଁ କେତୋଟି ମୌଳିକ କାରଣ ଯୋଗୁଁ ସମ୍ଭବ ହୋଇ ପାରିଲା ତାହା ହେଉଛି—

ପ୍ରଥମତଃ ଉତ୍ତର ଭିଏତନାମର ଶ୍ରମିକଦଳ ଏବଂ 'ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମ୍ମୁଖ୍ୟ'ର ଦୃଢ଼ ନେତୃତ୍ୱ ତଳେ ସମୁଦାୟ ଭିଏତନାମ ଜାତି ଐକ୍ୟବଦ୍ଧ ହୋଇ ପାରିଛି । ଶ୍ରମିକଦଳ ଏବଂ 'ଜାତୀୟ ସାମ୍ମୁଖ୍ୟ' ଅନୁସୃତ ନେତୃତ୍ୱ ମାର୍କସ୍‌ବାଦୀ ଲେନିନ୍‌ବାଦୀ ଦୃଷ୍ଟିକୋଣ ଏବଂ ଶିକ୍ଷାରେ ହିଁ ନିହିତ । ଜନଯୁଦ୍ଧକୁ ଉଚିତ୍ ମାର୍ଗରେ ପରିଚାଳିତ କରିବାର ଯେଉଁ ଦକ୍ଷତା ମାର୍କସ୍‌ବାଦୀ ଲେନିନ୍‌ବାଦୀ ଶିକ୍ଷା ଏବଂ ପ୍ରୟୋଗ ଲାଭ କରିଛି ତାହା ବିଶ୍ୱର ଅନ୍ୟ ସମସ୍ତ ରାଜନୈତିକ କୌଶଳର ବହୁ ଊର୍ଦ୍ଧ୍ୱରେ । ତୃତୀୟରେ ବିଶ୍ୱର ଗଣତନ୍ତ୍ରପ୍ରେମୀ, ଶାନ୍ତିପ୍ରେମୀ ଜନତା ଓ ସମାଜବାଦୀ ଶିବିରର ଅକୁଣ୍ଠ ସମର୍ଥନ, ସାହାଯ୍ୟ ଓ ଭ୍ରାତୃସମ ସହୃଦୟତା ଭିଏତନାମୀ ସଂଗ୍ରାମୀ ଯୋଦ୍ଧାମାନଙ୍କର ମନୋବଳକୁ ଆହୁରି ଦୃଢ଼ କରି ପାରିଛି । ଏପରିକି ମାର୍କିନ ଯୁକ୍ତରାଷ୍ଟ୍ରର ପ୍ରଗତିଶୀଳ ଶକ୍ତିସମୂହ ବିଶ୍ୱ ମୁକ୍ତି ସଂଗ୍ରାମ ପାଇଁ ସେମାନଙ୍କର ହାର୍ଦ୍ଦିକ ଶୁଭେଚ୍ଛା ଓ ଅନୁରକ୍ତି ଅଜାଡ଼ି ଦେଇଛନ୍ତି ।

ଚତୁର୍ଥରେ ମାର୍କିନ ସମରବାଦୀମାନଙ୍କର ପରାଜୟର ମୁଖ୍ୟ କାରଣ ହେଉଛି ସେମାନେ ଭିଏତନାମରେ ଏକ ଅନ୍ୟାୟ ଯୁଦ୍ଧର ମୁଖ ଉନ୍ମୋଚନ କରିଛନ୍ତି । ଯେଉଁ ଯୁଦ୍ଧର ପଛରେ କୌଣସି ମାନବବାଦୀ ଯୁକ୍ତି ନାହିଁ ଏବଂ ଯେଉଁ ଯୁଦ୍ଧରେ ବିଶ୍ୱର ମେହେନତୀ ଜନତାର ସମର୍ଥନ ନାହିଁ । ଯେଉଁ ଯୁଦ୍ଧ କେବଳ ଶୋଷଣ ପୀଡ଼ନର ମୂଳଦୁଆ ଉପରେ ଦଣ୍ଡାୟମାନ ସେ ଯୁଦ୍ଧର ପତନ ଅବଶ୍ୟମ୍ଭାବୀ ।

ସର୍ବଶେଷରେ ଭିଏତନାମୀ ମୁକ୍ତି ସାମ୍ମୁଖ୍ୟର ବିପୁଳ ବିଜୟର ପଛରେ ରହିଥିଲା କମ୍ରେଡ଼ ପ୍ରେସିଡେଣ୍ଟ ହୋ-ଚି-ମିନ୍‌ଙ୍କର ସର୍ବାତ୍ମକ ନେତୃତ୍ୱର ଅଫୁରନ୍ତ ଜୁଆର ।

ଜଣେ ବିଶ୍ୱପ୍ରେମୀ ହିସାବରେ, ଜଣେ ମାନବବାଦୀ କମ୍ୟୁନିଷ୍ଟ ଭାବରେ ଏବଂ ମାର୍କସବାଦ ଲେନିନବାଦର ସଚ୍ଚା ପ୍ରବକ୍ତା ଭାବରେ ସେ ନିଜ ଦେଶର ମୁକ୍ତି ପାଇଁ ସାରାଜୀବନ ଉତ୍ସର୍ଗ କରିଛନ୍ତି । ତାଙ୍କ ପରି ଜଣେ ସର୍ବବାଦୀ ପୂଜ୍ୟନେତା ଓ ସେନାପତି ପାଇଁ ଭିଏତନାମ ଧରଣୀ ପ୍ରକୃତରେ ଧନ୍ୟ ।

ଆଜି ଭିଏତନାମ ଆକାଶରେ ଅସ୍ଥାୟୀ ବିପ୍ଳବୀ ସରକାରର ଜୟ ଜୟକାର । ଫରାସୀ ଉପନିବେଶବାଦୀ ଦାସତ୍ୱରୁ ମୁକ୍ତି ପାଇ ମୁହୂର୍ତ୍ତିକ ପାଇଁ ମଧ୍ୟ କୌଣସି ଭିଏତନାମୀ ଶାନ୍ତିର ନିଃଶ୍ୱାସ ମାରି ପାରି ନ ଥିଲା । ପରେ ପରେ ଆସିଥିଲେ ଜାପାନୀ ସରମବାଦୀ । ତା'ପରେ ଆସିଥିଲେ ମାର୍କିନ ସାମ୍ରାଜ୍ୟବାଦୀମାନେ । ଦୀର୍ଘକାଳ ଧରି ସେମାନେ ଭିଏତନାମରେ ରାଜତ୍ୱ କଲେ । ଅଯଥା ଶୋଷଣ, ନରହତ୍ୟା, ଗଣହତ୍ୟା ଆଦି ପାଶବିକ ଅତ୍ୟାଚାର ମଧ୍ୟରେ ଭିଏତନାମ ଅନିର୍ଦ୍ଦିଷ୍ଟକାଳ ପାଇଁ ବୁଡ଼ି ରହି-ଥିଲା । ସେହି ଦାରୁଣ ମୁହୂର୍ତ୍ତର ସମ୍ୟକ ପରିବର୍ତ୍ତନ ଘଟିଛି ଆଜି । ଭିଏତନାମର ରଙ୍ଗ ବଦଳିଛି । କିନ୍ତୁ ଏହି ରୂପାନ୍ତରିତ ଅବସ୍ଥାର ସ୍ଥାୟିତ୍ୱ କେତେଦିନ ? କମ୍ରେଡ଼ ହୋ ଚି-ମିନ୍ ଶତତ ସେହି ଦ୍ୱନ୍ଦ୍ୱର ସମ୍ମୁଖୀନ । ସେ ଜାଣନ୍ତି ମାର୍କିନ ଯୁକ୍ତରାଷ୍ଟ୍ର ଏକ ଯୁଦ୍ଧ ବିବାଦ ପ୍ରିୟ ଜାତି । ବିଶେଷ କରି ପ୍ରେସିଡେଣ୍ଟ ରିଚାର୍ଡ ନିକ୍ସନଙ୍କ ହୃଦୟ ମାନବିକତାର ବହୁତ ଦୂରରେ । ତାଙ୍କ ପରି ଜଣେ କଠୋର ହୃଦୟ କୂଟନୀତିଜ୍ଞ ଏ ପୃଥିବୀରେ ବିରଳ । ସାମୟିକ ପରାଜୟରେ ସେ ସହଜରେ ଚୁପିହୋଇ ବସିବା ବ୍ୟକ୍ତି ନୁହନ୍ତି । ଯୁଦ୍ଧ ପ୍ରିୟତାର ତୀବ୍ର ଦଂଶନରେ ସେ ପୁଣି ଉଠିବେ । ଏହି ଆଶଙ୍କାରୁ ନିକଟ ଭବିଷ୍ୟତରେ ପ୍ରତିଦ୍ୱନ୍ଦ୍ୱୀ ମନେକରି ଗଣମୁକ୍ତି ସାମ୍ମୁଖ୍ୟ ତାର କର୍ତ୍ତବ୍ୟ ପଥରେ ଦୃଢ଼ ରହିବା ଉଚିତ୍ । ଏହି ଥିଲା କମ୍ରେଡ଼ ହୋ'ଙ୍କର ସେଦିନ ପାଇଁ ବିଜୟଦୃପ୍ତ ଆହ୍ୱାନ ।

"ନିଜ ଅଭିଜ୍ଞତାରୁ ଭିଏତନାମୀ ଜନତା ଦୃଢ଼ ଭାବରେ ବିଶ୍ୱାସ କରନ୍ତି ଯେ ବର୍ତ୍ତମାନର ଯୁଗ ଯେତେବେଳେ ବୈପ୍ଳବିକ ସଂଗ୍ରାମ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରି ପାରିଛି, ସେହି ପରିବେଶ ମଧ୍ୟରେ ଥାଇ ଯେ କୌଣସି ବ୍ୟକ୍ତି ଯେତେ କ୍ଷୁଦ୍ର ହୋଇଥାଉନା କାହିଁକି ଯଦି ନିର୍ଭୁଲ ସାମରିକ ରାଜନୈତିକ ଦିଗରେ ଐକ୍ୟବଦ୍ଧ ସଂଗ୍ରାମ ପାଇଁ ଦୃଢ଼ନିଷ୍ଠ ରୁହେ, ଏବଂ ଯେଉଁ ଶକ୍ତି ବିଶ୍ୱ ସମାଜବାଦୀ ଶିବିର ଓ ବିପ୍ଳବୀ ଜନତାର ସକ୍ରିୟ ସହ-ଯୋଗ ସମର୍ଥନ ଲାଭ କରେ ତେବେ ସେ ନିଶ୍ଚିତ ଭାବେ ମାର୍କିନ ସାମ୍ରାଜ୍ୟବାଦ ଏବଂ ତାର ଅନୁଚର ସାମ୍ରାଜ୍ୟବାଦୀ ଆକ୍ରମଣକାରୀ ଶକ୍ତିମାନଙ୍କୁ ପରାସ୍ତ କରି ପାରିବ" ।



# ୨୨

## ଅୟୁତ ଜୀବନ ପାଇଁ ଯେ ଯାଇଛି ଚାଲି…

ବା-ଡିନ୍ ଚୌକରେ ଲକ୍ଷାଧିକ ଜନ ସମାବେଶ । ସେପ୍ଟେମ୍ବର ମାସର ନ' ତାରିଖ । କମ୍ରେଡ୍ ହୋ-ଚି-ମିନ୍‌ଙ୍କ ମୃତ୍ୟୁ ସପ୍ତାହର ଶେଷ ଦିନ । ଦେଶର ବିଭିନ୍ନ ପ୍ରାନ୍ତରୁ ପ୍ରତିନିଧି ଆସି ଏକତ୍ରିତ ହୋଇଛନ୍ତି ଐତିହାସିକ ବା-ଡିନ୍‌ଠାରେ । ଦିନେ ଏହିଠାରେ ଛିଡ଼ା ହୋଇ ସେ ସ୍ୱଦେଶବାସୀ ଭାଇ ଭଉଣୀଙ୍କୁ ନିବେଦନ କରିଥିଲେ ସ୍ୱାଧୀନୋତ୍ତର ଭିଏତନାମର ସାର୍ବଭୌମତ୍ୱ ଓ ଆଞ୍ଚଳିକ ଅଖଣ୍ଡତା ଅକ୍ଷୁର୍ଣ୍ଣ ରଖିବା ପାଇଁ । ଆଜି ପୁଣି ତାଙ୍କରି ଶେଷକୃତ୍ୟରେ ଏତେ ଜନଗହଳି ।

ଭିଏତନାମ ଶ୍ରମିକଦଳର ସାଧାରଣ ସମ୍ପାଦକ କମ୍ରେଡ୍ ଲେ-ଡୁଆନ କମ୍ରେଡ୍ ହୋ'ଙ୍କର ମୃତ୍ୟୁଲେଖ ପାଠ କରୁଛନ୍ତି । ଡାକବାକ ଯନ୍ତ୍ର ଏବଂ ଆକାଶବାଣୀର ସ୍ୱତନ୍ତ୍ର କାର୍ଯ୍ୟ ମାଧ୍ୟମରେ ଏହି ବାଣୀ ଭିଏତନାମର ପୁରପଲ୍ଲୀ ଏବଂ ଦୂରପ୍ରାନ୍ତ ଅଞ୍ଚଳମାନଙ୍କରେ ପ୍ରସାରିତ ହେଉଛି । ହୋ'ଙ୍କ ଜୀବନୋତ୍ତର ଭିଏତନାମର ଜାତୀୟ ସମ୍ପତ୍ତିରେ ପରିଣତ ହୋଇଛି ତାଙ୍କର ଅନ୍ତିମ ଇସ୍ତାହାର । ତାହା ହିଁ କେବଳ ସର୍ବହରା କମ୍ରେଡ୍ ହୋ'ଙ୍କର ଜୀବନ ଏବଂ ଜୀବନାନ୍ତର ଭବିଷ୍ୟତର ଅମୂଲ୍ୟ ନିଧି ।

“ଜାତୀୟ ମୁକ୍ତିପାଇଁ ମାର୍କିନ ସାମ୍ରାଜ୍ୟବାଦୀମାନଙ୍କ ବିରୁଦ୍ଧରେ ଆମର ସଂଗ୍ରାମ ଦାରୁଣ ବିପର୍ଯ୍ୟୟ ଏପରିକି କଠୋର ଆତ୍ମତ୍ୟାଗ ଦେଇ ଗତି କଲେ ମଧ୍ୟ ଆମେ ଜାଣୁ ଯେ ଅନ୍ତିମ ବିଜୟ ହିଁ ଆମର ।

ଏହା ସ୍ଥିର ନିଶ୍ଚିତ ।

ମୋର ଇଚ୍ଛା ଅଛି, ସେ ଦିନ ଆସିବ । ସେଇଁ ଦିନ ଉତ୍ତର ଏବଂ ଦକ୍ଷିଣରେ ଥିବା ଆମର ବୀର ସ୍ୱଦେଶବାସୀ, ସହଯୋଦ୍ଧା ଦେଶପ୍ରେମୀଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଯିବି ଏବଂ ବୃଦ୍ଧ, ପ୍ରିୟତମ ଯୁବସାଥୀ, କିଶୋରବନ୍ଧୁ ଏବଂ ଶିଶୁ-ମାନଙ୍କୁ ଥରେ ଯାଇ ସମ୍ଭୋଳି ଆସିବି ।

ସେତେବେଳେ ଆମ ସ୍ୱଦେଶବାସୀଙ୍କ ତରଫରୁ ମୁଁ ବିଶ୍ୱ ସମାଜବାଦୀ ଶିବିରର ଭ୍ରାତୃପ୍ରତିମ ରାଷ୍ଟ୍ର ଓ ପୃଥିବୀର ଅନ୍ୟାନ୍ୟ ସହୃଦୟୀ ବନ୍ଧୁ ଦେଶମାନଙ୍କୁ ଯିବି । ମାର୍କିନ ସାମ୍ରାଜ୍ୟବାଦୀ ଆକ୍ରମଣ ବିରୁଦ୍ଧରେ ଆମମାନଙ୍କର ମୁକ୍ତିସଂଗ୍ରାମ ପ୍ରତି ସେମାନଙ୍କର ଅକୃତ୍ରିମ ସାହାଯ୍ୟ ଓ ଆପ୍ରାଣ ସମର୍ଥନ ପାଇଁ ଆମ ଜାତି ତରଫରୁ ସେମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରିବି ।

ଚୀନା ଟାଙ୍ଗ୍ ସାମ୍ରାଜ୍ୟର ପ୍ରଖ୍ୟାତ କବି ଟୁ-ଫୁ ଏକଦା ଲେଖିଥିଲେ "ଖୁବ୍ କମ୍ ଲୋକ ହିଁ ସତୁରି ବର୍ଷ ବୟସ ଯାଏ ବଞ୍ଚି ରହନ୍ତି" ।

ଏହି ବର୍ଷ ମୁଁ ଅଣାଅଶୀ ବର୍ଷ ବୟସରେ ପଦାର୍ପଣ କରୁଛି । ସେହି ସୌଭାଗ୍ୟବାନ୍ମାନଙ୍କ ମଧ୍ୟରୁ ମୁଁ ଜଣେ । ତଥାପି ମୋର ମନ ଅଦ୍ୟାବଧି ସେପରି ସତେଜ ରହିଛି, ଯଦିଓ ପୂର୍ବବର୍ଷମାନଙ୍କ ତୁଳନାରେ ମୋର ସ୍ୱାସ୍ଥ୍ୟ କିଛି ପରିମାଣରେ ଭାଙ୍ଗି ଯାଇଛି । ଯେ କୌଣସି ବ୍ୟକ୍ତି ଯଦି ସତୁରି ବର୍ଷ ବୟସ ପାର ହୋଇଯାଏ, ତାର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବା ସ୍ୱାଭାବିକ । ଏଥିରେ ଚିନ୍ତିତ ହେବାର କୌଣସି କାରଣ ନାହିଁ ।

କିନ୍ତୁ କିଏ କହି ପାରିବ ଆଉ କେତେ ଦିନ ମୁଁ ମୋ ଜାତି, ମୁକ୍ତି ବିପ୍ଳବ ଏବଂ ସର୍ବୋପରି ମୋ ପିତୃଭୂମିର ସେବା କରିବା ପାଇଁ ସମର୍ଥ ରହି ପାରିବି ?

ସେଥିପାଇଁ କାର୍ଲ ମାର୍କସ୍, ଭି. ଆଇ. ଲେନିନ୍ ଏବଂ ବିପ୍ଳବର ଅନ୍ୟାନ୍ୟ ଅଗ୍ରଦୂତମାନଙ୍କୁ ଭେଟିବା ପୂର୍ବରୁ ମୁଁ ଏହି କେତୋଟି ପଂକ୍ତି ଲେଖି ଯାଉଛି ଯାହାକୁ ଦେଖି ମୋ ଦେଶର ଜନତା, ପାର୍ଟି କମ୍ରେଡ଼ ଏବଂ ବିଶ୍ୱର ଅଗଣନ ବନ୍ଧୁ କୌଣସି ଅଚିନ୍ତିତ ଘଟଣାରେ ବିସ୍ମୟ ପ୍ରକାଶ କରିବେ ନାହିଁ ।

ପ୍ରଥମେ ପାର୍ଟି ସମ୍ବନ୍ଧରେ—ସାଧାରଣ ଜନତା, ପିତୃଭୂମି ଏବଂ ଶ୍ରମଜୀବୀ ମଣିଷର କଲ୍ୟାଣ ନିମନ୍ତେ ପାର୍ଟିର ଉତ୍ସର୍ଗୀକୃତ ନିଷ୍ଠା ଓ ଐକାନ୍ତିକତା ବାସ୍ତବିକ ଉଲ୍ଲେଖଯୋଗ୍ୟ । ଜନ୍ମପରଠାରୁ ପାର୍ଟି ଆମ ଜନତାଙ୍କୁ ଦୃଢ଼ ଏବଂ କଠୋର ସଂଗ୍ରାମ ପଥରେ ଐକ୍ୟବଦ୍ଧ କରାଇ ପାରିଛି, ଉଚିତ୍ ମାର୍ଗରେ ପରିଚାଳିତ କରିଛି ଏବଂ ସର୍ବୋପରି ସଠିକ୍ ନେତୃତ୍ୱ ଦେଇ ଏକାଧିକ ବିଜୟର ଅଧିକାରୀ କରାଇ ପାରିଛି ।

ଏକତା ହିଁ ଆମ ଜନତା ଏବଂ ପାର୍ଟିର ସବୁଠାରୁ ବଡ଼ ମୂଲ୍ୟବାନ ଐତିହ୍ୟ । କେନ୍ଦ୍ର କମିଟିଠାରୁ ଆରମ୍ଭ କରି ଆଞ୍ଚଳିକ କମିଟି ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଥିବା ପାର୍ଟି କମ୍ରେଡ଼ମାନେ ସେମାନଙ୍କ ଆଖିର ମଣିପରି ପାର୍ଟି ଭିତରେ ଏକତା ଓ ମାନସିକ ଏକତ୍ୱ ବଜାୟ ରଖିବା ଉଚିତ୍ ।

ପାର୍ଟି ଭିତରେ ସଂହତି ଓ ଏକତାର ସମ୍ପୂର୍ଣ୍ଣ ବିକାଶ ପାଇଁ ନିୟମିତ ଏବଂ କଠୋର ଆତ୍ମସମାଲୋଚନା ହିଁ ପ୍ରକୃଷ୍ଟ ଉପାୟ । ବ୍ୟାପକ ଗଣତାନ୍ତ୍ରିକ ଚେତନା ଏଥି ନିମନ୍ତେ ଏକାନ୍ତ ଦରକାର । ପାର୍ଟି ଭିତରେ ସାଥୀଭାବାପନ୍ନ ହାର୍ଦ୍ଦିକତା ରହିବା ଉଚିତ୍ ।

ଆମ ପାର୍ଟି କ୍ଷମତାସୀନ । ପ୍ରତ୍ୟେକ ପାର୍ଟି ସଭ୍ୟ ଓ ସ୍ୱେଚ୍ଛାସେବୀ ବୈପ୍ଳବିକ ନୈତିକତା, କାର୍ଯ୍ୟଦକ୍ଷତା, ମିତବ୍ୟୟିତା, ସାଧୁତା, ବସ୍ତୁବାଦିତା, ସମ୍ପୂର୍ଣ୍ଣ

ନିସ୍ୱାର୍ଥପରତା ଏବଂ ସାଧାରଣ ସ୍ୱାର୍ଥ ପାଇଁ ଆତ୍ମତ୍ୟାଗ ଆଦି ମହାନ୍ ଗୁଣର ଅଧିକାରୀ ହେବା ପାଇଁ ବାଧ୍ୟ । ଆମ ପାର୍ଟି ଚରମ ପବିତ୍ରତା ରକ୍ଷା କରିବା ଉଚିତ୍ ଏବଂ ଜନତାର ବିଶ୍ୱସ୍ତ ଓ ଅନୁରକ୍ତ ସେବକଭାବେ ନିଜକୁ ଯୋଗ୍ୟ କରିବା ବାଞ୍ଛନୀୟ ।

## ଶ୍ରମଜୀବୀ ତରୁଣ ଶ୍ରମିକ ସଙ୍ଘ ଏବଂ ଯୁବସାଥୀମାନଙ୍କ ସମ୍ବନ୍ଧରେ—

ଯୁବଗୋଷ୍ଠୀ ସ୍ୱଭାବତଃ ଉଦ୍ୟମ । ସେମାନେ ପ୍ରଗତିର ବାହକ । ସଂଗ୍ରାମର ପିଚ୍ଛିଳ ପଥରେ ସେମାନେ ଭ୍ରାନ୍ତିହୀନ ପଥଦ୍ରଷ୍ଟା । ସମାଜବାଦୀ ନିର୍ମାଣ କାର୍ଯ୍ୟରେ ସେମାନଙ୍କୁ ଶାଣିତ ଏବଂ ଶୋଣିତ ସିକ୍ତ କରି ଗଢ଼ି ତୋଳିବା ପାଇଁ ଏବଂ ଆମ୍ଭମାନଙ୍କର ସୁଯୋଗ୍ୟ ଉତ୍ତର ପୁରୁଷ କରି ଛିଡ଼ା କରାଇବା ପାଇଁ ପାର୍ଟି ତା'ର ସମସ୍ତ ବୈପ୍ଳବିକ ଚେତନା ଓ ଗୁଣାବଳୀକୁ ବିନିଯୋଗ କରିବା ଉଚିତ୍ ।

ବିପ୍ଳବର ଭାବୀ ବଂଶଧରଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ଦେବା ପାର୍ଟିର ପରମ କର୍ତ୍ତବ୍ୟ ଓ ଆବଶ୍ୟକତା ।

ଶ୍ରମଜୀବୀ ଜନଗଣ ସମ୍ବନ୍ଧରେ—ସମତଳ ଭୂମି ହେଉ ବା ପାହାଡ଼ ଜଙ୍ଗଲ ଅଞ୍ଚଳ ହେଉ, ଯୁଗ ଯୁଗ ଧରି ଆମର ମେହନତୀ ଜନତା ଅସୀମ ଯନ୍ତ୍ରଣା, ସାମନ୍ତବାଦୀ ତଥା ଉପନିବେଶୀ ଶୋଷଣ ଓ ପୀଡ଼ନର ଶିକାର ହୋଇଛନ୍ତି । ତା'ଛଡ଼ା ଦୀର୍ଘଦିନ ଧରି ସେମାନେ କ୍ଷୁଧାର୍ତ୍ତ ଦୁନିଆରେ ବାସ କରିଛନ୍ତି ।

ତଥାପି ଆମର ଜନତା ଅପରିସୀମ ବୀରତ୍ୱ, ସାହସ ଓ ଉତ୍ସାହ ପ୍ରଦାନ କରିଛନ୍ତି । ପାର୍ଟିର ଜନ୍ମପରଠାରୁ ଅତି ବିଶ୍ୱସ୍ତତା ସହିତ ତାର ସମସ୍ତ ନିର୍ଦ୍ଦେଶ ମାନି ଚାଲିଛନ୍ତି ।

ସାଧାରଣ ଜନତାର ଜୀବନ ନିର୍ବାହର ମାନବୃଦ୍ଧି ପାଇଁ ପାର୍ଟି ଏକ ଅର୍ଥନୈତିକ ଓ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା ଉଚିତ୍ ।

ମାର୍କିନ ସାମ୍ରାଜ୍ୟବାଦୀ ଆକ୍ରମଣ ବିରୁଦ୍ଧରେ ପ୍ରତିରୋଧୀ ସଂଗ୍ରାମ ସମ୍ବନ୍ଧରେ—ଏହି ଯୁଦ୍ଧ ଅନେକ ଦିନ ଧରି ଚାଲି ପାରେ । ଆମର ଦେଶପ୍ରେମୀ ଯୋଦ୍ଧାମାନେ ସେମାନଙ୍କର ଧନ ଜୀବନକୁ ତ୍ୟାଗ କରି ପାରନ୍ତି । ଯେତେ ବଡ଼ ବିପର୍ଯ୍ୟୟ ଆସୁନା କାହିଁକି ସମ୍ପୂର୍ଣ୍ଣ ବିଜୟ ହାସଲ ପର୍ଯ୍ୟନ୍ତ ମାର୍କିନ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆମର ସଂଗ୍ରାମକୁ ଆମେ ଅକ୍ଷୁଣ୍ଣ ଏବଂ ବଳବତ୍ତର ରଖିବୁ ।

"ଆମର ଜନତା, ଏ ପାହାଡ଼, ଏ ଝରଣା—
ସବୁଦିନେ ଜୀବନ୍ତ ରହିବ ।
ମାର୍କିନ ସାମ୍ରାଜ୍ୟବାଦୀମାନେ···ପରାଭୂତ ହେବେ । ·

ଦଶଗୁଣ ସୁନ୍ଦର ଓ କମନୀୟ କରି ଆମେ
ଏହି ମାଟିକୁ ତିଆରି କରିବୁ"।

ଆଗରେ ଯେତେ ବଡ଼ ବାଧାବିଘ୍ନ ଆସୁନା କାହିଁକି, ଆମ ଜନତା ସମ୍ପୂର୍ଣ୍ଣ ବିଜୟ ସମ୍ବନ୍ଧରେ ସ୍ଥିର ନିଶ୍ଚିତ। ମାର୍କିନ ସାମ୍ରାଜ୍ୟବାଦୀମାନେ ଦିନେ ନା ଦିନେ ନିଶ୍ଚୟ ଏ ଦେଶ ଛାଡ଼ି ଯିବେ। ଆମର ପିତୃଭୂମି ପୁଣି ଥରେ ଏକ ହେବ। ଦକ୍ଷିଣ ଏବଂ ଉତ୍ତରରେ ଥିବା ଆମର ଦେଶବାସୀ ପୁଣି ଥରେ ଗୋଟିଏ ଛାତ ତଳେ ଏକତ୍ରିତ ହେବେ। ଆମେ ଏକ କ୍ଷୁଦ୍ର ଜାତି ହେଲେ ମଧ୍ୟ ଆମର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ମଧ୍ୟରେ ପୃଥିବୀର ଦୁଇଟି ବିଶାଳ ସାମ୍ରାଜ୍ୟବାଦୀ ଶକ୍ତି ଫରାସୀ ଓ ଆମେରିକୀୟଙ୍କୁ ପରାସ୍ତ କରିବାର ମହାନ୍ ଗୌରବ ଅର୍ଜନ କରି ପାରିବୁ ଏବଂ ଜାତୀୟ ମୁକ୍ତି ଆନ୍ଦୋଳନ ପାଇଁ ସକ୍ରିୟ ପ୍ରେରଣା ଯୋଗାଇବୁ।

ବିଶ୍ୱ ସାମ୍ୟବାଦୀ ଆନ୍ଦୋଳନ ସମ୍ବନ୍ଧରେ—ବିପ୍ଳବ ପାଇଁ ମୋର ଜୀବନ ସର୍ବାନ୍ତକରଣରେ ଉତ୍ସର୍ଗୀକୃତ। ବିଶ୍ୱ ସଂହତି ଏବଂ ସମାଜବାଦୀ ଆନ୍ଦୋଳନର ଉତ୍ତରୋତ୍ତର ଉନ୍ନତି ଦେଖି ମୁଁ ଗର୍ବ ଅନୁଭବ କରେ। କିନ୍ତୁ ଭ୍ରାତୃସମ ପାର୍ଟି ମଧ୍ୟରେ ବିଭେଦ ସୃଷ୍ଟି କରୁଥିବା ବିକୃତ ଚିନ୍ତାଧାରାକୁ ଲକ୍ଷ୍ୟକରି ମୁଁ ଅତ୍ୟନ୍ତ ଦୁଃଖ ପାଉଛି।

ମୁଁ ଆଶା କରେ ମାର୍କସ୍‌ବାଦ, ଲେନିନବାଦର ଉନ୍ନତ ଭାବାଦର୍ଶ ଏବଂ ସଂହତିର ଆନ୍ତର୍ଜାତୀୟତାର ବୈପ୍ଳବିକ ପ୍ରକ୍ରିୟାକୁ ଆଶ୍ରୟ କରି ଭ୍ରାତୃପ୍ରତିମ ପାର୍ଟି ମଧ୍ୟରେ ଏକତା ଫେରାଇ ଆଣିବା ଦିଗରେ ଆମର ପାର୍ଟି ନିଶ୍ଚୟ ଉଦ୍ୟୋଗ କରିବ।

ମୋର ଦୃଢ଼ ବିଶ୍ୱାସ ଯେ ଭ୍ରାତୃଭାବାପନ୍ନ ରାଷ୍ଟ୍ର ଏବଂ ପାର୍ଟିମାନଙ୍କ ପୁଣି ଥରେ ମିଳିତ ହେବେ।

ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ—ମୋ ଜୀବନ ଭରି ମୁଁ ମୋର ସକଳ ସାମର୍ଥ୍ୟ ଓ ଆନ୍ତରିକତା ଦେଇ ବିପ୍ଳବ, ପିତୃଭୂମି ଏବଂ ଜନଗଣର ସେବା କରି ଆସିଛି। ବର୍ତ୍ତମାନ ଯଦି ମୁଁ ଏହି ସଂସାରରୁ ବିଦାୟ ନିଏ, ତେବେ ଦୁଃଖ କରିବାର କିଛି ନାହିଁ। କେବଳ ଟିକେ ଅବଶୋଷ ରହିବ ଯେ ଆଉ ବେଶିଦିନ ମୁଁ ସେବା କରିବା ନିମନ୍ତେ ରହି ପାରିଲି ନାହିଁ।

ମୁଁ ଯେତେବେଳେ ଚାଲିଯିବି, ମୋର ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ସମୟ ଏବଂ ଅର୍ଥର ଅପଚୟ କରାଯିବ ନାହିଁ। ନିରାଡ଼ମ୍ବର ପଦ୍ଧତିରେ ସମସ୍ତ କାର୍ଯ୍ୟ ସମାପ୍ତ ହେବ।

ଶେଷରେ ସମଗ୍ର ଜାତି, ଜନତା, ପାର୍ଟି, ସେନାବାହିନୀ, ଯୁବକ ଓ ଶିଶୁ ଏବଂ ମୋର ଅଲଅଲ ଝିଆରୀ ପୁତୁରାମାନଙ୍କ ପାଇଁ ମୋର ଅସୀମ ସ୍ନେହ ଆଦର ଛାଡ଼ି ଯାଉଛି ।

ଏହା ସହିତ ସାରା ବିଶ୍ୱର ଯୁବକ, କିଶୋର, ଶିଶୁ, ବନ୍ଧୁ ଏବଂ ସାଥୀମାନଙ୍କ ପାଇଁ ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ମୋର ଶେଷ ଇଚ୍ଛା ହେଉଛି—ଆମର ପାର୍ଟି ଏବଂ ଆମର ଜନତା ଏକ ଶାନ୍ତ, ସ୍ୱାଧୀନ, ଗଣତାନ୍ତ୍ରିକ, ଐକ୍ୟବଦ୍ଧ ଏବଂ ସମୃଦ୍ଧ ଭିଏତନାମ ଗଠନ ପାଇଁ ସେମାନଙ୍କର ସକଳ ଚେଷ୍ଟା, ଉଦ୍ୟମ ଓ ଐକାନ୍ତିକ ନିଷ୍ଠା ଅବ୍ୟାହତ ରଖିବେ । ସେହି ମାଧ୍ୟମରେ ବିଶ୍ୱ ବିପ୍ଳବ ପାଇଁ ସେମାନଙ୍କର ସହଯୋଗର ଦ୍ୱାର ଚିର ଉନ୍ମୁକ୍ତ ରହିବ ।

ଦୀର୍ଘ ସାତ ଦିନ ବ୍ୟାପୀ ଅର୍ଦ୍ଧନମିତ ରାଷ୍ଟ୍ରୀୟ ପତାକା ମଥା ଉପରକୁ ଉଠି ଯାଇଛି । ତା'ର ବିଶାଳ ବପୁ ତଳେ ଏକତ୍ରିତ ହୋଇଛନ୍ତି ଭିଏତନାମର ସର୍ବଦଳୀୟ ପ୍ରାନ୍ତୀୟ ଜନତା । ଗଭୀର ବିଶ୍ୱାସ ଓ ଆଶ୍ୱାସନାରେ ସେମାନଙ୍କର ଅନ୍ତର ଭରପୂର । ସେମାନଙ୍କ ହାତରେ କମ୍ରେଡ଼ ହୋ' ଛାଡ଼ି ଯାଇଥିବା ବିରହ ବିଧୁର ଭିଏତନାମ ଅର୍ପଣ କରାଯାଇଛି । ତା'ର ଆସନ୍ତା ଭାଗ୍ୟ ନିର୍ଦ୍ଧାରଣ କରିବେ ସେମାନେ । ନିଃସନ୍ତାନ ଭିଟାମାଟି ଉପରେ କମ୍ରେଡ଼ ହୋ'ଙ୍କର ଅଗଣିତ ସୁଯୋଗ୍ୟ ସନ୍ତାନ ଜନ୍ମ ନେବେ । ରକ୍ତ ପତାକା ପୁଣି ଥରେ ···ହସୁଛି । କି ଉଦ୍ଦାମ ସେ ହସ ! ମେଘମୁକ୍ତ ଆକାଶରେ ନୂତନ ରବି ଦେଖା ଦେଇଥିବା ଖବର ପରି ଡଗରଟି ବୁଲୁଛି । ସେ ବୃଦ୍ଧାଣୀର ଆଉ ବିରାମ ନାହିଁ ଯେପରି । ଭିଏତନାମର ଶସ୍ୟ ଶ୍ୟାମଳା ଜନ୍ମଭୂମି ଉପରେ ଆଖି ବୁଲି ଆସୁଛି । କେଉଁ ଦିନ ଏ କିଶୋରୀ ଭିଏତନାମ ବୟଃପ୍ରାପ୍ତା ହେବ ?

ସାତଦିନ ବିତି ଗଲାଣି ହେଲେ, ମୁହୂର୍ତ୍ତିକ ପରି ଲାଗୁଛି । ହାନୋଇ ଆକାଶ ବାଣୀରୁ ପ୍ରଚାର ଚାଲିଛି "ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ରାଷ୍ଟ୍ରପତି ତଥା ଭିଏତନାମ ମୁକ୍ତି ବିପ୍ଳବର ଅଜେୟ ସେନାପତି, ବିଶ୍ୱ ସର୍ବହରା ଆନ୍ଦୋଳନର ଅପ୍ରତିମ ନେତା ଓ ମାର୍କସ୍‌ବାଦ ଲେନିନ୍‌ବାଦର ମହାନ୍ ପ୍ରବକ୍ତା ତଥା ଦୁନିଆ ମୁକ୍ତିକାମୀ ଦଳିତ ଜନତାର ପ୍ରତିରୂପ କମ୍ରେଡ଼ ହୋ-ଚି-ମିନ୍ ମୃତ "।

୧୯୬୯ ମସିହା ସେପ୍ଟେମ୍ବର ମାସର ଶିଶିରସିକ୍ତ ସକାଳ । ଶେଷ ବର୍ଷାରେ ଭିଜିଥିବା ପୃଥିବୀ ଏ ଯାଏ ଆର୍ଦ୍ର ରହିଛି । ପ୍ରଭାତୀ କିରଣ ପଡ଼ିବା ପାଇଁ ଆହୁରି ଅନେକ ସମୟ ବାକି । ହିମ ଶୀତଳ ପବନରେ ସମଗ୍ର ବାୟୁମଣ୍ଡଳ ଭରପୂର ।

ହାନୋଇ ଶୋଇଛି । ବିଳମ୍ବିତ ରାତିର ନିଘୋଡ଼ ନିଦ ଭାଙ୍ଗିନାହିଁ ତାର । ରାଜଧାନୀର ଉପାନ୍ତ ବସ୍ତିରୁ ଚାଟି କବାଟ ଖୋଲି ନାହିଁ । ଅର୍ଦ୍ଧାଲୋକିତ ସଡ଼କ ରାସ୍ତାରେ ଶତ୍ରୁ ପକ୍ଷର ସିପାହୀମାନେ ପଇଁତରା ମାରୁଛନ୍ତି । ସୁପ୍ତ ହାନୋଇକୁ ଜଗି ରହିବା ସେମାନଙ୍କର କର୍ତ୍ତବ୍ୟ ।

ଅସମୟରେ ପ୍ରସାରିତ ରେଡ଼ିଓ ବାର୍ତ୍ତା ରାତିର କବାଟ ଖୋଲି ଦେଇଛି । ହାନୋଇର ରାଜରାସ୍ତାରେ ଅସଂଖ୍ୟ ଜନଗହଳି । ପ୍ରଧାନ ପ୍ରାନ୍ତ ଛକମାନଙ୍କରେ ଦଳ ଦଳ ହୋଇ ନରନାରୀ ଭିଡ଼ ହୋଇଛନ୍ତି । ରେଡ଼ିଓ ସେଟ ମୂଲ୍ୟବାନ ସୌଖୀନ ପଦାର୍ଥ ହାନୋଇର ଦୀନ ମଜଦୂର ପାଇବେ କେଉଁଠୁ ? ସେଥିପାଇଁ ସେମାନେ ଧାଇଁଛନ୍ତି ମୁଖ୍ୟ ସୂଚନା କେନ୍ଦ୍ର ଆଡ଼େ । ସମସ୍ତଙ୍କ ମନରେ ସନ୍ଦେହର ବିରାଟ ପ୍ରଶ୍ନବାଚୀ । ପ୍ରକୃତ ଘଟଣା ଜାଣିବା ପାଇଁ ସମଗ୍ର ଜନତା ଉଦ୍‌ଗ୍ରୀବ, ହୋ-ଚି-ମିନ ମୃତ ନା ଅସୁସ୍ଥ ।

ମାତ୍ର କେତେଦିନ ଆଗରୁ ସାଧାରଣ ଜନତାର ଅବଗତି ନିମନ୍ତେ ସରକାରୀ ସମ୍ବାଦ ପ୍ରଚାର ସଂସ୍ଥା ତରଫରୁ ଜଣାଇ ଦିଆଯାଇଥିଲା ଯେ କମ୍ରେଡ଼ ହୋ' ଗୁରୁତରଭାବେ ଅସୁସ୍ଥ । ଏହି ପ୍ରଚାରର ଅନ୍ୟ ଏକ ମୁଖ୍ୟ କାରଣ ଥିଲା କମ୍ରେଡ଼ ହୋ' ତାଙ୍କର ରାଜନୈତିକ ଜୀବଦ୍ଦଶାରେ ନିଜର ଅସୁସ୍ଥତା ଦର୍ଶାଇ କେବେ ସାଧାରଣ କାର୍ଯ୍ୟରୁ ଅବସର ଗ୍ରହଣ କରି ନାହାନ୍ତି । ଏଇ ପ୍ରଥମ ଥର ପାଇଁ ତାଙ୍କ ନିକଟରୁ ସାଧାରଣ ଜନତାର ଭିଡ଼ କମିଛି । ଖ୍ୟାତ ସମ୍ପନ୍ନ ଡାକ୍ତର ଓ ଭେଷଜବିତମାନଙ୍କ ପରାମର୍ଶ ଅନୁଯାୟୀ ସମସ୍ତ ସରକାରୀ ତଥା ବେସରକାରୀ କାର୍ଯ୍ୟରୁ ତାଙ୍କୁ ଅବ୍ୟାହତି ମିଳିଛି । ବିଛଣାରେ ପୂର୍ଣ୍ଣ ଅଚଳ ଅବସ୍ଥାରେ ପଡ଼ି-ରହିବାର ସମୟସୀମା ଅତିବେଶୀ ନ ହେଲେ ମଧ୍ୟ ହୋ'ଙ୍କ ପାଇଁ ତାହା ଅସହ୍ୟ ହୋଇ ପଡ଼ୁଛି । ଜନ ଜୀବନର ଜୁଆର ସ୍ରୋତର ଅନୁକୂଳରେ ଠିଆ ହୋଇ ସେ ଭାସି ନ ଯିବେ କିପରି ? ପଥର ବନ୍ଧ ପରି ପଙ୍ଗୁ ଅଥର୍ବ ହେଇ ପଡ଼ିରହିବା ତାଙ୍କୁ ସାଜେ ନାହିଁ ?

ଜୀବନ ଭରି ସେ କଠୋର ପରିଶ୍ରମ କରିଛନ୍ତି । ଜାତି ଜନତାର କଲ୍ୟାଣ ଓ ଦେଶର ସର୍ବାତ୍ମକ ପ୍ରଗତି ବିଧାନ ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛନ୍ତି । ସଂକ୍ଷେପରେ କହିବାକୁ ଗଲେ ତାଙ୍କର ବ୍ୟକ୍ତିଗତ ଜୀବନ ବୋଲି କିଛି ନ ଥିଲା । ସେ ଥିଲେ ପିତୃଭୂମିର ଏକ ଜାତୀୟ ସମ୍ପତ୍ତି । ତାଙ୍କର ଆଦର୍ଶ ଥିଲା ସେ ଦେଶର ଓ ଦେଶ ତାଙ୍କର । ଏହି ମୌଳିକ ଚେତନାବୋଧ ତାଙ୍କ ମଧ୍ୟରେ ଶେଷ-ଘଡ଼ି ଯାଏ ଜୀବନ୍ତ ରହିଥିଲା ।

ଆକାଂକ୍ଷାରୁ ସେ ଚରମ ଦୁଃଖ ଓ ଦାରିଦ୍ର୍ୟ ମଧ୍ୟରେ ଜୀବନ ଅତିବାହିତ କରିଛନ୍ତି । ସହଜ ସାବଲୀଳ ଗତିରେ ଚାଲିବା ତାଙ୍କ ଭାଗ୍ୟରେ ଜୁଟି ନାହିଁ । ତାଙ୍କ ଜୀବନର ତାରୁଣ୍ୟ ଉନ୍ମେଷଠାରୁ ଆରମ୍ଭ କରି ଯୁଦ୍ଧଗ୍ରସ୍ତ ପିତୃଭୂମିରେ ସେ ଭୋଗିଛନ୍ତି ଅସୀମ ଯାତନା ଓ ଲାଞ୍ଛନା । କିନ୍ତୁ ଆଜନ୍ମ ବ୍ରହ୍ମଚର୍ଯ୍ୟ ତାଙ୍କର ମାନସିକ ଚେତନା ଶାରୀରିକ ଶକ୍ତି ସାମର୍ଥ୍ୟକୁ ସବୁବେଳେ ସତେଜ ରଖିଥିଲା । ଆଜି ତାଙ୍କର ବୟସ ଅଣାଅଶୀ । ବିଗତ ତାରୁଣ୍ୟର ବହଳ ପରଦା ତଳୁ ଜଳଜଳିଆ ଆଖି ଦୁଇଟି ନିରେଖି ଚାହିଁ ରହିଛି । କିନ୍ତୁ ବାର୍ଦ୍ଧକ୍ୟର ଲେଶ ମାତ୍ର ଛାପ ନାହିଁ ତାଙ୍କର କର୍ମକୁଶଳତାରେ । ଅତୀତରୁ ଯୌବନର ସ୍ୱତଃସ୍ଫୂର୍ତ୍ତି ବିଦ୍ରୋହୀ ପରିପ୍ରକାଶ ଆଖିତଳେ ଅନେକ ସ୍ମୃତି ଛାଡ଼ି ଯାଇଛି । ଭାବାବେଗରେ ସେ ନିତ୍ୟ କିଶୋର । ମନ ରାଜ୍ୟରେ ସେ ଚିର ତରୁଣ । ମୁକ୍ତ ଭିଏତନାମର ଶୁଭ୍ର ସୁବର୍ଣ୍ଣ ଶ୍ରୀ ଦେଖିବା ପୂର୍ବରୁ ସେ ବାର୍ଦ୍ଧକ୍ୟରେ ପହଞ୍ଚନ୍ତେ କିପରି ?

ଏହି ବର୍ଷର ପ୍ରଥମାବସ୍ଥାରୁ ତାଙ୍କର ଶରୀର ଭାଙ୍ଗି ପଡ଼ିଛି । ସେ ଅସ୍ୱାଭାବିକ ଭାବେ ଦୁର୍ବଳ ଦିଶୁଛନ୍ତି । ସୌଭାଗ୍ୟର କଥା ଶଯ୍ୟାଶାୟୀ ହେବା ପୂର୍ବରୁ ସେ ପୃଥିବୀର ବିଭିନ୍ନ ପ୍ରାନ୍ତ ବୁଲି ଆସିଛନ୍ତି । ଭାରତ, ବର୍ମା, ମାଲୟଠାରୁ ଆରମ୍ଭ କରି ଦକ୍ଷିଣ ପୂର୍ବ-ଏସିଆର ସମସ୍ତ ରାଷ୍ଟ୍ର । ପୂର୍ବ-ୟୁରୋପୀୟ ସମାଜବାଦୀ ଭୂଖଣ୍ଡ ଏବଂ ବିଶ୍ୱର ଅନ୍ୟାନ୍ୟ ଭ୍ରାତୃପ୍ରତିମ ଦେଶମାନଙ୍କରେ ତାଙ୍କର ସୌହାର୍ଦ୍ଦ୍ୟପୂର୍ଣ୍ଣ ଗସ୍ତ ସାରି ସେ ସ୍ୱଦେଶକୁ ବାହୁଡ଼ି ଆସିଛନ୍ତି । ମନର ତେଜ ଅକ୍ଷୁର୍ଣ୍ଣ ଥିଲେ ମଧ୍ୟ ରକ୍ତର ଗତିରେ ମଇଳା ଧରି ଆସିଲାଣି । ତଥାପି ସେ ବିଶ୍ରାମ ଗ୍ରହଣ ପାଇଁ ଏକାନ୍ତ ଅନିଚ୍ଛୁକ । ତାଙ୍କର ଏହି ଅନାବଶ୍ୟକ, ଅନିଚ୍ଛାର ପଛରେ ଏକମାତ୍ର ଯୁକ୍ତି ହେଉଛି ବିଶ୍ରାମ ହିଁ ମୃତ୍ୟୁରେ । ପ୍ରକୃତରେ ସେ ଥିଲା ତାଙ୍କର ମୃତ୍ୟୁକାଳୀନ ବିଶ୍ରାମ । ବାହାର ଦୁନିଆ ଜାଣୁଥିଲା କମ୍ରେଡ଼ ହୋ’ ଗୁରୁତର ଅସୁସ୍ଥ ହୋଇ ପଡ଼ିଛନ୍ତି । ସେ ପୁଣିଥରେ ସୁସ୍ଥ ହୋଇ ଉଠିବେ । ଭିଏତନାମର ନବ ଜନ୍ମ ପୂର୍ବରୁ ସେ କେବେ ବିଦାୟ ନେଇ ପାରିବେ ନାହିଁ । ମୃତ୍ୟୁ ତାଙ୍କର ଇଚ୍ଛାଧୀନ !

ସେ ଦିନ ଥିଲା ସେପ୍ଟେମ୍ବର ମାସର ତିନି ତାରିଖ । କମ୍ରେଡ଼ ହୋ’ ଢନସାବ ଗୃହରେ ଅସହ୍ୟ ଯନ୍ତ୍ରଣା ଭୋଗ କରିଛନ୍ତି । ଦେଶର ବଡ଼ ବଡ଼ ଡାକ୍ତର ମାନଙ୍କର ଅକ୍ଲାନ୍ତ ଚେଷ୍ଟା ସତ୍ତ୍ୱେ ହୃଦଯନ୍ତ୍ର କିମ୍ବା ଆଉ କାର୍ଯ୍ୟ କରୁନାହିଁ । ଚିକିତ୍ସାଳୟର ବାହାର ପ୍ରକୋଷ୍ଠରେ ଅସଂଖ୍ୟ ଜନତାର ଭିଡ଼ । ଗହଳି କମାଇବା ପାଇଁ ଜାରି କରାଯାଇଥିବା ସରକାରୀ ନିର୍ଦ୍ଦେଶନାମା ପ୍ରତି କାହାର ଖାତିର ନାହିଁ । ଭିଏତନାମ ଶ୍ରମିକ ଦଳର ସାଧାରଣ ସମ୍ପାଦକ କମ୍ରେଡ଼ ଲେ-ଡୁଆନ ମଧ୍ୟ ବାହାରେ ଅପେକ୍ଷା କରି ରହିଛନ୍ତି ଶେଷ ସମ୍ବାଦ ଜାଣିବା ପାଇଁ । ରାତି ନ’ଘଣ୍ଟା

ସତତ୍ୱଳଣ ମିଡ଼ଟରେ ଚକତ୍ସାଳୟ ତଥା ସରକାରଙ୍କର ସ୍ୱତନ୍ତ୍ର ବୁଲେଟିନ୍‌ରେ ପ୍ରକାଶ ପାଇଲା କମ୍ରେଡ୍ ହୋ-ଚି-ମିନ୍ ଆଉ ଇହ ଜଗତରେ ନାହାନ୍ତି ।

ବାହାରେ ଶେଷ ଶ୍ରାବଣର ବର୍ଷା । ଆକାଶ ସହ ତାଳଦେଇ ପୃଥ୍ୱୀ କାନ୍ଦୁଛି । ତାର କୋଟିଏ ଆଖିରେ ଲୁହର ଅସରା ଝରଣା । ମେଘ କନ୍ୟାର ଝୁଛୁଳା ଲୁହ ବସୁଧାରେ ଅନନ୍ତ ସାଗର ସୃଷ୍ଟି କରୁଛି । ସେ ସାଗର ବେଳାରେ କେତେ କେତେ ନାମହୀନ ମଣିଷ ମୁଣ୍ଡ ଛୁଆଁଇ ନେଉଛି ଆସୁଛନ୍ତି ।

ସୁଖ ତାରିଖ ଅପରାହ୍ଣ ସୁଦ୍ଧା ବାହାର ଦୁନିଆଁ ଜାଣିଲା କମ୍ରେଡ୍ ହୋ'ଙ୍କର ମୃତ୍ୟୁ ସମ୍ବାଦ । ବିଶ୍ୱବାସୀ ସ୍ତବ୍ଧ କାତର ହୃଦୟରେ ଏହି ଦାରୁଣ ବ୍ୟଥାକୁ ମୁଣ୍ଡ ପାତି ସହିନେଲେ । ସେହି ରାତରେ ପରାଧୀନ ଭିଏତନାମର କୋଟି କୋଟି ଅନାଥ ପୁଅ କନ୍ୟା ସମସ୍ୱରରେ ବାହୁନି ଉଠିଲେ ତାଙ୍କର ପ୍ରାଣଦାତାଙ୍କୁ ହରାଇ । ସେ ଏକ ମହାନ୍ ଜୀବନ । ସେ ଏକ ମହାନ୍ ସମ୍ପତ୍ତି । ଯାହାର କ୍ଷତି ପୂରଣ କରିବା ପାଇଁ ଏ ଦୁନିଆ ସମର୍ଥ ହୋଇ ପାରିବ ନାହିଁ । ସମାଜବାଦୀ ଶିବିରରେ ମହା ଆତଙ୍କର ଛାୟା । ଦକ୍ଷିଣ-ପୂର୍ବ ଏସିଆ ତଥା ସମସ୍ୟାବହୁଳ ଏସିଆ ମହାଦେଶର ତମସାଚ୍ଛନ୍ନ ଭବିଷ୍ୟତର ମଙ୍ଗ ଆଉ କିଏ ? ନବ ଉପନିବେଶବାଦ ତଥା ମାର୍କିନ ସାମ୍ରାଜ୍ୟବାଦର ଉତ୍କୃଷ୍ଟ ପରୀକ୍ଷାଗାର ତୃତୀୟ ବିଶ୍ୱର ନେତୃତ୍ୱ ନେବ କିଏ ?

କମ୍ରେଡ୍ ହୋ'ଙ୍କର ଅନ୍ତିମ ଇଚ୍ଛାନୁଯାୟୀ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଅତି ସହଜ ନିରାଡ଼ମ୍ବର ଭାବରେ ପାଳନ କରାଯିବ । ଭିଏତନାମ ଗଣତାନ୍ତ୍ରିକ ସାଧାରଣ ତନ୍ତ୍ରର ରାଷ୍ଟ୍ରୀୟ ନିମନ୍ତ୍ରଣ ପାଇ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ସରକାରୀ ତଥା ବେସରକାରୀ ପ୍ରତିନିଧିମାନେ ଏକତ୍ରିତ ହୋଇଛନ୍ତି । ସେହି ଐତିହାସିକ ବା-ଡିନ୍ ସ୍କୋୟାରରେ ପୁଣି ଥରେ ସେପ୍ଟେମ୍ବର ଛ' ତାରିଖର ଅଶ୍ରୁଳ ଅପରାହ୍ଣ ନଇଁ ଆସିଛି । ସୋଭିଏତ୍ ପ୍ରଧାନମନ୍ତ୍ରୀ କମ୍ରେଡ୍ ଆଲେକ୍‌ସି କୋସିଜିନ, ଚୀନ ଗଣ-ପ୍ରଜାତନ୍ତ୍ରର ସହକାରୀ ପ୍ରଧାନମନ୍ତ୍ରୀ କମ୍ରେଡ୍ ଲି-ଶିଏନ୍-ନିଏନ୍ ଏବଂ କାମ୍ବୋଡ଼ିଆର ରାଷ୍ଟ୍ରମୁଖ ରାଜକୁମାର ନରୋଦମ୍ ସିହାନୁକଙ୍କ ସମେତ ପ୍ରାୟ ସତୁରିଟି ରାଷ୍ଟ୍ରରୁ ସରକାରୀ ପ୍ରତିନିଧି ଆସିସାରିଛନ୍ତି । କେବଳ ସେତିକି ନୁହେଁ କମ୍ରେଡ୍ ହୋ'ଙ୍କ ମର୍ମାନ୍ତିକ ବିୟୋଗରେ ଶୋକ ପ୍ରସ୍ତାବ କରି ପୃଥିବୀର ବିଭିନ୍ନ ପ୍ରାନ୍ତରୁ ପ୍ରାୟ ତେଇଶ ହଜାରରୁ ଊର୍ଦ୍ଧ୍ୱ ଶୋକବାର୍ତ୍ତା କମ୍ରେଡ୍ ଲେ-ଡୁଆନ୍‌ଙ୍କ ପାଖରେ ପହଞ୍ଚିଛି । ଶହେ ଏକୋଇଶଟି ଦେଶ ଭିଏତନାମର ସରକାର, ଶ୍ରମିକଦଳ ଓ ଭିଏତନାମ ପିତୃଭୂମି ସାମ୍ମୁଖ୍ୟ ପ୍ରତି ନିଜର ସମବେଦନା ଜଣାଇ ନିଜ ନିଜ ସ୍ଥାନରେ ଶୋକ ଦିବସ ପାଳନ

କରଛନ୍ତି । ବିଶ୍ୱ ସମାଜବାଦୀ ଶିବିରର ଅଗ୍ରଣୀ ରାଷ୍ଟ୍ରବୃନ୍ଦ, ବିଭିନ୍ନ ଦେଶର କମ୍ୟୁନିଷ୍ଟ ଓ ଶ୍ରମିକଦଳ, ମୁକ୍ତି ପାଇଁ ପାଲେଷ୍ଟାଇନ ଗଣତାନ୍ତ୍ରିକ ଜନସାମ୍ମୁଖ୍ୟ, ପଶ୍ଚିମ ୟୁରୋପୀୟ ରାଷ୍ଟ୍ରର ବିଭିନ୍ନ ଗଣତାନ୍ତ୍ରିକ ଅନୁଷ୍ଠାନ, ପୃଥିବୀର ଅନ୍ୟାନ୍ୟ ସହୃଦୟୀ ଗଣଅନୁଷ୍ଠାନ, କଲକାରଖାନା, ଖଣି, ଖାଦାନ ଏବଂ ସର୍ବୋପରି ଶୋଷିତ ମାର୍କିନ ଯୁକ୍ତରାଷ୍ଟ୍ରର ଶାନ୍ତି ମୁକ୍ତିକାମୀ ଜନତା ସେଦିନ କମ୍ରେଡ୍ ହୋ'ଙ୍କର ବିୟୋଗକୁ ନିଜ ନିଜ ଜୀବନର ଅପୂରଣୀୟ କ୍ଷତି ବୋଲି ବିଚାରିଥିଲେ । ବିଶ୍ୱ ମେହନତୀ ଜାତିର ଅପ୍ରତିଦ୍ୱନ୍ଦ୍ୱୀ କର୍ଣ୍ଣଧାର କମ୍ରେଡ୍ ହୋ-ଚି ମିନ୍‌ଙ୍କର ଅବିନଶ୍ୱର ଜୀବନକୁ ଶେଷ ସମ୍ମାନ ଜଣାଇବା ପାଇଁ ଦୁନିଆର ସମସ୍ତ ଗଣତନ୍ତ୍ରପ୍ରେମୀ, ଶାନ୍ତିମୁକ୍ତିକାମୀ ଜନତା ଶୋକାକୁଳ ହୃଦୟରେ ବାହାରି ଆସିଲେ ।

ବା-ଡିନ୍ ଚୌକରେ ପ୍ରବଳ ଜନ ଅରଣ୍ୟ । ଗୋଟିଏ ସୁସଜ୍ଜିତ କାଚ କଫିନ ମଧ୍ୟରେ ହୋ'ଙ୍କର ମୃତ ଦେହକୁ ରଖାଯାଇଛି । ଧବଳ ଶେଫର ରଜନୀଗନ୍ଧା ପରି ଶୁଷ୍କ କିନ୍ତୁ ଅକ୍ଷତ ଦିଶୁଛି ତାଙ୍କର ମୁହଁ । ଏଇ ଘର ଦିନ ଆଗରୁ କେତେ ଆପଣାର ସେ ଥିଲେ !! ତାଙ୍କର ସ୍ନେହ ପଦପାତରେ ଭିଏତନାମର ପଥର ମରୁଭୂମି କଅଁଳ ଉଠିଛି । ତାଙ୍କର କର ସ୍ପର୍ଶରେ କେତେ ବିଧବା ବୃନ୍ତରେ ଭଷି ଧରିଛି !! ଆଜି ପୁଣି ତାଙ୍କରି ବିହୁନେ କେତେ ଅମୁକୁଳିତ କଳିକା ପାଖୁଡ଼ା ଝଡ଼ି ଝୁରି ମରୁଛି ।

ଜଉମୁଦ କାଚ ପାଟ ଭିତରେ ବୃଦ୍ଧ ହୋ' ଶୋଇଛନ୍ତି ନିଘୋଡ ନିଦରେ । ପାଦରେ ସବୁଦିନର ସେହି ଛିଡ଼ା ରବର ଯୋତା, ଆଉ ଦେହରେ ଅତି ପରିଚିତ ସେହି ଖାକି ପୋଷାକ । ସେହି ପୋଷାକ, ସେହି ଯୋତା ପୁଣି ତାଙ୍କରି ସହିତ ଅନ୍ତିମ ବିଶ୍ରାମ ନେବାକୁ ଯାଉଛନ୍ତି !! ବୃଦ୍ଧ ହୋ' ପରି କେତେ ମହାନ୍ ସେମାନେ !!

ଅଧଘଣ୍ଟା ମଧ୍ୟରେ ସବୁ କାମ ଶେଷ ହୋଇଗଲା । ବୃଦ୍ଧ ହୋ'ର ଲହୁ ଲୁହର ଶରୀର ମାଟିରେ ମିଶିଗଲା । ପରପାଇଁ କେତେ ହସିଥିଲା ସେ ଏ ଦୁନିଆରେ : ପର ପାଇଁ ତା' ଠୁ ଅଧିକ କାନ୍ଦିଥିଲା ମଧ୍ୟ !! ତା' ପରି କିଏ ଏ ମଣିଷ ଜାତିଟାକୁ ଏତେ ଭଲ ପାଇ ପାରିବ ?

କମ୍ରେଡ୍ ଲେ-ଡୁଆନଙ୍କ ଆଖିରୁ ଲୁହ ଶୁଖି ନାହିଁ । ହୋ'ଙ୍କ ସନ୍ତାନ-ସନ୍ତତି ମାନଙ୍କର ମୁଖ୍ୟ ପ୍ରତିନିଧି ସେ । କମ୍ରେଡ୍ ହୋ' ତାଙ୍କର ହାତରେ ଭିଏତନାମ ପରିବାରର ସମସ୍ତ ଦାୟିତ୍ୱ ଅର୍ପଣ କରି ଯାଇଛନ୍ତି । ପାର୍ଟି ତରଫରୁ ହୋ'ଙ୍କ

ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଶେଷ ଶୋକ ପ୍ରସ୍ତାବ କମ୍ରେଡ୍ ଡୁଆନ ସର୍ବସମ୍ମୁଖରେ ପାଠ କଲେ ।

“ରାଷ୍ଟ୍ରପତି ହୋ-ଚି-ମିନ୍ ଆଜି ନାହାନ୍ତି ! କିନ୍ତୁ ସେ ଏକ ମହା ମୂଲ୍ୟବାନ୍ ପରମ୍ପରା ଛାଡ଼ି ଯାଇଛନ୍ତି, ତାହା ହିଁ ହେଉଛି ହୋ-ଚି-ମିନ୍ ଯୁଗ । ଆମ୍ଭ ଜାତିର ଇତିହାସରେ ଏହା ଏକ ଗୌରବମୟ ଅଧ୍ୟାୟ, ଆମ ପିତୃଭୂମି ପାଇଁ ଏହା ହେଉଛି ମୁକ୍ତି ଏବଂ ସ୍ୱାଧୀନତାର ଅବଧି ଏବଂ ଆମ ଦେଶପାଇଁ ସମାଜବାଦର ଯୁଗାରମ୍ଭ” ।



# ୬୩

## ମୁକ୍ତିଯୁଦ୍ଧର ଶେଷ ସନ୍ଧ୍ୟା

ଆଜି ବେନ୍ ହାଇ ନଦୀର କୂଳେ କୂଳେ କୌଣସି ସୈନିକଙ୍କୁ ପଇଁତରା ମାରିବାର ଦେଖିବାକୁ ମିଳେ ନାହିଁ । ସେମାନେ, ସମସ୍ତେ ତାର ଜୁଆରରେ ଭସି ଯାଇଛନ୍ତି । ବେନ୍ ହାଇରେ ଅଦିନ ବନ୍ୟା ମାଡ଼ି ଆସିଛି । ଏପ୍ରିଲର ବନ୍ୟା । କୋଡ଼ିଏ ବର୍ଷ ତଳର ଅବଦମିତ ଗର୍ଭ ତାର ଅବେଳରେ ଫାଟି ପଡ଼ିଛି । ବେନ୍ ହାଇ ପ୍ରସବ ବେଦନାରୁ ମୁକ୍ତ । ବହୁ ଦିନର ଯନ୍ତ୍ରଣା କାତର ଶରୀର ଶାନ୍ତିରେ ଘୁମାଇ ପଡ଼ିଛି ।

ଏ ସେହି ବେନ୍ ହାଇ । ନଦୀ ଧାରଟିଏ ହେଲେ ମଧ୍ୟ ମଣିଷ ପରି କଥା କୁହେ । ଅସରନ୍ତି ତାର କାହାଣୀ । ସେ କାବ୍ୟ କେବଳ ଲହୁ ଏବଂ ଲୁହର । ଦୁଃଖ ଏବଂ ଦାସତ୍ୱର ।

ବେନ୍ ହାଇ କୁହେ, ତାର ଜନ୍ମ ଇତିହାସର ବହୁ ପୂର୍ବରୁ । ଏହି ଭିଏତନାମ ଜାତିର ଆଦି ପର୍ବରୁ । ସେହି ଦିନୁ ସେ ଭିଏତନାମ ସହିତ ଅତି ନିବିଡ଼ ଭାବେ ପରିଚିତ । ଭିଏତନାମ ତାର ଏକାନ୍ତ ଆପଣାର । କାରଣ ସେ ତାର ବକ୍ଷ ଦେଶରେ ପ୍ରବାହିତ । କିନ୍ତୁ ଦୁର୍ଭାଗ୍ୟର ବିଷୟ, ସେ ସବୁଦିନେ ଭିଏତନାମର ଦ୍ୱିଖଣ୍ଡିତ ଜୀବନ ସହିତ ଖେଳି ଆସିଛି । ତାକୁ ନିମିତ୍ତ କରି ଭିଏତନାମ ସାମ୍ରାଜ୍ୟ ବଣ୍ଟିବାର ଭାଗ ଭାଗ ହୋଇଛି । ତାର ବାଲୁକା ତଟରେ ଭିଏତନାମ ଜନ ଜୀବନର ଭାଗ ବଣ୍ଟୁରା ସମାହିତ ହୋଇଛି । ତାକୁ ପ୍ରାଚୀର କରି ତାର ଦୁଇ କୂଳରେ ଦ୍ୱିଧା ବିଭକ୍ତ ଭିଏତନାମ ଠିଆ ହୋଇଛି । ସେ କାହାର ନିଜର ହୋଇ ପାରୁ ନାହିଁ । ନିଃସନ୍ତାନ, ନିଥର ନିର୍ଜଳା ଝରଣାଟିଏ ସେ ।

ସେହି ବେନ୍ ହାଇରେ ଆଜି ଜୁଆର ଆସିଛି । ମୁକ୍ତିର ଅଫୁରନ୍ତ ଜୁଆର । ଦୁଇ କୂଳର ଅଡ଼ୁଆ ଧସାଇ ସେ ପ୍ରବଳ ବେଗରେ ମାଡ଼ି ଚାଲିଛି, ତଟବର୍ତ୍ତୀ ଜନପଦକୁ । ସୀମାସ୍ଥାନ ତାର ଅବରୁଦ୍ଧ । ବ୍ୟାପ୍ତ ଆକାଶ ତଳେ ମୁକ୍ତିର ସାଗର ରଚନା କରିବାକୁ ସେ ଚାହେଁ । କାଯ୍ୟସ୍ଥାନ ତାର ଉଦର ମଧ୍ୟରେ ଭିଏତନାମର ବିଭକ୍ତ ସୀମାଂଚଳକୁ ଏକ କରିଦେବାକୁ ଚାହେଁ । ସେ ଜାଣେ ଭିଏତନାମ ତା ଆଖିରେ ଏକ ଏବଂ ଅଭିନ୍ନ ।

ସେଦିନ ଏପ୍ରିଲର ଶେଷ ରାତି । ଆଉ ମାତ୍ର ଅଧଘଣ୍ଟା ପରେ ମେ ପହିଲାର ସୂର୍ଯ୍ୟ ଆକାଶକୁ ଉଠିବ । ବିଶ୍ୱ ମେହନତୀ ଜନଗଣର ଶୁଭ ଜନ୍ମତିଥିକୁ ବଧେଇ ଜଣାଇ ଏପ୍ରିଲ୍ ରାତି ବିଦାୟ ନେବ । ସେହି ମାହେନ୍ଦ୍ର ବେଳା, ସମସ୍ତ ଏଗାରଟା ବାଜି ତିରିଶ ମିନିଟ୍ । ସାଇଗନ ସ୍ଥିତ ରାଷ୍ଟ୍ରପତି ଭବନରେ ଜନତାର ଏକଜିତ କଳରବ । କୋଟି କୋଟି ଜନତାର ପଦ ପାତରେ ସାଇଗନ କମ୍ପି ଉଠୁଛି । ଐତିହାସିକ ରାଷ୍ଟ୍ରପତି ଭବନର ରାଜଦ୍ୱାର ଆଜି ସର୍ବସାଧାରଣ ପାଇଁ ଉନ୍ମୁକ୍ତ । ନିଷିଦ୍ଧ ରାଜଗୃହରେ କୋଟି ପ୍ରଜାଙ୍କର ଐକାନ୍ତିକ ସମାବେଶ ।

ଗଣମୁକ୍ତି ବାହିନୀର ସେନାଧ୍ୟକ୍ଷ କମ୍ରେଡ୍ ଥାନ୍ ଏବଂ ଭିଏତନାମ ମୁକ୍ତି ବିପ୍ଳବର ରାଜନୈତିକ ପରାମର୍ଶଦାତା କମ୍ରେଡ୍ ଥୋ ରାଜଭବନର ଶୀର୍ଷଦେଶରେ ଅସ୍ଥାୟୀ ବିପ୍ଳବୀ ସରକାରର ଲାଲଝଣ୍ଡା ଉତ୍ତୋଳନ କଲେ । ମାର୍କିନ ସରକାର ତଥା ତାର ଦେଶୀୟ ପ୍ରତିନିଧି ଜେନେରାଲ ଥିଉର ଉପନିବେଶୀ ଶାସନ ଧ୍ୱଜା ଧ୍ୱଜ ନଇଁ ଆସିଲା ତଳକୁ । ସେହି ଗୌରବମୟ ମୁହୂର୍ତ୍ତକୁ କୌଣସି ଭିଏତନାମୀ ଭୁଲି ପାରିବ ନାହିଁ । ସେ ଦିନ ଆଉ ଫେରିବନି ସତ, କିନ୍ତୁ ମୁକ୍ତିର ପହିଲା ଛୁଆଁ ମନ ତଳେ ରଖି ଦେଇଗଲା ଯୁଗ ଯୁଗ ପାଇଁ ସ୍ମୃତି ମଧୁର ଅନୁଭୂତି ।

ବିଦ୍ୟୁତ୍ ଚମକରେ ଭିଏତନାମ ଚେଇଁ ଉଠିଛି । ମଧ୍ୟ ରାତିର ସାନ୍ଦ୍ରତା ଭେଦ କରି ସ୍ୱାଧୀନତାର ମଙ୍ଗଳ ବାଜଣା ପ୍ରତି କୁଟୀରକୁ ଥରାଇ ଦେଉଛି । ଭିଏତନାମ ଆଜି ମୁକ୍ତ । ହଜାର ହଜାର ବର୍ଷର ଲୌହ ଶିକୁଳି ତାର ବନ୍ଧା ବାହୁରୁ କଟି ଯାଇଛି । ଜାତୀୟ ରାଜପଥ ରାତିର ଅନ୍ଧକାର ମାନୁ ନାହିଁ । ତା' କଡ଼ରେ ଥିବା ପୁରପଲ୍ଲୀ, ଗାଁ ଗଣ୍ଡା, ସହର ବଜାର ସବୁଠି ଅସୀମ ବିହ୍ୱଳତା । ସ୍ୱାଧୀନତାର ସ୍ୱତଃସ୍ଫୂର୍ତ୍ତି ହୃଦୟ ଆଜି କାହାର ବନ୍ଧନକୁ ଅପେକ୍ଷା କରୁ ନାହିଁ । ନିୟମର ବନ୍ଧବାଡ଼ ଭାଙ୍ଗି ପଡ଼ିଛି । ସମସ୍ତେ ଉଦାତ୍ତ ଚିତ୍ତରେ ଧାଇଁଛନ୍ତି ସାଇଗନ ଅଭିମୁଖେ । ଜାତୀୟ ରାଜପଥର ଶେଷ ପ୍ରାନ୍ତରେ ସାଇଗନ ସହର । ଜନସମୁଦ୍ରର ଗତି କ୍ଳାନ୍ତିହୀନ ହୋଇ ଛୁଟି ଚାଲିଛି ସେହିଆଡ଼େ । ପଥରେ ଭେଟୁଛି ବାକ୍ ଡାଙ୍ଗ, ବିନ୍ ଚେ, ବିନ୍ ଥୋଇ, ହାମତ୍ରୁ, ଚୁଙ୍ଗ ଡାଙ୍ଗ ଏବଂ ଟାନ ସନ ଆଦି କେତେ ଛୋଟ ବଡ଼ ସହର । ସବୁଠି ଆନନ୍ଦ କୋଳାହଳର ଚରମ ମୁହୂର୍ତ୍ତ । ମନେ ହେଉଛି ରାତିର ପରଦା ଠେଲି ପାହାନ୍ତି ସୂର୍ଯ୍ୟ ଅନେକ ବେଳୁ ଧରା ଛୁଇଁ ସାରିଛି ।

ସରକାରୀ ତଥ୍ୟ ଅନୁଯାୟୀ ୧୯୭୫ ମସିହା ଏପ୍ରିଲ ୩୦ ତାରିଖ ରାତି ଏଗାରଟା ତିରିଶ ମିନିଟ୍ ଠାରୁ ଦକ୍ଷିଣ ଭିଏତନାମ ମାର୍କିନ ସାମ୍ରାଜ୍ୟବାଦୀ ତଥା ଉପନିବେଶୀ ଶାସନ କବଳରୁ ମୁକ୍ତିଲାଭ କରିଛି । ସେହି ସମୟଠାରୁ ପରାଧୀନ

ଦକ୍ଷିଣ ଭିଏତନାମର ସ୍ୱାଧୀନତା ସର୍ବସମ୍ମୁଖରେ ଘୋଷିତ ହୋଇଛି । ଭିଏତନାମର ଇଲାକା ସମ୍ପୂର୍ଣ୍ଣ ଭାବେ ମୁକ୍ତ ଏବଂ ସ୍ୱାଧୀନ । ଗଣ ମୁକ୍ତି ବାହିନୀର ଦେଶପ୍ରେମୀ ଯୋଦ୍ଧୃବୃନ୍ଦ ସାଇଗନ ସହିତ ଦକ୍ଷିଣର ଆଉ ଅନେକଗୁଡ଼ିଏ ଶ୍ରେଷ୍ଠ ବଡ ସହରକୁ ଶତ୍ରୁ ହାତରୁ ଉଦ୍ଧାର କରିଛନ୍ତି । ଜନତାର ଦୃଢ଼ତା, ଧୈର୍ଯ୍ୟ, ଅସୀମ ସାହସ ଓ ବୀରତ୍ୱ ଆଗରେ ପୃଥିବୀର ସର୍ବଶକ୍ତିମାନ ସାମରିକ ବାହିନୀ ପରାଜୟ ସ୍ୱୀକାର କରିଛି । ସେମାନଙ୍କର ସବୁପ୍ରକାର ସମର ସଜ୍ଜା ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି । ମାର୍କିନ ପଦାତିକ ବାହିନୀ, ନୌ ବାହିନୀ ତଥା ଆକାଶ ବାହିନୀର ସୁପ୍ରସିଦ୍ଧ ଆଧୁନିକ ରଣକୌଶଳ ଦୁର୍ଦ୍ଧର୍ଷ ଗରିଲାମାନଙ୍କ ନିକଟରେ ଆତ୍ମସମର୍ପଣ କରି ସାରିଛି । ଲକ୍ଷ ଲକ୍ଷ ସଂଖ୍ୟାର ମାର୍କିନ ସୈନ୍ୟ ଗରିଲାମାନଙ୍କ ହାତରେ ବନ୍ଦୀ ହୋଇଛନ୍ତି । ଏତେ ସଂଖ୍ୟାର ମୁକ୍ତିବନ୍ଦୀମାନଙ୍କର ଥଇଥାନ ପାଇଁ କ୍ଷୁଦ୍ର ଭିଏତନାମର ସମ୍ବଳ କାହିଁ ??

ଏ ଯୁଦ୍ଧ କିନ୍ତୁ କେବଳ ଆଜିର ଘଟଣା ନୁହେଁ । ମୁକ୍ତି କିମ୍ବା ସ୍ୱାଧୀନତାର ପଥ କୌଣସି କାଳେ ସରଳ, ସାବଲୀଳ ନୁହେଁ । ଭିଏତନାମ ସ୍ୱାଧୀନତା ସଂଗ୍ରାମର ଧାରା ପ୍ରବାହ ଠିକ୍ ସେହିପରି ବକ୍ର ଏବଂ ଜଟିଳ ।

ସେ ସମସ୍ତ ହେଉଛି ୧୯୭୩ ମସିହାର ପ୍ରଥମ ଦିନ । କମ୍ରେଡ୍ ହୋ'-ଚି-ମିନ୍‌ଙ୍କ ମୃତ୍ୟୁ ପରେ ତିନି ବର୍ଷ ବିତି ଯାଇଛି । ହୋ' ଙ୍କର ଭିଏତନାମର ରଙ୍ଗ କେତେ ବଦଳି ଯାଇଛି । ମୁକ୍ତି ସଂଗ୍ରାମର ଧାରା ଆହୁରି ଶାଣିତ ହୋଇଛି । ଶହ ଶହ ହୋ' ପରେ ମୁକ୍ତି ଯୁଦ୍ଧର ତରବାରୀ ହୋଇ ଅନେକ ଶିଶୁ ଭିଏନ୍ ଜନ୍ମ ନେଇଛନ୍ତି ।

ଦକ୍ଷିଣ ଭିଏତନାମର ଅସ୍ଥାୟୀ ବିପ୍ଳବୀ ସରକାର ତରଫରୁ ଏକ ସ୍ୱତନ୍ତ୍ର ଯୁଦ୍ଧ ବିରତି ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ନିମନ୍ତେ ସରକାରୀ ନିର୍ଦ୍ଦେଶ ଦିଆ-ଯାଇଛି । ୧୯୭୩ ମସିହା ଜାନୁଆରୀ ମାସ ୨୭ ତାରିଖରେ ପ୍ୟାରିସଠାରେ ମିଳିତ ହୋଇଥିବା ଦ୍ୱିପାକ୍ଷିକ ସମ୍ମିଳନୀରେ ଏହି ପ୍ରସ୍ତାବ ଅନୁମୋଦିତ ହୋଇଛି । ଦୁଇ ମୁଖ୍ୟ ସ୍ୱାକ୍ଷରକାରୀ ହେଲେ ଅସ୍ଥାୟୀ ବିପ୍ଳବୀ ସରକାରର ପ୍ରତିନିଧି ଏବଂ ମାର୍କିନ ସମର୍ଥିତ ଜେନେରାଲ ଥିଉର ସରକାରୀ ଶାସନତନ୍ତ୍ର ।

ପ୍ୟାରିସଠାରେ ସ୍ୱାକ୍ଷରିତ ଯୁଦ୍ଧ ବିରତି ପ୍ରସ୍ତାବ ଭିଏତନାମ ଜାତିର ମୁକ୍ତି ପାଇଁ ଥିଲା ଏକ ନିର୍ଭରଶୀଳ ଦଲିଲ ପତ୍ର । କିନ୍ତୁ ବାସ୍ତବ କ୍ଷେତ୍ରରେ ତାହା କାର୍ଯ୍ୟ-କାରୀ ହୋଇ ପାରିଲା ନାହିଁ । ଯଦି ଦୁଇବର୍ଷ ବିତି ଯାଇଥିଲେ ମଧ୍ୟ ଭିଏତନାମରେ ଶାନ୍ତି ଫେରି ଆସିଲା ନାହିଁ । ଅନ୍ୟ ପକ୍ଷରେ ଏହି ଦୁଇବର୍ଷ ମଧ୍ୟରେ ଭିଏତନାମ ପ୍ରବଳ ଯୁଦ୍ଧର ସାମନା କରି ଆସିଛି । 'ସ୍ୱାଧୀନତା, ମୁକ୍ତି, ଶାନ୍ତି, ଗଣତନ୍ତ୍ର ଏବଂ

ଅଞ୍ଚଳର ଅଖଣ୍ଡତା ଏବଂ ମୌଳିକ ନ୍ୟାଯ୍ୟ ଦାବୀ ହାସଲ ପାଇଁ ଜନଗଣରେ ବିପୁଳ ଶକ୍ତି ବିନିଯୋଗ ହେଉଛି ଯୁଦ୍ଧ କ୍ଷେତ୍ରରେ । ସେମାନଙ୍କୁ ପରାହତ କରିବା ପାଇଁ ମାର୍କିନ ତଥା ଭିଏତନାମରେ ଅବସ୍ଥାପିତ ସାମ୍ରାଜ୍ୟବାଦୀ ଦେଶୀୟ ପ୍ରତିନିଧି ଜେନେରାଲ ଥିଉର ଭୟଙ୍କର ଯୁଦ୍ଧ ପ୍ରସ୍ତୁତି ଦ୍ୱିଗୁଣ ବେଗରେ ବଢ଼ି ଚାଲିଛି । ଏ ଏକ ମରଣ ଯୁଦ୍ଧର ଆହ୍ୱାନ । ଉପନିବେଶବାଦ ପରାସ୍ତ କରି ସ୍ୱାଧୀନତାର ପତାକା ଜାହିର କରିବାର ଦୀପ୍ତିମାନ ଆମନ୍ତ୍ରଣରେ ସମଗ୍ର ଭିଏତନାମ ବିବ୍ରତ ।

ପ୍ୟାରିସ ଶାନ୍ତି ଚୁକ୍ତି ମାର୍କିନ ଉପନିବେଶବାଦୀମାନଙ୍କର ବିଶ୍ୱାସଘାତକତା ଯୋଗୁଁ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଅସ୍ଥାୟୀ ବିପ୍ଳବୀ ସରକାରର ବହୁବାର ଉଦ୍ୟମ ସତ୍ତ୍ୱେ ଭିଏତନାମରେ ଯୁଦ୍ଧ ବନ୍ଦ ହୋଇ ପାରିଲା ନାହିଁ । ଫଳରେ ଗଣ ମୁକ୍ତି ବାହିନୀର ଲଢ଼ୁଆ ଫୌଜ ପୁଣି ଯୁଦ୍ଧ ଭୂମିକୁ ଓହ୍ଲାଇଲେ । ଅସ୍ତ୍ର ଧରିବା ପାଇଁ ସେମାନଙ୍କୁ ବାଧ୍ୟ କରାଗଲା । ଭିଏତନାମ ମୁକ୍ତି ବିଦ୍ରୋହ ଆଉ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳ ମଧ୍ୟରେ ଆବଦ୍ଧ ରହିନାହିଁ । ଯେଉଁ କେତେକ ପାହାଡ଼ ତଳି ଅଞ୍ଚଳମାନଙ୍କରେ ସେମାନେ ପ୍ରବେଶ କରିପାରି ନଥିଲେ ଏହି ଦୁଇବର୍ଷ ମଧ୍ୟରେ ସ୍ଥାନୀୟ ପ୍ରତିକ୍ରିୟାଶୀଳ, ଦେଶଦ୍ରୋହୀ ଦଲାଲମାନଙ୍କ ସାହାଯ୍ୟରେ ସେ ସବୁ ଅଞ୍ଚଳମାନଙ୍କୁ ଦଖଲ କରିସାରିଛନ୍ତି । ଭିଏତନାମ ମୁକ୍ତିଯୁଦ୍ଧର ଅନ୍ୟ ଏକ ବିଶେଷ ଚରିତ୍ର ହୋଇଛି 'ଭିଏତନାମୀ କରଣ' । 'ଯୁଦ୍ଧ ଏବଂ ମୁକ୍ତି' ପ୍ରତ୍ୟେକ ଭିଏତନାମୀର ହୋଇଛି ଜୀବନ ଦର୍ଶନ ।

କମ୍ରେଡ଼ ହୋ-ଚି-ମିନ୍‌ଙ୍କ ଜୀବଦ୍ଦଶାରେ ଭିଏତନାମ ମୁକ୍ତି ସଂଗ୍ରାମ ଏକାଧିକବାର ବିଜୟର ଅଧିକାରୀ ହୋଇଛି । ମାର୍କିନ ସାମ୍ରାଜ୍ୟବାଦୀ ଏବଂ ସେମାନଙ୍କର ଭିଏତନାମୀ ଅନୁଚରମାନେ ଦାରୁଣ ପରାଜୟରେ ଟଳି ପଡ଼ିଛନ୍ତି । ସେହିମାନେ ହୃତ ଗୌରବ ଫେରାଇ ଆଣିବା ନିମନ୍ତେ ଶତମୁଖ ହୋଇପଡ଼ିଛନ୍ତି ହୋ'ଙ୍କ ପରବର୍ତ୍ତୀ ଭିଏତନାମରେ । ପୂର୍ବାପେକ୍ଷା ବହୁପରିମାଣର ଅସ୍ତ୍ରଶସ୍ତ୍ର ବିନିଯୋଗ ଚାଲିଛି ଭିଏତନାମ ଯୁଦ୍ଧ ଭୂମିରେ । ମାର୍କିନ ରାଷ୍ଟ୍ରପତି ରିଚାର୍ଡ ନିକ୍ସନଙ୍କ ଅଧ୍ୟକ୍ଷତାରେ ସ୍ୱତନ୍ତ୍ର ଯୁଦ୍ଧ ପରାମର୍ଶଦାତା କମିଟି ଗଠନ କରାଯାଇଛି । ସେହି କମିଟି ଭିଏତନାମରେ ଉପନିବେଶୀ ମାର୍କିନ ସାମ୍ରାଜ୍ୟ ପ୍ରତିଷ୍ଠା ପାଇଁ ସବୁ ପ୍ରକାର ଗୁରୁ ଦାୟିତ୍ୱ ବହନ କରିଛି । ଏହି ଭୟଙ୍କର ସମର ସିଦ୍ଧାନ୍ତ 'ନିକ୍ସନ ଡକ୍‌ଟ୍ରିନ୍' ନାମରେ ଖ୍ୟାତ । ଉକ୍ତ ସିଦ୍ଧାନ୍ତର ଦୁଇ ମୁଖ୍ୟ ରାଜନୈତିକ ଆୟୁଧ ହେଲା— ଗୋଟିଏ ପଟରେ ଦକ୍ଷିଣ ଭିଏତନାମରେ ଯୁଦ୍ଧ ଅବାରିତ ରଖିବା ଏବଂ ଅନ୍ୟ ପଟରେ ଦକ୍ଷିଣକୁ ସବୁ ସମୟରେ ଉତ୍ତରଠାରୁ ବିଚ୍ଛିନ୍ନ କରି ରଖିବା ।

ଉଭୟ ସୀମାରେ ସଜାଗ ପ୍ରହରୀ ମୁତୟନ କରାଯାଇଛି । ମାର୍କିନ ଶାସନ ସଂସ୍ଥା ତରଫରୁ ଭିଏତନାମ ଶାସନ ଦାୟିତ୍ୱରେ ଥିବା ଜେନେରାଲ ଥିଉ ତୀକ୍ଷ୍ଣ ନଜର ରଖିଛନ୍ତି ସୀମାଞ୍ଚଳ ଘାଟିମାନଙ୍କରେ । "ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ପିତୃଭୂମି ସାମ୍ମୁଖ୍ୟ"ର କୌଣସି ଗୋଟିଏ ସୈନ୍ୟ ଯେପରି ଅବରୁଦ୍ଧ ଅଞ୍ଚଳମାନଙ୍କରେ ପ୍ରବେଶ କରି ନ ପାରନ୍ତି, ଏହିପରି କଡ଼ା ନିର୍ଦ୍ଦେଶ ଦିଆଯାଇଛି ସେନାବାହିନୀକୁ ।

ଐତିହାସିକ ଡିଏନ୍ ବିଏନ୍-ଫୁ ସାମରିକ ବିଦ୍ରୋହ ପରଠାରୁ ମାର୍କିନ ଯୁକ୍ତରାଷ୍ଟ୍ର ଭିଏତନାମ ଯୁଦ୍ଧରେ ବହୁଳ ପରିମାଣରେ ଅର୍ଥବ୍ୟୟ କରିଆସିଛି । ସେଥିପାଇଁ ତାର ଆଭ୍ୟନ୍ତରୀଣ ଅର୍ଥନୀତିର ମାନ ଅନେକ ଦିଗରୁ ତଳକୁ ଖସି ଆସିଛି । ଫଳରେ ବିଶ୍ୱ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥାରେ ତାର କାଟତି ଆଉ ପୂର୍ବପରି ଲମ୍ବୁ ହେଉନାହିଁ । ସେଥିପାଇଁ ସେ ସ୍ୱଦେଶୀ ସମ୍ବଳ ଉପରେ ବେଶୀ ଭରସା ନ କରି – ଭିଏତନାମର ପଡ଼ୋଶୀ ଏବଂ ମାର୍କିନ ଅନୁଚର ରାଷ୍ଟ୍ରମାନଙ୍କ ଉପରେ ନିର୍ଭର କରୁଛି । ଯେଉଁ କେତୋଟି ରାଷ୍ଟ୍ର ଇଣ୍ଡୋଚୀନ ତଥା ଏସିଆ ମହାଦେଶରେ ଉପନିବେଶୀ ଶାସନ କାଏମ ରଖିବା ସପକ୍ଷରେ ଅଛନ୍ତି ସେମାନେ ହେଲେ କାମ୍ବୋଡ଼ିଆର ଲନ-ନଲ ସରକାର ଏବଂ ଥାଇଲାଣ୍ଡରେ ଅବସ୍ଥାପିତ ମାର୍କିନ ଶାସନ ପ୍ରତିନିଧି, ଜାପାନ ଏବଂ ଅନ୍ୟାନ୍ୟ ପଶ୍ଚିମା ପୁଞ୍ଜିବାଦୀ ବିଦେଶୀ ରାଷ୍ଟ୍ର । କାରଣ ଆନ୍ତର୍ଜାତିକ ସ୍ତରରେ ସେମାନଙ୍କର ସ୍ୱାର୍ଥ ଏକ ଏବଂ ଅଭିନ୍ନ ।

ମାର୍କିନ ପ୍ରରୋଚନାରେ ସେମାନେ ଭିଏତନାମ ଯୁଦ୍ଧରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବା ପାଇଁ ପଛାଇଲେ ନାହିଁ । ଥାଇଲାଣ୍ଡ ଓ କାମ୍ବୋଡ଼ିଆ ଜରିଆରେ କୋଟି କୋଟି ଡଲାର ମୂଲ୍ୟର ଅତ୍ୟାଧୁନିକ ମାରଣାସ୍ତ୍ର ସାଇଗନ ବନ୍ଦରରେ ପହଞ୍ଚିଲା । ସାମରିକ ଦପ୍ତରର ଅଭିଜ୍ଞ ସରକାରୀ କର୍ମଚାରୀମାନେ ଛଦ୍ମବେଶରେ ଆସି ସାଇଗନରେ ବସତି ସ୍ଥାପନ କଲେ । ସେମାନେ ସମ୍ପୂର୍ଣ୍ଣମେ ଥିଉ ଶାସନ ମୁଖ୍ୟଙ୍କ ଅଧୀନରେ ସାମରିକ ଯୁଦ୍ଧ ପରିଚାଳନା କଲେ ।

ସେ ସମସ୍ତ ହେଉଛି ୧୯୭୩ ମସିହା । ଏକାଧିକ ବିଦେଶୀ ରାଷ୍ଟ୍ରଙ୍କର ନିଦେଶ ଓ ସାମରିକ ସାହାଯ୍ୟ ପାଇ ଜେନେରାଲ ଥିଉ ଭ୍ରାନ୍ତସ୍ଥାନ ଚଉଁରେ ନିଜ କୁକର୍ମ କରି ଚାଲିଛନ୍ତି । କାମ୍ବୋଡ଼ିଆର ପ୍ରତିକ୍ରିୟାଶୀଳ ସାମ୍ରାଜ୍ୟବାଦୀ ଲନ-ନଲ ସରକାର ଦିନକୁ କୋଡ଼ିଏ ଲକ୍ଷ ଡଲାରର ମାରଣାସ୍ତ୍ର ଯୋଗାଉଛି ସାଇଗନ ସାମରିକ ଦପ୍ତରକୁ । ସେହିପରି ଥାଇଲାଣ୍ଡ ଦେଇ ପେଣ୍ଟାଗନର ବିପୁଳ ଅସ୍ତ୍ର ଭଣ୍ଡାର ଚାଲାଣ ହେଉଛି ଭିଏତନାମକୁ । ପଚାଶ ହଜାର ମାର୍କିନ ଯୁଦ୍ଧ ବିଶାରଦ ଛଦ୍ମବେଶରେ ଆସି ଭିଏତନାମରେ ଥିବା ମାର୍କିନ ଦୂତାଳୟରେ ଆଶ୍ରୟ ଗ୍ରହଣ କରିଛନ୍ତି । ସେ

ସମସ୍ତେ ଆଧୁନିକ ମାରଣାସ୍ତ୍ରରେ ସଜ୍ଜିତ । ଲକ୍ଷ ଲକ୍ଷ ଟନର ଗୁଳି, ଗୋଳା, କମାଣ ଓ ବୋମା ସେମାନଙ୍କ ହାତରେ ସରବରାହ ହେଉଛି । ମାର୍କିନ ଦୂତାବାସ ଭିଏତନାମ ମାର୍କିନ ଯୁଦ୍ଧର ହେଡ୍‌କ୍ୱାର୍ଟରରେ ପରିଣତ ହୋଇଛି । ସମାନ୍ତରାଳ ଯୁଦ୍ଧ ବାହିନୀ ଗଠନ କରି ସେମାନେ ସ୍ୱତନ୍ତ୍ର ଯୁଦ୍ଧ ପରିଚାଳନା କରୁଛନ୍ତି । ଭିଏତନାମରେ ପ୍ରତ୍ୟେକ ପ୍ରାଦେଶିକ ମୁଖ୍ୟ କାର୍ଯ୍ୟାଳୟମାନଙ୍କରେ ପେଣ୍ଟାଗନ ତରଫରୁ ବିଶେଷ ଧରଣର ସାମରିକ ଘାଟିମାନ ନିର୍ମାଣ କରାଯାଇଛି ।

ଏ ସେହି ଭିଏତନାମ ଯୁଦ୍ଧ, ଯେଉଁ ଯୁଦ୍ଧରେ ସଦ୍ୟଜନ୍ମ ଶିଶୁଠାରୁ ଆରମ୍ଭ କରି ନିରସ୍ତ୍ର ଅବଳା କିଶୋରୀମାନେ ନିଜକୁ ବଳିଦାନ କରିଛନ୍ତି । ଏ ସେହି ମହାଭାରତର ସଭାମଣ୍ଡପ, ଯେଉଁ ନରକଯନ୍ତ୍ରରେ ସମଗ୍ର ଭିଏତନାମ ଜାତି ଜାଳି ପୋଡ଼ି ପାଉଁଶ ହୋଇ ଯାଇଛି । ଆକାଶ, ପାଣି, ପବନ, ପ୍ରକୃତି ମାର୍କିନ ବିସ୍ଫୋରକ ଶକ୍ତିର ବିଚରଣ କରୁଛି ।

ପୃଥିବୀ ପୃଷ୍ଠରେ ଜନ୍ମ ନେଇଥିବା କୌଣସି ବ୍ୟକ୍ତି ଏ ଯୁଦ୍ଧର ଭୟାବହତା କଳନା କରି ପାରିବ ନାହିଁ । ଜୀବନ ଥାଉ ଥାଉ କେତେ ଭିଏତନାମୀ ହୋଇ ଏତେ ନିର୍ଦ୍ଦୟ ହୋଇ ପାରନ୍ତି !! ଭିଏତନାମ ସୀମାବର୍ତ୍ତୀ ଜଳାଶୟ, ପୁଷ୍କରିଣୀ ଓ ଅସ୍ଥାୟୀ ବିପ୍ଳବୀ ସରକାର ଉଦ୍ୟୋଗରେ ସ୍ଥାପିତ ଜଳଭଣ୍ଡାରରେ ଉତ୍କଟ ବିଷ ଦ୍ରବ୍ୟ ମାନ ପ୍ରୟୋଗ କରାଯାଉଛି । ଯେପରିକି କଳକାରଖାନା, ଖଣି ଖାଦାନରେ କାମ କରୁଥିବା ଶ୍ରମଜୀବୀ ମଣିଷ ଆଉ ନେକ୍ସିଦନ କାର୍ଯ୍ୟକ୍ଷମ ରହି ପାରିବ ନାହିଁ । ମୁକ୍ତି ବାହିନୀ ହାତରେ ଥିବା ମୁକ୍ତାଂଚଳ ଜନତାକୁ ବସବାସ ଶୂନ୍ୟ କରିଦେବା ଉଦ୍ଦେଶ୍ୟରେ ନିକ୍ସନ ଓ ତାଙ୍କର ପ୍ରତିରକ୍ଷା ବୈଦେଶିକ ଉପଦେଷ୍ଟା କିସିଂଜର ସ୍ୱତନ୍ତ୍ର ନୀତିମାନ ପ୍ରଣୟନ କରିଛନ୍ତି । ବିଶ୍ୱ ଯୁଦ୍ଧ ଇତିହାସର ଭିଏତନାମ ଏକ ବ୍ୟତିକ୍ରମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ନିଃସ୍ୱ ନିର୍ବଳ ଜନତାକୁ ଚିର ଦିନରୁ ହଟାଇ ଆଣି କି ସାମ୍ରାଜ୍ୟ ପ୍ରତିଷ୍ଠା କରାଯାଇ ପାରେ ? ଭିଏତନାମରେ ଏ ସବୁ ସମ୍ଭବ ହୋଇ ପାରିଛି ।

ଲକ୍ଷ ଲକ୍ଷ ଦେଶପ୍ରେମୀ କମ୍ୟୁନିଷ୍ଟ ସେମାନଙ୍କ ହାତରେ ନିହତ ହୋଇଛନ୍ତି । 'ସମାଜବାଦୀ କର୍ମରେ ଭିତ୍ତିଭୂମିକୁ ସମୂଳେ ଲୋପ କରିଦେବା ପାଇଁ ନିର୍ଦ୍ଦେଶ ଆସିଛି । ଭିଏତନାମ ଜାତୀୟ ଅର୍ଥନୀତିର ମୂଳଦୁଆକୁ ତେର ଶୂନ୍ୟ କରି ତା ସ୍ଥାନରେ ଆଉ ଏକ ସମରପୁଷ୍ଟ ସାମ୍ରାଜ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥା ସୃଷ୍ଟି କରିବା ପାଇଁ ସବୁମନେ ଉଦ୍ୟମ ଚାଲିଛି । ୧୯୭୪ ମସିହା ମାର୍ଚ୍ଚ ମାସରେ ମାର୍କିନ ବୈଦେଶିକ ବିଭାଗ ମନ୍ତ୍ରୀ କିସିଂଜର ଦାମ୍ଭିକତାର ସହିତ ଘୋଷଣା କରିଛନ୍ତି "ଦକ୍ଷିଣ ଭିଏତନାମ ଯୁଦ୍ଧରେ ଅର୍ଥନୈତିକ ଏବଂ ସାମରିକ ସାହାଯ୍ୟ ଅବ୍ୟାହତ

ରହିବା ଯାଏଁ ମାର୍କିନ ସରକାର ନିଷ୍ପତ୍ତି ଗ୍ରହଣ କରିପାରୁଛନ୍ତି ଉଭୟ ଭିଏତନାମରେ ହୋଇଥିବା ମୁକ୍ତ ଜନମତ ଲାଭ ଛଡା ପାଇଁ ମାର୍କିନ ଯୁକ୍ତରାଷ୍ଟ୍ର କୌଣସି ଦୃଷ୍ଟିରୁ ଦାୟୀ ନୁହେଁ । ପ୍ୟାରିସ ଶାନ୍ତି ଚୁକ୍ତି କୌଣସି ସର୍ତ୍ତ ମାନିବା ପାଇଁ ଆମେ ବାଧ ନୋହୁଁ । ଭିଏତନାମ ଅଭ୍ୟନ୍ତରୀଣ ବ୍ୟାପାରରେ ଅଧିକରୁ ଅଧିକ ହସ୍ତକ୍ଷେପ ପାଇଁ ଆମେ ଫଳନ୍ତ ସିଦ୍ଧ" । କିସିଂଗରଙ୍କ ଦୃପ୍ତ ଆହ୍ୱାନ ଦେଖି ଭିଏତନାମରେ ଥିଉଙ୍କ ଆସନ ଅଧିକ ସବଳ ହୋଇ ଉଠିଛି । ସମସ୍ତଙ୍କରେ ସେ ମଧ୍ୟ ଘୋଷଣା କଲେ 'ଭିଏତନାମ ଯୁଦ୍ଧ ଆମ ସପକ୍ଷରେ ଯିବା ପର୍ଯ୍ୟନ୍ତ ସେଠାରେ ଶାନ୍ତିର ପ୍ରଶ୍ନ ଉଠି ପାରେନା । କୌଣସି ସାଧାରଣ ନିର୍ବାଚନ କଳନା କରାଯାଇ ପାରେନା । କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ସମାଧାନ ଆମକୁ ସାନ୍ତ୍ୱନା ଦେଇ ପାରିବ ନାହିଁ । ଭିଏତନାମରେ ଶେଷ ରକ୍ତବିନ୍ଦୁ, ଶେଷ ଶସ୍ୟକେଣ୍ଡା ଓ ଶେଷ ସଙ୍ଗୀନ ମୁନ ଥାଇ ଥିବା ପର୍ଯ୍ୟନ୍ତ ଆମେ ସେମାନଙ୍କୁ ଛାଡ଼ିବୁ ନାହିଁ" ।

ସେହି ଶୀତ ଶେଷରେ ସେମାନେ ଭିଏତନାମର ଶସ୍ୟ ଶ୍ୟାମଳା ବନ-ଭୂମିକୁ ଚଷିଗଲେ । ଦରିଦ୍ର ପ୍ରଜାମାନଙ୍କ କ୍ଷେତ ଖମାରରେ ଥିବା ଶସ୍ୟ ଭଣ୍ଡାରରେ ବହ୍ନିପରାକ୍ରମୀ ବୁଲଡୋଜର ମାଡ଼ି ଚାଲିଲା । ସବୁଜଶ୍ରୀ ଭିଏତନାମ କଳା ଅଙ୍ଗାରରେ ପରିଣତ ହେଲା । ଦରିଦ୍ର ପ୍ରଜାକୁଳ ଭିଟାବାଡ଼ିରୁ ବଞ୍ଚିତ ହୋଇ ଭିକାରୀ ବେଶରେ ବୁଲିଲେ ।

୧୯୭୩ ଜାନୁଆରୀ ଶେଷସୁଦ୍ଧା ମୁକ୍ତିବାହିନୀର ୨୦୦,୦୦୦ ଦେଶପ୍ରେମୀ ଯୋଦ୍ଧା ଥିଉ ସେନାବାହିନୀ ହାତରେ ବନ୍ଦୀ ହେଲେ । ସେମାନଙ୍କ ବ୍ୟତୀତ ଆଉ ୨୦୦,୦୦୦ ବସ୍ତ୍ର ବସ୍ତ୍ର ଲଢ଼ୁଆ ସୈନ୍ୟଙ୍କୁ ଯାତନା ଶିବିରକୁ ପଠାଇ ଦିଆଗଲା । ଏହା ବ୍ୟତୀତ ମୃତାହତଙ୍କ ସଂଖ୍ୟା ବହୁତ ଅଧିକ । ଚୋରି, ଧର୍ଷଣ, ହତ୍ୟା ଆଦି ବୀଭତ୍ସ ଅପରାଧରେ ଭିଏତନାମ ଜନଜୀବନ ସନ୍ତ୍ରସ୍ତ ହୋଇ ଉଠିଲା । ଲକ୍ଷ ଲକ୍ଷ ଅନୂଢ଼ା କିଶୋରୀ ମାର୍କିନ ପାଶବିକ ଅତ୍ୟାଚାର ସହି ନ ପାରି ଆତ୍ମହତ୍ୟା କଲେ । ପରବର୍ତ୍ତୀ ସମୟରେ କେତେ ଜାରଜ ସନ୍ତାନ ଭିଏତନାମ ମାଟିରେ ଜନ୍ମ ନ ନେଲେ ସତେ ! ! କେବଳ ସାଇଗନ ଯେ ଏହି ଦୁର୍ଦ୍ଦଶା ଭୋଗୁ ଥିଲା ତାହା ନୁହେଁ, କ୍ୱାଙ୍ଗଟ୍ରି, ଟିଅନାଇ, ବାଓତ୍ରୁକ୍, ଥୁଆ ଥିଏନ୍, କ୍ୱାଙ୍ଗନାମ, ବେନଟ୍ରି, ମାଇ ଥୋ ଏବଂ ଫୁଲଙ୍ଗ ଆଦି ବହୁ ସହରମାନଙ୍କର ମଧ୍ୟ ସେହି ଅବସ୍ଥା ।

ସଂକ୍ଷେପରେ କହିଲେ ଭିଏତନାମ, ମଣିଷ ବାସୋପଯୋଗୀ ହୋଇ ରହିଲା ନାହିଁ । ଦିନ ରାତି ଚବିଶ ଘଣ୍ଟା ବୋମା ବର୍ଷଣ ଫଳରେ ଜନାକୀର୍ଣ୍ଣ ଅଞ୍ଚଳ ବିକଟ ମଶାଣିପଦାର ରୂପ ଧାରଣ କଲା । ୧୯୬୫-୭୨ ଏହି ଗୋଟିଏ ବର୍ଷରେ ୪୧,୦୦୦ ବୋମାବର୍ଷୀ ବିମାନ ୬୮୦,୦୦୦ ବୋମା ନିକ୍ଷେପ କରିଛନ୍ତି

ଭିଏତନାମରେ । ୫୨୭୫୦୦୦ ନିରସ୍ତ୍ର ନାଗରିକ, ହଜାର ହଜାର ସଂଖ୍ୟାର ସ୍କୁଲ, ଶିକ୍ଷାନୁଷ୍ଠାନ, ଧର୍ମମନ୍ଦିର, ଚିକିତ୍ସାଳୟ ଆଦି ସାଧାରଣ ସଂସ୍ଥାମାନ ଧ୍ୱଂସ ପାଇଛି । ୧୭୨୮ଟି ଜନବସତି ସମ୍ପୂର୍ଣ୍ଣ ରୂପେ ଲୋପ ପାଇଛି । ବି-୫୨, ନାପାମ, ଏବଂ ଫସଫରସ ଆଦି ଅତି ଉତ୍କଟ ଓ ମାରାତ୍ମକ ଧରଣର ବୋମାବର୍ଷୀ ବିମାନ-ଗୁଡ଼ିକୁ ଭିଏତନାମ ଯୁଦ୍ଧରେ ବ୍ୟବହାର କରାଯାଉଛି । ଅଯଥା ଆକ୍ରମଣ ଓ ସନ୍ଦେହର ଭୟ ଦେଖାଇ ପ୍ରାୟ ୧୬୭୦୦୦ ନାଗରିକଙ୍କୁ ଯାତନା ଶିବିରକୁ ଘୋଷାଡ଼ି ନିଆଯାଇଛି । ୯୮,୩୪୦ ଶୃଙ୍ଖଳରକ୍ଷୀ ସୈନ୍ୟଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରାଯାଇଛି ।

ଏହି ମୁକ୍ତି ପ୍ରକ୍ରିୟାରେ ମାର୍କିନ ଯୁକ୍ତରାଷ୍ଟ୍ର ନିଜ ହସ୍ତତ ଅନେକ ବନ୍ଧୁ ଓ ପଡ଼ୋଶୀଙ୍କୁ ଜଡ଼ିତ କରିଥିଲା । ସେମାନେ ହେଲେ ବିଶ୍ୱ ବିଖ୍ୟାତ କେନ୍ଦ୍ରୀୟ ଗୁଇନ୍ଦା ସଂସ୍ଥା ବା ସି. ଆଇ. ଏ., ଜେନେରାଲ ମଟରସ୍ ଆଦି ବହୁ ଜାତୀୟ ବ୍ୟବସାୟ ପ୍ରତିଷ୍ଠାନମାନ ଏବଂ ଅନଗ୍ରସର ତୃତୀୟ ବିଶ୍ୱରେ ଉପନିବେଶ କର୍ତ୍ତୃତ୍ୱ ପ୍ରତିଷ୍ଠା କରିବାକୁ ଚାହୁଁଥିବା ପଶ୍ଚିମା ପୁଞ୍ଜିବାଦୀ ଶାସକ ସଂସ୍ଥା । କାରଣ ସେମାନଙ୍କର ସ୍ୱାର୍ଥ ମାର୍କିନ ସ୍ୱାର୍ଥ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ସେମାନେ ନିର୍ଦ୍ଦିଷ୍ଟ ଏକ ଅର୍ଥନୈତିକ ବ୍ୟବସ୍ଥାରେ ବିଶ୍ୱାସ କରନ୍ତି । ଏମାନଙ୍କ ମଧ୍ୟରୁ ମାର୍କିନ ଯୁକ୍ତରାଷ୍ଟ୍ରର ସବୁଠୁଁ ବେଶୀ ନିର୍ଭରଶୀଳ ଏବଂ ବିଶ୍ୱସ୍ତ ସହଯୋଗୀ ହେଉଛି କେନ୍ଦ୍ରୀୟ ଗୁଇନ୍ଦା ସଂସ୍ଥା । ଯାହାର ଭୂତପୂର୍ବ ଅଧ୍ୟକ୍ଷ କୋଲବେ ନିଜେ ସ୍ୱୀକାର କରିଛନ୍ତି ଯେ ୧୯୬୮ ମସିହାଠାରୁ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ୨୦,୫୮୭ ଜଣ ଭିଏତନାମୀଙ୍କୁ ମୃତ୍ୟୁ ଶିବିରକୁ ପଠାଇଛନ୍ତି । ମାର୍କିନ ଯାନ୍ତ୍ରିକ ସଭ୍ୟତାରୁ ଜନ୍ମ ନେଇଥିବା କୋଲବେଙ୍କ ପରି ଅନେକ ଜାତିର ସନ୍ତାନ ମଣିଷ ଜୀବନର ମୂଲ୍ୟ ପ୍ରତି ଟିକେ ବି ଦୃଷ୍ଟିପାତ କରି ନାହାନ୍ତି । ଭିଏତନାମର ତରୁଣ କିଶୋର, କିଶୋରୀମାନଙ୍କ ତଣ୍ଟି ନାକ ଓ କାନ ଦୁଆରରେ ସରୁ ନଳୀ ଭର୍ତ୍ତି କରି ଟେଷ୍ଟି ଟେଷ୍ଟି ମାରୁଛନ୍ତି । ଏ ଯନ୍ତ୍ରଣାଦାୟକ ନର୍କପୁରରୁ ଜୀବନ ରକ୍ଷା କରି ଫେରି ଆସିବାରେ କି ଗୌରବ ଅଛି ଥାଆନ୍ତା !! ସେହିପରି ଅଗଣିତ ମୁକ୍ତିଯୋଦ୍ଧାଙ୍କର କରୁଣ କାହାଣୀ ଲିପିବଦ୍ଧ ହୋଇଛି । ଯେଉଁମାନଙ୍କର କୁସୁମତୁଲ୍ୟ କୋମଳ ଦେହରେ ବିଦ୍ୟୁତ ଜ୍ୱଳନା କରି ଶୁଖାଇ ଶୁଖାଇ ମାରି ଦିଆ ଯାଇଛି, ଇତିହାସର ସ୍ୱର୍ଣ୍ଣ ପୃଷ୍ଠାରେ ସେମାନେ ନାମାଙ୍କିତ ନ ହେଲେ ମଧ୍ୟ ସେମାନଙ୍କର ଖର ନିଶ୍ୱାସରେ ଇତିହାସର ପୃଷ୍ଠା ଛିନ୍ନ ବିଛିନ୍ନ ହୋଇଯାଉଛି ।

ସେମାନେ ମୃତ୍ୟୁର ଗୌରବ ନେଇ ଚାଲିଗଲେ । କିନ୍ତୁ ଯେଉଁମାନେ ଜୀବନର ଆଶୀର୍ବାଦ ନେଇ ଜନ୍ମ ନେଲେ ସେମାନଙ୍କ ସଂଖ୍ୟା ତାଙ୍କ ଠାରୁ ବହୁ

ଗୁଣରେ ଅଧିକ । ମହା ପରାକ୍ରମୀ ବି-୫୨, ନାପାମ୍ ଏବଂ ଫସ୍‌ଫରସ୍, ଅତି ଅତ୍ୟାଧୁନିକ ସମର ବିମାନ ଜାହାଜ ସେମାନଙ୍କ ତୁଳନାରେ ଅତି ନଗଣ୍ୟ । ସେମାନେ ଗୋଟିଏ ଗୋଟିଏ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ କୋଟିଏ ସିଂହର ବଳ । କମ୍ରେଡ ହୋ'-ଚି-ମିନ ଏହି ଦୁର୍ଦ୍ଦିନରେ ମନେ ପଡ଼ନ୍ତି ।

''ଚାଲ ଆମେ ପ୍ରତ୍ୟେକ ଆମର ଶକ୍ତିକୁ ଦ୍ୱିଗୁଣିତ କରିବା । ଆମେ ପ୍ରତ୍ୟେକ ଆମର ଦେହ, ମନ, ଓ ହୃଦୟକୁ ପାଣି ଚଢ଼ାଇ ଆମର ବୈପ୍ଳବିକ ସଂଗ୍ରାମର ଅନ୍ତିମ ବିଜୟ ନିମନ୍ତେ ସବୁମତେ ତ୍ୟାଗ ସ୍ୱୀକାର ପାଇଁ ପ୍ରସ୍ତୁତ ହେବା' ।

ଭିଏତନାମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ସରକାର, ମୁକ୍ତି ପାଇଁ ଦକ୍ଷିଣ ଭିଏତନାମ ଜାତୀୟ ସାମୁଖ୍ୟ, ଜାତୀୟ ଗଣତାନ୍ତ୍ରିକ ଶାନ୍ତି ଏବଂ ସହଯୋଗୀ ସଂସ୍ଥା, ଏବଂ ଗଣ ମୁକ୍ତି ବାହିନୀର ମିଳିତ ଡାକରାରେ ଶେଷ ଯୁଦ୍ଧ ପାଇଁ ପ୍ରସ୍ତୁତ ଚାଲିଲା । ବିଶ୍ୱ ମୁକ୍ତିକାମୀ ଜନତା, ସମାଜବାଦୀ ଶିବିର, ତୃତୀୟ ବିଶ୍ୱ ତଥା ପୃଥିବୀର ମୁକ୍ତି ପାଗଳ ରାଷ୍ଟ୍ରମୁଖ୍ୟମାନେ ଏହି ଆବେଦନର ପ୍ରତ୍ୟୁତ୍ତରରେ ଭିଏତନାମ ପାଇଁ ସାମରିକ ସାହାଯ୍ୟ ଦାନ ନିମନ୍ତେ ଅକୁଣ୍ଠ ସମର୍ଥନ ଜଣାଇଲେ । ସୋଭିଏତ ରୁଷର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଭିଏତନାମ ମୁକ୍ତି ପାଇଁ ସ୍ୱତନ୍ତ୍ର ସାହାଯ୍ୟ ସଂସ୍ଥା ଗଠନ କରାଗଲା । ୧୯୭୩ ମସିହା ଅଲଜିରିଆ ଠାରେ ଅନୁଷ୍ଠିତ ହୋଇଥିବା ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀରେ ସମବେତ ସଦସ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରୁ ପ୍ରାୟ ଅଶୀଟି ରାଷ୍ଟ୍ର ଅସ୍ଥାୟୀ ବିପ୍ଳବୀ ସରକାରଙ୍କୁ ଦକ୍ଷିଣ ଭିଏତନାମର ବୈଧାନିକ ପ୍ରତିନିଧି ବୋଲି ସ୍ୱୀକୃତି ଦେଲେ । ପ୍ରାୟ ଦୁଇଶରୁ ଅଧିକ ଆନ୍ତର୍ଜାତିକ ସଂସ୍ଥା ଏବଂ କୋଡ଼ିଏଟି ବିଶିଷ୍ଟ ରାଷ୍ଟ୍ର ଭିଏତନାମକୁ ଯୁଦ୍ଧକାଳୀନ ଅର୍ଥନୈତିକ ସାହାଯ୍ୟ ଦେବା ପାଇଁ ସର୍ବସମ୍ମୁଖରେ ଘୋଷଣା କଲେ । ବର୍ତ୍ତମାନ ଭିଏତନାମ ଯୁଦ୍ଧ ବିଶ୍ୱ ମୁକ୍ତିକାମୀ ଜନତାର ସ୍ୱାର୍ଥାନ୍ୱେଷୀ ସଂଗ୍ରାମର ରୂପ ନେଇଛି । ସେଥିପାଇଁ ଭିଏତନାମ ଜାତିସଂଘରେ ତାର ନ୍ୟାଯ୍ୟ ଦାବୀ ପ୍ରତିଷ୍ଠାପିତ କରିବା ପାଇଁ ସୁଯୋଗ ଲାଭ କରିପାରିଛି । ଜାତିସଂଘରେ ଥିବା ଅଧିକାଂଶ ରାଷ୍ଟ୍ରର ସମର୍ଥନ ତା ପଛରେ ।

୧୯୭୩ରୁ ୧୯୭୫ ମସିହା । ମାତ୍ର ଦୁଇଟି ବର୍ଷ ମଧ୍ୟରେ । କିନ୍ତୁ କେତେ ନରହତ୍ୟା ! କେତେ ରକ୍ତପାତ !! ମେକଂର ଏ କୋଣ ଭୂମିରେ ଲହୁର ନଈ ଛୁଟିଲା ସେଠି !

ସ୍ୱାଧୀନ ଭିଏତନାମର ନବପର୍ବକୁ ଦେଖିବା ପାଇଁ ଯେ କେବଳ ପଣ କରିଥିଲା ସେ ଜାଣେ !! ତାରି ପାଇଁ ସାଇଗନ ଆଜି ହୋ'-ଚି-ମିନ ନଗରରେ ପରିଣତ ହୋଇଛି । ଦକ୍ଷିଣ ଭିଏତନାମ ଉତ୍ତରର ସୀମାନ୍ତରେ ପୁଣି ମିଶି ଯାଇଛି ।

ଡେନ୍ ହାଇର କୂଅରରେ ଦୁଇପଟର ବେଳାଭୂମି ପର୍ଯ୍ୟନ୍ତକୁ ଖୋଲ କରି ଦେଇଛନ୍ତି । ଭିଏତନାମର ଦୁଇ ନାମ ଅଉ ସ୍ୱତନ୍ତ୍ର ସ୍ତରରେ ଲେଖାଯିବ ନାହିଁ । ସେ ଦୁହେଁ ମିଶି ଭିଏତନାମ ସମାଜବାଦୀ ସାଧାରଣତନ୍ତ୍ରରେ ପରିଣତ ହୋଇଛନ୍ତି ।

ଭିଏତନାମ ଆଜି ସ୍ୱାଧୀନ । ବିଶ୍ୱ ମୁକ୍ତିକାମୀ ଜନତାର ଆକାଂକ୍ଷିତ ସ୍ୱପ୍ନ ସଫଳ ହେବାକୁ ଯାଉଛି । ସ୍ୱାଧୀନତାର ମୁକ୍ତ ହିଲ୍ଲୋଳ ପରାଧୀନ ବିଶ୍ୱର ସୀମା ଭେଦି କରି ଘୂରି ବୁଲୁଛି । ସେ ସମସ୍ତ ଆଜି ବନ୍ଦୀ ହୋଇଛନ୍ତି ଭିଏତନାମରେ । ସାମ୍ରାଜ୍ୟବାଦୀ ଶୋଷଣର ବର୍ବର ଅତ୍ୟାଚାରର ସମାପ୍ତି ଲଭିଛି । ଦକ୍ଷିଣ ପୂର୍ବ ଏସିଆରେ ସେମାନଙ୍କର ନିବିଡ଼ ଯୋଗାଯୋଗ ଛିଡ଼ିପଡ଼ିଛି । ମୁକ୍ତିର ମରଣ ମାଡ଼ରେ ସେମାନେ ପ୍ରାଚ୍ୟ ଭୂଖଣ୍ଡରୁ ଛାଡ଼ି ପଳାଇଛନ୍ତି । ମୁକ୍ତିବାଦୀ ଅଥଳିତରେ ପରିପୁଷ୍ଟ ବଳକୋଷ ଶୂନ୍ୟ ହୋଇ ଯାଉଛି । ସେମାନେ ଆଉ ଦୁଏତ ଭିଏତନାମ ଫେରିବେ ନାହିଁ ।

ମୁକ୍ତିଯୋଦ୍ଧାର ଭିଏତନାମର ଦାୟିତ୍ୱ ବହୁ ପରିମାଣରେ ବଢ଼ି ଯାଉଛି । ସେ ଦାୟିତ୍ୱ ହେଉଛି ମୁକ୍ତି ଓ ସ୍ୱାଧୀନତାକୁ ବଞ୍ଚାଇ ରଖିବାର ଦାୟିତ୍ୱ । ଭିଏତନାମର ସାମ୍ପ୍ରତିକ ଅର୍ଥନୈତିକ ଅବସ୍ଥା ଯାହା, ସେଥିରୁ ମୁକ୍ତି ନ ମିଳିଲେ ନବପ୍ରାପ୍ତ ସ୍ୱାଧୀନତାର ସ୍ଥିତି ଅସମ୍ଭବ ହୋଇ ପଡ଼ିବ । ସେଥିପାଇଁ ଭିଏତନାମ ଶ୍ରମିକ ଦଳର ପ୍ରଥମ ସାଧାରଣ ସମ୍ପାଦକ କମ୍ରେଡ଼ ଲେ ଡୁଆନ ସମଗ୍ର ଜାତିକୁ ଆହ୍ୱାନ ଜଣାଇଛନ୍ତି । କମ୍ରେଡ଼ ହୋ'-ଚି-ମିନ୍‌ଙ୍କ ଦରଦୀ ନିବେଦନର ଅବଗାହନ ହେଉଛି ତାଙ୍କ ସ୍ୱରରେ । ବିଶ୍ୱ ଦଳିତ ପୀଡ଼ିତ ଜନଗଣଙ୍କୁ ଦାସତ୍ୱର ଶୃଙ୍ଖଳରୁ ମୁକ୍ତ କରିବାର ଏକମାତ୍ର ପଥ ହେଉଛି ସମାଜବାଦ । କେବଳ ସମାଜବାଦ ହିଁ ମେହେନତୀ ଜନଗଣର ଏକମାତ୍ର ଭରସାର ସ୍ଥଳ । ଶୋଷିତ, ବୁଭୁକ୍ଷୁ, ସୁପ୍ତ ଜନତାର ଯୁଗ ଯୁଗର ଆଶା ଆକାଂକ୍ଷାକୁ ବାସ୍ତବ ରୂପ ଦେବାରେ ସମାଜବାଦ ହିଁ ସଫଳ ଅସ୍ତ୍ର । ସ୍ୱାଧୀନତା ଏବଂ ସମାଜବାଦ ପରସ୍ପର ସହିତ ଅଙ୍ଗାଙ୍ଗୀ ଜଡ଼ିତ । ଗୋଟିଏ ବ୍ୟତିରେକ ଅନ୍ୟଟିର ସ୍ଥାୟିତ୍ୱ ଅକଳ୍ପନୀୟ ।

ସେଥିପାଇଁ ଭିଏତନାମ ଆର୍ଥିକ ଉତ୍ପାଦନର ସାମଗ୍ରିକ ବଣ୍ଟନ ଭିତ୍ତିକର ସମାଜୀକରଣ କରିବା ପାଇଁ ସବୁ ଦିଗରୁ ପ୍ରଚେଷ୍ଟା ଚାଲିଛି । କୃଷି ଉତ୍ପାଦନ, ଯୁକ୍ତିସିଦ୍ଧ ଭୂ-ବଣ୍ଟନ, ଆଧୁନିକ ଶିଳ୍ପୀକରଣ, ପ୍ରଯୁକ୍ତି ବିଦ୍ୟାର ମାନ ବୃଦ୍ଧି ଏବଂ ଔଦ୍ୟୋଗିକ ବିକାଶ ପାଇଁ ଜାତୀୟ ସ୍ତରରେ ଯୋଜନାମାନ ହାତକୁ ନିଆ ଯାଇଛି । ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ, ଯୋଗାଯୋଗ, ଜଳସେଚନ ଆଦି ଅତ୍ୟାବଶ୍ୟକ ସଂସ୍ଥାଗୁଡ଼ିକୁ ନୂତନ ପ୍ରଣାଳୀରେ ଚାଲୁ କରିବା ପାଇଁ ସରକାରୀ ମାଧ୍ୟମମାନଙ୍କୁ ଜାଗ୍ରତ

ରଖା ଯାଇଛି । ଘରୋଇ ସଂସ୍ଥା ଓ ବ୍ୟକ୍ତି ମାନଙ୍କ ହାତରେ ଥିବା ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନମାନ କ୍ରମେ କ୍ରମେ ସରକାରୀ ପରିଚାଳନାଭୁକ୍ତ ହେବାକୁ ଯାଉଛି । ଆବଶ୍ୟକ ସ୍ଥଳେ କେତେଗୁଡ଼ିଏ ସଂସ୍ଥା ଘରୋଇ ଏବଂ ସରକାରୀ ମିଳିତ ସଂସ୍ଥା ଅଧୀନରେ ରଖାଯାଇଛି । ସମାଜବାଦୀ ଢାଞ୍ଚାରେ ଉତ୍ପାଦନକୁ ବ୍ୟାପକ ଏବଂ ଗଣମୁଖୀ କରିବା ପାଇଁ ପରୀକ୍ଷାସିଦ୍ଧ ଉପାୟ ଓ ପ୍ରଣାଳୀମାନ ପ୍ରୟୋଗ କରାଯାଇଛି । ସମୁଦାୟ ସମାଜ ବ୍ୟବସ୍ଥାକୁ ସମାଜବାଦୀ ବିପ୍ଳବର ଉପଯୁକ୍ତ ସ୍ତରଆର କରିବା ଉଦ୍ଦେଶ୍ୟରେ ବ୍ୟାପକ ପ୍ରସ୍ତୁତି ଚାଲିଛି । ଯୁଦ୍ଧଗ୍ରସ୍ତ ଅର୍ଥନୀତିକୁ ଖୁବ୍ କମ୍ ସମୟ ମଧ୍ୟରେ ଆରୋଗ୍ୟ କରିବାକୁ ହେଲେ ଉତ୍ପାଦନର ବହୁଳ ବୃଦ୍ଧି ଆବଶ୍ୟକ । ସେଥିପାଇଁ ପ୍ରତି ଶ୍ରମିକ ଓ କୃଷକଙ୍କ ପାଇଁ ଘୋଷଣା କରାଯାଇଛି—"ଅଧିକ ଉତ୍ପାଦନ ପାଇଁ ଅଧିକ ପାରିଶ୍ରମିକ; ଯେଉଁମାନେ ସମର୍ଥ ଅଥଚ କାର୍ଯ୍ୟ କରୁନାହାନ୍ତି ସେମାନଙ୍କ ପାଇଁ କୌଣସି ପାରିଶ୍ରମିକ ନାହିଁ" । ସମୁଦାୟ ସମ୍ପତ୍ତି ସମାଜର । ସରକାର କେବଳ ତାର ରକ୍ଷାକାରୀ ମାତ୍ର । ଜନତାର ସର୍ବାତ୍ମକ ସ୍ୱାର୍ଥ ସାଧନ ପାଇଁ ସମାଜ ସମ୍ପତ୍ତି ଉଦ୍ଦିଷ୍ଟ ! ତାର ସୁରକ୍ଷା ଏବଂ ଦୀର୍ଘ ଜୀବନ ପାଇଁ ସମାଜବାଦୀ ସମାଜ ବ୍ୟବସ୍ଥା ଏକାନ୍ତ ପ୍ରୟୋଜନ । ସମାଜବାଦୀ ନିର୍ମାଣର ପ୍ରୟୋଜନ ଅବଶ୍ୟମ୍ଭାବୀ । ଏହି ମହାନ ଯଜ୍ଞରେ ଭିଏତନାମର ପ୍ରତ୍ୟେକ ନାଗରିକ ଦୀକ୍ଷିତ । କାରଣ ସେମାନେ ତାର ସ୍ୱାଦ ଚାଖିଛନ୍ତି ।

ଏହିପରି ଗୋଟିଏ ବର୍ଷ ହେଲା ସ୍ୱାଧୀନ ଭିଏତନାମ ସମାଜବାଦୀ ନବ-ନିର୍ମାଣ ପଥରେ ଆଗେଇ ଚାଲିଛି । ସାମନ୍ତବାଦୀ ଅର୍ଥନୈତିକ ବ୍ୟବସ୍ଥାରୁ ସିଧାସଳଖ ସମାଜବାଦୀ ସମାଜ ବ୍ୟବସ୍ଥାକୁ ଉତ୍ତରଣ କରିବାରେ ଭିଏତନାମ ନୂତନ ଯୁଗ ଉନ୍ମୋଚନ କରିବ । ଅନ୍ତଃବର୍ତ୍ତୀ ପୁଞ୍ଜିବାଦୀ ପ୍ରକ୍ରିୟାର ସ୍ତର ଦେଇ ଗତିବା ପାଇଁ ସମୟ ସେମାନଙ୍କ ହାତରେ ନାହିଁ । ସମାଜବାଦୀ ବିପ୍ଳବ ପାଇଁ ଆନୁଷଙ୍ଗିକ ଭିତ୍ତିଭୂମି ସେମାନେ ପ୍ରସ୍ତୁତ କରି ସାରିଛନ୍ତି । ତେଣୁ ସେମାନଙ୍କର ସମାଜ ସାମନ୍ତ-ବାଦୀ ଶାସନ ବ୍ୟବସ୍ଥାରୁ ସମାଜବାଦୀ ରାଜନୀତିକୁ ସ୍ଥାନ ଦେବାକୁ ଯାଉଛନ୍ତି । ଏହି ନବନିର୍ମାଣର ମହାନ୍ କାରିଗର ହେଉଛନ୍ତି ଭିଏତନାମ ଜନତା ଓ ଭିଏତନାମ ଶ୍ରମିକ ଦଳ ।

ଏପ୍ରିଲ ସନ୍ଧ୍ୟା ପରି ମେ ଅନ୍ତ ଗୋଟିଏ ସନ୍ଧ୍ୟା । ବୋଧହୁଏ ମୁକ୍ତି ଯୁଦ୍ଧର ଶେଷ ସନ୍ଧ୍ୟା ସେ । ୧୯୭୬ ମସିହା ଜୁନ ମାସ ଚବିଶ ତାରିଖରେ ହାନୋଇଠାରେ "ମୁକ୍ତ, ଗଣତାନ୍ତ୍ରିକ, ସାର୍ବଭୌମ ଏବଂ ଐକ୍ୟବଦ୍ଧ ଭିଏତନାମର ପ୍ରଥମ ଜାତୀୟ ବିଧାନ ପରିଷଦର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠାନ କରାଯାଇଛି । ଏହି ବିଧାନ ପରିଷଦକୁ ଉନ୍ମୋଚନ କଲେ ଦକ୍ଷିଣ ଭିଏତନାମର ଜଣେ ଦେଶବତ୍ସଳ

ମୁକ୍ତ ହୋଇଥିବା କମ୍ରେଡ୍ ଙ୍ଗୁଏନ ହ୍ୟୁ ଥୋ । ଙ୍ଗୁଏନ ଥୋ ଅସ୍ଥାୟୀ ବିପ୍ଳବୀ ସରକାରର "ପରାମର୍ଶଦାତା ପରିଷଦ"ର ଅଧ୍ୟକ୍ଷ ରୂପେ ବହୁଦିନ ଧରି କାର୍ଯ୍ୟ କରିଥିଲେ । ସେଦିନ ଭିଏତନାମ ଜାତୀୟ ବିଧାନ ପରିଷଦ ଗୃହରେ ସରକାରୀ ବେସରକାରୀ ଅସଂଖ୍ୟ ଜନତାର ଭିଡ଼ । ସମ୍ବାଦପତ୍ରର ପ୍ରତିନିଧିଙ୍କ ଠାରୁ ଆରମ୍ଭ କରି ସାଧାରଣ ନାଗରିକ ପର୍ଯ୍ୟନ୍ତ ଜମା ହୋଇଥିଲେ ପ୍ରଥମ ବୈଧାନିକ ଉତ୍ସବରେ ଯୋଗ ଦେବା ପାଇଁ । ଚଳିତ ବର୍ଷ ଏପ୍ରିଲ ୨୫ ତାରିଖରେ ଭିଏତନାମ ଗଣ ଭୋଟରେ ନିର୍ବାଚିତ ହୋଇଥିବା ଚାରିଶହ ବୟାନବେ ଜଣ ପ୍ରତିନିଧିଙ୍କ ସମେତ ଅନ୍ୟାନ୍ୟ ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀଗଣ ଯୋଡ଼ ହସ୍ତରେ ଦଣ୍ଡାୟମାନ ହୋଇଥିଲେ ପରିଷଦ ଗୃହରେ । କମ୍ରେଡ୍ ହୋ-ଚି-ମିନ୍‌ଙ୍କ ଉଦ୍ଦେଶ୍ୟରେ ସେମାନଙ୍କର ମୁକ୍ତ ସ୍ୱାଧୀନ ତଥା ସ୍ୱତଃ ନଇଁ ଯାଇଛି । କମ୍ରେଡ୍ ଥୋ ଶୋକ ପ୍ରସ୍ତାବ ସହିତ ଘୋଷଣା କଲେ—

"ଏହି ମୁକ୍ତ ସ୍ୱାଧୀନ ଐକ୍ୟବଦ୍ଧ ବିଧାନ ପରିଷଦ ଆଜିଠାରୁ ଯୁଦ୍ଧାର୍ତ୍ତ ଜନ ଜୀବନର ଦାରୁଣ କ୍ଷତ ଲିଭାଇବାକୁ ଜନ ସହଯୋଗରେ ବ୍ୟାପକ ଗଣ ସଙ୍ଗଠନ ଗଢ଼ି ତୋଳିବା ପାଇଁ ସକ୍ରିୟଭାବେ ଚେଷ୍ଟା ଅବ୍ୟାହତ ରଖିବ । ଦେଶର ସମ୍ପୂର୍ଣ୍ଣ ଏକତ୍ରୀକରଣ ପାଇଁ ଏବଂ ସର୍ବୋପରି ସମାଜବାଦୀ ଯୁଗରେ ଅବତରଣ କରି- ପାଇଁ ଦୃଢ଼, କର୍ମବର୍ଦ୍ଧିଷ୍ଣୁ ଏବଂ ବେଗମାନ ସଂଗ୍ରାମ ଜାରି ରଖିବ" ।

ବିଶ୍ୱ ପୃଷ୍ଠରେ ଆଜି ଭିଏତନାମ ଏକ ମୁକ୍ତ ଏବଂ ଐକ୍ୟବଦ୍ଧ ଜାତି ରୂପେ ଠିଆ ହୋଇଛି । ଇତିହାସରେ ତାର ସ୍ଥାନ ସ୍ୱତନ୍ତ୍ର ଏବଂ ଅମ୍ଳାନ । ଅଭିନବ ଏକ ଯୁଦ୍ଧ ମୁକ୍ତି ଇତିହାସର ସର୍ଜନାକାରୀ ସେ । ଯାହାର ପଟାନ୍ତର ମଣିଷ ସମାଜର କୌଣସି କାବ୍ୟ କାହାଣୀରେ ଉଲ୍ଲେଖ ନାହିଁ ।



